

ହନୁମଦ୍ ବିରଚିତ

# ସଚିତ୍ର ମହାନାଟକ

ସମ୍ପୂର୍ଣ୍ଣ ନବାଙ୍କ ପଦ୍ୟାନୁବାଦିତ



ଶ୍ରୀ ଅଜୟକୁମାର ଘୋଷଙ୍କ ଦ୍ୱାରା

ସଂଶୋଧିତ

( ଦ୍ୱିତୀୟ ସଂସ୍କରଣ )



ପ୍ରାପ୍ତିସ୍ଥାନ

**ଦାସରଥି ପୁସ୍ତକାଳୟ**

**ବାଲୁବଜାର, କଟକ**

**ପୋ: ଚାନ୍ଦନୀଚୌକ**

୧୨ ୬ ୫୪ ଦୁଇଟଙ୍କା ବାରଅଣା ।



# ମହାନାଟକ



## ପ୍ରଥମଅଙ୍କ ।

ଶ୍ରୀ ଗଣେଶାୟ ନମଃ ।

ଅଥ ତତ୍ର ଭଗବାନ୍‌ପରମଗଣେଶଭକ୍ତୋହନୁମଦ୍‌ବିରଚିତଶ୍ରୀମହାନାଟକଗ୍ରନ୍ଥସଂସ୍କାରକଃ ଶ୍ରୀମାନ୍ ମଧୁସୂଦନମିଶ୍ରୋନିର୍ବିଘ୍ନେନ ଗ୍ରନ୍ଥପରିସମାପ୍ତୟେ ଶିଷ୍ୟଶିକ୍ଷାୟୈ ଚ ଗ୍ରନ୍ଥାଦୌ ଶ୍ରୀମଦ୍‌ଗଣେଶସ୍ତୁତିରୂପଂ ମଙ୍ଗଳମାଚରତି ॥

ବିଘ୍ନେଶୋ ବଃ ସ ପାୟାତ୍କଳନିଧିମଖିଳଂ ପୁଷ୍କରାଗ୍ରେଣ ପୀତ୍ୱା
ଯସ୍ମିନ୍ନୁଦ୍ଧୃତ୍ୟ ହସ୍ତଂ ବିସୃଜତି ସକଳଂ ଦୃଶ୍ୟତେ ବ୍ୟୋମ୍ନି ଦେବୈଃ ।
କ୍ୱାପ୍ୟମ୍ଭଃ କ୍ୱାପି ବହ୍ନିଃ କ୍ୱଚନ କମଳଭୂଃ କ୍ୱାପ୍ୟନନ୍ତଃ କ୍ୱ ଶୈଳାଃ ।
କ୍ୱାପ୍ୟୈରାବଃ କ୍ୱାପି ମତ୍ସ୍ୟାଃ କ୍ୱଚନ ମଣିଗଣାଃ କ୍ୱାପି ନକ୍ଷତ୍ରଚକ୍ରଂ ॥୧॥

ଶୁଣ୍ଡଅଗ୍ରେ ଧରି ପିଇ ଅଖିଳ ସାଗରି । ବିଘ୍ନଚ୍ଛେଦନବେଳେ ଛାଡ଼ି-ଦେଲେ ପ୍ରଭୁ ସେହି କରି ॥ ଆକାଶରେ ଥାଇ ଦେବେ ଦେଖିଲେ ସକଳ । କେଉଁ ଠାରେ ବସ୍ତୁ ପୁଣି କେଉଁ ଠାରେ ଜଳ ॥ କେଉଁ ସ୍ଥାନେ ବ୍ରହ୍ମା କେଉଁ ସ୍ଥାନରେ ଅନନ୍ତ । ବହୁତ କେତେକ ଦୂରେ ମୈନାକ ପର୍ବତ ॥ ରହିଲେଣି କେତେଦୂର ବଡ଼ବା ଅନଳ । ପଡ଼ିଛନ୍ତି କେଉଁ ଠାବେ ଯାଇଁ ମତ୍ସ୍ୟକୁଳ ॥ ପଡ଼ିଗଲେ ମଣିଗଣେ ଯାଇ କେଉଁ ସ୍ଥାନେ । କୂର୍ମାଦି ମଗର ଆଦି ଜଳଜନ୍ତୁମାନେ ॥ ଯାହାଙ୍କ ମହିମା ଅଟେ ଏମନ୍ତ ଅଦ୍ଭୁତ । ରଖନ୍ତୁ ସର୍ବଦା ସେହି ପ୍ରଭୁ ଉମାସୁତ । ୧ ।

ବହୁବିଘ୍ନଶଙ୍କାୟା ବହୂନି ମଙ୍ଗଳାନି ଆଚରନ୍ ତସ୍ୟାଭେଦେନ
ବସ୍ତୁଂ ବ୍ରହ୍ମାଣଂ ଚ ସ୍ତୌତି ॥

ବିଶେଷଶୋ ବାଃସ ପାଯୁ ତ୍ରିଗୁଣସହିତବତାଂ ଯୋଽବଲମ୍ବ୍ୟାନ୍ୟ ବାରଂ
ବିଶ୍ୱଦୀଚୀନସୃଷ୍ଟିସ୍ଥିତିବଳୟମଜଃ ସ୍ୱେଚ୍ଛୟା ନିର୍ମ୍ମିମୀତେ ॥
ଯସ୍ୟୈଷ୍ୱଶ୍ୱମତୀତ୍ୟ ପ୍ରବିବର୍ତ୍ତତ ମହିମା କୋଽପି ଲୋକବ୍ୟତୀତ
ସ୍ତ୍ର୍ୟକ୍ଷୋ ଯଶ୍ଚକ୍ଷୁଷୋଦ୍ୟୈରପି ନିପୁଣତୟା ବୀକ୍ଷଣୀୟୋ ନ ସୋଽସ୍ତୁ । ୨ ।

ନିର୍ଗୁଣର ସହାୟତା କରଣ ଆଶ୍ରୟ । ବାରଂବାର ଜଗତର ସୃଷ୍ଟିସ୍ଥିତି ଲୟ ॥ ଆପଣା ଇଚ୍ଛାରେ ଯେହୁ କରନ୍ତି ସୃଜନ । ଯାହାଙ୍କ ମହିମା ସୀମା କରନ୍ତି ଲଂଘନ ॥ ଲୋକାତୀତ ଅବ୍ୟକ୍ତ ଜନ୍ମ ବିବର୍ଜିତ । ଚନ୍ଦ୍ର ଆଦି ଇନ୍ଦ୍ରିୟରେ ନୁହନ୍ତି ବିଦିତ ॥ ଯେଉଁ ମାନେ ଦର୍ଶନାଦି କାର୍ଯ୍ୟରେ ଚତୁର । ତାହାଙ୍କ ଚକ୍ଷୁରେ ମଧ୍ୟ ନୁହନ୍ତି ଗୋଚର ॥ ସେହି ପ୍ରଭୁ ବିଶ୍ୱଧାତା ଜଗତ ଈଶ୍ୱର । ରକ୍ଷନ୍ତୁ ସକଳ ବିଘ୍ନ ନାଶି କରନ୍ତୁ ॥

ଅଥ ପ୍ରକୃତଗ୍ରନ୍ଥନାୟକଂ ରାମଂ ସ୍ତୌତି ।

କୌଶଲ୍ୟାନନ୍ଦନେନ୍ଦୁଂ ଦଶରଥତନୟଂ ନାରବିନ୍ଦନୀଭିଶ୍ରେଂ ।
ସୀତାମାନସହଂସଂ ରାମଂ ରାଜୀବଲୋଚନଂ ବନ୍ଦେ । ୩ ।

କୌଶଲ୍ୟା-ନୟନ-ଚନ୍ଦ୍ର ରାଜୀବ-ଲୋଚନ । ଦଶରଥ-ନେତ୍ର-ପଦ୍ମ ସୂର୍ଯ୍ୟଙ୍କ ସମାନ ॥ ସୀତାଙ୍କ ମାନସ-ସରୋବରରେ ମରାଳ । ବନ୍ଦଇ ଏମନ୍ତ ରାମ ଚରଣ ଯୁଗଳ । ୩ ।

ନମାମି ରାମଂ ସୁରକଲ୍ପବୃକ୍ଷଂ ଧନୁର୍ଦ୍ଧରଂ ନୀରଦନୀଳଗାତ୍ରଂ ।
ଜନାଭିରାମଂ କମଲାୟତାକ୍ଷଂ ଯସ୍ୟାସ୍ପଦଂ ନ କ୍ଷଣମୁଜ୍ଝିତ ଶ୍ରୀଃ ।୪।

କଳ୍ପବୃକ୍ଷ-ସମ ରାମ ପୁଣି ଧନୁର୍ଦ୍ଧର । ମେଘପରି ନୀଳବର୍ଣ୍ଣ ଦେହ ଯାହାଙ୍କର ॥ ଲୋକପ୍ରିୟ ପଦ୍ମପ୍ରାୟ ଅଟେ ନେତ୍ରଦ୍ୱୟ । କ୍ଷଣେ ହେଁ ଲକ୍ଷ୍ମୀ ନ ଛାଡ଼ନ୍ତି ଯାହାଙ୍କ ଆଶ୍ରୟ । ୪ ।

ରାମଂ ଲକ୍ଷ୍ମଣପୂର୍ବଜଂ ରଘୁବରଂ ସୀତାପତିଂ ସୁନ୍ଦରଂ
କାକୁତ୍ସ୍ଥଂ କରୁଣାକରଂ ଗୁଣନିଧିଂ ବିପ୍ରପ୍ରିୟଂ ଧାର୍ମିକଂ ।
ରାଜେନ୍ଦ୍ରଂ ସତ୍ୟସନ୍ଧଂ ଦଶରଥତନୟଂ ଶ୍ୟାମଳଂ ଶାନ୍ତମୂର୍ତ୍ତିଂ
ବନ୍ଦେ ଲୋକାଭିରାମଂ ରଘୁକୁଳତିଳକଂ ରାଘବଂ ରାବଣାରିଂ ।୫।

ଲକ୍ଷ୍ମଣ-ଅଗ୍ରଜ ରାମ-ଚନ୍ଦ୍ର ରଘୁବର । ସୀତାଙ୍କର ପତି ପୁଣି ଅଟନ୍ତି ସୁନ୍ଦର ॥ କକୁତ୍ସ୍ଥ-ବଂଶରେ ଜାତ କରୁଣାସାଗର । ବିପ୍ରପ୍ରିୟ ଧର୍ମପ୍ରିୟ ସର୍ବଗୁଣାକର । ରାଜଶ୍ରେଷ୍ଠ ସତ୍ୟବାଦୀ ଦଶରଥସୁତ । ଶ୍ୟାମବର୍ଣ୍ଣ ଶାନ୍ତମୂର୍ତ୍ତି ଲୋକହିତେ ରତ ॥ ରାବଣାରି ରଘୁନାଥ ରଘୁଙ୍କ ନନ୍ଦନ । ତାହାଙ୍କ ଚରଣଦ୍ୱୟ କରୁଛି ବନ୍ଦନ । ୫ ।

ମନୋଽଭିରାମଂ ନୟନାଭିରାମଂ
ବଚୋଽଭିରାମଂ ଶ୍ରବଣାଭିରାମଂ
ସତତାଭିରାମଂ ଦାଶରଥିଂ ଚ ରାମଂ । ୬ ।

ଚିତ୍ତପ୍ରିୟ ନେତ୍ରପ୍ରିୟ ବାକ୍ୟପ୍ରିୟ ରାମ । ସର୍ବଦା ଟେ ଶ୍ରୁତି-ପ୍ରିୟ ଅତିମନୋରମ ॥ ଅତି ସୁନ୍ଦର ଯେ ଦଶରଥଙ୍କ ନନ୍ଦନ । ନିରନ୍ତର ସେ ରାମଙ୍କୁ କରୁଛି ବନ୍ଦନ । ୬ ।

ଶ୍ରୀରାମଚନ୍ଦ୍ର ଭୁବନଶ୍ରୀ ଚକ୍ରବର୍ତ୍ତିଚନ୍ଦ୍ର
ସୈାନ୍ଦର୍ଯ୍ୟଚନ୍ଦ୍ର ରଜନୀଚରପଦ୍ମଚନ୍ଦ୍ର ।

ଆନନ୍ଦଚନ୍ଦ୍ର ରଘୁବଂଶସମୁଦ୍ରଚନ୍ଦ୍ର
ସୀତାମନଃକୁମୁଦଚନ୍ଦ୍ର ନମୋନମସ୍ତେ । ୭ ।

କୀରତ ରଖିଣ ଯେଉଁ ପ୍ରଭୁ ରାମଚନ୍ଦ୍ର । ବହିଛନ୍ତି ମହୀତଳେ ନାମ କୀର୍ତ୍ତିଚନ୍ଦ୍ର ॥ ଯାହାଙ୍କର ମୁଖଚନ୍ଦ୍ରେ ଶୋଭେ ମନ୍ଦହାସ । ଚନ୍ଦ୍ରପ୍ରାୟ ଆନନ୍ଦକୁ କରନ୍ତି ପ୍ରକାଶ ॥ ପଦ୍ମରୂପ ରଘୁବଂଶେ ଯେଉଁ ହିମକର । ସାଗର ସ୍ୱରୂପ ରଘୁକୁଳେ ନିଶାକର ॥ ଜାନକୀ ଦେବୀଙ୍କ ହୃଦ-କୁମୁଦର ବନ୍ଧୁ । ନମସ୍କାର କର ତାଙ୍କ ପାଦପଦ୍ମ ବନ୍ଦୁଁ । ୭ ।

କଲ୍ୟାଣାନାଂ ନିଦାନଂ କଲିମଲମଥନଂ ଜୀବନଂ ସଜ୍ଜନାନାଂ ।
ପାଥେୟଂ ଯନ୍ମୁମୁକ୍ଷୋଃ ସପଦି ପରପଦପ୍ରାପ୍ତୟେ ପ୍ରସ୍ଥିତସ୍ୟ ॥
ବିଶ୍ରାମସ୍ଥାନମେକଂ କବିବରବଚସାଂ ପାବନଂ ପାବନାନାଂ
ବୀଜଂ ଧର୍ମଦ୍ରୁମସ୍ୟ ପ୍ରଭବତୁ ଭବତାଂ ଭୂତୟେ ରାମନାମ । ୮ ।

କଲ୍ୟାଣ-କାରଣ କଲି-କଲୁଷ-ମଥନ । ସାଧୁ ଜନ-ମାନଙ୍କର ଅଟନ୍ତି ଜୀବନ ॥ ବ୍ରହ୍ମପଦ ଲଭିବାକୁ ମୋକ୍ଷକାମି ଜନ । ଯେତେବେଳେ ପଥମଧ୍ୟେ କରନ୍ତି ଗମନ ॥ ହୋଇଥାଏ ତାହାଙ୍କର ପାଥେୟ ଧନ । କରଇ ପବିତ୍ର-କାରୀ ଜନକୁ ପାବନ ॥ ବଡ଼ ବଡ଼ କବିଙ୍କର କହିବା ସମୟେ । ବିଶ୍ରାମ କରିବା ସ୍ଥାନମାନ ହୋଇଥାଏ ॥ ଧର୍ମବୃକ୍ଷ ବୀଜ ଅଟେ ସେହି ରାମ ନାମ । ପ୍ରାଣିଙ୍କୁ କରନ୍ତୁ ମୋକ୍ଷ ଏହି ମୋର କାମ । ୮ ।

ଶ୍ରୀରାଘବଂ ରଘୁକୁଳାର୍ଣ୍ଣବରତ୍ନଦୀପଂ
ସୀତାପତିଂ ଦଶରଥାତ୍ମଜମପ୍ରମେୟଂ ॥
ଆଜାନୁବାହୁମରବିନ୍ଦଦଳାୟତାକ୍ଷଂ
ରାମଂ ନିଶାଚରବିନାଶକରଂ ନମାମି । ୯ ।

ରଘୁବଂଶ-ସମୁଦ୍ରରେ ରତ୍ନଦୀପସମ । ଦଶରଥ-ଔରସରେ ଯାହାଙ୍କ ଜନମ ॥ ରାଘବ ନାମରେ ଖ୍ୟାତ ଯେଉଁ ଅପ୍ରମେୟ । ଲମ୍ବିଥାଇ ଅଛି ଜାନୁ ଯାଏ ଭୁଜଦ୍ୱୟ ॥ ପଦ୍ମପତ୍ରପ୍ରାୟ ଅଟେ ଯାହାଙ୍କ ନୟନ ।

ଦେଖିଲେ ରାକ୍ଷସବଂଶ କରନ୍ତି ନିଧନ ॥ ଅବର ସୀତାଙ୍କ ପତି ନାମ ଅଟେ ରାମ । ବାରଂବାର ଅଛୁଅଛୁ ତାହାଙ୍କୁ ପ୍ରଣାମ । ୯ ।

ଏତୌ ଦ୍ୱୌ ଦଣ୍ଡକଶୁଣ୍ଡକଦଳୀକାନ୍ତାରକାନ୍ତିଚ୍ଛିଦୌ
ବୈଦେହୀକୁଚକୁମ୍ଭକୁଙ୍କୁମରଜଃପଙ୍କାରୁଣାଙ୍କାଙ୍କିତୌ ॥
ଲୋକତ୍ରାଣବିଧାନସାଧୁସଦନପ୍ରାରମ୍ଭଯୂପୌ ଭୁଜୌ
ତଦ୍ୟାତାମୁରୁବିକ୍ରମୌ ରଘୁପତେଃ ଶ୍ରେୟାଂସି ଭୂୟାଂସି ବଃ ।୧୦।

ଦଣ୍ଡକୀର ବନପର ରାକ୍ଷସ ଗଳାକୁ । କାଟିଛନ୍ତି ଅବର ଯେଉଁ ଭୁଜ ତା ଶୋଭାକୁ ॥ ଜାନକୀ-ଉରଜ କୁମ୍ଭ କୁଙ୍କୁମ ପରାଗ । ଲଗିବାରୁ ହୋଇଅଛି ପଙ୍କିଲ ସରାଗ ॥ ଲୋକଙ୍କୁ ରଖଇ ଘୋର ବିପଦ କାଳରେ । ସାଧୁଙ୍କ ଗୃହରେ ଯୂପ ପରାୟ ଆଚରେ ॥ ଏମନ୍ତ ରାମଙ୍କ ବେନି ଉରୁ ଭୁଜବଳ । ବିଶେଷରେ ପ୍ରାଣିଙ୍କର କରନ୍ତୁ ମଙ୍ଗଳ ॥

ବାଲକ୍ରୀଡ଼ିତମିନ୍ଦୁଶେଖରଧନୁର୍ଭଙ୍ଗାବଧି ପ୍ରହ୍ୱତା
ତାତେ କାନନସେବନାବଧି କୃପା ସୁଗ୍ରୀବସଖ୍ୟାବଧି ॥
ଅଜ୍ଞା ବାରିଧିବନ୍ଧନାବଧି ଯଶୋଲଙ୍କେଶନାଶାବଧି
ଶ୍ରୀରାମସ୍ୟ ପୁନାତୁ ଲୋକବଶତା କ୍ଷ୍ମାପେକ୍ଷାବଧି । ୧୧ ।

ଯାହାଙ୍କର ବାଲଲୀଳା ଧନୁଭଙ୍ଗେ ଶେଷ । ନମ୍ରତାର ଶେଷସୀମା ଅଟେ ବନବାସ ॥ କରୁଣାର ଶେଷସୀମା ସୁଗ୍ରୀବେ ମିତ୍ରତା । ସେତୁବନ୍ଧେ ହୋଇଅଛି ଅଜ୍ଞାର ଶେଷତା ॥ ସବଂଶରେ ଲଙ୍କାପତି ରାବଣ ସଂହାର । ହୋଇଛି ଯଶର ଶେଷ ସୀମା ଯାହାଙ୍କର । ଲୋକବଶ ସୀମା ଶେଷ ସୀତାଖୋଜିବାରେ । ପବିତ୍ର କରନ୍ତୁ ସେହି ରାମଚନ୍ଦ୍ର ବାରେ । ୧୧ ।

ବାଲ୍ମୀକେର୍ବଦନାମ୍ବୁଜାଦ୍ୱିଗଳିତଂ ହୃଦ୍ୟଂ ପରଂ ପାବନଂ ।
ଶ୍ରାବ୍ୟଂ ରାମଯଶୋମୃତଂ ପିବନ୍ତ୍ୟନୁଦିନଂ କେଚିତ୍ଶ୍ରୋତ୍ରପାତ୍ରୈର୍ଜନାଃ ।
ବକ୍ତ୍ରୋଃ ସଞ୍ଚରିତଂ ଚରାଚରଗୁରୋ ରାମାୟଣଂ ସାଦର-
ନ୍ତେଷାଂ ଶ୍ରୀର୍ବିମଲା ଭବତ୍ୟନୁଦିନଂ ନଶ୍ୟନ୍ତି ଦୁଃଖୈର୍ନୃପୈଃ ।୧୨।

ବାଲ୍ମୀକି ଋଷିଙ୍କ ମୁଖପଦ୍ମରୁ ଗଳିତ । ଚରିତରେ ଗୁରୁ ରଘୁନାଥଙ୍କ ଚରିତ ॥ ଜଗତେ ବିଦିତ ନାମ ରାମାୟଣ ଯାର । ପରମ ପବିତ୍ର ସୁଧା ତୁଲ୍ୟ ରସସାର ॥ ପିଅନ୍ତି ଶ୍ରବଣପାତ୍ରେ ଜନେ ଯେତେବେ ନିତ । ଶତ୍ରୁ କ୍ଷୟ ହୋଏ ପୁଣି ବଢ଼ଇ ସମ୍ପତ୍ତି । ୧୨ ।

ନମୋଽସ୍ତୁ ରାମାୟ ସଲକ୍ଷ୍ମଣାୟ
ଦେବ୍ୟୈ ଚ ତସ୍ୟୈ ଜନକାତ୍ମଜାୟୈ ।
ନିପାତିତଂ ଯେନ ସମସ୍ତରକ୍ଷୋ
ନମୋଽସ୍ତୁ ତସ୍ମୈ ରଘୁନନ୍ଦନାୟ । ୧୩ ।

ଲକ୍ଷ୍ମଣ ସହିତ ରାମେ କର ନମସ୍କାର । ନମଇ ଜାନକୀ ଦେବୀ ପାଦେ ବାରଂବାର ॥ ବଧିଛନ୍ତି ରକ୍ଷବଂଶ ଯେ ରଘୁନନ୍ଦନ । ପୁନର୍ବାର ତାଙ୍କ ପାଦ କରୁଛି ବନ୍ଦନ । ୧୩ ।

ସ ଜୟତି ରଘୁବଂଶତିଲକଃ କୌଶଲ୍ୟାନନ୍ଦବର୍ଦ୍ଧନୋ ରାମଃ ॥
ଦଶବଦନନିଧନକାରୀ ଦାଶରଥିଃ ପୁଣ୍ଡରୀକାକ୍ଷଃ । ୧୪ ।

ଜୟ ଜୟ ରାମ ରଘୁକୁଳର ତିଳକ । କୌଶଲ୍ୟା ଦେବଙ୍କର ଆନନ୍ଦ ବର୍ଦ୍ଧକ ॥ ରାବଣ ନିଧନକାରୀ ଦଶରଥ ପୁତ୍ର । ଯାହାଙ୍କର ଶ୍ୱେତପଦ୍ମ ପ୍ରାୟ ବେନି ନେତ୍ର । ୪ ।

ଅଥ ହରଂ ସ୍ତୌତି ।

ଯୋଗଜ୍ଞାନଧରସ୍ତମୋଗୁଣଧରୋ ବିଧ୍ୱସ୍ତଦକ୍ଷାଧ୍ୱରଃ
ଶଶ୍ୱଦ୍ଭସ୍ମଧରୋ ଭୁଜଙ୍ଗମଧରୋ ଭକ୍ତାନୁକମ୍ପାଧରଃ ॥
ଦେବୋ ବ୍ରହ୍ମଶିରୋଧରୋ ବୃଷଧରଃ ଶୈଳେନ୍ଦ୍ରପୁତ୍ରୀଧରଃ
ସର୍ବାନନ୍ଦଧରଃ ସୁଧାକରଧରୋ ମାଂ ପାତୁ ଗଙ୍ଗାଧରଃ । ୧୫ ।

ଯୋଗଜ୍ଞାନଧର ଅଟେ ତମୋଗୁଣଧର । ଦକ୍ଷ ଯଜ୍ଞ ଭଗ୍ନକାରୀ ଭସ୍ମଧାରୀ ହର ॥ ଭୁଜଙ୍ଗମବିଭୂଷିତ ଭକ୍ତେ ଦୟାକାରୀ । ବ୍ରହ୍ମାର ମସ୍ତକଧାରୀ ସଦା ବୃଷଧାରୀ ॥ ଧରିଅଛି ପାର୍ବତୀଙ୍କୁ ଅଟେ ଗଙ୍ଗାଧର । ବହିଅଛି ମସ୍ତକରେ ପୁଣି ସୁଧାକର ॥ ସବୁବେଳେ ଆନନ୍ଦକୁ କରିଛି ଧାରଣ । ଅଟେ ଦେବଦେବ ମୋତେ କରନ୍ତୁ ରକ୍ଷଣ । ୧୫ ।

ନାନ୍ଦ୍ୟନ୍ତେ ସୂତ୍ରଧାରଃ ।
ଅଲମତି ବିସ୍ତରେଣ ।

ବାଲ୍ମୀକେରୁପଦେଶତଃ ସ୍ୱୟମହୋ ବକ୍ତା ହନୂମାନ୍ କପିଃ
ଶ୍ରୀରାମସ୍ୟ ରଘୂତ୍ତମସ୍ୟ ଚରିତଂ ସୌମ୍ୟା ବୟଂ ନର୍ତ୍ତିକାଃ ।
ଗୋଷ୍ଠୀ ତାବଦିୟଂ ସମସ୍ତସୁମନଃସଙ୍ଘେନ ସଂବେଷ୍ଟିତା
ତନ୍ନୀତିଃ କୁରୁତେ ପ୍ରମୋଦମଧୁନା ବକ୍ତାସ୍ମି ରାମାୟଣଂ । ୦୬ ।

କରନ୍ତେ ବହୁତ ସ୍ତୁତି ନାନ୍ଦୀ ଏପ୍ରକାର । ଏମନ୍ତ ସମୟେ ପ୍ରବେଶିଲେ ସୂତ୍ରଧାର ॥ ବୋଇଲେ କି ହେବ ଆଉ ବିସ୍ତର ବର୍ତ୍ତନେ । ହେଉଅଛୁଁ ନୃତ୍ୟକାରୀ ସେସନ୍ତୁ ଆମ୍ଭେମାନେ ॥ ବହୁତ ଜନରେ ପୂରିଅଛି ଏହି ସଭା । ଥିବାରୁ ପଣ୍ଡିତଗଣ ପାଉଅଛି ଶୋଭା ॥ ବାଲ୍ମୀକି ଋଷିଙ୍କ ଆଜ୍ଞା ପାଇ ହନୂମାନ । କରିଥିଲେ ରଘୁପତି ଚରିତ ବର୍ଣ୍ଣନ ॥ ସମ୍ପ୍ରତି ବୋଲୁଛୁଁ ଆମ୍ଭେ ସେ ରାମ ଚରିତ । ସଭାଜନ ହୃଦୟକୁ କରୁ ଆମୋଦିତ । ୧୬ ।

ତତ୍ର ତାବଦ୍ରଘୁନାଥସ୍ୟ ଜନ୍ମହେତୁମାହ ।
ହନ୍ତୁଂ ନିଶାଚରକୁଳଂ ଦ୍ୱିଜମୁଖ୍ୟବର୍ଗାନ୍ ।
ସଂରକ୍ଷିତୁଂ ବୃଷପଥୋ ନିହିତୋ ବିକାସାଂ ଯଃ ।
ଜାତଃ କ୍ଷିତୌ ରଘୁକୁଳେ ନିଗମୈକବେଦ୍ୟୋ
ରାମାଭିଧୋ ନବତମାଲବପୁଃ ସୁରେଶଃ । ୧୭ ।

ଯାହାଙ୍କ ତତ୍ତ୍ୱକୁ ବେଦ ଜାଣେ ଏକମାତ୍ର । ନୂତନ ତମାଳ ପ୍ରାୟ ଯାହାଙ୍କର ଗାତ୍ର ॥ ସେହି ପ୍ରଭୁ ସୁରେଶ୍ୱର ବହି ରାମନାମ । କ୍ଷିତିତଳେ ରଘୁକୁଳେ ଲଭିଣ ଜନମ ॥ ଦେବଙ୍କ ବଇରୀ ଲଙ୍କାପୁର ଅଧିକାରୀ । ପୁତ୍ର ନାତି ସହି ତାକୁ ସବଂଶେ ସଂହାରି ॥ କରିବେକ ନିଶାଚର କୁଳକୁ ନିଧନ । ଆବର ରଖିବେ ମୁଖ୍ୟ ମୁଖ୍ୟ ଦ୍ୱିଜଗଣ । ୧୭ ।

ରାବଣବଧାର୍ଥଂ ବିଷ୍ଣୁଂ ପ୍ରତି ବ୍ରହ୍ମବାକ୍ୟଂ ।
ତମୁଲ୍ଲଙ୍ଘ୍ୟ ରାବଣମୁଗ୍ରତେଜସଂ
ପ୍ରବୃଦ୍ଧଦର୍ପଂ ତ୍ରିଦଶେଶ୍ୱରଦ୍ୱିଷଂ ।

ରାବଣଂ ସ୍ୱବଂଶପଙ୍କ୍ତିକଣ୍ଟକଂ
ମନୁଷ୍ୟତାମେତ୍ୟ ନିହନ୍ତୁମର୍ହସି । ୧୮ ।

ଏମନ୍ତ ବାଣୀରେ ମନେ ମନେ ପ୍ରଜାପତି । ବୈକୁଣ୍ଠେ ବିଷ୍ଣୁଙ୍କୁ ଯାଇଁ ବୋଇଲେ ସ୍ତୁତି ॥ ଭୀଷଣ ଶବଦଙ୍କ ସ୍ୱ ଉଗ୍ରତେଜ-ଧାରୀ । ତପଙ୍କ୍ତି କଣ୍ଟକ ପୁଣି ଦେବଙ୍କ ବଇରୀ ॥ ଅତିଗର୍ବି ରାବଣକୁ ଅହେ-ଦାମୋଦର । ମନୁଷ୍ୟ ଜନମ ଲଭି କରନ୍ତୁ ସଂହାର । ୧୮ ।

ବ୍ରହ୍ମାଣଂ ପ୍ରତି ବିଷ୍ଣୁବାକ୍ୟଂ ।

ସୋଽହଂ ଦାଶରଥିର୍ଭୂତ୍ୱା ରଣଭୂମେର୍ବଳିକ୍ଷମଂ ।
କରିଷ୍ୟାମି ରୈସ୍ତୀକ୍ଷ୍ଣୈ ସ୍ତଚ୍ଛିରଃକମଳୋଚ୍ଚୟଂ । ୧୯ ।

ବୋଇଲେ ବ୍ରହ୍ମାଙ୍କୁ ଗୁହୁଁ ପ୍ରଭୁ ନାରାୟଣ । ଦଶରଥ ଘରେ ଜନ୍ମି ମାରିବି ରାବଣ ॥ ତା ଶିର କମଳମାନ କାଟି ତୀକ୍ଷ୍ଣଶରେ । ବଳି ଦେବି ରଣସ୍ଥଳେ ବିଷ୍ଣୁ ସମରେ । ୧୯ ।

ରାଜାସୀତ୍ସମହାରଥୋଦଶରଥସ୍ତସ୍ୟାଂଶୁବଂଶାଗ୍ରଣୀ ।
ସ୍ତସ୍ୟାସନ୍ ଭୁବି ଚାରୁକେକୟକୁଳସ୍ୟାସ୍ତିସ୍ରୋ ମହିଷ୍ୟଃ ଶୁଭାଃ ।
ପୁତ୍ରାଂସ୍ତାନ୍ ସୁଷୁବୁଃ ସ୍ୱବଂଶଧରଣାନ୍ ସୋଽତ୍ର ନୁରୂପାଂସ୍ତଥା
ଜ୍ୟେଷ୍ଠୋ ରାମ ଇତଃ କନିଷ୍ଠଭରତସ୍ତସ୍ୟାନୁଜୋ ଲକ୍ଷ୍ମଣଃ । ୨୦ ।

ଜନମି ଅଛନ୍ତି ନର-ପତି ମହାରଥ । ସୂର୍ଯ୍ୟବଂଶେ ଶ୍ରେଷ୍ଠ ତାଙ୍କ ନାମ ଦଶରଥ ॥ ତିନିରାଣୀ ତାହାଙ୍କର ପରମା ସୁନ୍ଦରୀ । ମନେ ହାରି କେଳିଗୃହ-ଯୋଗ୍ୟା ଶୁଭକରୀ ॥ ଜନମିବେ ତାଙ୍କ ଗର୍ଭୁ ଚାରୋଟି କୁମାର । ସନ୍ତତି-ସ୍ୱରୂପୀ ହେବେ ନିଜବଂଶଧର ॥ ଜ୍ୟେଷ୍ଠ ହେବେ ରାମ ପୁଣି କନିଷ୍ଠ ଭରତ । ତାହାଙ୍କ ପଛରେ ହେବେ ଲକ୍ଷ୍ମଣ ସଂଭୂତ । ୨୦ ।

ଶତ୍ରୁଘ୍ନୋ ରାଜପୁତ୍ରସ୍ତଦନୁ ସମଭବଚ୍ଛତ୍ରୁସଂହାରକାରଃ
ସୋଽପ୍ୟତ୍ର ସ୍ନେହାନୁବୃତ୍ତ୍ୟା ଭରତମନୁଗତଃ କେକୟୀସୂନୁମେବ ।
ସୌମିତ୍ରୀ ରାମସେବାନ୍ୱଗମଦବିରତଂ ସର୍ବଧର୍ମପ୍ରବୀଣଃ
ପୂର୍ଣ୍ଣାଂଶୋ ରାମଚନ୍ଦ୍ରଃ ସ ଖଳୁ ତଦନୁଜା ବ୍ରହ୍ମଣୋଽଂଶାବତାରାଃ । ୨୧ ।

ରାଜସୁତ ଶତ୍ରୁଘନ ଏଥିଅନନ୍ତରେ । ଜନମିବେ କ୍ଷମ ହେବେ ଶତ୍ରୁମାରିବାରେ ॥ କେକୟୀ ରାଣୀଙ୍କ ସୁତ ଭରତଙ୍କଠାରେ । ଅନୁଗତ ହେବେ ସେହି ପୁଣି ସ୍ନେହଭରେ ॥ ପୂର୍ଣ୍ଣଅଂଶ ରାମ ସର୍ବଧର୍ମରେ ପ୍ରବଣ । ତାହାଙ୍କ ସେବାରେ ରତ ସର୍ବଦା ଲକ୍ଷ୍ମଣ ॥ ଅଉମାନେ ପରଂବ୍ରହ୍ମ ଅଂଶୁ ଅବତର । ଏତେ ବୋଲି ଅନ୍ତର୍ଦ୍ଧାନ ହେଲେ ଚନ୍ଦ୍ରଧର । ୨୧ ।

ଅଥ ଦଶରଥେଷ୍ଟିଃ ।

ଅଥାପୁତ୍ରୋ ଦଶରଥୋ ମୁନୀନାମାଜ୍ଞୟା କାନନା-
ଦେତ୍ୟନେଷ୍ଟିଂ କାରୟାମାସ ସ ପୁତ୍ରପ୍ରାପ୍ତିକାରଂ ତଦା । ୨୨ ।

ଏଥିଅନ୍ତେ ଅପୁତ୍ରିକ ଦଶରଥ ରାଜା । ମୁନିଙ୍କି ଆଣାଇ ବନୁ କରି ପଦ ପୂଜା ॥ ସେ କାଳେ ପୁତ୍ରେଷ୍ଟି ନାମେ ଯଜ୍ଞ କରାଇଲେ । ଜାତିସ୍ତୁ ମିଳଇ ପୁତ୍ର ଯେଉଁ ଯାଗ କଲେ । ୨୨ ।

ଅଥ ଜନ୍ମ

ଚତୁର୍ଦ୍ଧାଂଶୈର୍ଦଶରଥାଜ୍ଜାତଃ ପତ୍ନୀତ୍ରୟେ ହରିଃ ।
ଶତ୍ରୁଘ୍ନଲକ୍ଷ୍ମଣୌ ଦ୍ୱୌଚ ଶ୍ରୀରାମୋ ଭରତସ୍ତଥ । ୨୩ ।

ଏଥିଅନ୍ତେ ଦଶରଥ ରାଜାଙ୍କ ଔରସେ । ଜନମିଲେ ତିନିରାଣୀ ଗର୍ଭୁ ଚାରିଅଂଶେ ॥ ଶ୍ରୀରାମ ଭରତ ଆଉ ଶତ୍ରୁଘ୍ନ ଲକ୍ଷ୍ମଣ । ବହିଲେ ଏ ଚାରିନାମ ପ୍ରଭୁ ନାରାୟଣ । ୨୩ ।

ଅଯୋଧ୍ୟାୟାଂ ବିଶ୍ୱାମିତ୍ରସ୍ୟ ପ୍ରବେଶଃ ।
ମଣିଭ୍ରୁବଂଶାନ୍ୱୟମାଗତସ୍ତଦା
ନିଷ୍କାଧ୍ୱରୈର୍ବୈରିତବଂଶଜୋ ମୁନିଃ ।
ରାମଂ ସମାନେତୁମତୋଜନପାଳିତାଂ
ବିବେଶ ଗାଧନ୍ୱୟମଣ୍ଡନଃ ପୁରୀଂ । ୨୪ ।

ଏକଦିନେ ବିଶ୍ୱାମିତ୍ର ଆଦି ତପୋଧନେ । ଯଜ୍ଞକର୍ମ ଆରମ୍ଭିଲେ ମିଳି ତପୋବନେ ॥ ଅସୁରେ କରନ୍ତେ ଆସି ଯାଗ ଅପଚାର । ଗାଧିସୁତ ନଇରତ ବଂଶୀ ବିଶ୍ୱାମିତ୍ର ॥ ଯୋଗବଳେ ଜାଣିଲେକ ବିଷ୍ଣୁ ପୂର୍ଣ୍ଣ

ଅଂଶେ । ଜନମି ଅଛନ୍ତି ରାମ ରୂପେ ସୂର୍ଯ୍ୟବଂଶେ ॥ ନିଷ୍ଟେ ଯାଗ ରକ୍ଷା-ହେବ ଶ୍ରୀରାମ ଅଇଲେ । ଏମନ୍ତ ବିଚାରି ବେଗେ ତହୁଁ ଚଳି ଗଲେ ॥ ଯଳଥିଲେ ଅଳରାଜା ଅତି ଯତନରେ । ପ୍ରବେଶିଲେ ଯାଇଁ ସେହି ଅଯୋଧ୍ୟା ନଗରେ । ୨୪ ।

ଦଶରଥଂ ପ୍ରତି ବିଶ୍ୱାମିତ୍ରସ୍ୟ ପ୍ରାର୍ଥନା ।

ତଂ କୌଶିକଂ ମୁନିବରଂ ସଗଣଃ ସପୁତ୍ରୋ
ଦୃଷ୍ଟ୍ୱା ନୃପୋଦଶରଥୋମୁନିମାହ ଶୀଘ୍ରଂ ।
ସଂପୂଜ୍ୟ କଂ ବଦ ମୁନେଽଦ୍ୟ କରୋମି ତେଽର୍ଥଂ
ସ ପ୍ରାହ ଦେହି ତନୟଂ ସବନାବନାୟ । ୨୫ ।

ମୁନିବର କୌଶିକଙ୍କୁ ଦେଖି ନରପତି । ପାତ୍ର ମନ୍ତ୍ରୀ ପୁତ୍ରଅନ୍ତ ଘେନିଣ ତତ୍ପର ॥ ପାଦପୂଜା କରି ନେଇ ଆସନେ ବସାଇ । ପଚାରିଲେ କି ନିମନ୍ତେ ଅସିଛ ଗୋସାଇଁ ॥ କି କାର୍ଯ୍ୟ କରିବି ମୋତେ ବୋଇଲେ ସତ୍ୱର । ଆଜ୍ଞା ମୁଁ କରିବି ନିଷ୍ଟେ ଅହେ ମୁନିବର ॥ ବୋଇଲେ ମହର୍ଷି ଅହେ ଅଯୋଧ୍ୟା ରାଜନ । ପୁତ୍ର ଦେଇ ଯାଗ ମୋର ରଖନ୍ତୁ ବହନ । ୨୫ ।

ତଚ୍ଛ୍ରୁତ୍ୱା ଦଶରଥସ୍ୟ ମନୋବ୍ୟଥା
ଇତି ହୃଦୟ୍ବିଦାରଣଂ ତଦେବଂ
ମୁନିବଚନଂ ଶ୍ରୁତବାନ୍ ପରଂ ତଦର୍ଥଂ ॥
ନର ଭରଭବନ୍ତେ ମହାତ୍ମା
ବ୍ୟଥିତମନାଃ ପ୍ରଚଚାଲ ନୃପନାତ୍ ସ୍ୱାନ୍ତ୍ । ୨୬ ।

ବିଶ୍ୱାମିତ୍ର ମୁନିଙ୍କର ଏ ଦାରୁଣ ବାଣୀ । ପଶାଇଲା ନୃପତିଙ୍କ ହୃଦୟକୁ ହାଣି ॥ ମହାତ୍ମା ନୃପଙ୍କ ଚିତ୍ତ ହେଲା ଅକୁଳିତ । ଉଠିଗଲେ ତହୁଁ ନିଜ ଆସନ ତ୍ୱରିତ । ୨୬ ।

ଅଥ ଚନ୍ଦ୍ରାକୁଳୋଦଶରଥଃ ସ୍ୱଗତଂ ।
ନାନାପଚୈର୍ବିଂସୁପେ ଚରମେ ରାମ ଏଷୋଽପି ଲବ୍ଧ

ସ୍କନ୍ଦଂ ମେ ନେତୁଂ ମୁନିରୁପଗତଃ କିଂ ବଧାନଂ କରୋମି ।
କୋନାଦତ୍ତେ କୁଳପତିଭବାଦ୍‌ବ୍ରହ୍ମଶାପାଦ୍‌ବିଭେତି
ଦତ୍ତେ ତସ୍ମିନ୍ କମୁପକରଣଂ ଜୀବନାଲମ୍ବନାୟ । ୨୭ ।

ଅକୁଳଚିତ୍ତେ ଦଶରଥ ଏଥିଅନନ୍ତରେ । କହନ୍ତି ବସ୍ତୁର ବହି ଆପଣା ମନରେ ॥ ଯାଇଛନ୍ତି ରାମଙ୍କୁ ମୁହିଁ ବୃଦ୍ଧ ବୟସରେ । ଯଜ୍ଞ ପୂଜା ଆଦି ନାନା-ବ୍ରତ ଯତନରେ ॥ ଆସିଛନ୍ତି ବିଶ୍ୱାମିତ୍ର ତାହା ନେବା-ପାଇଁ । କି କରିବି କିଛି ମୋତେ ବୁଦ୍ଧି ଦିଶୁ ନାହିଁ ॥ ନ ଦେଲେ ବାହାବେ ଶାପ ମୁନି ବହି କୋପ । ଦେଲେ ମୋର ପିଣ୍ଡ ପ୍ରାଣ ନାଚିଷ୍ଟି ହେବ ଲୋପ ॥ ବିଶେଷେ ଏ ବ୍ରହ୍ମଶାପ କୁଳୀନ ଅବର । ଏହାଙ୍କୁ ନ ଡର ରହିପାରେ କେଉଁ ନର । ୨୭ ।

ମାନ୍ୟୋମୁନିଃ ଶିଶୁରଶିକ୍ଷିତଶସ୍ତ୍ରଶାସ୍ତ୍ରୋ
ଯୁଦ୍ଧଂ ତୁ ତେନ ସହ ଯତ୍ସ୍ମରଣେନ କମ୍ପଃ ॥
ହିଂସ୍ରୈଶ୍ଚ ଜନ୍ତୁଭିରବହୈତଦୁର୍ଗମଂ ଭତ୍
କାନ୍ତାରବର୍ତ୍ମ କଥମେଷ ବତ ପ୍ରୟାତୁ । ୨୮ ।

ଏ ମୁନି ଅଟନ୍ତି ଗୁରୁ ବିଶେଷେ ମୋହର । ଶସ୍ତ୍ର ଶାସ୍ତ୍ର ଶିଖି ନାହିଁ ଶିଶୁ ମୋ କୁମର ॥ ଯା ନାମ-ସ୍ମରଣେ ଦେହ ହୁଏ ଥର ଥର । ସେ ଅସୁର ସଙ୍ଗେ କେମନ୍ତେ କରିବ ସମର ॥ ବ୍ୟାଘ୍ର ଆଦି ଜନ୍ତୁମାନେ ପୂରିଛନ୍ତି ବନେ । ଚାଲିବ ବିଷମ ପଥେ ରାମ ବା କେସନେ । ୨୮ ।

ଇତି ଚିନ୍ତାକୁଳୋ ଦଶରଥୋ
ବଶିଷ୍ଠଂ ପୃଚ୍ଛତି ।

ବିଷମାନ୍ ରାକ୍ଷସାନ୍ ହନ୍ତୁଂ ଯଜ୍ଞରକ୍ଷଣହେତବେ ।
ଧୂର୍ତ୍ତଶିଃ ପାର୍ଥ୍ୟତେ ରାମଃ କିଂ କୁର୍ମୋବଦ ମେ ଗୁରୋ । ୨୯ ।

ଚିନ୍ତାରେ ଅକୁଳ ହୋଇ ଏମନ୍ତେ ନୃପତି । ତହୁଁ ବେଗେ ଚଳି-ଗଲେ ବଶିଷ୍ଠଙ୍କ କତି ॥ କହିଲେ ହେ ଗୁରୁଦେବ ଏଥି ପ୍ରତି-କାର । କି କରିବି ବିଚାରି ବୋଲନ୍ତୁ ସତ୍ୱର ॥ ବିଷମ ରାକ୍ଷସବଳ

କରିବ ନାଶନ । ଅବର ରଖିବ ଯାଗ ମୁନି ତପୋବନ ॥ ଏଥିପାଇଁ ଅସିଛନ୍ତି ବିଶ୍ୱାମିତ୍ର ମୁନି । ମାଗୁଛନ୍ତି ଶ୍ରୀରାମଙ୍କୁ ସଙ୍ଗେ ଯିବେ ଘେନି ।୨୯

ଦଶରଥଂ ପ୍ରତି ବଶିଷ୍ଠୋ ବ୍ରୂତେ ।
କୂର୍ମସ୍ୱକଭୂଜଗାଧିପଗୋତ୍ରେ
ପ୍ରାଚ ବିକ୍ରମରଭରେକଧୁରୀଣଃ।
ତ୍ୱାଂ ପ୍ରସୂୟ କଥମସ୍ତି ବିଗୀତୋ
ହା ପରାଥବିମୁଖୋ ରଘୁବଂଶଃ । ୩୦ ।

ବୋଇଲେ ବଶିଷ୍ଠ ଯତି ଅହେ ନରପତି । କାଶ୍ୟପ ନାଗରଠାରୁ ଶ୍ରେଷ୍ଠ ତୁମ୍ଭ ଜାତି ॥ ପୂଜନ୍ତି ଯାହାଙ୍କୁ ଦିଗହାତୀ ନିତପ୍ରତି । ସେ ବଂଶେ ଜନମ ତୁମ୍ଭେ ଲଭିଛ ସଂପ୍ରତି ॥ କପାଇଁ ବିମୁଖ ହେଉ ପର ଉପକାରେ । ରଘୁକୁଳ ଅକୀର୍ତ୍ତିକୁ ରଖିବ ସଂସାରେ । ୩୦ ।

କିଂସ୍ୱ ଣାଂ ରକ୍ଷାତ୍ରେ ଦଶରଥମୁପସ୍ଥାୟ ବିମୁଖେ
ମୁନୌ ବିଶ୍ୱାମିତ୍ରେ ଭଗବତି ଗୃହାତ୍ ସଂପ୍ରତି ଗତେ ॥
ତପୋଲେଶକ୍ଲେଶାଦୁପଶମିତବନ୍ଦ୍ରଭଭ୍ରାତ୍
ପ୍ରବୃତ୍ତେ ଯଷ୍ଟୁଂ ବା ରଘୁ କୁଳକପୈବାସ୍ତମଯୃତେ । ୩୨ ।

ବିଶ୍ୱାମିତ୍ର ମୁନିବର ଯାଗରକ୍ଷା ପାଇଁ । ଅସିଛନ୍ତି ଏ ସ୍ଥାନକୁ ଅହେ ନରସାଇଁ ॥ ତୁମ୍ଭର ଥିବାରୁ ତପେ ଲେଶମାତ୍ର କ୍ଳେଶ । ବାଧା ଭୟ ନାହିଁ କରୁ ଏ ଦେଶେ ନରେଶ ॥ ବିମୁଖ ହୋଇଣ ଫେରିଗଲେ ତୁମ୍ଭ ଘରୁ । ରଘୁବଂଶ ହେବ ଶେଷ ଜାଣ ଏହିଠାରୁ । ୩୧ ।

ହୃତମିଷ୍ଟଂ ଚ ନଷ୍ଟଂ ଚ ଧର୍ମଷ୍ଟାସ୍ୟଂ କୁଳସ୍ୟ ତେ ।
ଗୃହାତ୍ ପ୍ରତି ନିବର୍ତ୍ତିତେ୍ୟପୂର୍ତ୍ତକାମାଯଦର୍ଥିନଃ । ୩୨ ।

ମାଗିବା ଲୋକର ପୂର୍ତ୍ତି ନ ହୋଇ କାମନା । ଘରୁ ଯେବେ ଫେରିଯିବ ହୋଇଣ ବିମନା ॥ ନଷ୍ଟପ୍ରାୟ ବିନାଶ ହେବ ତୁମ୍ଭ କୁଳଧର୍ମ । ଜପ ତପ ଯଜ୍ଞ ହୋମ ଆଦି କ୍ରିୟା କର୍ମ । ୩୨ ।

ପ୍ରସୂଚ୍ଛ ପୁତ୍ରୌ ଭବତା ରକ୍ଷଣୀୟୌ ମହାକ୍ରତୁଃ ।
ରକ୍ଷିତୋ ରାମଚନ୍ଦ୍ରେଣ ଯଥାନ୍ୟମ୍ଯମହେ ବୟଂ । ୩୩ ।

ଏତେଣିହ ନ କର ମନେ ଅଛେ ମହାଭାଗ । ଦୁଇପୁତ୍ର ଦେଇ ତୁମ୍ଭେ ରଖ ଋଷିଯାଗ ॥ ଅନୁମାନ କରୁଁ ଅମ୍ଭେ ଏମନ୍ତପ୍ରକାରେ । ରାମ ଗଲେ ଯାଗ ନିଷ୍ଟେ ରକ୍ଷା ହୋଇପାରେ । ୩୩ ।

ବିଶ୍ୱାମିତ୍ରଂ ପ୍ରତି ଦଶରଥଃ ।

ଦତ୍ତଃସ୍ତ୍ରଂ ରାମଚନ୍ଦ୍ରସ୍ତୁ ଲକ୍ଷ୍ମଣଶ୍ଚାପ୍ୟ ନ ଦ୍ୱିଧା ।
କିଂ ତୁ ଯାଗଂ ସମାପ୍ୟୈବ ଶୀଘ୍ରଂ ପୁତ୍ରୌ ପ୍ରସୂଚ୍ଛ ମେ । ୩୪ ।

ବୋଇଲେ ନୃପତି ଯାଇଁ ବିଶ୍ୱାମିତ୍ର ସଙ୍ଗେହି । ଦେଲି ରାମ ଲକ୍ଷ୍ମଣଙ୍କୁ ନିଅ ଗୋସାଇଁ । ଏକ ଅମ୍ଭ ଭିନ୍ନ କରୁଁ ନାହିଁ ଦୁହିଙ୍କର । ଯାଗ ଶେଷେ ଅଣିଦେବେ ପାଶରେ ମୋହର । ୩୪ ।

ଦଶରଥଂ ପ୍ରତି ବିଶ୍ୱାମିତ୍ରଃ ।

ସମାପ୍ୟ ଯଜ୍ଞଂ ପୁନରତ୍ର ତେ ରାମଲକ୍ଷ୍ମଣୌ ।
ଆନେଷ୍ୟାମି ପ୍ରଦାସ୍ୟାମି ନ ଚିନ୍ତାଂ କର୍ତ୍ତୁମର୍ହସି । ୩୫ ।

ବୋଇଲେ ମହର୍ଷି ବିଶ୍ୱାମିତ୍ର ଏପ୍ରକାର । ଶ୍ରୀରାମ ଲକ୍ଷ୍ମଣ ସଙ୍ଗେ ଘେନି ଯିବା ଭାର ॥ ଯଜ୍ଞଶେଷେ ତୁମ୍ଭପାଶେ ଅଣିବା ନରବର । ଅଣିଦେବା ନିଷ୍ଟେ ମନୁ ଚିନ୍ତା ଦୂର କର । ୩୫ ।

ତୌ ଗୃହୀତ୍ୱା ପ୍ରତ୍ୟାଗତୋ ବିଶ୍ୱାମିତ୍ରଃ ।
ସ ସତ୍ୟସନ୍ଧୋ ନୃପବଂଶକେତୁଂ
ସଲକ୍ଷ୍ମଣଂ ରାମମମୋଘବାଣଂ ।
ଦଦୌ ମୁନୀନ୍ଦ୍ରାୟ ସ ତୌ ଗୃହୀତ୍ୱା
ଜଗାମ ହୃଷ୍ଟୋ ମୁନିଭିଃ ସୁସିଦ୍ଧକାମଃ । ୩୬ ।

ସତ୍ୟବନ୍ତ ଦଶରଥ ଏଥୁଅନନ୍ତରେ । ପ୍ରବେଶ ହୋଇଲେ ଯାଇଁ ରାଜସଦନରେ ॥ ରାଜକୁଳେ ଧ୍ୱଜ ତୁଲ୍ୟ ଲକ୍ଷ୍ମଣ ଶ୍ରୀରାମ । ଅମୋଘ ଅଟଇ ପୁଣି ଯାହାଙ୍କ ବିକ୍ରମ ॥ ଲକ୍ଷ୍ମଣ ସହିତ ତାଙ୍କୁ ଘେନି

ସଙ୍ଗତରେ । ସମର୍ପି ଦେଲେକ ଆଣି ମୁନିଙ୍କ ହସ୍ତରେ ॥ ଆନନ୍ଦ ହୋଇଣ ମୁନି ପାଇ ପୁତ୍ର ବେନି । ସଫଳ ହେବାରୁ କାର୍ଯ୍ୟ ଗଲେ ସଙ୍ଗେ ଘେନି । ୩୬ ।

ପୁତ୍ରାଣାଂ ମଧ୍ୟେ ରାମଃ ।

ତେଷାଂ ରାମଃ କୁଶିକତନୟପ୍ରାର୍ଥିତୋ ଯଜ୍ଞସିଦ୍ଧ୍ୟୈ
ତାଡଙ୍କ୍ୟାଙ୍କ୍ଷିଂ ଶିରସି ବଧଧିକ୍ଷନ୍ଧଶେନାନ୍ନ୍ୱିତଃ ସନ୍ ॥
ପୌରସ୍ତ୍ରୀଭିର୍ନୟନକମଳୈଃ ସାଦରଂ ବୀକ୍ଷମାଣଃ
ହବ୍ୟାଦାନାଂ ବଧନକୁତୁକୀ ଯଜ୍ଞଭୂମିଂ ପ୍ରତସ୍ଥେ । ୩୭ ।

କୁଶିକତନୟ ଆସି ଯେବଣ ରାମଙ୍କୁ । ଯଜ୍ଞର ନିମନ୍ତେ ମାଗିଥିଲେ ନୃପତିଙ୍କୁ ॥ ପିତାଙ୍କ ଆଜ୍ଞାରେ ସେହି ରାମ ତତକ୍ଷଣେ । ବାହାରିଲେ ସଙ୍ଗେ ଘେନି ଅନୁଜ ଲକ୍ଷ୍ମଣ ॥ ପୁରନାରୀଗଣେ ମିଳି ଅତି ଆନନ୍ଦରେ । ଦେଖୁଛନ୍ତି ନେତ୍ରପଦ୍ମେ ପରମ ଆଦରେ ॥ ରାକ୍ଷସ ମାରିବେ ବୋଲି ଅତି କଉତୁକେ ॥ ଯାଉଛନ୍ତି ବେନିଭାଇ ଯଜ୍ଞକୁ ଉତ୍ସୁକେ । ୩୭ ।

ଶ୍ରୀରାମେ ତପୋବନଂ ପ୍ରବିଶତି ବୈତାଳିକବାକ୍ୟଂ ।

ବିଦ୍ୟାଂ ବଶିଷ୍ଠାଂ ବିଜୟାଂ ଜୟାଂ ଚ
ସମ୍ପ୍ରାପ୍ୟ ସମ୍ୟଙ୍ମୁନିଗାଧିପୁତ୍ରାତ୍ ॥
ରକ୍ଷାଂସି ହନ୍ତୁଂ କ୍ରତୁମାବରୀତୁଂ
ସମାଗତଃ ସମ୍ପ୍ରତି ରାମଚନ୍ଦ୍ରଃ । ୩୮ ।

ପ୍ରବେଶ ହୁଅନ୍ତେ ରାମ ଯାଇଁ ତପୋବନେ । ଏମନ୍ତେ ବୋଇଲେ ତହିଁ ଥିବା ଭାଟମାନେ ॥ ବଶିଷ୍ଠ ବିଜୟା ଜୟା ନାମେ ବିଦ୍ୟା ଦେନି । ଶିଖାଇବେ ଗାଧିପୁତ୍ର ବିଶ୍ୱାମିତ୍ର ମୁନି ॥ ଯଜ୍ଞରକ୍ଷି ରାକ୍ଷସଙ୍କୁ ମାରିବେ ଅବର । ଏଥିପାଇଁ ଅସିଛନ୍ତି ଏହି ରଘୁବର ।୩୮।

ଅଥ ରାମଂ ପ୍ରତି ବିଶ୍ୱାମିତ୍ରଃ ।

ରାମ ରାମ ମହାବାହୋ ଶୃଣୁ ପ୍ରସଙ୍ଗୁ ପ୍ରଗୃହ୍ୟତାଂ ।
ଯଜ୍ଞଧ୍ୱଂସକରୀଂ ଦୁଷ୍ଟାଂ ନିଗୃହାଣ ଚ ତାଡ଼କାଂ । ୩୯ ।

ଏଥୁଅନ୍ତେ ବିଶ୍ୱାମିତ୍ର ବୋଇଲେ ଏପରି । ଅହେ ରାମ ମହାବାହୋ ବେଗେ ଧନୁ ଧରି ॥ ଯାଗ ନାଶେ ଏହି ଦୁଷ୍ଟ ରାକ୍ଷସୀ ତାଡ଼କା । ମାରନ୍ତୁ ଏହାକୁ କିଛି ନ କର ଅଶଙ୍କା । ୩୯ ।

ଶ୍ରୀରାମୋ ମନସି ଭାବୟତି ।

ଦୃଷ୍ଟା ବଶିଷ୍ଠଃ କୁଶିକାତ୍ମଜୋଽୟଂ
ଦ୍ୱୟୋସ୍ତୁ ଏତେ ଗୁରବୋ ରଘୂଣାଂ ।
ମହାମୁନେରସ୍ୟ ଗିରା କୃତୋଽପି
ସ୍ତ୍ରୈଣୋବଧୋମାମସୁଖାକରୋତି । ୪୦ ।

ଏହା ଶୁଣି ରଘୁମଣି ବିଚାରନ୍ତି ମନେ । ସ୍ତ୍ରୀହତ୍ୟା ପାତକ ମୁଁ ଭଞ୍ଜିବ କେମନେ ॥ ମାର୍ତ୍ତଣ୍ଡ ବଶିଷ୍ଠ ଆଉ ବିଶ୍ୱାମିତ୍ର ମୁନି । ରଘୁକୁଳେ ଗୁରୁ ପୁଣି ଅଟନ୍ତି ଏ ତିନି ॥ ମୁନିଙ୍କ କଥାରେ ଯେବେ ନାରୀକୁ ମାରିବି । ସ୍ତ୍ରୀହତ୍ୟା ପାତକେ ନିଷ୍ଟେ ପାତକୀ ହୋଇବି । ୪୦ ।

ପୁନରପି ବିଶ୍ୱାମିତ୍ରଃ ।

ଯସ୍ୟାସ୍ତୁ ନିଧନାଦ୍ରାମ ଜନାଃ ସର୍ବେ ନିରାକୁଳାଃ ।
ଭବନ୍ତି ସତତଂ ତସ୍ମାତ୍ତସ୍ୟାଃ ପୁଣ୍ୟପ୍ରଦୋବଧଃ । ୪୧ ।

ବୋଇଲେ ମହର୍ଷି ବିଶ୍ୱାମିତ୍ର ପୁନର୍ବାରେ । ଶ୍ରୀରାମଚନ୍ଦ୍ରଙ୍କୁ ଚାହିଁ ଏମନ୍ତ ପ୍ରକାରେ ॥ ଲୋକେ ଯେଉଁ ନାରୀବଧେ ହୁଅନ୍ତି ସନ୍ତୋଷ । ତେମନ୍ତ ରମଣୀବଧେ ନାହିଁ କିଛି ଦୋଷ ॥ ନ ହୋଇ ପାତକ ଅହେ କୌଶଲ୍ୟା ତନୟ । ହୋଇବ ଅଧିକ ପୁଣ୍ୟ ଏକଥା ନିଶ୍ଚୟ । ୪୧ ।

ତତୋ ରାମଃ ।

ଇୟଂ ହି ତାଡ଼କା ନାମ୍ନୀ ତବ ଯଜ୍ଞୋପଘାତିନୀ ।
କଥମାଂ ନ ହନିଷ୍ୟାମି ରାଘବୋଽହଂ ଦୁଃଖଦାଂ । ୪୨ ।

ଶ୍ରୀରାମ ବୋଇଲେ ତହୁଁ ଅହେ ମୁନିବର । ସଂଶୟ କରିଛି ପ୍ରାୟେ ମନରେ ତୁମ୍ଭର ॥ ତାଡ଼କା ଏହାର ନାମ ଯେଣୁ ଯଜ୍ଞନାଶେ ।

ଲୋକଙ୍କୁ ବହୁତ ଦୁଃଖ ଦିଅଇ ବିଶେଷେ ॥ ରଘୁବଂଶେ ଜାତ ତୁଣି
ରାଘବ ମୋ ନାମ । ମାରିବି ଏ ରାକ୍ଷସୀକୁ କରିଣ ସଂଗ୍ରାମ । ୪୨ ।

ରାମଂ ପ୍ରତି ଲକ୍ଷ୍ମଣଃ ।

ମୀମାଂସସ୍ୱେ କମାର୍ଯେ ତ୍ୱଂ କୌଶିକେଽପ୍ୟନୁଶାସତି ।
ବାଚଂମସ୍ୟାମୃଷୀଣାଂ ହି ଶାସ୍ତ୍ରମର୍ଥ୍ୟେନୁବର୍ତ୍ତିତେ । ୪୩ ।

ବୋଇଲେ ଲକ୍ଷ୍ମଣ ଅହେ ପ୍ରଭୁ ରଘୁପତି । ବିଶେଷେ ପ୍ରଧାନ
ଏହି ବିଶ୍ୱାମିତ୍ର ଯତି ॥ ଏହାଙ୍କ ଆଜ୍ଞାରେ ଆଉ ଅଛୁ କି ମୀମାଂସା ।
ଶାସ୍ତ୍ରରୂପେ ପରତେ ଏମାନଙ୍କ ଭାଷା । ୪୩ ।

ଗୁର୍ବାଦେଶଦେବ ନାର୍ମାଯ୍ୟମାଣେ
ନ ଧର୍ମାୟ ସ୍ତ୍ରୀବଧୋପସ୍ଥିତୋଽୟଂ ॥
ଯସ୍ମାଦ୍ରକ୍ଷ୍ୟା ରକ୍ଷିତବ୍ୟାଃ ପ୍ରଜାସ୍ତା ।
ସ୍ତ୍ରୀସ୍ୱଲ୍ପଲଜ୍ଜା ନାସ୍ତି ତସ୍ୟା ବଧେଽପି । ୪୪ ।

କରୁଛନ୍ତି ଗୁରୁଙ୍କର ଆଜ୍ଞାରେ ଏ କର୍ମ । ତେଣୁ ଏହି ନାରୀ ବଧେ
ନାହିଁଟି ଅଧର୍ମ । ଅବର ଯହିଁରେ ରକ୍ଷା ହୋଇବ ସବ ପ୍ରଜା । ତେମନ୍ତ
ରମଣୀ ବଧେ ନାହିଁ କିଛୁ ଲଜ୍ଜା । ୪୪ ।

ରାମଃ ସ୍ୱଗତଂ ।

ଦୀର୍ଘଂପ୍ରଜାଭିରତିକୌତୁକନୀଭରାଭି
ରସ୍ମିନ୍ନକାର୍ଯ୍ୟେ ପଠହେ ମମ ତାଡ୍ୟମାନେ ।
ବ୍ୟୋମ୍ନ୍ୟାତିର୍ମପ୍ୟେନ ବପୁଷା ଜଗଦନ୍ତସାକ୍ଷୀ
ଲଜ୍ଜିଷ୍ୟତେ କୁଳଗୁରୁ ର୍ଭଗବାନ୍ ବଶିଷ୍ଠଃ ।୪୫।

ଲକ୍ଷ୍ମଣଙ୍କ କଥା ଶୁଣି ପ୍ରଭୁ ରଘୁପତି । ଅପଣାର ମନମଧ୍ୟେ
ବିଚାର କରନ୍ତି ॥ ବାଟଶପେ କୌତୁକେ ଯାଇଁ ସକଳ ପରଜା ।
ବଜାଇବେ ରାଜ୍ୟେ ରାଜ୍ୟେ ଅକୀରତି ବାଜା ॥ ଉଜ୍ଜ୍ୱଳ ମୂରତି ଗୁରୁ
ମହର୍ଷି ବଶିଷ୍ଠ । ଜଗତରେ ସାକ୍ଷୀରୂପେ ଅତି ତପୋନିଷ୍ଠ ॥ ନ ମାରିଲେ
ଲଜ୍ଜା ହେବ ଅବଶ୍ୟ ଏହାଙ୍କୁ । ମାରିବି ସତ୍ୱରେ ଅତି ଦୁଷ୍ଟା ରାକ୍ଷସୀକୁ ।୪୫।

ଦ୍ୱିମଃ ଜ୍ଞାଥଯ୍ମ ।

ବିଶ୍ୱାମିତ୍ରାଦ୍ୟଦସ୍ତ୍ରାଣି ସଂପ୍ରାପ୍ୟ ରଘୁପୁଙ୍ଗବଃ ।
ଜଘାନ ତାଡ଼କାଂ ଘୋରାଂ ସାପି ସିଦ୍ଧାଶ୍ରମଂ ଯଯୌ ।୪୬ ।

ଏତେ ବୋଲି ଧନୁ ଧରି ଉଠିଲେ ସତ୍ୱରେ । ବିଶ୍ୱାମିତ୍ର ମୁନି-ଠାରୁ ପାଇଥିବା ଶରେ ॥ ଘୋରରୂପା ରାକ୍ଷସୀକୁ କଲେକ ନିଧନ । ତକ୍ଷଣେ ରାକ୍ଷସୀ ଗଲା ବୈକୁଣ୍ଠ ଭୁବନ । ୪୬ ।

ଅଥ ଯଜ୍ଞଭୂମୌ ସୁବାହୋଃ ପ୍ରବେଶଃ ।

ମୁଖ୍ୟଂ ସୁବାହୁଂ ତରସା ନିହତ୍ୟ
ସ ଯଜ୍ଞଭୂମୌ ମୁନିପୁଙ୍ଗବସ୍ୟ ॥
ରରାଜ ରାମୋ ମୁନିସଂଘମଧ୍ୟେ
ମଧ୍ୟେ ସୁରାଣାମିବ ବଜ୍ରପାଣିଃ । ୪୭ ।

ଅନନ୍ତର ବିଶ୍ୱାମିତ୍ର ଆଦି ମୁନିମାନେ । ଆରମ୍ଭ କରନ୍ତେ ଯାଗ ମିଳି ଯଜ୍ଞସ୍ଥାନେ ॥ ରାକ୍ଷସଙ୍କ ଶ୍ରେଷ୍ଠ ଅଟେ ସୁବାହୁ ରାକ୍ଷସ । ମିଳନ୍ତେ ଶ୍ରୀରାମ ତାକୁ କଲେକ ବିନାଶ । ବିରାଜିଲେ ମୁନିଗଣ ମଧ୍ୟେ ରଘୁମଣି । ଦେବତାମାନଙ୍କ ମଧ୍ୟେ ଯଥା ବଜ୍ରପାଣି । ୪୭ ।

ସେନୟା ସହ ଉପସ୍ଥିତୋ ମାରୀଚଃ ॥

ମାରୀଚଂ ନିଜଘାନ ରାକ୍ଷସବରମ୍ନୂନାଥଂ ସ୍ୱୟଂ ରାଘବଃ ।
ସର୍ବେଽନ୍ୟେଽକ୍ଷିଳ ଲକ୍ଷ୍ମଣସ୍ୟ ବିଶିଖୈର୍ଯଁତାଃ କୃତାନ୍ତାଳୟଂ ॥
ତୋଷଂ ପ୍ରାପ୍ୟ ତତୋମହର୍ଷିସହିତଃ ସର୍ବେ ପୁନର୍ବ୍ରାହ୍ମଣା
ସ୍ତାଭ୍ୟାଂ ସଂଯୁଯୁଜୁଃ ଶୁଭାଶିଷମତଃ ପ୍ରୀତାଃ ସମାପ୍ତକ୍ରିୟାଃ । ୪୮ ।

ଏଥୁଅନ୍ତେ ସେନାପତି ମାରୀଚ ରାକ୍ଷସ । ସୈନ୍ୟ ବଳ ସଙ୍ଗେ ଘେନି ହୋଇଲା ପ୍ରବେଶ । ଦେଖି ତାକୁ ଧନୁ ଶର ଧରିଣି ତତ୍ପର । ବାଣରେ ଉଡ଼ାଇଦେଲେ ପ୍ରଭୁ ରଘୁବର ॥ ଆଉ ସବୁ ରାକ୍ଷସଙ୍କୁ ସୁମିତ୍ରା ନନ୍ଦନ । ତୀକ୍ଷ୍ଣବାଣେ ପଠାଇଲେ କୃତାନ୍ତ ସଦନ । ଯାଗ ସାରି ଋଷି ମୁନି ସକଳ ବ୍ରାହ୍ମଣେ । ଆଶୀର୍ବାଦ କଲେ ତୋଷେ ଶ୍ରୀରାମ ଲକ୍ଷ୍ମଣେ ।୪୮

ତତୋ ମିଥିଲାଯାତ୍ରା ।

ହତେ ରକ୍ଷଃକୁଳେ ତେନ ରାମେଣ ବଧବତ୍ କ୍ରତୌ ।
ନିବୃତ୍ତେ କୌଶିକଃ ପ୍ରାୟାତ୍ତାଭ୍ୟାଂ ଜନକପତ୍ତନଂ । ୪୮ ।

ମରନ୍ତେ ରାକ୍ଷସବଂଶ ସଦଳବଳରେ । ଯଜ୍ଞସାର ବିଶ୍ୱାମିତ୍ର ବାକ୍ୟ ଅନୁସାରେ ॥ ସଙ୍ଗତରେ ଘେନି ତହୁଁ ରାମ ଲକ୍ଷ୍ମଣଙ୍କୁ । ଧନୁର୍ଯଜ୍ଞ ଦେଖିବାକୁ ଗଲେ ମିଥିଲାକୁ । ୪୯ ।

ପଥି ଅହଲ୍ୟାମୋକ୍ଷଣଂ ।

ପାଷାଣତ୍ୱଂ ପରିତ୍ୟଜ୍ୟ ରାମଚନ୍ଦ୍ରାଙ୍ଘ୍ରିପଙ୍କଜାତ୍ ।
ପତିଶାପାଦ୍ଧି ନିର୍ମୁଚ୍ୟ ଗତା ସା ଗୌତମଂ ପ୍ରତି । ୫୦ ।

ଗୌତମ ନାରୀଙ୍କୁ ଯାଉଁ ଦେଖିଲେ ବାଟରେ । ପଡ଼ିଥିଲେ ପତିଶାପେ ପାଷାଣ ରୂପରେ ॥ ଲଗିବା ମାତ୍ରକେ ପଦ୍ମପାଦ ରାମଙ୍କର । ଅପୂର୍ବ ରମଣୀ ଏକ ହେଲ ସେ ପଥର ॥ ଶାପରୁ ମୁକତ ହୋଇ ଅହଲ୍ୟା ସୁନ୍ଦରୀ । ପତିପାଶେ ଚଳିଗଲେ ଦିବ୍ୟରୂପ ଧରି । ୫୦ ।

ଅଥାପ୍ୟହଲ୍ୟାଂ ପତିଶାପଦଗ୍ଧାଂ
ସ ରାଜପୁତ୍ରୋ ଦେବକୌଘପୂଜ୍ୟଃ ।
ବିମୋଚୟାମାସ ପଦାବ୍ଜସଙ୍ଗା-
ତ୍ତତୋ ଯଯୌ ମୈଥିଲରାଜଧାନୀଂ । ୫୧ ।

ଏଥିଅନ୍ତେ ଦେବ ପୂଜ୍ୟ ସେ ରାଜକୁମାର । ପତିଶାପୁଁ ଅହଲ୍ୟାଙ୍କ କରିଣ ଉଦ୍ଧାର ॥ ବିଶ୍ୱାମିତ୍ର ଲକ୍ଷ୍ମଣଙ୍କୁ ଘେନି ସଙ୍ଗତରେ । ତହୁଁ ବେଗେ ଚଳିଗଲେ ମିଥିଲାନଗରେ । ୫୧ ।

ନଦୀତଟେ ନାବିକଃ ।

ଅହଲ୍ୟାମୋକ୍ଷଦଂ ରାମଂ ମୁନିବୃନ୍ଦେନ ସେବିତଂ ।
ଗଙ୍ଗାଂ ତର୍ତ୍ତୁଂ କୃତମତିଂ ନାବିକୋଽଥାହ ବାରୟନ୍ । ୫୨ ।

ମୁନି-ବନ୍ଦ୍ୟ-ଅହଲ୍ୟାଙ୍କ ମୋକ୍ଷଦାତା ରାମ । ତହୁଁ ଯାଇ ଗଙ୍ଗାକୂଳେ କଲେକ ବିଶ୍ରାମ ॥ ନଦୀପାର ହେବେ ବୋଲି କରନ୍ତେ ସେ ମନ । ନାବିକ ବାରଣ କରି ବୋଇଲା ବଚନ । ୫୨ ।

କ୍ଷାଳୟାମି ତବ ପାଦପଙ୍କଜଂ
ନାଥ ଦାରୁଦୃଷଦୋଃ କମନ୍ତରଂ ॥
ମାନୁଷୀକରଣରେଣୁରସ୍ତି ତେ
ପାଦୟୋରିତି କଥା ପ୍ରଥୀୟସୀ । ୫୩ ।

ଅହେ ପ୍ରଭୁ ଧୋଇବଇଁ ତୁମ୍ଭ ପଦ୍ମପାଦ । କାଷ୍ଠ ଆଉ ପାଷାଣରେ ନାହିଁ କିଛି ଭେଦ ॥ ପଥର ମନୁଷ୍ୟ ହେଲା ଲଗି ପାଦରେଣୁ । ବୋଲନ୍ତି ଏମନ୍ତ କଥା ଲୋକମାନେ ଯେଣୁ । ୫୩ ।

ଚରଣନଳିନନ୍ୟାସାନୁଗ୍ରହଂ ତେ ଭଜନ୍ତୀ ।
ଭବତୁ ତରଣିରସ୍ମାକଂ ନଃ ଶ୍ରୀମତୀ ପୋତପୁତ୍ରୀ ॥
ଉପଲତନୁରହଲ୍ୟା ଗୌତମସ୍ୟେବ ଶାପା-
ଦସ୍ୟାମପି ମୁନିପତ୍ନୀ ଶାପିତା କେନ ବା ସ୍ୟାତ୍ । ୫୪ ।

ଏ ସାନ ନାବ ଖଣ୍ଡିକ ଥିବାରୁ ମୋହର । ଭଜଇ ଚରଣ ପଦ୍ମ ରେଣୁକୁ ତୁମ୍ଭର ॥ ଶ୍ରୀମନ୍ତ ହୋଇଣ ଚିରକାଳ ରହୁଥାଉ । ଏମନ୍ତ କରନ୍ତୁ ଆଜ୍ଞା ଅହେ ମହାବାହୁ ॥ ଅହଲ୍ୟା ପଥର ମୁନିଶାପେ ହୋଇଥିଲା । ତୁମ୍ଭ ପାଦ ଲଗିବାରୁ ନାରୀ ସେ ହୋଇଲା ॥ ସେହିପରି କାହା ଶାପ ଥିଲେ ଏ ନଉକା । ମୋହର ବୁଡ଼ିବ ଭେଳା ହୋଇଲେ ନାୟିକା । ୫୪ ।

ଅଥ ମିଥିଲପ୍ରବେଶେ ବୈତାଳିକବାକ୍ୟଂ ।

ଯେ ଦତ୍ତଃ କୁଶିକାତ୍ମଜାସ୍ତୁ ମୁନୟେ ତାତେନ ଯଜ୍ଞୋତ୍ସବ-
ପ୍ରତ୍ୟୂହପ୍ରଶମାୟ ବର୍ତ୍ମନି ବନେ ହତ୍ୱା ତତସ୍ତାଡ଼କାଂ ।
ଲବ୍ଧ୍ୱାସ୍ତ୍ରାଣି ମୁନେ ରରକ୍ଷ ଚ ମୁଖଂ ତସ୍ୟାନୁଗଃ କୌତୁକାତ୍
ସୋଽୟଂ ସମ୍ପ୍ରତି ରାଘବୋ ନିମିପତେଃ ପ୍ରାପ୍ତଃ ପୁରୀଂ ସାନୁଜଃ ।୫୫

ତହୁଁ ଯାଇଁ ମିଥିଲରେ ପ୍ରବେଶ ହୁଅନ୍ତେ । ତହୁଁ ଥିବା ଭାଟମାନେ ବୋଇଲେ ଏମନ୍ତେ ॥ ମୁନିଯାଗ ରଖିବାକୁ ରାଜା ଦଶରଥ । ଦେଇଥିଲେ କଉଶିକେ ଯେଉଁ ବେନିସୁତ ॥ ବଶିଷ୍ଠ ମିତ୍ର ମୁନିଠାରୁ ଅସ୍ତ୍ର ଶିକ୍ଷା

କର । ବାଟେ ଅସୁ ତଡ଼କାଙ୍କୁ ପକାଇଲେ ମାରି ॥ ବଧୂନାଶି ଯଜ୍ଞ
ରଖି କେତେ କଉତୁକେ । ଆସୁଛନ୍ତି ମୁନିପଛେ ଦେଖି ସବୁ ଲୋକେ ॥
ସାନଭାଇ ଲକ୍ଷ୍ମଣଙ୍କୁ ଘେନିଣ ସଙ୍ଗରେ । ମିଳିବେ ଏକ୍ଷଣି ନିମିରାଜାଙ୍କ-
ନଗରେ । ୫୫ ।

ତତୋ ଜନକଃ ।

ସରାମଂ ଗାଧିଜଂ ପ୍ରାପ୍ତଂ ସ୍ୱଗେହେ ଶିଷ୍ୟସଂଯୁତଂ ।
ପୂଜୟାମାସ ହର୍ଷେଣ ଜନକଃ ସ୍ୱଜନାନ୍ୱିତଃ । ୫୬ ।

ଏ ସମୟେ ମିଥିଳରେ ପ୍ରବେଶିଲେ ମୁନି । ଶ୍ରୀରାମ ଲକ୍ଷ୍ମଣ ଆଦି ଶିଷ୍ୟ
ସଙ୍ଗେ ଘେନି । ଦେଖିଣ ଜନକ ରାଜା ଅତି ଆନନ୍ଦରେ । ପୂଜାକଲେ
ସ୍ୱଜନଙ୍କୁ ଘେନି ସଙ୍ଗତରେ । ୫୬ ।

ଅଥ ଜନକବାକ୍ୟଂ ।

ଅସୁରସୁରଭୁଜଙ୍ଗପୁଙ୍ଗବାନା-
ମଥ ନରକିନ୍ନରଯକ୍ଷରକ୍ଷସାନାଂ ।
ନମୟତି ଯଦି କୋଽପି ଶୈବମେତଂ
ମମ ଦୁହିତୁଃ ସ କରଗ୍ରହଂ କରୋତୁ । ୫୭ ।

ଆନନ୍ଦେ ବୋଇଲେ ତହୁଁ ଜନକରାଜନ । ଶୁଣନ୍ତୁ ମୋହର ପଣ ଆହେ
ତପୋଧନ ॥ ଅସୁର ଅଥବା ସୁର ଭୁଜଙ୍ଗମ ଈଶ । ନର ବା କିନ୍ନର
କେହୁ ଯକ୍ଷ ବା ରାକ୍ଷସ ॥ ଭାଙ୍ଗିବ ଯଦ୍ୟପି ଏହି ଶିବଶରାସନ । ନିଶ୍ଚୟ
ତାହାକୁ ଦେବ ଦୁହିତା ରତନ । ୫୭ ।

ଏତଚ୍ଛ୍ରୁତ୍ୱା ରାବଣଦୂତଃ ଶୌଷ୍କଲଃ
ସକ୍ରୋଧମାହ

ସାର୍ଦ୍ଧଂ ହରେଣ ହରବଲ୍ଲଭୟା ଚ ଦେବ୍ୟା
ହେରମ୍ବଷଣ୍ମୁଖଗଣେପ୍ରମଥୈଃ ସମେତଂ ।
କୈଳାସମୁଦ୍ଧୃତବତୋ ଦଶକନ୍ଧରସ୍ୟ
କେୟଂ ତ ତେ ଧନୁଷି ଦୁର୍ମଦଦୋଃପରୀକ୍ଷା । ୫୮ ।

ଶୌଷ୍କଲ ନାମରେ ଏକ ରାବଣର ଦୂତ । ବୋଇଲା ଏମନ୍ତ ଶୁଣି-

ହୋଇ କ୍ରୋଧଯୁକ୍ତ । ଶଙ୍କର ପ୍ରବଂଶା ଦେବା କାର୍ତ୍ତିକ ଗଣେଶ । ପର-
ଷଦ ଗଣସହ ଗିରି କଇଲାସ ॥ ଉପାଡ଼ିଛୁ ବାହୁବଳେ ଯେବଣ
ରାବଣ । ସେ ଦୁର୍ମଦ ବାହୁ ଆଗେ ଦେଖାଉ କ ପଣ ॥ ଆରେ ରେ
ଜନକ ତୋର ଏହି ଧନୁ ଛାର । ଏଥେ କି ହୋଇବ ବାହୁ -ପରୀକ୍ଷା
ଆମ୍ଭର । ୫୮ ।

ତଯୋରୁକ୍ତପ୍ରତ୍ୟୁକ୍ତୀ ।

ମାହେଶ୍ୱରଂ ଧନୁଃ କୁର୍ଯ୍ୟାଦଧିଜ୍ୟଂ ଚେଦ୍‌ବଦାମ୍ୟହଂ ॥
ଗୁରୋଃ ଶମ୍ଭୋର୍ଧନୁର୍ନୈତେତ୍ ଖଣ୍ଡିତାଂ ନସ୍ୟତି କ୍ଷଣାତ୍ । ୫୯ ।

ବୋଇଲେ ଜନକ ଆହେ ଦୂତବର ଶୁଣ । ଏମନ୍ତ ପ୍ରକାରେ ମୁହିଁ
କରିଅଛୁ ପଣ ॥ ଯେବେ ଅବା କେହି ଲୋକ ଏ ଧନୁ ଭାଙ୍ଗିବେ ।
ତେଲଇପାରେ ଗୁଣ ଏହି ଶିବଶରାସନେ । ଯତନେ ପାଳିତ ଏହି ଦୁହିତା
ରତନ । ଦେବଇ ତାହାକୁ ମୋର ଏ ସତ୍ୟ ବଚନ ॥ ଶୌଷ୍କଳ
ବୋଲଇ ଆରେ ଶୁଣରେ ଜନକ । ସେ ରାବଣ ଆଗେ କେତେ ଦେଖାଉ
ଛୁ ଟେକ ॥ ଗୁରୁଦେବ ଶିବଙ୍କର ଏହି ଶରାସନ । ନୋହିଥିଲେ କ୍ଷଣ-
କରେ କରନ୍ତେ ଖଣ୍ଡନ । ୫୯ ।

ଇତ୍ୟୁକ୍ତ୍ୱା ଗତେ ଦୂତେ ଶତାନନ୍ଦଃ ।
ସଭାମ୍ଭାଂ ନୃପଯୁକ୍ତାୟାଂ ଜନକସ୍ୟ ପୁରୋହିତଃ ।
ଶତାନନ୍ଦୋ ବଚଃ ପ୍ରାହ ଶ୍ରୂୟତାଂ ସର୍ବଭୂଭୁଜଃ । ୬୦ ।

ଏମନ୍ତ ବଚନ କହି ରାବଣର ଦୂତ । ଗଲେ ଯାନ୍ତେ ନୃପତଙ୍କ ସଭାରୁ
ତ୍ୱରିତ ॥ ଜନକଙ୍କ ପୁରୋହିତ ଶତାନନ୍ଦ ଋଷି । ବୋଇଲେ ରାଜାଙ୍କ
ଆଗେ ସଭା ସ୍ଥାନେ ଆସି ॥ ଏ ସଭାରେ ଉପସ୍ଥିତ ନରପତି ଗଣ ।
ସକଳେ ମୋହର କଥା କରନ୍ତୁ ଶ୍ରବଣ ॥ ୬୦ ॥

ଶୃଣୁତ ଜନକଶୁଲ୍କଂ କ୍ଷତ୍ରିୟାଃ ସର୍ବ ଏତେ
ଦଶବଦନଭୁଜାନାଂ କୁଣ୍ଠିତା ଯତ୍ର ଶକ୍ତିଃ ॥
ନମୟତି ଧନୁରୈଶଂ ଯଃ ସହାରୋପଣେନ
ତ୍ରିଭୁବନଜୟଲକ୍ଷ୍ମୀର୍ମୈଥିଲୀ ତସ୍ୟ ଦାରାଃ । ୬୧ ।

ଅବର ଶୁଣନ୍ତୁ ଏଥି ଥିବା କ୍ଷତ୍ରୀଗଣ । ଜନକ ନୃପତ ଯାହାଂକରନ୍ତନ୍ତି ପଣ ॥ ଲଙ୍କାର ରାବଣ ଦେଖି ଯେବଣ ଧନୁକୁ । ଭୟରେ ପଳାଇ ଗଲା ଆପଣା ମନକୁ ॥ ସେହି ଶିବ ଶରାସନ ନୁଆଇଁ ଯେ ଜନ । କରିବ ତହିଁରେ ପୁଣି ଗୁଣ ଆରୋପଣ ॥ ତ୍ରିଭୁବନ ଶୋଭନ୍ତୁ ଯେ କରି-ଛନ୍ତି ଜୟ । ସେ ମୈଥିଳୀ ତାର ପତ୍ନୀ ହୋଇବେ ନିଶ୍ଚୟ ॥ ୬୧ ॥

ଜନକଂ ପ୍ରତି ବିଶ୍ୱାମିତ୍ରଃ ।

ମାହେଶ୍ୱରେଽସ୍ମିଂ କୋଦଣ୍ଡଃ ଶ୍ରୀରାମେଣ ଦଳିଷ୍ୟତେ ।
ଯଥା ବଜ୍ରେଣ ବିଟପୀ କଶ୍ଚିଦତ୍ର ନ ସଂଶୟଃ । ୬୨ ।

ବିଶ୍ୱାମିତ୍ର ବୋଇଲେ ଯେ ଶୁଣନ୍ତୁ ରାଜନ । କୁଳିଶ ଦଳଇ ବୃକ୍ଷ-ମାନଙ୍କୁ ଯେସନ ॥ ଏ ଶିବ ଧନୁକୁ ତେହ୍ନେ ଶ୍ରୀ ରାମ ଭାଙ୍ଗିବେ ॥ ଏଥିରେ ସନ୍ଦେହ ଲେଶ ମାତ୍ର ନ କରିବେ । ୬୨ ।

ବିଶ୍ୱାମିତ୍ରଂ ପ୍ରତି ଜନକଃ ।

ଶ୍ରୀରାମୋ ଜାନକୀଭର୍ତ୍ତା ଭଗ୍ନଶମ୍ଭୁଶରାସନଃ ।
ଏତାଦୃଶଂ ଭାଗ୍ୟଧେୟଂ କ୍ୱମମାସ୍ତି ମହାମୁନେ । ୬୩ ।

ବୋଇଲେ ଜନକ ରାଜା ଅହେ ମୁନିବର । ଏମନ୍ତ ମହାନ ଭାଗ୍ୟ ଅଛି କି ମୋହର ॥ ସତେ କି ଶ୍ରୀରାମ ହେବେ ଜାନକୀର ଭର୍ତ୍ତା । ହୋଇଣ ଅବର ଶିବ ଧନୁଭଗ୍ନ କର୍ତ୍ତା ॥ ୬୩ ॥

ପୁନର୍ବିଶ୍ୱାମିତ୍ରଃ ॥

ରାମସ୍ୟ ସଦୃଶୀ ଭାର୍ଯ୍ୟା ସୀତା ତ୍ରୈଲୋକ୍ୟସୁନ୍ଦରୀ ।
ସୀତାୟାଃ ସଦୃଶୋ ଭର୍ତ୍ତା ରାମସ୍ତ୍ରୈଲୋକ୍ୟସୁନ୍ଦରଃ । ୬୪ ।

ଅବର ବୋଲନ୍ତି ପୁଣି ବିଶ୍ୱାମିତ୍ର ଯତି । ଶୁଣନ୍ତୁ କହୁଛି ଯାହା ଅହେ ନରପତି ॥ ଏ ତିନିଭୁବନେ ସୀତା ପରମା ସୁନ୍ଦରୀ । ଶ୍ରୀରାମଚନ୍ଦ୍ରଙ୍କ ଯୋଗ୍ୟ ଅଟନ୍ତି ଏ ନାରୀ ॥ ତ୍ରିଭୁବନ ମଧ୍ୟେ ରାମ ପରମ ସୁନ୍ଦର । ହୋଇବେକ ଜାନକୀଙ୍କ ଅତି ଯୋଗ୍ୟବର । ୬୪ ।

ସୀତାଂ ଦୃଷ୍ଟ୍ୱା କେଚନ୍ନୃପସି ଚନ୍ତୟନ୍ତି ।
ମାହେଶ୍ୱରୋ ଦଶଗ୍ରୀବଃ କ୍ଷୁଦ୍ରାଶ୍ଚାନ୍ୟେ ମହୀଭୁଜଃ ।
ପିନାକାରୋପଣଂ ଶୁଲ୍କଂ ହା ସୀତେ କିଂ କରିଷ୍ୟସି । ୭୫ ।

ଏ ସମୟେ କେହୁ କେହୁ ମିଥିଲା ନଗରେ । ଚିନ୍ତୁରନ୍ତି ଜାନକୀଙ୍କି ଦେଖିଣ ମନରେ ॥ ଶିବଭକ୍ତ ଦଶଗ୍ରୀବ ରାଜରାଜେଶ୍ୱର । ଏ ଶିବ-ଧନୁକୁ ଦେଖି ହୋଇଲା କାତର ॥ ସାମାନ୍ୟ ଅଛନ୍ତି ଯେ ଅନ୍ୟାନ୍ୟ ରାଜାମାନେ । ଦେଇକ ପ ରବେ ଗୁଣ ଏହି ଶରାସନେ ॥ ଏ ଧନୁଃ ଧାରଣ ପଣ ଅତ୍ୟନ୍ତ ଦାରୁଣ । ହା ସୀତେ ବିଫଳ ହେଲେ କି କରିବ ପୁଣି । ୭୫ ।

ପଥି ସୀତାଂ ଦୃଷ୍ଟ୍ୱା ଶୌଷ୍କଲଃ ।
ତ୍ରିଭୁବନବିଜୟଶ୍ରିୟଃ ସପତ୍ନୀ
ଜନୟତି କୋ ଭବତୀଂ କୃପାମୃତାନ୍ଧା ॥
ସ୍ୱଜନମପି ନ ତେ ନିରୂପୟାମ
ସ୍ତ୍ୱମପି ବିପକ୍ଷ୍ୟ ଭୁବଂ ବିନିର୍ଗତାସି । ୭୬ ।

ବାଟରେ ସୀତାଙ୍କୁ ଚାହିଁ ବୋଲେ ଶଙ୍ଖଳ । ଜିଣିଛନ୍ତି ଶୋଭାରେ ଯେ ଭୁବନ ସକଳ ॥ ଅଟ ତୁମ୍ଭେ ସପତ୍ନୀ ହେ ରାଜଲକ୍ଷ୍ମୀର । ସ୍ୱାଧୀନା ଅଟତ ପିତା ନାହିଁ କେ ତୁମ୍ଭର ॥ ଜନମିଛ ଯେଣୁ ତୁମ୍ଭେ ପୃଥ୍ୱୀ ବିଦାରି । କେ ତୁମ୍ଭ ସ୍ୱଜନ ପାରୁ ନାହୁଁ ସ୍ଥିର କରି । ୭୬ ।

ଶତାନନ୍ଦଃ ଶୌଷ୍କଲଂ ପ୍ରତି ।
ଅୟଂ ମହାକ୍ଷତ୍ରିୟଗୋତ୍ରଜନ୍ମା
ଦୃଢ଼ପ୍ରତିଜ୍ଞୋ ଜନକୋଽଧିରାଜଃ ।
ନ ଗୃହମ ରୋପୟିତା ଦଶାସ୍ୟ
ସ୍ତଥାପି ବାତୁଲବତ ସ୍ତନୋଷି । ୭୭ ।

ଏହା ଶୁଣି ପୁରୋହିତ ଶତାନନ୍ଦ ଯତି । ବୋଇଲେ ଏମନ୍ତ କଥା ଶଙ୍ଖଳ ପ୍ରତି ॥ କ୍ଷତ୍ରିୟ କୁଳୀନ ପୁଣି ମିଥିଲା ଈଶ୍ୱର । ଅଟଇ

ତ୍ରିଭଙ୍ଗ ଅଭଦ୍ଭୁତ ଯାହାଙ୍କର ॥ ନ ଭାଙ୍ଗି ପାରିଲ ଶିବଧନୁ ଦଶମଥା
ତଥାପି ବାଗୁଳପର କହୁଅଛୁ କଥା । ୬୭ ।

ନୃପତଭିରଗୃହୀତେ ଧନୁଷି
ଜନକଃ ।

ଅଦ୍ୱୀପାତ୍ପରତୋଽପ୍ୟମୀ ନୃପତୟଃ ସର୍ବେ ସମଭ୍ୟାଗତାଃ
କନ୍ୟେୟଂ କଲଧୌତଶୋଭନ ରୁଚିଃ କୀର୍ତ୍ତିସ୍ତୁ ନାତଃ ପରା ।
ନାକୃଷ୍ଟଂ ନ ଚ ଟଙ୍କିତଂ ନ ନମିତଂ ନୋତ୍ଥାପିତଂ ସ୍ଥାନତଃ
କେନାପୀଦମହୋ ମହଦ୍ଧନୁରହୋ ନିର୍ବୀରମୁର୍ବୀତଲଂ । ୬୮ ।

ନୃପତିମାନେ ଧଇଲେ ଯହୁଁ ଶରାସନ । ବୋଲୁଛନ୍ତି ଏ ଟୁକାରେ ଜନକରାଜନ ॥ ସକଳ ଦ୍ୱୀପର ଅଉ ସମସ୍ତ ଦେଶର । ଅସିଛନ୍ତି ଏ ସ୍ଥାନକୁ ସର୍ବନରବର ॥ ସୁବର୍ଣ୍ଣ କାନ୍ତିକୁ ଜିଣି ମୋ କନ୍ୟାର କାନ୍ତି । ଧନୁଭଙ୍ଗେ ଲଭହେବ କନ୍ୟା ଆଉ କୀର୍ତ୍ତି ॥ ଏଥିରୁ ଅଧିକ ଯଶ ଆଉ କି ଅଛଇ । ଅଦ୍ଭୁତ ରାଯ୍ଯ ମୋତେ ଏ କଥା ଲାଗଇ ॥ ଏ ଧନୁକୁ ନପାରିଲେ କେହି ଗୁଣଦେଇ । କେହି ମଧ୍ୟ ନପାରିଲେ ଧନୁ ଆକର୍ଷଇ ॥ ନୁଆଁଇ ନପାରି ସ୍ଥିର ଭାବରେ ରହିଲ । ଭାଙ୍ଗିବାତ ଦୂରେ ଆଉ ସ୍ଥାନୁ ନ ଉଠିଲ ॥ କି ଅବା ଧନୁର କିଛି ଅଛଇ ପ୍ରାଧାନ୍ୟ । ଅଥବା ପୃଥିବୀ ତଳ ହେଲା ବୀରଶୂନ୍ୟ । ୬୮ ।

ଅଥ ସୀତା ମନସି ଚିନ୍ତୟତି ।

ମଧୁରମୂର୍ତ୍ତିରୟଂ ରଘୁନନ୍ଦନଃ
କମଠପୃଷ୍ଠକଠୋରମିଦଂ ଧନୁଃ ॥
କଥମଧିଜ୍ୟମନେନ କରିଷ୍ୟତେ
ଅହହ ତାତ ପଣସ୍ତବ ଦାରୁଣଃ । ୬୯ ।

ଜନକନନ୍ଦନୀ ସୀତା ଏଥୁ ଅନନ୍ତରେ । ବିଚାର କରନ୍ତି ବସି ଆପଣା ମନରେ ॥ ସୁନ୍ଦର କୋମଳ ପୁଣି ଶ୍ରୀରାମଙ୍କ ତନୁ । କଇଁଛର ପିଠିପରି କଠିନ ଏ ଧନୁ ॥ କିପରି ତାହାଁରେ ଏହି ଦେବେ ନେଇ ଗୁଣ । ହା ତାତ ତୁମ୍ଭର ପଣ ଅତି ନିଦାରୁଣ । ୬୯ ।

ରାମସୀତୟୋରୁତ୍ସାହଂ ବର୍ଦ୍ଧୟନ୍
ଲକ୍ଷ୍ମଣଃ ପ୍ରାହ ।
ବୀର ଶ୍ରୀରଘୁନନ୍ଦନ ଅ କ୍ଷଂ ବହୁତସ୍ମା ଦ ସୋଽସ୍ମି ତେ ଲକ୍ଷ୍ମଣୋ
ମେବାଦ୍ୟାନପି ଭୂଧରାନ୍ ଗଣୟେ ଜୀର୍ଣ୍ଣଃ ପିନାକଃ କିୟନ୍ ।
ତନ୍ମାମ ଦ୍ୟଶ ଦେବଦେବ ଭବତୋ ବାକ୍ୟାଦହଂ କୌତୁକା
ତ୍ରୋଚ୍ଛିତ୍ତୁଂ ପ୍ରବନାମିତୁଂ ପ୍ରଚଳିତୁଂ ଭଙ୍କ୍ତୁଂ ସଦୈବ କ୍ଷମଃ ।୭୦।
ଭାଷିଲେ. ଏମନ୍ତ ବାଣୀ ସୁମିତ୍ରା କୁମର । ବଢ଼ିବ ଉତ୍ସାହ ଦେଖଣେ ସୀତା ରାମଙ୍କର ॥ ବେଶି କ କହିବ ଅହେ ବୀର ରଘୁବର । ଏହି-ଠାବେ ଅଛି ଦାସ ଲକ୍ଷ୍ମଣ ତୁମ୍ଭର ॥ ମେରୁ ଆଦ୍ୟ ପର୍ବତକୁ ନ କରେ ଖାତର । ଏହି ଜୀର୍ଣ୍ଣ ଧନୁଖଣ୍ଡ କେତେକ ମାତର ॥ ଅହେ ପ୍ରଭୁ ଦେବ ଦେବ ତୁମ୍ଭର ଆଜ୍ଞାରେ । ଓଠାଇ ନୁଆଁଇ ଟୁଳି ଦେଇ ଭାଙ୍ଗି ପାରେ ॥
ଧନୁର୍ଭଙ୍ଗେ ରାମେ ଉତ୍ତିଷ୍ଠତେ ।
ଗୃହୀତହରକୋଦଣ୍ଡେ ରାମେ ପର୍ବଣୟୋନ୍ମୁଖେ ।
ପସ୍ପନ୍ଦେ ନୟନଂ ବାମଂ ଜାନକୀଜାମଦଗ୍ନ୍ୟୟୋଃ ।୭୧ ।
ବିଭା ହେବେ ବୋଲି ରାମ ଅତ ଉତ୍ସାହରେ । ଉଠିଣ ଶିବଧନୁକୁ ଧଇଲେ ସତ୍ବରେ । ଜାନକୀ ଦେବୀଙ୍କ ଆଉ ପରଶୁରାମଙ୍କ । ଏକାବେଳେ ବାମ ଚକ୍ଷୁ ସ୍ଫୁରଇ ଦୁହିଙ୍କ । ୭୧ ।
ରାମଃ ସ୍ୱଗତଂ
ପର୍ଯ୍ୟାପ୍ତିରେକବ କଲବଲଭେଽପରସ ଗୃଦ୍ଧତ୍ୟକୁଲେ କଲଙ୍କଃ ।
ଇତ କ୍ଷଣଂ ଧୂର୍ଜଟିଚାପଭଙ୍ଗ ଦୋଲାୟିତୋ ଦାଶରଥିର୍ବଭୂବ । ୭୨ ।
ଧନୁକୁ ଧରଣ ପ୍ରଭୁ ଶ୍ରୀ ରଘୁନନ୍ଦନ । ମନେ ମନେ କରୁଛନ୍ତି କଲେ ଆନ୍ଦୋଳନ ॥ ଭାଙ୍ଗିଲେ ନିଶ୍ଚୟ ମୋତେ ଭାର୍ଯ୍ୟା ଲଭ ହେବ । ନ ଭାଙ୍ଗିଲେ ସୂର୍ଯ୍ୟବଂଶେ କଳଙ୍କ ରହିବ । ୭୨ ।
ଇତ୍ୟବସରେ ଲକ୍ଷ୍ମଣଃ ।
ପୃଥ୍ୱି ସ୍ଥିରା ଭବ ଭୁଜଙ୍ଗମ ଧାରୟୈନାଂ
ତ୍ୱଂ କୂର୍ମରାଜ ତଦିଦଂ ଦ୍ୱିତୟଂ ଦଧୀଥାଃ ।

ଦିକ୍‌କୁଞ୍ଜରାଃ କୁରୁତ ତତ୍ ତ୍ରିତୟୋ ଦିଧୀର୍ଷାଂ
ରାମଃ କରୋତି ହରକାର୍ମୁକମାତତଜ୍ୟଂ । ୭୩ ।

ଏପରି ସମୟେ ଥାଇଁ ବୋଲନ୍ତି ଲକ୍ଷ୍ମଣ । ହେ ପୃଥିବି ସ୍ଥିର ହୋଇ ରହନ୍ତୁ ଏକ୍ଷଣ । ହେ ବାସୁକି ତୁମ୍ଭେ ଏବେ ପୃଥିବୀକୁ ଧର । ଟେକନ୍ତୁ ଏ ବାସୁକୀକୁ ଅହେ କୂର୍ମବର ॥ ବହନ୍ତୁ କୂର୍ମବରେ ଏବେଁ ଦିଗ ହସ୍ତିମନେ । ଦିଅନ୍ତି ଶ୍ରୀରାମ ଗୁଣ ହରଶରାସନେ । ୭୩ ।

ପୃଥ୍ୱୀ ଯାତି ରସାତଳଂ ଫଣିପତେର୍ନମ୍ରଂ ଫଣାମଣ୍ଡଳଂ
ବାଢ଼ଂ କ୍ଷୁଭ୍ୟତି କୂର୍ମରାଜସହିତା ଦିକ୍‌କୁଞ୍ଜରାଃ କାତରାଃ ॥
ଅତନ୍ନନ୍ତି ଚ ବୃଂହିତଂ ପ୍ରତିଦିଶଂ ସର୍ବେ ଧରାଧାରଣୋ
ରୋପନ୍ତେ ରଘୁପୁଙ୍ଗବେ ପୁରଜିତଃ ସଜ୍ୟଂ ଧନୁଃ କୁର୍ବତି ।୭୪

ହରଚାପେ ଗୁଣ ଯହୁଁ ଦେଲେ ରଘୁମଣି । କଲା କି ଗମନ ରସାତଳକୁ ଧରଣୀ ॥ ଲଇଁ ଯାଇଁ ବାସୁକିର କମ୍ପେ ସବୁ ଫଣା । ଭୟ ପାଇ କୂର୍ମରାଜ ବୁଦ୍ଧି ହେଲା ବଣା ॥ ଗର୍ଜିଣ ଉଠିଲେ ଦିଗହସ୍ତି ସଙ୍କଟରେ । ପୂରିଲା ଦିଗବଦିଗ ଗର୍ଜନ ତନରେ । ତରୁ ଗୁଳ୍ମ ଲତା ସହ ପର୍ବତ ସକଳ । କମ୍ପିଲା ଆକାଶ ଆଦି ଭୂତଳ ଅତଳ । ୭୪ ।

ତତୋ ନୃପତୀନାଂ ଚେଷ୍ଟା ।

ରାମେ ରୁଦ୍ରଶରାସନଂ ତୁଲୟତି ନ୍ୟକ୍ତ୍ୱା ସ୍ଥିତଂ ପାର୍ଥିବୈଃ
ଶିଞ୍ଜାସଞ୍ଜନ ତତ୍ପରେ ଚ ହସିତଂ ଦତ୍ତ ମିଥସ୍ତାଳିକା ।
ଆରୋପନ୍ତ୍ରିଚଲାଙ୍ଗୁଳୀ କ୍ୱଣିଲସ୍ୟେ ମ୍ଲାନଂ ଗୁଣାସ୍ଫାଲନେ ।
ସ ରାଜର୍ଷିଶିତଭଗ୍ନପର୍ବଣି ପୁନଃ ସିହାସନେ ମୁଚ୍ଛିତଂ । ୭୫ ।

ତୋଳନ୍ତେ ଶ୍ରୀରାମ ତଲୁଁ ଶିବଶରାସନ । ହସିଲେ ମୁରୁକି ହସା ନରପତିଗଣ । ଆରମ୍ଭ କରନ୍ତେ ଗୁଣ ଦେବାକୁ ଧନୁରେ । ସଭାରେ ହସିଲେ ଉଚ୍ଚେ ସବୁ ନରବରେ । କଅଁଳପଲ୍ଲବ ପରି ରାମଙ୍କ ଅଙ୍ଗୁଳି । ଦିସାଇଣ ଦ୍ୟନ୍ତେ ଗୁଣ ନୃପେ ଦେଲେ ତାଳି ॥ କଲେକ ଗୁଣକୁ ଯେବେ ରାମ ଅସ୍ଫାଳନ । ନୃପତିମାନଙ୍କ ମୁଖ

ହୋଇଲା ମଳିନ ॥ ଭାଙ୍ଗନ୍ତେ ଶ୍ରୀରାମ ଧନୁ ଗାଢ଼ ଅକର୍ଷଣେ ।
ରାଜାଏ ପଡ଼ିଲେ ମୂର୍ଚ୍ଛାପାଇ ସିଂହାସନେ । ୭୫ ।

ଧନୁଷି ଭଙ୍ଗେ ବୈତାଳିକବାକ୍ୟଂ ।

କ୍ଷେପ୍ତ୍ରଂ ସହ କୌଶିକସ୍ୟ ପୁଲକୈଃ ସାର୍ଦ୍ଧଂ ମୁଖୈର୍ନାମିତଂ
ଭୂପାନାଂ ଜନକସ୍ୟ ସଂଶୟଧିୟା ସାକଂ ସମସ୍ଫାଳିତଂ ।
ବୈଦେହୀମନସା ସମଂ ଚ ସହସା କୃଷ୍ଟଂ ତତୋଭାର୍ଗବ
ପ୍ରୌଢ଼ାହଂକୃତ କନ୍ଦଳେନ ଚ ସମଂ ତଦ୍‌ଭଗ୍ନମୈଶଂ ଧନୁଃ ।୭୬।

ଭାଟମାନେ ଏ ସମୟେ ବୋଇଲେ ସଭାରେ । ଧନୁଭଗ୍ନ କଥାମାନ ଏମନ୍ତ ଭାବରେ ॥ ଯେକାଳେ ଶ୍ରୀରାମ ତୋଳୁଁ ଧନୁକୁ ତୋଳିଲେ । ବିଶ୍ୱାମିତ୍ର ମୁନି ଅତି ଅନନ୍ଦିତ ହେଲେ । ନୁଆଁଇଲେ ଯେତେବେଳେ ପୁଣି ସେ ଚାପକୁ । ରାଜାମାନଙ୍କର ମୁଖ ହୋଇଲା ତଳକୁ ॥ ପୁନବାର ରାମଚନ୍ଦ୍ର ହରଶରାସନ । ଗୁଣ ଦେଇ ବାରବାର କଲେ ଅକର୍ଷଣ ॥ ନ ଭାଙ୍ଗି ପାରିବେ ବୋଲି ଏମନ୍ତ ସଂଶୟ । ଜନକରାଜାଙ୍କ ଚିତ୍ତେ ହେଲାକ ଉଦୟ ॥ ଶିବଧନୁ ସହିତରେ ଜାନକୀଙ୍କ ମନ । ଏକାବେଳେ ଅକର୍ଷିଲେ କୌଶଲ୍ୟାନନ୍ଦନ ॥ ଭୃଗୁପୁତ୍ର ପଶୁରାମ ମୁନିଙ୍କ ଗରବ । ଧନୁଭଗ୍ନ ସଙ୍ଗେ ସଙ୍ଗେ ହୋଇଲା ଖରବ । ୭୬ ।

ଦୋର୍ଦ୍ଦଣ୍ଡାଞ୍ଚିତଚନ୍ଦ୍ରଶେଖର ଧନୁର୍ଦ୍ଦଣ୍ଡାବଭଙ୍ଗୋଦ୍ୟତ
ଷ୍ଟଙ୍କାରଧ୍ୱନିରାର୍ଯ୍ୟବାଳଚରିତପ୍ରସ୍ତାବନାଡିଣ୍ଡିମଃ
ଦ୍ରାକ୍ ପର୍ଯ୍ୟସ୍ତକପାଳସଂପୁଟମିଳଦ୍‌ବ୍ରହ୍ମାଣ୍ଡଭାଣ୍ଡୋଦର-
ଭ୍ରାମ୍ୟତ୍ ପିଣ୍ଡିତଚଣ୍ଡିମା କଥମହୋ ନାଦ୍ୟାପି ବିଶ୍ରାମ୍ୟତି ।୭୭ ।

ଭାଙ୍ଗିବାପାଇଁ ଶ୍ରୀରାମ ଶିବଧନୁ ଅଣି । ଭୁଜେ ଧରି ବାରଂ-ବାର ଓଟାରନ୍ତେ ଟାଣି ॥ ଉଠିଣ ଟଙ୍କାର ଧ୍ୱନି ଡିଣ୍ଡିମ ପ୍ରକାରେ । ଶ୍ରୀରାମଙ୍କ ବାଳକାଳ ଲୀଳାକୁ ପ୍ରଚାରେ ॥ ବ୍ରହ୍ମାଣ୍ଡ ଭିତରେ ପଶି ବୁଲି ଦେଶେ ଦେଶେ । ଏକଥାକୁ ସମସ୍ତଙ୍କ ଅଗରେ ପ୍ରକାଶେ । ଏ ବଡ଼ ବିଚିତ୍ର କଥା ସେ ଶବଦ ପୁଣ । ନ ରହଇ ଅଜଯାଏ କରୁଛନ୍ତି ଭ୍ରମଣ । ୭୭ ।

ଭଞ୍ଜନ୍ନିଦ୍ରାଂ ମୁରାରେଃ ସକଳଭୁଜଭୁବଂ ବୋଧୟନ ଶୌର୍ଯ୍ୟଦର୍ପଂ
ଛିନ୍ଦନ୍ ଦିଗ୍‌ଦନ୍ତିକର୍ଣ୍ଣାଞ୍ଚଳଚଳନକଳାଂ ଘୂର୍ଣ୍ଣୟନ୍ କୂର୍ମରାଜଂ ।
ଅର୍ଯ୍ୟଃ ଶ୍ଳାଘେ୍ୟା ଗଭୀରଃ ପ୍ରଳୟଘନରବବ୍ରହ୍ମହୃଦ୍ୱକ୍ଷଃଘୋର-
ଷ୍ଟଙ୍କାରଃ କୃଷ୍ୟମାଣେ ସ୍ମି ପୁରହର ଧନୁର୍ଭଙ୍ଗ ଭୂରାଜ୍ୟବର୍ଦ୍ଧିତ ।୨୮।

ଅଣାଯନ୍ତେ ଶ୍ରୀରାମ ଶିବ ଧନୁକୁ ଓଟାରି । ଗଭୀର ଶବଦ ଏକ ତହିଁରୁ ବାହାରି ॥ ପ୍ରଳୟକାଳର ମେଘ ଘଡ଼ଘଡ଼ି ଜଣି । ଧଇଲା ସେ ଭୟଙ୍କର ରୂପ ସେହିକ୍ଷଣି ॥ ଶୁଣିଣ ବିଷ୍ଣୁଙ୍କ ଯୋଗନିଦ୍ରା ଗଲା ଭାଙ୍ଗି । କ୍ଷତ୍ରିୟମାନଙ୍କ ବୀରଗର୍ବ ହେଲା ଗଞ୍ଜି ॥ ଛିଡ଼ିଗଲା ଦିଗହସ୍ତି-ମାନଙ୍କର କାନ । ଶବ୍ଦ ଶୁଣି କୂର୍ମରାଜ ହେଲେ କମ୍ପମାନ । ୨୮ ।

ଲୋକାନ୍ ସପ୍ତମନାଦୟନ୍ ହରିହୟାନୁଦ୍ଧାମୟନ୍ ସପ୍ତ ଚ
ଧାନାତ୍ ସପ୍ତ ନିବାରୟନ୍ ମୁନିବରାନ୍ ସପ୍ତାର୍ଣ୍ଣବାନ୍ କ୍ଷୋଭୟନ୍
ଓନ୍ମୂଳାନି ରସାତଳାନି ଜନୟନ୍ ସପ୍ତାଦ୍ରିକମ୍ପଂ ଚରନ୍
ଶ୍ରୀମଦ୍‌ରାଘବବାହୁଦଣ୍ଡବଦଳତ୍‌କୋଦଣ୍ଡ ଚଣ୍ଡଧ୍ୱନିଃ ।୨୯।

ଦଳନ୍ତେ ଶ୍ରୀରାମ ବାହୁଦଣ୍ଡରେ କୋଦଣ୍ଡ । ଉଠିଲା ଶବଦ ଏକ ହୋଇଣ ପ୍ରଚଣ୍ଡ ॥ ପୂରିଲା ସେ ଶବଦରେ ସପତ ଭୁବନ । ଛିଡ଼ିଗଲା ସୂର୍ଯ୍ୟଦେବ ଘୋଡ଼ାଙ୍କ ବନ୍ଧନ ॥ ସପତ ମୁନିଙ୍କ ଯୋଗଧାନ ଭାଙ୍ଗିଗଲା । ସପତ ସମୁଦ୍ର ପାଣି କମ୍ପମାନ ହେଲା ॥ ପଡ଼ିଲା ଓଲଟି କରି ସପ୍ତ ରସାତଳ । କମ୍ପିଲେ ଶବଦ ଶୁଣି ପର୍ବତ ସକଳ ।୨୯।

ରୁନ୍ଧନ୍ନଷ୍ଟବଧୀଃଶ୍ରୁତୀମ୍ ଖଗୟନ୍ନଷ୍ଟୌ ଦିଶଃ କ୍ରୀଡ଼ୟନ୍
ମୂର୍ତ୍ତୀ ରଷ୍ଟ ମହେଶ୍ୱରସ୍ୟ ଦଲୟନ୍ନଷ୍ଟୌ କୁଲାଦ୍ରୀ ନ୍ଦୃତଃ ॥
ତାନ୍ୟଷ୍ଟୌ ବଧିରାଣି ଦନ୍ତଗକୁଲାନ୍ୟଷ୍ଟୌ ଚ ସଂପାଦୟ-
ନ୍ନୂନ୍ନୀଲଦ୍ୟୁମାର୍ଯ୍ୟଦୋର୍ବଲ ଦଳତ୍‌କୋଦଣ୍ଡ କୋଳାହଳଃ ।୩୦।

ବାରମ୍ବାର ବାହୁବଳେ ହେବରୁ ଦଳିତ । ଭୟଙ୍କର କୋଳାହଳଧ୍ୱନି ହେଲା ଜାତ ॥ କଲାକ ବ୍ରହ୍ମାଙ୍କ ଅଠ କାନକୁ ବଧିର । ଅଷ୍ଟ ଦିଗ-ମାନେ ଶୁଣି ହୋଇଲେ ମୁଖର ॥ ନାଚିଲେ ଶିବଙ୍କ ଅଷ୍ଟମୂର୍ତ୍ତି

ଟେକାଲେ । ପୁଣି ଦଳି ହୋଇଗଲେ ଅଷ୍ଟକୁଳାଚଳେ ॥ ଅଷ୍ଟକୁଳ ନାଗେ ଥିଲେ ପାତାଳଭୁବନେ । କାଲ ହେଲେ ଶବଦକୁ ଶୁଣିଣ ଶ୍ରବଣେ ।୮୦।

ତ୍ରୁଟ୍ୟଦ୍ ଭୀମଧନୁଃ କଠୋରନିନଦସ୍ତତ୍ରାକରୋଦ୍ବିସ୍ମୟଂ
ତ୍ରାସା ଦେବ ରବେର୍ବିମାର୍ଗ ଗମନଂ ଶମ୍ଭୋଃ ଶିରଃ କମ୍ପନଂ ॥
ଦିଗ୍ଦନ୍ତି ସ୍ଖଳନଂ କୁଳାଦ୍ରିଚଳନଂ ସପ୍ତାର୍ଣ୍ଣବାନ୍ଦୋଳନଂ ।
ବୈଦେହୀମଦନଂ ମଦାନ୍ଧଦମନଂ ତ୍ରୈଲୋକ୍ୟସମ୍ମୋହନଂ ॥୮୧॥

ଭାଙ୍ଗି ଗଲା ଯେତେବେଳେ ଶିବ ଶରାସନ । ଅଦ୍ଭୁତ କଠୋର ନାଦ ହେଲା ଉତପନ୍ନ ॥ ଭୟ ପାଇ ବାଟ ବଣା ହେଲେ ଦିବାକର । ସଦା-ଶିବଙ୍କର ଶିର କମ୍ପିଲା ଅବର । ପଡ଼ିଗଲେ ଏଣେ ତେଣେ ଦିଗହସ୍ତି-ଗଣ । ଭୟେ ଅଷ୍ଟକୁଳାଚଳେ କଲେକ ଭ୍ରମଣ ॥ ଜନମଇ ସୀତାଙ୍କର ହୃଦୟେ ମଦନ । ଗର୍ବୀଲୋକ ଗର୍ବ ନାଶି ମୋହେ ତ୍ରିଭୁବନ ।୮୧।

ଯାବତ୍ କନ୍ଦୁକଲଙ୍ଘନାଙ୍କିତକରଃ ଶୋଣାବ୍ଜନାଳାକୃତିଃ
କୌଶଲ୍ୟାପଠମଙ୍ଗଳପ୍ରତିସରୋ ରାମସ୍ୟ ବାହୁଃ ପୁନଃ ॥
କିଂଶଙ୍କଅଁତ ତାବଦେବ ହି ଦଳଚଣ୍ଡୀ ଶମ୍ଭୂପଚ୍ଛଲ
ଚ୍ଛେଦେ କାର୍ତ୍ତିକ ମଗ୍ନମେତ ଦେଖିଲା ଜାତଂ ତ୍ରିଲୋକୀତଳଂ ୮୨ ।

ବାଳକେ ଯେବଣ ହାତେ କନ୍ଦୁକର ଚିହ୍ନ । ରକତ କମଳ ନାଡ଼ ପରାଏ ବରନ ॥ ଆସିବା ବେଳରେ ଦେବୀ କଉଶଲ୍ୟା ରାଣୀ । ଦେଇଥିଲେ ଯହିଁ ବାନ୍ଧି ଶୁଭ ମାଳା ଆଣି ॥ ଏମନ୍ତ ବାହୁକୁ ରଘୁନାଥ ପୁନର୍ବାରେ । ଗୁଳାଇଦେଲେ ଯେତେବେଳେ କାର୍ତ୍ତିକ ପ୍ରକାରେ ॥ ତେଣେ ଶିବଶରାସନ ଦଳିହୋଇଗଲା । ଭୀଷଣ ଶବଦେ ସିନ୍ଧୁ ଉଚ୍ଛୁଳି ପଡ଼ିଲା ॥ ଏକାବେଳେ ବୁଡ଼ିଗଲା ସମସ୍ତ ଜଗତ । ଆକାଶ ପାତାଳ କର ପୃଥିବୀ ସହିତ ।୮୨।

ଶଠମ୍ପୌ ଯଦ୍ଗୁଣବଲ୍କଳସମ୍ପନସ୍ୟତ୍ୟାକୃଷ୍ୟ କର୍ଣ୍ଣାନ୍ତିକଂ
ଭ୍ରଶ୍ୟନ୍ତ ତ୍ରିପୁର ବରୋଧସୁଦୃଶାଂ କଣ୍ଠୋପଳଗ୍ରନ୍ଥୟଃ ॥

ସ୍ୱଂ ଗୃହ୍ଣ ଲସ୍ତୃତ ପ୍ରକୋଷ୍ଠକମିମାମୁନ୍ମୁଚ୍ୟ ତାସାମହୋ
ରଦ୍ୟତ୍ତେ ବଲସ୍ୱାନ ଦାଶରଥିନା ଭଦ୍ଭଗ୍ନ ମୈଶଂ ଧନୁଃ ।୮୩।

ଏ ଧନୁର ଗୁଣ ଧର ପୂର୍ବେ ଶୂଳଧାସୀ । ଅଣିଥିଲେ କର୍ଣ୍ଣଯାଏ ଯେବେ ସେ ଓଟାରି ॥ ତ୍ରିପୁରସ୍ତରର ପୁରନାରୀଙ୍କ କାନରୁ । ଝୁଣ୍ଟିଲା କନକ ପଦ୍ମଟଣ୍ଟି ଛୁଟିବାରୁ ॥ ପୁଣି ଗୁଣଦେଲେ ଯେବେ କର ଅସ୍ଫାଳନ । ଛୁଟିଗଲା ତାହାଙ୍କର ହାତର କଙ୍କଣ ॥ କୌତ ମଧରେ ଦଶରଥଙ୍କ ନନ୍ଦନ । ଭଙ୍ଗିଦେଲେ ତେଡ଼େବଡ଼ ଶିବଶରାସନ । ୮୩ ।

ଠନ୍ନିଷି ଭଙ୍ଗେ ସ୍ୱମାଙ୍ଗସ୍ୟ ଭାଠି ୟଂ ଦୃଷ୍ଟ୍ୱା ମ୍ଲାନଚେଷ୍ଟିଂ
ସୀତାଂ ପ୍ରତି ସଖୀ ପ୍ରାହ ॥

ସୀତେ ମାକୁରୁ ସମ୍ଭ୍ରମଂ ଚ ସହସା କାଠିନ୍ୟମଙ୍ଗୀକୃତଂ
ଯଦ୍ରାମସ୍ୟ ଭୁଜଦ୍ୱୟେନ ଧନୁଷୋ ଭଙ୍ଗାୟ ନାଙ୍ଗାୟ ତେ ।
କ୍ଷୋଣୀ କମ୍ପିତ ଶୁଷ୍ୟତି କ୍ଷିତରୁହଃ ଶୁଷ୍ୟନ୍ତି ମୀରାଶୟା
ଏଷା ଯନ୍ନଳିନୀ ଦିବାକରକରୈରାନନ୍ଦମାବିନ୍ଦତି । ୮୪ ।

ଧନୁଭଙ୍ଗି ରାମଙ୍କ ଅତ୍ୟନ୍ତ କଠିନ । ଦେଖିଣ ସୀତାଙ୍କ ମନ ହୋଇଲା ମଳିନ ॥ ଏମନ୍ତ ସମୟେ ଅସି ବୋଲେ ସହଚରୀ । ନ କର ନ କର ଭୟ ମନରେ ସୁନ୍ଦରି ॥ ଧନୁକୁ ଭାଙ୍ଗିବା ପାଇଁ ଅଟଗୋ ରାମାବର । କଠିନ ହୋଇଛି ଦୁଇ ଭୁଜ ରାମଙ୍କର ॥ ତୁମ୍ଭଅଙ୍ଗ ପାଇଁ ନୁହେ ଏ କଥା ନିଶ୍ଚୟ । ଗୁଣଦିଅ ଏବେ ମନ ସକଳ ସଂଶୟ । ସୂର୍ଯ୍ୟର କିରଣେ କମ୍ପଯାଏ ଏ ଧରଣୀ । ଆଉର ଶୁଖଇ ସବୁ ବୃକ୍ଷ ପୁଷ୍କରିଣୀ ॥ ଦେଖ ଏ ନଳିନୀ ସୂର୍ଯ୍ୟ କିରଣକୁ ପାଇ । କେବଳ ମହା ଆନନ୍ଦ ପ୍ରକାଶ କରଇ ॥ ସେହି ସୂର୍ଯ୍ୟବଂଶୀ ତୁମ୍ଭ ପଦ୍ମିନୀ ଜାତିରେ । ଭାସିଯିବ କର ଲଗି ଆନନ୍ଦସାଗରେ । ୮୪ ।

ଅଥ ବରଣଂ ।

ରାମଂ ନବଘନଶ୍ୟାମଂ ସୀତା ବହ୍ୟୁନ୍ମିଭା ତଦା ।
ବରୟାମାସ ଭର୍ତ୍ତାରେ ମାଲୟା ରତ୍ନଚନ୍ଦ୍ରୟା । ୮୫ ।

ନବଘନ ପରି ରାମ ଶ୍ୟାମଳ ବରନ । ଜନକ ନନ୍ଦନୀ ସୀତା ବିଜୁଳି ସମାନ ॥ ବିଚିତ୍ର ରତନଖଞ୍ଜା ମାଳା ଧରି କରେ । ରାମଙ୍କୁ ବରଣ କଲେ ଅତି ପରିତୋଷରେ । ୮୫ ।

ଜନକପ୍ରହିତାନ୍ ଦୂତାନ୍ ମିଥିଲାମାଗଚ୍ଛତୋଦଶରଥା-
ଧାଂଷ୍ଟ ବାସ୍ୟ ବୈତାଳିକବାକ୍ୟଂ ।
ଜନକନୃପତିବାକ୍ୟଂ ପୁଣ୍ୟସମ୍ବନ୍ଧକୃତ୍ୟଂ
ସରଭସମୁପଗୃହ୍ୟ ଶ୍ରୀଶତାନନ୍ଦବକ୍ତ୍ରାତ୍ ।
ଅପ ରମପି ତନୁଜଦ୍ୱନ୍ଦ୍ୱମାଦାୟ ହୃଷ୍ଟଃ
ସ୍ତୁତିରଘୁପତିଶୌର୍ଯ୍ୟଃ କୋଶଳେନ୍ଦ୍ରୋଽଭ୍ୟୁପେତ ॥ ୮୬ ॥

ବୈତାଳିକଗଣ ଆସି ବୋଇଲେ ଉଦନ୍ତ । ଜନକ ପଠାଇ ଥିଲେ ଅଯୋଧ୍ୟାକୁ ଦୂତ ॥ ସୁନ୍ଦର ମଙ୍ଗଳ କାର୍ଯ୍ୟ ଜନକଙ୍କ ପଣ । ଶତାନନ୍ଦ ମୁଖୁଁ ଶୁଣି ରାମ ବୀରପଣ ॥ ଦଶରଥ ରାଜା ହୋଇ ଅତି ଆନନ୍ଦିତ । ଭରତ ଶତ୍ରୁଘ୍ନ ଘେନି ହେଲେ ଉପସ୍ଥିତ । ୮୬ ।

ଅଭ୍ୟର୍ଥ୍ୟମାନସତ୍କୃତଂ ମିଥିଲାଧିନାଥଃ
କୃତ୍ୱାତିଥ୍ୟଂ ଦଶରଥଂ ପରମାତିଥେୟଃ ।
ସ୍ୱୀୟେ ସୁତେଽପ୍ୟଥ କୁଶଧ୍ୱଜକନ୍ୟକେ ଦ୍ୱେ
ପ୍ରତ୍ୟା ଦଦୌ ବିଧିବଦେବ ତଦାତ୍ମଜେଭ୍ୟଃ । ୮୭ ॥

କଲେନ୍ତି ମିଥିଳା ରାଜା ଅତିଥିଙ୍କ ପୂଜା । ମହାନ ଅତିଥି ଯେଣୁ ଦଶରଥରାଜା ॥ ପୂଜିଲେ ଜନକ ଋଷି ବିଶେଷ ଆଦରେ । ଘେନି ନିଜ ଦୁଇକନ୍ୟା ଅତି ଆନନ୍ଦରେ ॥ କୁଶଧ୍ୱଜ ନୃପତିଙ୍କୁ ଆଣିଲେ ଡକାଇ । ଆବର ତାହାଙ୍କ କନ୍ୟା ଦୁହିଙ୍କୁ ଅଣାଇ । ବେଦବିଧି ଅନୁଷ୍ଠାରେ ଉଭୟ ରାଜନ । ଚାରିପୁତ୍ରେ ଚାରିକନ୍ୟା କଲେକ ପ୍ରଦାନ । ୮୭ ।

ନିଃଶାଣମର୍ଦ୍ଦଳରସାଳଗଭୀରଭେରୀ-
ଟଙ୍କାରତାଳବରକାହାଳନାଦଜାଲୈଃ ।

ପୂର୍ତ୍ତିଂ ବଭୂବ ଧରଣୀଗଗନାନ୍ତରାଳଂ
ପାଣିଗ୍ରହେ ରଘୁପତେର୍ଜନକାତ୍ମଜାୟାଃ । ୮୮ ।

ଜାନକୀଙ୍କୁ ବିଭାହେବା ବେଳେ ରଘୁମଣି । ବାଜିଲା ଗୋମୁଖୀ ଆଦି ମାଦଳ ନିସାଣି ॥ ଭେରୀର ଗମ୍ଭୀର ଧ୍ୱନି ଢେଙ୍କାର ଗର୍ଜନ । ଅବର କାହାଳ ଆଦି ବାଦ୍ୟ ଘନ ଘନ ॥ ଘୋର ବାଦ୍ୟ ନାଦ ଶୁଣି ସିନ୍ଧୁ ଉଚ୍ଛୁଳିଲା । ଆକାଶ ପୃଥିବୀ ଚଉଦିଶ ଚମକିଲା । ୮୮ ।

ବୈବାହିକଂ କୁଶିକନନ୍ଦନବାମଦେବ
ବାଲ୍ମୀକିଗୌତମବଶିଷ୍ଠପୁରୋହିତାଦ୍ୟୈଃ ।
ରାମୋ ବିଧିଂ ପରିସମାପ୍ୟ ସହାନୁଜୈସ୍ତୁ
ତେଭ୍ୟୋ ଦଦୌ ବହୁବସୂନି ତିଲାଂଶ୍ଚ ଗାଶ୍ଚ । ୮୯ ।

ବିଶ୍ୱାମିତ୍ର ବାମଦେବ ବାଲ୍ମୀକି ଗୌତମ । ବଶିଷ୍ଠାଦି ପୁରୋହିତ ଯେତେକ ଶ୍ରୀରାମ ॥ ଭରତାଦି ଭାଇଙ୍କର ସହି ଆପଣାର । ବିଭାବିଧି ସମାପନ କରଣି ସତ୍ୱର ॥ ଦେଲେ ସର୍ବେ ଧେନୁ ତିଳ କାଞ୍ଚନ ସହିତେ । ପରମ ସନ୍ତୋଷ ହେଲେ ଋଷି ପୁରୋହିତେ । ୮୯ ।

ରଘୁଜନକଗୃହାନ୍ ସ୍ତ୍ରୀପୁତ୍ରଦାନୀ
ମଦ୍ଭୁତପଦପତ୍ୟୁବିବାହମଙ୍ଗଳଶ୍ରୀଃ ।
ତ୍ରିଭୁବନଜନତା ନନନ୍ଦ ଯତ୍ର
ପ୍ରମଦମବାପ୍ୟ ମନୋରଥବ୍ୟତୀତଂ । ୯୦ ।

ଦଶରଥ ପୁତ୍ର ଆଉ ଜନକ ସୁତାର । ସେତେବେଳେ ସମାପନ ହେଲା ବିଭାଘର ॥ ତିନିପୁର ଲୋକେ ହୋଇ ଆନନ୍ଦିତମନା । ନ ପୂରିଲା ତାହାଙ୍କର ମନର କାମନା । ୯୦ ।

ତାଂ ଭୂମିଜାଂ ଭୂମିପତେସ୍ତନୂଜୋ
ରାମୋ ରମାଂ ଚକ୍ରଧରୋ ଯଥାଶୁ ।
ଉଦ୍ୱାହୟିତ୍ୱା ମୁମୁଦେ ଭବାନୀଂ
ପ୍ରାଚ୍ୟେବ ସର୍ବଃ ସ୍ୱଗୁଣେନ ସାକଂ । ୯୧ ।

ଲକ୍ଷ୍ମୀଙ୍କୁ ପାଇଣ ଯେହ୍ନେ ପ୍ରଭୁ ଚକ୍ରଧର । ପାର୍ବତୀଙ୍କୁ ପାଇ ଯେହ୍ନେ ଆନନ୍ଦିତ ହର ॥ ରାମଚନ୍ଦ୍ର ଜାନକୀଙ୍କୁ ପାଇଣି ତେସନେ । ଅତିଶୟ ଆନନ୍ଦିତ ହୋଇଲେ ମନେ ମନ । ୧୧ ।

ଇତ୍ୟବସରେ ବୈତାଳିକଃ ।

ଲଙ୍କା କାନ୍ତି ଜନକତନୟା ଶୈବକୋଦଣ୍ଡଭଙ୍ଗେ
ତସ୍ୟାଃ କନ୍ୟା କୁଚଯୁଗତଟୀଃ ଭୋଜରେ ରାମଚନ୍ଦ୍ରଂ ।
ଅନ୍ତ୍ୟାପାଣି ଗ୍ରହଣସମୟେ କ୍ଷ୍ୟାଯୁସୀ ଜାତ ରୋଷା
ଭୂପୈଃ ସାର୍ଦ୍ଧଂ ଖଳ ଗତବତୀ ମଧ୍ୟମାଗଦିଗନ୍ତ୍ୟେଂ । ୧୨ ।

ଏମନ୍ତ ସମୟେ ମିଳି ବୈତାଳିକ ଗଣ । ରାଜସଭା ମଧ୍ୟେ ପୁଣି ବୋଲନ୍ତି ଏସନ ॥ ଲଙ୍କା ଆଉ କାନ୍ତି ପୁଣି ଜନକନନ୍ଦିନୀ । ଶିବଧନୁ ଭଙ୍ଗକାଲେ ଏ ତିନିଭଗିନୀ ॥ ଉପମା ଦେବାକୁ ନାହିଁ ରାମଙ୍କ ସମାନେ । ନିରୀକ୍ଷଣ କଲେ ତାଙ୍କୁ ଯେତେ କନ୍ୟାମାନେ ॥ ଜନକନନ୍ଦିନୀ ସୀତା ଧନୁଠାରୁ ସାନ । ଧଇଲେ ତାହାର ହାତ ଯେଣୁ ରଘୁନାଥ ॥ ଲଙ୍କା ଅଟେ ବଡ ସବୁ କନ୍ୟାଙ୍କ ମଧ୍ୟରେ । ଗୁଳିଗଲା କୋଧଭରେ ରାଜାଙ୍କ ସଙ୍ଗରେ ॥ ମଧ୍ୟମ ଭଉଣୀ ନାମ କାନ୍ତି ଯେ ଅଟଇ । ଦିଗନ୍ତକୁ ଗୁଳିଗଲା ମନେ କୋଧ ବହି । ୧୨ ।

ବିବାହାନନ୍ତରମଯୋଧ୍ୟାଗମନଂ ।

ଶ୍ରୀ ଯାନବାଦ୍ୟାଂ ଜନକେନ୍ଦ୍ର ପୁତ୍ରୀଂ ସ ପୁଷ୍ପଗୁପାଯୂତଶୋଭନାଙ୍ଗଃ ।
ରାମୋ ଯଯୌ ବାଦିବରବତଂସୋ ଜଗ୍ଧା ମହୀଶାନ୍ତରଦେବସୂନୁଃ । ୧୩ ।

ରାଜାଙ୍କ ନନ୍ଦନ ପୁଣି ବୀରଙ୍କ ପ୍ରଧାନ । ଦଶରଥ ଯାହାଙ୍କ ଅଙ୍ଗ କନ୍ଦର୍ପ ସମାନ ॥ ଜନକନନ୍ଦନୀ ଅଟେ ସର୍ବାଙ୍ଗ ସୁନ୍ଦରୀ । ତାହାଙ୍କୁ ପାଇଲେ ରାମ ଧନୁ ଭଗ୍ନ କରି ॥ ନୃପତିମାନଙ୍କ ମୁଖେ ଲଗାଇଣ କାଳି । ଅଯୋଧ୍ୟା ପୁରକୁ ତହୁଁ ବେଗେ ଗଲେ ଚଳି । ୧୩ ।

ଏଷ ଶ୍ରୀଲହନୁମତା ବିରଚିତେ ଶ୍ରୀମନ୍ମହାନାଟକେ
ବୀରଶ୍ରୀଯୁତରାମଚନ୍ଦ୍ରଚରିତେ ପ୍ରତ୍ୟୁଦ୍ଧୃତେ ନୈକମୈଃ ।

ମିଶ୍ରଶ୍ରୀମଧୁସୂଦନେନ କବିନା ସନ୍ଦର୍ଭ୍ୟ ସଜ୍ଜୀକୃତେ
ଯାତୋଽଙ୍କଃ ପ୍ରଥମୋ ବିଦେହତନୟାଲାଭାଭିଧାନୋ ମହାନ୍ ।୦।

ହନୁମନ୍ତ ବିରଚିତ ଶ୍ରୀମହାନାଟକ । ଶ୍ରୀରାମଙ୍କର ଚରିତ ଯହିଁରେ ପ୍ରକଟ ॥ ସନ୍ଦର୍ଭ ଛନ୍ଦେ ଏହାକୁ ଶ୍ରୀ ମଧୁସୂଦନ । ରଚେ ପ୍ରଥମାଙ୍କେ ରାମ ବିବାହ ବିଧାନ ॥ ସମାପ୍ତ କରିଲେ ଏହା ଜନଙ୍କ ହିତରେ । ଚିନ୍ତାମଣି ଦାସ କହେ ଭାଷା ପ୍ରବନ୍ଧରେ ॥

ଇତି ଶ୍ରୀ ମହାନାଟକେ ପ୍ରଥମୋଽଙ୍କଃ ।

---

# ଦ୍ୱିତୀୟ ଅଙ୍କ

ଅଥ ବର୍ତ୍ମନି ପରଶୁରାମଦର୍ଶନଂ ।

ଯଦ୍‌ବିଭଞ୍ଜି ଜନକାତ୍ମଜାକୃତେ ରାଘବ ପଶୁପତେର୍ମହଦ୍ଧନୁଃ ।
ତଦ୍ଧନୁର୍ଗୁଣରବୋଽଥ ରୋଷିତସ୍ତୂର୍ଣ୍ଣ ଭାଜଗାମ ଜମଦଗ୍ନିଜୋ ମୁନିଃ । ୧ ।

ଯେତେବେଳେ ଶିବଧନୁ ଜାନକୀଙ୍କ ପାଇଁ । ହେଲେ ଭାଙ୍ଗି ପକାଇଲେ ପ୍ରଭୁ ରଘୁସାଇଁ ॥ ସେ ଘୋର ଶବଦ ଶୁଣି ଅତି କ୍ରୋଧଭରେ । ଭୃଗୁସୁତ ପର୍ଶୁରାମ ଅସୁଛନ୍ତି ଖରେ । ୧ ।

ଆଜାନୁଲମ୍ବ୍ରିତଭୁଜସ୍ତୂଳଭୂଜଶିଳାସ୍ତମ୍ଭବିଭ୍ରାଜମାନ-
ଜ୍ୟାଘାତଶ୍ରେଣିରେଖାନ୍ତରିତଦସୁମଣିଚକ୍ରକୈରପ୍ରଶସ୍ତିଃ ।
ବକ୍ଷଃପୀଠେ ଘନାସ୍ତ୍ରବ୍ରଣକିଣକଠିନେ ସଂକ୍ଷୀବାନଃ ପୃଷତ୍କାନ୍
ପ୍ରାପ୍ତୋ ରାଜନ୍ୟଗୋଷ୍ଠୀବନଗଜମୃଗୟାକୌତୁକୀ ଜାମଦଗ୍ନ୍ୟ ।୨।

ଆଜାନୁରୁ ବ୍ରହ୍ମଗୃହ ଅଟନ୍ତି ସେ ମୁନି । ପଥରର ଖମ୍ବପରି ତାଙ୍କ ଭୁଜବେନି ॥ ଗୁଣ ଘାତ ଚିହ୍ନମାନ ତହିଁ ଶୋଭାପାଏ । ଜଣିଛନ୍ତି ଭୂମଣ୍ଡଳ ଏଥୁ ଜଣାପାଏ ॥ ଅସ୍ତ୍ରବାଜ ଘାତବଣ୍ଡି ହୋଇଅଛୁ ଠାଣ । ତୀକ୍ଷ୍ଣ ହୁଏ ସେ ବଣ୍ଡିରେ ଘଷିହୋଇ ବାଣ ॥ ବଣ ହାତିତୁଲ୍ୟ ହେଲେ

ଋଷିମାନ୍ ସକଳେ । ଯେମାନଙ୍କୁ ମାରିଛନ୍ତି ଅତି କୁତୂହଳେ ॥ ଜାମଦଗ୍ନି ସୁତ ପୁଣି ଏମନ୍ତ ବେଶରେ । ଯାଉଁ ଯାଉଁ ଶ୍ରୀରାମଙ୍କୁ ଭେଟିଲେ ବାଟରେ ।୨।

ଲକ୍ଷ୍ମଣଃ ଶ୍ରୀରାମଂ ପଶ୍ୟ ରାମଂ ସ୍ମାରଯତି ।

କୁର୍ବନ୍ କେ ପାଦୁଦଅଁଦ୍ରବକ୍ତରଣଅଁଠାପ ଠଲୌଧ୍ର ଛିପାନ୍ତେ
ଦ୍ୟ ପି କ୍ଷତ୍ରକଣ୍ଠଚ୍ୟୁତରୁଧିରସ୍ରବଦ୍ଧୌତଧାରଂ କୁଠାରମ୍ ।
ଯାତ୍ରେନିଶ୍ୱା ପାତୈଃ ପୁନରପି ଭୁବନୋତ୍ପାତମାସୂଚୟନ୍ତୀ
ଗର୍ଜନ୍ନୁମୌର୍ବୀ କଣ୍ଠପତ୍ରୀ ଭୁବନବିଜୟୀ ଜାମଦଗ୍ନ୍ୟଃ ସମେତି ।୩।

ଲକ୍ଷ୍ମଣ ବୋଇଲେ ଅହେ ପ୍ରଭୁ ରଘୁନାଥ । ବାଟେ ଦେଖ ଆସୁଛନ୍ତି ଜମଦଗ୍ନି ସୁତ ॥ ଗୁଣ ଦିଅ ଧନୁ ଅଛି ଏହାଙ୍କ ହାତରେ । ଜିଣିଛନ୍ତି ତିଲୋକକୁ ଏହି ସାକ୍ଷାତରେ ॥ ଉଦୟ ସମୟେ ସୂର୍ଯ୍ୟ ଦିଶନ୍ତି ଯେସନ । ଦୁଇ ଅକ୍ଷି ରଙ୍ଗବର୍ଣ୍ଣ ହୋଇଛି ତେସନ ॥ କାଟିଛନ୍ତି କ୍ଷତ୍ରିଙ୍କ ଶିରକୁ କୁଠାରେ । ରକତ ଲାଗିଛି ଦେଖ କୁଠାର ଧାରରେ ॥ ବହୁଅଛି ଘନ ଘନ ନିଶ୍ୱାସ ପବନ । ଯେ ଶବଦେ କମ୍ପୁଅଛି ସକଳ ଭୁବନ ।୩।

ଚୂଡ଼ାଚୁମ୍ବିତକଙ୍କପତ୍ରମଭିତସ୍ତୂଣୀଦ୍ୱୟଂ ପୃଷ୍ଠତୋ
ଭସ୍ମସ୍ନିଗ୍ଧପବିତ୍ରଲାଞ୍ଛନମୁରୋ ଧତ୍ତେ ତ୍ୱଚଂ ରୌରବୀମ୍ ।
ମୌଞ୍ଜ୍ୟା ମେଖଲୟା ନିୟନ୍ତ୍ରିତମଧୋବାସଶ୍ଚ ମାଞ୍ଜିଷ୍ଠକଂ
ପାଣୌ କାର୍ମୁକମକ୍ଷସୂତ୍ରବଲୟଂ ଦଣ୍ଡଂ ପରଂ ପୈପ୍ପଲଂ ।୪।

ତୂଣୀଦ୍ୱୟ ଶୋଭିବନ ସୁନ୍ଦର ବାଣରେ । ଭସ୍ମ ବୋଲି ହୋଇଛନ୍ତି ସମସ୍ତ ଅଙ୍ଗରେ ॥ ଚିକିକଣ ପଇତା ଚର୍ମ ବକ୍ଷସ୍ଥଳେ ସଙ୍କେ । ଏକ ହାତେ ଧନୁ ପୁଣି ବଳୟ କଙ୍କଣେ । ଆର ହାତେ ବହିଛନ୍ତି ମୁଞ୍ଜ ଶୃଙ୍ଖଳ ମାଳା । ବାନ୍ଧିଛନ୍ତି ଦୃଢ଼କରି ମଉଞ୍ଜି ମେଖଳା ॥ ମଞ୍ଜିଷ୍ଠା ବଳକଳ ଖଣ୍ଡ ଶୋଭେ କଟିଦେଶେ । କାନ୍ଧରେ ପପ୍ପଳ ଦଣ୍ଡ କେତେ ଶୋଭାଦେଶେ ॥

ସୋଽୟଂ ସପ୍ତସମୁଦ୍ରବେଷ୍ଟିତମହୀ ଯେନାର୍ଜୁନ ଦୁଷ୍କୃତା
ଛୁଣ୍ଣାଭୈରବ ଯଙ୍ଗବେଦ୍ଧିତଜଠରଂ କଣ୍ଠଃ କୁଠାରାନଳୈଃ ।
ରେବାନୀରନିରୋଧନୈକନିପୁଣଂ ବାହ୍ୱୋଃ ସହସ୍ରଂ ଜବାତ୍
ଖଣ୍ଡଂ ଖଣ୍ଡମକାରୟତ୍ପିତୃବଧାମର୍ଷେଣ ବର୍ଷୀୟସା । ୫ ।

ପିତାର ମରଣେ ଅତି କୋପେ ଏହି ମୁନି । ଅଗ୍ନି ତୁଲ୍ୟକୁଠାରକୁ ନିଜ କରେ ଘେନି ॥ କାଟିଥିଲେ ଅର୍ଜୁନର ସହସ୍ର ହାତକୁ । ବାହିଥିଲା ପେଷୁଁ ସେ ରେଦା ନଦୀକୁ ॥ ଘୋର ରଣେ ପୁଣି ତାର ମୁଣ୍ଡକୁ କାଟିଲେ । ସପତ ସମୁଦ୍ର ସହ ମହୀ ଉଦ୍ଧାରିଲେ । ୫ ।

ଜାମଦଗ୍ନ୍ୟଃ କୋପଃ ନାଟନୃତ୍ୟା ଯେନ ସ୍ୱଂ କାଳଦଣ୍ଡ ନ୍ତର

ମିଚ୍ଛତି ଭଗ୍ନଂ ଜନକ ନାମ ଧନୁଃ ପାଞ୍ଚଜନ୍ୟମୂଢ଼ଂ ଦାରବସ୍ୱଂ ॥

ବୋଇଲେ ପରଶୁରାମ ଅତିକୋପ ଧରିରେ । ଯମପୁରେ ଯିବାକୁ କେ ଇଚ୍ଛିଲା ମନରେ ॥ କେ ଭାଙ୍ଗିଲା ଅଜଗବ ଧନୁକୁ ଆମର ।
ନ ଜାଣେ କି ପର୍ଶୁରାମ ଜଗତରେ ଅଛି ।

ଯଦୀ କ୍ରମତ ସଙ୍ଗରାଙ୍ଗଣେ ଷୁବ ଦୁର୍ବାରଧାରାଁଜଳଭ୍-

କ୍ଷୁଣ୍ଣକ୍ଷତ୍ର କଠୋରକଣ୍ଠରୁଧିରେଣାଂ ରେଣୁକା ଭୂରଭୂତ୍ ॥

ତାଣ୍ଡବ ବୀରବରସ୍ତପୃଷ୍ଠରପରସ୍ତଲେ । କଙ୍କନାୟକାଦ୍ଧ-

କୀର୍ତ୍ତି ପୂଷ୍ଟକଦାମରେଣୁଭିରଦ୍ଧଦ୍ଧ୍ୟୋବେବ ରେଣୁକ୍ତା । ୬ ।

ପଟିଶ ସମରେ ପର୍ଶୁରାମ ଯେଉଁ କାଳେ । କ୍ଷତ୍ରିମାନଙ୍କର ମୁଣ୍ଡ କାଟିଲେ କୁଠାରେ ॥ ରକତଧାର ତହିଁରୁ ବହିଲ ନିରନ୍ତେ । ଧୂଳି ମରିଗଲା ଏହି ପୃଥିବୀରୁ କେତେ ॥ ସ୍ୱର୍ଗକନ୍ୟାମାନେ ଦେଖି ଏହି ବୀରପଣ । ସ୍ୱଇଚ୍ଛାରେ ବରିବାକୁ କରିଥିଲେ ମନ । ପଦ୍ମଫୁଲ ମାଳ ଧରି କରେ ଯେହି କାଳେ । କୁସୁମରେଣୁରେ ଆକାଶକୁ ପୂର୍ଣ୍ଣ କଲେ । ୬ ।

ପାର୍ବତ୍ୟା ନିଜଭକ୍ତିରଞ୍ଜିତ ପ୍ରେମ୍ଣା ପଦଭ୍ୟର୍ଚ୍ଚିତଂ ।

ନିର୍ମୋକେଣ ତ ବାସୁକେ ନିଚୋଳିତଂ ଯସ୍ମାଦରଂ ନନ୍ଦିନା ॥

ଭଗ୍ନଂ ଛତ୍ର ପୁରଭେଦନଂ ଧନୁରିଦଂ ତନ୍ନନୁଯୋଜ୍ୟାଧିନଃ

ସଦ୍ୟୋବଂ ଭୁବ ରାମନାମକ ମସ୍ତି ଦ୍ୱୈଧୀକୃତଂ ଧୃଣ୍ୟତେ ।୭।

ଜାଣି ଆପଣାପତିର ଧନୁ ଯେ ପାର୍ବତୀ । ପ୍ରତିଦିନ ଯାକୁ ପ୍ରେମଭରେ ପୂଜୁଥାନ୍ତି ॥ ଢାକିଥାନ୍ତି ଖୋଳକେ ବାସୁକୀ ଚର୍ମରେ । ଦ୍ୱାରପାଳ ନନ୍ଦୀ ତାକୁ ରଖେ ଯତନରେ ॥ ଏ ଧନୁକୁ ବହି ସଦାଶିବ ପୂର୍ବ

କାଲେ । ନ ପୁତ୍ର ସୂରକୁ ମନ କୋଇଲେ ହେଳେ ॥ ଯେ ଧନୁକୁ ଖଣ୍ଡେ ଏଡ଼େ ଗରବ କହାର । ପଶୁରାମ ଏହା ପୁଣି ଦେଖିଲ ଅଛିର ॥ ଅଳି ପ୍ରତ୍ୟାଘାତରେ ମୁହିଁ କେଳାମ ଧର । ତେଣୁ ନାମକୁ ହୁଭଙ୍ଗ କଲ କେ ମୋହର । ୭ ।

କାର୍ତ୍ତବୀର୍ଯ୍ୟଂ ଦୃଷ୍ଟ୍ୱା ପୁନଃ ପରଶୁରାମବଚନଂ ।

ସହସ୍ରବାହୁ ସ୍ତ୍ୱମହଂ ଦ୍ୱିବାହୁ ସ୍ତ୍ୱଂ ନୈବଶ୍ରୀ ମୁନିନନ୍ଦନୋଽହଂ ।
ତ୍ୱଂ ସୈନ୍ୟଯୁକ୍ତୋଽହମେକ ଏବ ତଥାପି ନୌ ପଶ୍ୟତୁ ଯୁଦ୍ଧମର୍କଃ ।

ସହସ୍ର ଅର୍ଜୁନ ସଙ୍ଗେ ଯୁଦ୍ଧ ସମୟରେ । ଯାହା ତେଣୁ କହିଣ ଥିଲି ମୁହିଁ ତା ଆଗରେ ॥ ସହସ୍ର ହସ୍ତ ତୋହର ମୋର ବେନି ହସ୍ତ । ତୁହି ରାଜ ଚକ୍ରୀ ମୁହିଁ ମୁନିସୁତ ॥ ମୁହିଁ ଏକେଶ୍ୱର ତୋର ସଇନ୍ୟ ବହୁତ ॥ ଦୁହିଙ୍କର ସମର ଦେଖନ୍ତୁ ସୂର୍ଯ୍ୟ ଜାନ୍ତୁ । ୮ ।

ଉତ୍ସନ୍ନେଷ୍ୱନ୍ୱୟେ ଗର୍ଭାନପି ଶକଳୟତଃ କ୍ଷତ୍ରସନ୍ତାନରୋଷା-
ଦୁଦ୍ଦାମସ୍ୟୈକବିଂଶତ୍ୟବଧି ବିଶସତଃ ସର୍ବତୋ ରାଜବଂଶ୍ୟାନ୍ ।
ପିତ୍ର୍ୟଂ ତଦ୍ରକ୍ତପୂର୍ଣ୍ଣଂ ହ୍ରଦସବନମହାନନ୍ଦ ମନ୍ଦାୟମାନ-
କ୍ରୋଧାଗ୍ନେଃ କୁର୍ବତୋ ମେ ନ ଖଲୁ ନ ବିଦିତଃ ସର୍ବଭୂତୈଃ ସ୍ୱଭାବଃ

କ୍ଷତ୍ରିୟକୁଳ କଣ୍ଟକ ହୋଇବାରୁ ମୁହିଁ । ନାଶିଅଛି ଗର୍ଭରୁ ବାଳକମାନ ନେଇ ॥ ଯୁବା ବୃଦ୍ଧ ହେଉ ଅବା ନୀଚ କି ଉଚ୍ଚପ । ବାରଂବାର ନାଶିଅଛି ବହୁ ଦୁଃଖେ ରୋଷ । ଏକବିଂଶ ବାର ଯୁଦ୍ଧ ନାଶି ଛତ୍ରି ଗଣେ । ସେହି ରକତେ ତର୍ପିଲି ପିତୃଙ୍କୁ ତର୍ପଣେ । ତେବେ ହୋଇଲା ମୋହର କ୍ରୋଧାନଳ ଶାନ୍ତ । ହୋଇଅଛି ସର୍ବଲୋକେ ଏମନ୍ତ ବିଦିତ । ୯ ।

ହସ୍ତ୍ୟଶ୍ୱକ୍ଷତ୍ରି କଣ୍ଠାର କର୍ଣ୍ଣବିଗଲଦ୍ରକ୍ତୌଘ ଫେନସକ୍ତ-
ନିର୍ବୃତ୍ତିଭଞ୍ଜଦସ୍ୟ କୃତ୍ତଶିରସଃ କେଶାନ୍ କୁଣ୍ଡେ ନିକ୍ଷିପ୍ୟତଃ ।
ତାବଦ୍ରକ୍ତଜଲାଞ୍ଜଳିଃ ପିତୃଗଣେ ଯସ୍ୟ କ୍ଷଣଂ ସିଞ୍ଚିତଃ
ସନ୍ତୋଷେଣ ଜୁଗୁପ୍ସୟା କରୁଣୟା ହାସେନ ଶୋକେନ ବା

ବହିଲା ରକତ ନଦୀ କ୍ଷତ୍ରିଙ୍କ ରକତେ । କଲା ତହିଁ ପିଣ୍ଡଦାନ ପିତୃଙ୍କ ନିମନ୍ତେ । ଅଣି ମୁଣ୍ଡ ବାଳମାନ କଲା କୁଶ ଜ୍ଞାନ । ବସିଣି ଅଞ୍ଜୋଳ ଦେଲା ପିତୃଙ୍କୁ ସେ ସ୍ଥାନ । ଆସିଣ ତା ପିତୃଗଣ ଘେନିଲେ ସନ୍ତୋଷରେ । ହରଷରେ ନେଲେ କିବା ସ୍ୱରସ ମନରେ । ୧୦ ।

ଆସ୍ଫର୍ଯ୍ୟଂ କାର୍ତ୍ତବୀର୍ଯ୍ୟାର୍ଜ୍ଜୁନଭୁଜବିପିନ ଚ୍ଛେଦଲୀଲା ପ୍ରଭଙ୍କଃ
କେୟୂରଗ୍ରନ୍ଥିରନ୍ଧ୍ରୋଜ୍ଜ୍ୱଳକଣରଣତ୍କାରଘୋରଃ କୁଠାରଃ ।
ତେଜୋଭିଃ କ୍ଷତ୍ରଗୋବପ୍ରଳୟସ୍ପୁଦ୍ଧତ ଦ୍ୱାଦଶାର୍କାନୁକାରଃ
କିଂ ନ ପ୍ରତ୍ୟଃ ଶ୍ରୁତିଂ ତେ ପୁରମଥନଧନୁର୍ଭଙ୍ଗ ପର୍ଯ୍ୟୁତ୍ସୁକସ୍ୟ ।

କାର୍ତ୍ତବୀର୍ଯ୍ୟ ନୃପତିର ଛେଦିବାରୁ ଭୁଜ । ଘର୍ଷିହୋଇ କୁଠାର ଉଠିହୋଇଲା ମହାତେଜ । ଦ୍ୱାଦଶ ସୂର୍ଯ୍ୟର ପ୍ରାୟ ତେଜ ଦେଖାଇଲା । କ୍ଷତ୍ରିୟ ବଂଶକୁ ସବୁ ନାଶି ପକାଇଲା । ଏହିସବୁ କଥା କିସ ନାହୁଁ ତୁହି ଶୁଣି । ଶିବଧନୁ ଭାଙ୍ଗିଅଛୁ ଅହ୍ଲାଦରେ ପୁଣି । ୧୧ ।

ଅତ୍ୟଗ୍ନି ର୍ଜମଦଗ୍ନି ସ୍ତ୍ରଶ୍ରମପରୈର୍ବେଦୈଃଶ୍ରୁୟତେ ଶ୍ରୋତ୍ରିୟୈଃ
ଶ୍ରୁତ୍ୟେ ଗୃହମହଂ ଯୁଭନ୍ତି ପତିଭିସ୍ତତ୍ରୋଦ୍ଭସୃସାକ୍ଷିଣଃ ।
ଇକ୍ଷ୍ୱାକୋରଥବା ଭୃଗୋର୍ଭଗବତୋ ଭାବୀ ସ୍ୱଧାବିପ୍ଳବଃ
ସ୍ୱାୟଂ ଯେନ ଶପେ ଶପେ ପରଶୁନାଂ ପତ୍ୟାପଶୁନାଂ ଶପେ ॥

ଜମଦଗ୍ନି ଅଟନ୍ତି ଯେ ଅଗ୍ନି ସମ ମୁନି । ବଇଦିକ ଆଶ୍ରମିକ ବ୍ରାହ୍ମଣି ସ୍ୱଜ୍ଞାନୀ । ଜାଣିଛନ୍ତି ଅହଂକାରୀ ରାଜାମାନେ ତାଙ୍କୁ । ବିପ୍ରକୁଳ କ୍ଷତ୍ରିକୁଳ ଧାର୍ଯ୍ୟୀ ଯେ ଏଥିକୁ ॥ ପିଣ୍ଡଲୋପ ହେବ ଆଜ ଇକ୍ଷ୍ୱାକୁ ବଂଶର । ବଂଶ ନାଶଯିବ କିବା ଭୃଗୁମୁନିଙ୍କର । ହେଉ ବେଦଅସ୍ତ୍ରେ ଅବା ପରଶୁ ଅସ୍ତ୍ରରେ । ପଶୁପତି ଅସ୍ତ୍ର ଘେନି ପଶିବ ସମରେ । ନିୟମ କରୁଛୁ ଶିବ ମୁଣ୍ଡେ ହସ୍ତଦେଇ । ଆବର ଏ ବେଦପୋଥି କୁଠାରକୁ ଛୁଇଁ ॥

କ୍ୱଯଃ ଦାଶରଥୀ ରାମୋ ମଦ୍ୟଶଶ୍ଚନ୍ଦ୍ରବାହୃତଃ ।
ପୁରାରେଃ କାର୍ମୁକଂ ଯେନ ଭଗ୍ନଂ ତତ୍ପୁତ ଭାର୍ଗବେ । ୧୩ ।

ଜୀବଥାଉଁ ଥାଉଁ ପଶୁ ରାମ ଭଗୁସୁତ । ଶିବଧନୁ ଭଙ୍ଗିଲ ଏ ବଡ଼ ଅଦ୍ଭୁତ । କହ ଦଶରଥ ପୁତ୍ର କେଉଁ ଠାରେ ଅଛି । ମୋ ହସ୍ତ ଚନ୍ଦ୍ରକୁ କେ ଯେ ବିନାଶ କରୁଛି । ୧୩ ।

ରାମଃ ସବିନୟଂ ।

ବାହ୍ୱୋର୍ବଲଂ ନ ବିଦିତଂ ନ ଚ କାର୍ମୁକସ୍ୟ
ତୈୟମ୍ବକସ୍ୟ ସୁତରାମୟମେବ ଦୋଷଃ ।
ତଚ୍ଚାପଲଂ ପରଶୁରାମ ମମକ୍ଷମସ୍ୱ ।
ଡ଼ିମ୍ଭସ୍ୟ ଦୋର୍ବିଲସି ତାନି ମୁଦେ ଗୁରୂଣାଂ । ୧୦ ।

ଶ୍ରୀରାମ ବୋଲନ୍ତି ଶୁଣି ପରଶୁରାମଙ୍କୁ । ନ ଜାଣଇ ମୁହିଁ ଶିବଧନୁ ବାହିମକୁ । ଅଟଇ ମୋହର ଯେଣୁ ଚଞ୍ଚଳ ପ୍ରକୃତ । କ୍ଷମାକର ବାରେ ମୋର ଦୋଷ ଭୃଗୁପତ । ଯେବେ ବାଳକଙ୍କ ବଳ ପ୍ରଭୁ ଏ ଦେଖନ୍ତି । ଗୁରୁଜନମାନେ ଆନନ୍ଦରେ ସୁଖି ହୁଅନ୍ତି । ୧୪ ।

ସ୍ପୃଷ୍ଟଂ ବାପି ନ ବା ସ୍ପୃଷ୍ଟଂ କାର୍ମୁକଂ ପୁରବୈରିଣଃ
ଭଗବନ୍ନାମୁନାଭଗ୍ନଂ ତ୍ୱଂ କରୋଷି କରୋମି କିଂ । ୧୫ ।

ଛୁଇଁ ନ ଛୁଇଁ ଭାଙ୍ଗିଲା ସେ ଶିବକୋଦଣ୍ଡ । ଧରୁ ଧରୁ ତଳୁ ଭାଙ୍ଗି ହେଲା ବେନିଖଣ୍ଡ ॥ ଭୋ ପରଶୁରାମ ତୁମ୍ଭେ ବିଚାର ମନରେ । ଏଥିରେ ମୋହର କିସ ଦୋଷ ଘଟିପାରେ । ୧୫ ।

ହାରଃ କଣ୍ଠେ ବିଶତୁ ଯଦି ବା ତୀକ୍ଷ୍ଣଧାରଃ କୁଠାରଃ
ସ୍ତ୍ରୀଣାଂ ନେତ୍ରାଣ୍ୟନୁବସତୁ ନଃ କଜ୍ଜଳଂ ବା ଜଳଂ ବା ॥
ଦପଶ୍ୟା ମୋଧୃତିମିହ ସୁଖଂ ପ୍ରେତଭର୍ତ୍ତୁର୍ମୁଖଂ ବା
ଯଦ୍ୱା ତଦ୍ୱା ଭବତୁ ନ ବୟଂ ବ୍ରାହ୍ମଣେଷୁ ପ୍ରବୀରାଃ । ୧୬ ।

ଶ୍ରୀରାମ ବୋଇଲେ ପଡ଼ୁ ଗଳେ ରତ୍ନହାର । ନୋହିଲେ ଗଳେ ପଡ଼ୁ ଏ ତୀକ୍ଷ୍ଣ କୁଠାର । ଆମ୍ଭ ନାରୀଙ୍କର ନେତ୍ର ପୁରୁ ଶୋକଜଳ । ନତୁବା ରଞ୍ଜିତ ହେଉ ସୁଢ଼ଳ କଜ୍ଜ୍ୱଳ । ହେଉ ପଛେ ଦୁଃଖ ଆମ୍ଭମାନଙ୍କୁ ଏଠାରେ । ଅଥବା ଏ ଜୀବ ପଛେ ଯାଉ ଯମପୁରେ । ଯାହା ହେଉ

ପଢ଼େ ରଣ ନ କରନ୍ତୁଁ ଅମ୍ଭେ । ପ୍ରଧାନ ମୁନି ବ୍ରାହ୍ମଣ ଅଟ ଯେଣୁ ତୁମ୍ଭେ । ୧୬ ।

ଅୟଂ କଣ୍ଠଃ କୁଠାରସ୍ତେ କୁରୁ ରାମ ଯଥୋଚିତଂ
ନିହନ୍ତୁଂ ହନ୍ତ ଗୋବିପ୍ରାନ୍ ଶୂରା ରଘୁବଂଶଜାଃ ୧୭ ।

ହେ ମୁନି ପରଶୁରାମ ଏ ତୁମ୍ଭ କୁଠାର । କର ବାଧ୍ୟ ଅନୁସାରେ ମୋ କଣ୍ଠେ ପ୍ରହାର ॥ ଯେତେ ବୀର ଜନ୍ମି ଥିଲେ ପୂର୍ବେ ରଘୁବଂଶେ । କେହି କେବେ କାହିଁ ଗୋରୁ ବ୍ରାହ୍ମଣେ ନ ହିଂସେ । ୧୭ ।

ବାଲ ସ୍ୱଭାବସୁଲଭେନ କୁତୂହଳେନ
କୃଷ୍ଣଂ ଧନୁର୍ଭଗବତୋ କୃତଭଙ୍ଗଧନ୍ୟ ।
ତତ୍ର ନୃପୁଙ୍ଗବ ମମଙ୍ଗଲମୀଦୃଶଂ ତୁ
ସଂବୃତ୍ତମତ୍ର ନ ମୟା ଗଣିତସ୍ତୁ ପାପୀଃ । ୧୮ ।

ଅଟଇ ମୋ ହର ଯେଣୁ ବାଳକ ସ୍ୱଭାବ । ଭାଙ୍ଗିଦେଲି କଉତୁକେ ତେଣୁ ଏ ଗାଣ୍ଡିବ । ଏଥିରେ ମୋ ଅମଙ୍ଗଳ କିଛି ହୋଇବ ବୋଲି । ଏହା ତ ପୂର୍ବେ ମୁହିଁ ଜାଣି ଯେ ନ ଥିଲି । ୧୮ ।

ରାମଂ ପ୍ରତି ପର୍ଶୁରାମଃ ।

ମହାସେନା ଯସ୍ୟ ପ୍ରମଦଯମଦଂଷ୍ଟ୍ରା ସହଚରୈଃ
ଶରୈର୍ମୁକ୍ତୋ ଜୀବନ୍ ଦ୍ୱିବିଧ ତେଜନ୍ମା ଦମନ୍ଦିବନ୍ ।
ଭୁଜାଭ୍ୟାଂ ଯେ ବୀରାନ୍ ଜୟନ୍ତପି ଦଂଷ୍ଟାନ୍ ଦସୂନତା
ମୟଂ ବୀରଃ କସ୍ୟ ଉ ସୃଜତିବିଷଦଂ ନା ତମଦାହୋ । ୧୯ ।

ପର୍ଶୁରାମ କହୁଛନ୍ତି ଶ୍ରୀରାମଙ୍କୁ ଚାହିଁ । ତୁମ୍ଭର କଥା କୁ ମୁହିଁ ଅଭୁତ ମଣଇଁ । ଏ ମୋର ବାଣ ଅଟଇ ଯମଦାଢ଼ ସମ । ଧାଇଁଲେ କଉତେକେ ମୁକ୍ତ ନୋହଇ ପ୍ରାଣ । ସେ ଧାର୍ତ୍ତିଙ୍କ ଯେବେ ହେଲେ ସବୁରୁ ଜନମ । ଚିହ୍ନିଦିନେ ତାହାଙ୍କର ସନ୍ତଜନ୍ମାନ୍ତ ॥ ଯଦି ହୋଇଣ ଯେତେ ଥିଲେ ପୃଥିବୀରେ । ଜିଣିଲି ତାହାଙ୍କୁ ସେହି ମୋ ଭୁଜବଳରେ । ତିଭୁବନେ ଜାଣନ୍ତି ଯେ ମୋ ବୀରପଣକୁ । ତୁ କେମନ୍ତେ ଚିହ୍ନି ଅବା ନପାରିଲୁ ତାକୁ । ୧୯ ।

ଅଥ ମୁଖ୍ୟେ ଦଂଶିତେ ପରଶୁରାମେ

ରାମଃ ପ୍ରାହ ।

ହେ ବ୍ରହ୍ମନ୍ ଭବତା ସମଂ ନ ଘଟତେ ସଂଗ୍ରାମବାର୍ତ୍ତାପି ନଃ
ସର୍ବେ ହୀନବଲାଃ ବୟଂ ବଲବତାଂ ଯୂୟଂ ସ୍ଥିତା ମୂର୍ଦ୍ଧନି ।
ଯସ୍ମାଦେକଗୁଣଂ ଶରାସନମିଦଂ ସୁବ୍ୟକ୍ତମୁର୍ବୀଭୁଜା
ମସ୍ମାକଂ ଭବତାଂ ପୁନର୍ନବଗୁଣଂ ଯଜ୍ଞୋପବୀତଂ ବଲଂ । ୨୦।

ରାମଚନ୍ଦ୍ର କହୁଛନ୍ତି ବ୍ରାହ୍ମଣ ଅପଣ। କେମନ୍ତେ କରିବୁଁ ଅମ୍ଭେ ତୁମ୍ଭ ସଙ୍ଗେ ରଣ ॥ ସହଜରେ ଅମ୍ଭେମାନେ ଅଟୁଁ ବଳହୀନ । ବଳବାନ ବୋଲି ତୁମ୍ଭର ଯେ ସନମାନ । ପ୍ରଥମ ବଳ ତୁମ୍ଭର ଘଟଇ ଅଟଇ । କ୍ଷତ୍ରିମାନଙ୍କର ବଳ ଧନୁ ଯେ ଅଛଇ । ନବଗୁଣ ଅଟଇ ଯେ ପଇତା ତୁମ୍ଭର । ତେଣୁ ବୋଲୁଅଛୁଁ ତୁମ୍ଭେ ଶ୍ରେଷ୍ଠ ବଳୀୟାର । ତୁମ୍ଭ ଧନୁରେ ଲାଗିଛି ଏକଗୋଟି ଗୁଣ । ସବୁ ଗୁଣେ ତୁମ୍ଭଠାରୁ ଅମ୍ଭେ ବଳହୀନ । ୨୦ ।

ପରଶୁରାମଃ ।

ଭସ୍ମୀକରେଣ ଖରକୀକର ହେ କୁମାର
ମଯ୍ୟାକ୍ଷିପନ୍ ଫୁଲ୍ଲପଦ୍ମେ ବେଙ୍କଟେଶଃ ।
ଦୃଷ୍ଟ୍ୱାଽସ୍ୟସ୍ଥଂ କୁଠମିଦେଽପ୍ୟର୍ପିତଂ ଶିରସ୍ୟ
ତଚ୍ଚାପଭଙ୍ଗମପି ହା ମଦୁକ୍ତଂ ଶୃଣୋମି । ୨୧ ।

କହନ୍ତି ଭୃଗୁସୁତ ଶୁଣ ପାଞ୍ଚ ବରୁ ତୋର । କି ଅସ୍ତ୍ର ଶିକ୍ଷା କରିଛୁ ବାଳକୁମର ॥ ଜ୍ଞାନ ଚର ପୃଥ୍ୱୀ ମୋର ଅଟଇ କଥା କରୁ । କିଂତାନ୍ତ ଅଜ୍ଞାନ ତୁମ୍ଭ ଦେଉଛ ଚଢ଼ିକାନ୍ତୁ ॥ ଅହଂକାର ଘେନି ମୋତେ କହୁଅଛୁ ହାସ୍ୟ । ଏ ଧନୁ ସାମାନ୍ୟ ବୋଲି କହୁଛୁ ପ୍ରକାଶ । ୨୧ ।

ପରଶୁସ୍ୱନଂ ପ୍ରଭୁ ସବନସ୍ୟ

ଦଶରଥଃ ।

ଦ୍ୱିଜତିଲକ ନମସ୍ତେମୁଞ୍ଚ ମୁଞ୍ଚ ପ୍ରକୋପଂ
କୁରୁ କରୁଣମିଦାନୀଂ ମାନସମ୍ମାନଶୌଣ୍ଡ
ବହସି ରୁଷମନର୍ଥଂ ପୁତ୍ରଭାଣ୍ଡେଽପି ରାମେ
ଜଗଦଭୟକଦାନସ୍ଥୂଲଲକ୍ଷେ ଭୁଜସ୍ତେ । ୨୨ ।

ପର୍ଶୁରାମେ ଗୃହି କରଯୋଡ଼ ଦଶରଥ । କହଇ ବିନୟ କରି ବଚନ ବହୁତ । ହେ ଦ୍ୱିଜ ତିଳକ ତୁମ୍ଭ ପାଦେ ନମସ୍କାର । କରି ଜଣାଉଛୁ ବାରେ କୋପ ଶାନ୍ତକର ॥ ତୁମ୍ଭେ ବୀରଶ୍ରେଷ୍ଠ ଏ ଜଗତ ମଧ୍ୟେ ସାର । ଆଶ୍ରିତ ଜନକୁ ଦିଅ ହେ ଅଭୟ ବର । ପୁତ୍ର ତୁଲ୍ୟ ମଣି ରାମେ କରନ୍ତୁ ଆଶିଷ । କ୍ଷମାକର ଦୋଷ କରି କରୁଣା ପ୍ରକାଶ ॥

ପୁରମ୍ଥନଧନୁର୍ବିମର୍ଦ୍ଦନୋତ୍ଥଂ,
ଵଦହଦହନିଶମସ୍ତି ତୀବ୍ରମର୍ଚ୍ଚିଃ ।
ରଘୁକୁଲଭବନେନ୍ଦ୍ବୀରପୁରୈ
ଧ୍ରୁବମିହଶାନ୍ତିମିଦଂ ଦ୍ରୁତଂ ନୟାମି । ୨୩ ।

ପର୍ଶୁରାମ କହିଲେ ଶୁଣରେ ଦଶରଥ । ଏ ଶିବ ଧନୁକୁ ଭାଙ୍ଗିଲା ଯେ ତୋର ସୁତ । ତହିଁରୁ ବାହାର ହେଲା କୋପ ଅଗ୍ନି ଜଳି । ଦିବା ରାତ୍ର ମୋ ଦେହକୁ ପକାଉଛି ଜାଳି । ଯେବେ ବରଷିବ ରଘୁ ବଂଶ ଅଶ୍ରୁଜଳ । ତେବେ ମୋର ହୃଦ ନଷ୍ଟେ ହୋଇବ ଶୀତଳ ।୨୩

ପରଶୁରାମଂ ପ୍ରତି ରାମଃ ।

ଭୂମାବଂ କସ୍ତୁଦେତଦ୍ବର୍ତ୍ତିବମିତ୍ଥଂତସ୍ତ ଦିତଂହାର୍ଥିତେ
ଯଦ୍ବାରେଣ ଭବାଦୃଶେନ ବଦତା ନିଃସପ୍ରକୁତ୍ତୋ ଜୟଂ ।
ତସ୍ମୋଽହଂ ନବବାହୁସିଦ୍ଧୃଶନିଦଂ ଘୋରଂ ଚ ବ୍ରତଂ
ତତ୍କ୍ରୋଧାଦ୍ୱିରମ ପ୍ରସୀଦ ଭଗବନ୍ ଜାତୈବ ପୂଜ୍ୟୋଽସି ନଃ

ପର୍ଶୁରାମ ବାକ୍ୟ ଶୁଣି କହନ୍ତି ଶ୍ରୀରାମ । ବାହୁବଳେ ଜିଣିଅଛ ତୁମ୍ଭେ ତ୍ରିଭୁବନ । ସସାଗର ଧରା ମଧ୍ୟେ ଅଛ ଏକ ବୀର । ନୃପବ

କରିଛ ପୃଥ୍ୱୀ -ଏକବିଂଶ ବାର ॥ ତେଣୁ ତୁମ୍ଭେ ବୀରଶ୍ରେଷ୍ଠ ଅଟ ଏ ଜଗତେ । ଅମ୍ଭେ ବାଳକ କି ଯୋଗ୍ୟ ତୁମ୍ଭର ସଙ୍ଗତେ । ବୀରବ୍ରତ ଅଟେ ଏକ ମହା ଭୃୟଙ୍କର । ଜଗତ ମଧ୍ୟେ ଅଖ୍ୟାତ ମାନ ଅଟେ ଯାର ॥ ଆମ୍ଭମାନଙ୍କ ମଧ୍ୟେ ଜାତରେ ବଡ଼ ଯେଣୁ । ପ୍ରସନ୍ନ ହୋଇଣ କ୍ରୋଧ ଶାନ୍ତ କର ମନୁ । ୨୪ ।

ପରଶୁରାମଃ

. ଅଃ ପାପ କ୍ଷତ୍ରିୟ ବୃତ୍ତମ୍ଭ ! ଜାଚୈବ ପୂଜ୍ୟ

ସ୍ତ୍ରେ ପରଶୁରାମଃ ।

ପର୍ଶୁରାମ କହନ୍ତି ଶୁଣରେ କ୍ଷତ୍ରିୟ ତମ୍ଭ । କାହିଁକି କହୁଛୁ ଆମ୍ଭ ଅଗ୍ରତରେ ଦମ୍ଭ । ଜାତରେ କେବଳ ପୂଜ୍ୟ ଅଟେ ମୁଁ ଜଗତେ । ବୀରପଣେ ନୁହଇ କି ତୁମ୍ଭର ସହିତେ ।

ଏତଛ୍ରୁତ୍ୱା ଲକ୍ଷ୍ମଣଃ ସକ୍ରୋଧମାହ ।

ଯୁଦ୍ଧେଜନ୍ମ ନାଦ୍ୟପ୍ରଭୃତି ମମ ରାମଃ ସ୍ୱୟମହଂ

ନ ପୁତ୍ରଃପୌତ୍ରୋ ବା ରଘୁକୁଳଭବାଂ ଚ କ୍ଷିତଭୁଜାଂ

ଅଧୀରଂ ଧୀରଂ ବା କଲୟତୁ ଜନୋ ମାଂସ୍ୱୟମୟଂ

ମହା ବନ୍ଧୋ ଦୁଷ୍ଟଦ୍ୱିଜଦମନଦୀକ୍ଷା ପରିକରଃ । ୨୬ ।

ଏ ବଚନ ଶୁଣି କହେ ସୁମିତ୍ରା ନନ୍ଦନ । ପର୍ଶୁରାମେ ଗୁହିଁ ଟେକାଧେ ବୋଲଇ ବଚନ ॥ ଜାଣିଥାଅ ନୁହଇ ମୁଁ ସୁମିତ୍ର ନନ୍ଦନ । କିବା ହୋଇନାହିଁ ପଛେ ରଘୁକୁଳେ ଜନ୍ମ ॥ ବୋଲନ୍ତୁ ପଣ୍ଡିତ ଅବା ମୂର୍ଖ ଜଛେ ମୋତେ । ସେ ପାଇଁ ଶୋଚନେ ମୋର ତଳେ ନାହିଁ ଚିତ୍ତେ ॥ ବ୍ରାହ୍ମଣ ଦମନ କଷ୍ଟେ କରିବଇଁ ମୁହିଁ । ଅଜଠାରୁ ଏହି ଦୀକ୍ଷା ଗ୍ରହଣ କଲଇଁ ।

ରାମ ସାନୁନୟଂ

ଶିଶୁନା ଲକ୍ଷ୍ମଣେନେଦଂ ଯଦ୍ଭାଷିତଦ୍ଦୁ ଛଲପ୍ୟତାଂ ।

ସଗ୍ରାମୋ ନାସ୍ତି ମେ ହନ୍ତା ସ୍ତ୍ରବେଷାଂ ତ୍ୱଂ ଶିରୋମଣିଃ ।୨୭।

ପୁଣି ବୋଲନ୍ତି ଶ୍ରୀରାମ କହଣ ବଚନ୍ୟ । ଶୁଣ ଦ୍ୱିଜମଣି ଦାବେ ଭବ ତାତ୍ତ୍ୱ ଥୟ ॥ ଲକ୍ଷ୍ମଣେ ଅଟଇ ଜାଣ ବାଳକ ଅଜ୍ଞାନ । ନ ଜାଣିବା ପଣେ କହେ ଏମନ୍ତ ବଚନ । ଆପଣ ଅଟନ୍ତି ସଜ୍ଜନ ଶିରୋମଣି । ଶତ୍ରୁ ନ ଧରନ୍ତୁ ତାର ଖୁଣ୍ଡମେଶା ବାଣୀ । ୨୬ ।

ପରଶୁରାମଃ

ସଦ୍ୟ ଦଶରଥନନ୍ଦେୟାଲ୍ଲଭ୍ୟପୁତ୍ରୈର୍ନିଷ୍ଟରୁଦ୍ଧି
ର୍ଜନକକୁଳକଳଙ୍କଦ୍ଧନ୍ଦ୍ୱନୈର୍ନିଜବର୍ଭିଃ ।
ନବରୁଧିରଲତାଭିଃ କ୍ରୁଦ୍ଧ ଲୀଲାଂଗତାଂ ତାଂ
ରଣଭୁବନଥ ରୌଦ୍ରୀଂ ରୁଦ୍ରଶିଷ୍ୟଃ କରୋମି ।୨୭।

ପରଶୁରାମ ବୋଇଲେ ହୋଇ କ୍ରୋଧପର । ମାରିବି ସମରେ ଦଶରଥ ନୃପବର । ଅଧର ଗୁରୁ ପୁତ୍ରକୁ ସଂହାର କରିବି । ଜନକ କୁଳକର ଯେ କବନ୍ଧ ନାଚୁଇବି ॥ ବୁହାଇବି ବହୁଳ ରକତର ନଦୀ । ମୁଣ୍ଡମାନ ଏକାଇବି କନ୍ଧଦେଶୁ ଛେଦି ॥ ପିଇ ଚଣ୍ଡୀଗଣ ତୋଷ ହୋଇବେ ରକତ । ଏହା କରିବି ମୁଁ ରୁଦ୍ରଶିଷ୍ୟ ହେବେ ସତ୍ୟ । ୨୭ ।

ଶ୍ରୀରାମଃ ।

ଜାତଃ ସୋଽହଂ ଦିନକରକୁଲେ କ୍ଷତ୍ରିୟଃ ଶ୍ରୋତ୍ରିୟେଭ୍ୟୋ
ବଶିଷ୍ଠମିତ୍ରାଦପି ଭଗବତୋ ଦ୍ରୁଷ୍ଟଦିବ୍ୟାସ୍ତ୍ରଚାରଃ ।
ଅସ୍ମିନ୍ ବଂଶେ କଥମୁତ୍ଭୁ ଜନ୍ମେ । ଦୁର୍ଯଶୋ ବା ଯଶୋ ବା
ବିପ୍ରେ ଶସ୍ତ୍ରଗ୍ରହେ ଗୁରୁତ୍ୱଃ ଯାନ୍ତିକ୍ୟାଦ୍ ବିଭେମି । ୨୮ ।

ବୋଇଲେ ଶ୍ରୀରାମ ଶୁଣ ଅହେ ଦ୍ୱିଜବର । ସୂର୍ଯ୍ୟବଂଶେ ଜାତ ମୁହିଁ କ୍ଷତ୍ରିୟ କୁମର ॥ ବିଶ୍ୱାମିତ୍ର ମୁନିଠାରୁ ପାଇଅଛି ଅସ୍ତ୍ର । ତେଣୁ କହ ବହୁତ ଆମ୍ଭର ଗୁରୁ ମିତ୍ର । ଏ ସୂର୍ଯ୍ୟବଂଶର ଯଶ ପ୍ରକାଶ ଜଗତ । ହେଉ ଅବା ନ ହେଉ ନିନ୍ଦା ପ୍ରଶଂସା ଖ୍ୟାତ । ନ କରିବ କେତେବେଳେ ବ୍ରାହ୍ମଣ ସଂହାର । ଏମନ୍ତ କଠିଣ କାର୍ଯ୍ୟ ଲାଗେ ବଡ଼ ଡର । ୨୮ ।

ସ୍ତ୍ରୀଣାଂ ପ୍ରବୀରଜନନୀ ଜନନୀତିବେବ
ଦେବୀ ସ୍ୱୟଂ ଭଗବତୀ ଗିରିଜାପି ଯସ୍ୟୈ ।
ତ୍ୱଦ୍ଧୋରଂଶୀକୃତବିଶାଖମୁଖାବଲୋକ-
ଚିନ୍ତା ବଦାର୍ଦ୍ଧହୃଦୟା ସ୍ପୃହୟାଂ ବଭୂବ । ୨୯ ।

ନାରୀଙ୍କ ମଧ୍ୟରେ ବୀରପୁତ୍ର ପ୍ରସବିନୀ । ଅଟନ୍ତି ଜଗତେ ଏକା ତୁମ୍ଭର ଜନନୀ । ଭଗବତୀ ମାତା ଅଟନ୍ତି ଯେ ହିମାଳୟା । ସେହି କରିଛନ୍ତି ଗର୍ବମୁଖା ପ୍ରଚ୍ଛ ଦୟା ॥ କର କଉଞ୍ଚ ପର୍ବତ ସଙ୍ଗେ ବହୁ ରଣ । ତହିଁ ଭେଦିଲେ ଯାଇଥିଲେ ବୀର ଷଡ଼ାନନ । ସେ କାର୍ତ୍ତିକ ଲଙ୍ଘା ପାଇ ତୁମ୍ଭ ସଙ୍ଗେ ହାରି । ପ୍ରବେଶିଲେ ଆସି ସେହି କ୍ଷଣି ମଧ୍ୟେ ପୁରି ॥ ଲଜ୍ଜିତା ହେଲେ ପାର୍ବତୀ ପୁତ୍ର ମୁଖ ଦେଖି । ଚିନ୍ତିତା ହୋଇଲେ ପୁଣି ହୋଇ ମନେ ଦୁଃଖି । ୨୯ ।

ଶ୍ରୀରାମଂ ପ୍ରତି ପରଶୁରାମଃ ।
ତଚ୍ଚାପମୀଶଭୁଜପୀଡ଼ନ ପୀତସାରଂ
ପ୍ରାଗସ୍ୟଭଜ୍ୟତ ଭବାଂସ୍ତୁ କାମିକ୍ଷମାଣଂ ।
ରାଜନ୍ୟକପ୍ରଧନସାଧନମଦ୍ଭୁଦୀୟ
ମାକର୍ଷ କାର୍ମୁକମିଦଂ ଗରୁଡ଼ଧ୍ୱଜସ୍ୟ । ୩୦ ।

ଭୃଗୁରାମ କହୁଛନ୍ତି ଶ୍ରୀରାମଙ୍କୁ ଶୁଣି । ଯେ ଶରକୁ ଦେବ ଶୂଳପାଣି ଥିଲେ ବହି ॥ ସେ ପୁଣି ବହୁକାଳର ପୁରୁଣା ଅଟଇ । ଆପେ ଆପେ ଭାଙ୍ଗି ଗଲା ବଳହୀନ ହୋଇ ॥ ବହୁ ପୁରାତନ ହେତୁ ଥିଲା ଯେ ଦୁର୍ବଳ । ଏ ଧନୁରେ ଗୁଣ ଦିଅ ଥିଲେ ଅଙ୍ଗେ ବଳ । ଯୁଦ୍ଧେ ସାଧି କଲି ଏ ଧନୁରେ କ୍ଷତ୍ରିଗଣ । ପୂର୍ବେ ଯାକୁ ବହିଥିଲେ ଦେବ ନାରାୟଣ ॥ ଦେଖ ଯେ ଧନୁକୁ ମୁହିଁ କରୁଛି ଧାରଣ । ଅଛି ଯେବେ ପରାକ୍ରମ କର ଆକର୍ଷଣ । ୩୦ ।

ରାମୋ ନାଟୟତି ।
ରାମସ୍ତଦାଦାୟ ଧନୁଃ ସହେଳଂ
ବାଣଂ ଚ ସନ୍ଧୋକ୍ୟ ଯଦା ଦେର୍ଘ

ଭୀତ ସ୍ୱ ସାଂଖ୍ୟନୁକରଧ୍ୱଜୋ ବାଃ—
ଗତିଂ ପ୍ରଚଚ୍ଛେଦ ଚ ଭାର୍ଗବସ୍ୟ । ୩୧ ।

ଏତେ କହୁଣ ଧନୁକୁ ଦିଅନ୍ତେ ବଢାଇ । ଟେରଣ ଶ୍ରୀରାମ ତହିଁ ଗୁଣ ଦେଲେ ନେଇ ॥ ଆକର୍ଷିଲେ ସେ ଧନୁକୁ ଯେତେବେଳେ ରାମ । କନ୍ଦର୍ପ ତୁଲ୍ୟ ସୁନ୍ଦର ଦିଶିଲା ବଦନ । କରି ବ୍ରହ୍ମବଟେ ଭସ୍ମ ପ୍ରଭୁ ରଘୁବୀର । ଛେଦିଲେ କ୍ରୋଧାଦି ଶତ୍ରୁ ପରଶୁରାମର । ୩୧ ।

ସୀତା ନାଠଯୁକ୍ତ ।

ତଥାପମାକର୍ଷିତ ସା ତଦାନୀ
ମାକାରଗୁ ପ୍ରାପି ବିଶାଳନେତ୍ରା ।
ସ ସୂକ୍ଷ୍ମମୈଷିଷ୍ଟ ବିଦେହକନ୍ୟା
କନ୍ୟାଂକମନନ୍ୟାଂ ପରିଶେଷ୍ୟତୀତ । ୩୨ ।

ଆକର୍ଷିଲେ ଯେତେବେଳେ ରାମଚନ୍ଦ୍ର ଧନୁ । ବିଶାଳନୟନା ସୀତା ଲକ୍ଷ୍ୟ କରିଲେ ତନୁ । ଭାବିଲେ ଶ୍ରୀରାମ ଆନ କନ୍ୟା ବିଭା ହେବେ । ତେଣୁ ସୀତା ଗୃହିଁଲେ ରାମଙ୍କୁ ଈର୍ଷା ଭାବେ । ୩୨ ।

କନ୍ୟା କାଚିଦହାପି କର୍ମଣି ପଣଃ ସ୍ୟା ଦିତ୍ୟସୂୟାବଲ-
ସ୍ତ୍ରୀତାପାଙ୍ଗମଙ୍ଖୁମାଂସଳଚଳଚ୍ଚେଂ ହ୍ଲାବଲତ୍ରାଂଦିବଂ ।
ଲୁବାଣେନ ରଘୁନନ୍ଦନେନ ଚକୃଷେ ନାରାୟଣୀୟଂ ଧନୁଃ ।
ସଂଧାୟାଥଶରଷ୍ଟଭାର୍ଗବଗତଛେଦାଦନେ ଘୀକୃତଃ । ୩୩ ।

ଏହାପର ଭାବ ମନେ ଭାବି ବଇଦେହୀ । ଚାହାଁଇଲେ ବାଙ୍କନେତ୍ର କୋଣୁଁ ଈର୍ଷା ବହି । ସେ ନୟନ ମଧୁଁ ବାହାରିଲା ଏକ ଜ୍ୟୋତି । ନାଶିବ କି ଆକାଶ ପାତାଳ ଅବା କ୍ଷିତି । ଏହିକାଳେ ରାମ ବଇଷ୍ଣବୀ ଧନୁ ଆଣି । ପ୍ରହାରିଲେ ଏକ ବାଣ ଉଠାଇଣ ଟାଣି । ତହୁଁ ସେ ଅମୋଘବାଣ ବେଗେ ଚଳି ଗଲା । ଯାଇଣ ମୁନିଙ୍କ ସ୍ୱର୍ଗପଥ ନାଶେ-ଦିଲା । ୩୩ ।

ଭାର୍ଗବଃ ସାନୁନୟଂ ।

ଯଃ କାର୍ତ୍ତିବୀର୍ଯ୍ୟସ୍ୟ ଭୁଜାନ୍ ସହସ୍ରଂ
ଚିଚ୍ଛେଦ ବୀରୋ ଯୁଧି ଜାମଦଗ୍ନ୍ୟଃ ।
ସସାୟକେ ରାମକରାଧିରୂଢେ
ବ୍ରାହ୍ମଣ୍ୟ ଏବ ପ୍ରଣୟୀ ବଭୂବ । ୩୪ ।

ଯେଉଁ ପର୍ଶୁରାମ କ୍ଷତ୍ରୀ ଯୁଦ୍ଧରେ ପ୍ରବେଶି । କାଟି କୁଠାର ଘାତେ ସହସ୍ର ଭୁଜ ନାଶି । ସେ ବଇଷ୍ଣବା ଧନୁକୁ ଶ୍ରୀରାମ ଧଇଲେ । ସେହି ବୀର ପୂର୍ବପର ବ୍ରାହ୍ମଣ ହୋଇଲେ । ତତ୍କ୍ଷଣେ ବିନୟୀ ହେଲେ ଛାଡ଼ି ତମୋଗୁଣ । ଶ୍ରୀରାମ ସହିତ ପ୍ରେମ କଲେ ଛାଡ଼ି ଠାଣ । ୩୪ ।

ଧାବଦ୍ଧୂର୍ଜଟିଧର୍ମପୁତ୍ରପରଶୁକ୍ଷୁଣ୍ଣାଖିଳକ୍ଷତ୍ରସୃ-
କ୍ଶ୍ରେଣୀଶ୍ରୋଣିତପିଚ୍ଛିଳା ବସୁମତୀ କୋଽସ୍ୟାମଧାସ୍ୟତ୍ପଦଂ ।
ତ୍ରୈଲୋକ୍ୟାଭୟଦାନଦକ୍ଷିଣଭୁଜାବଷ୍ଟମ୍ଭଦବ୍ୟୋଦୟୋ
ଦେବୋଽୟଂ ଯଦିନହ୍ୟର୍କକୁଳୈକତିଳକୋନପ୍ରାଭବିଷ୍ୟଦ୍ୟଦି ।

ଏ ପରଶୁରାମ ଶିବଙ୍କର ଧର୍ମପୁତ୍ର । ଯେନ କୁଠାର କଲେ ସଂଗ୍ରାମେ କ୍ଷତ୍ରି ହତ । ଏକାବେଳେ କ୍ଷତ୍ରବଂଶ ହୋଇଗଲେ ପଦା । ରକତରେ ବସୁମତୀ ହୋଇଗଲା ଓଦା । ହେବାରୁ ଖସଡ଼ା କେହି ନ ପାରିଲେ ଚଳି । ଉଦେ ହେଲେ ରାମ ସୂର୍ଯ୍ୟବଂଶେ ସୂର୍ଯ୍ୟପରି । ତାହାଙ୍କର ଏ ବିଶାଳ ଭୁଜ ପ୍ରସାଦରେ । ତ୍ରିଭୁବନ ଜନ ରହିଲେ ଅପ୍ରମାଦରେ । ହୋଇ ନ ଥାନ୍ତେ ଯଦ୍ୟପି ଉଦେ ରଘୁନାଥ । ପୃଥ୍ୱୀ ହୋଇଥାନ୍ତା ନିଷ୍ଟପୂ କର୍ଦ୍ଦମ ଯୁକ୍ତ । ୩୫ ।

ଜାମଦଗ୍ନି ଚରଣେ ପତିତୋ ରାମଃ ।

ଉତ୍ପତ୍ତିର୍ଜମଦଗ୍ନିତଃ ଭଗବାନ୍ ଦେବଃ ପିନାକୀ ଗୁରୁ-
ର୍ବୀର୍ଯ୍ୟଂ ତେ ନ ଗତଂ ଗିରାମନୁପଥଂ ବ୍ୟକ୍ତଂ ହି ତତ୍କର୍ମଭିଃ ।
ତ୍ୟାଗଃ ସପ୍ତସମୁଦ୍ରମୁଦ୍ରିତମହୀନିର୍ବ୍ୟାଜଦାନାବଧିଃ
ସତ୍ୟଂବ୍ରହ୍ମତପୋନିଧେର୍ଭଗବତଃ କିଂକିଂ ନ ଲୋକୋତ୍ତରଂ

ଏମନ୍ତ ସମୟେ ବେଗେ ଉଠି ରଘୁନାଥ । ପର୍ଶୁରାମଙ୍କ ଚରଣେ ନମିଲେ ତୁରିତ ॥ ବୋଇଲେ ତୁମ୍ଭର ପିତା ଜମଦଗ୍ନି ଋଷି । ଗୁରୁ ପୁଣି ଅଟନ୍ତି ଯେ କଇଳାସ ବାସୀ ॥ ବିକ୍ରମ କଥା ଅବର କି କହିବ ଅବା । ମୁଖରେ ବ୍ୟକତ କରି ଯାହା ନ ପାରିବା ॥ ସପ୍ତଦ୍ୱୀପା ମହୀ ଯେଣୁ କରିଅଛ ଦାନ । ଅକପଟ ସ୍ନେହେ ଦ୍ୱିଜେ କରିଛ ଅର୍ପଣ ॥ ସତ୍ୟଅଟେ ତବ ତପ ବ୍ରତ ବେଦ ଧର୍ମ । କରିଛ ଜଗତେ କେତେ ଅଦଭୁତ କର୍ମ । ୩୬ ।

ପରଶୁରାମଃ ସଦୟଂ ।
ଶ୍ଲାଘ୍ୟବ୍ରତାରଂ ରଘୁନନ୍ଦନସ୍ୟ
ତଦଙ୍ଗମାକୃଙ୍ଗ୍ୟ ତତୋଽତିଗାଢ଼ଂ ।
ବିନୟସ୍ୟ ତସ୍ମିନ୍ ଜମଦଗ୍ନି ସୂନୁ
ସ୍ନେହେନ ମହତ୍ ଯାତ୍ରି ବଧାନି ଭୂତଃ । ୩୭ ।

ଜାଣିଲେ ପରଶୁରାମ ବିଷ୍ଣୁ ଅବତାର । ଆଲିଙ୍ଗନ କଲେ ଶ୍ରୀରାମଙ୍କୁ ତତକାଳ । ଥିଲା ବିଷ୍ଣୁ ତେଜ ଯାହା ଆପଣା ଦେହରେ । ତତକ୍ଷଣେ ଅଇଲା ପୁଣି ସେହି ରାମଠାରେ । ୩୭ ।

ଯତୌ ରାମଂ ପରିଷ୍ୱଜ୍ୟ ଭାର୍ଗବଃ ସ୍ୱୀକୃମାଶ୍ରମଂ
ରାଜାପି ସହ ରାମାଦ୍ୟୈଃ ପୁତ୍ରୈରୁଦ୍ଧର କୋଶଲାଂ । ୩୮ ।

ବୋଲକରି ଶ୍ରୀରାମଙ୍କୁ ସେ ପରଶୁରାମ । ଘେନିଗଲେ ଆନନ୍ଦରେ ଆପଣା ଆଶ୍ରମ । ଅତି ଆନନ୍ଦରେ ତହୁଁ ରାଜା ଦଶରଥ । ପୁତ୍ରଙ୍କୁ ଘେନି ଚାଲିଲେ ଅଯୋଧ୍ୟା ତୁରିତ । ୩୮ ।

ଲବ୍ଧ୍ୱା ଗତଂ ପରଶୁରାମମୁନେଃ ସକାଶ-
ସ୍ୟାନନ୍ଦ୍ୟ ସର୍ବ ସୁଜନାନ୍ ପିତୃମାତୃବର୍ଗ୍ୟାନ୍ ।
ସମ୍ମାନ୍ୟ ମାନ୍ୟତମେବାପ୍ରବୁଦ୍ଧସ୍ୱଜାତନ୍
ସିଂହାସନଂ ନିଜ ପୁରଂ ପ୍ରଜଗାମ ରାମଃ । ୩୯ ।

ପର୍ଶୁରାମ ଶରେ ସ୍ୱର୍ଗ ପଥ ନିରୋଧିଲେ । ସାଧୁଜନଙ୍କୁ ଶ୍ରୀରାମ ନମ-ସ୍କାରୀ କଲେ । ପିତୃ ମାତୃ ବଂଶଙ୍କୁ ଯେ ସନମାନ କରି । ଆବର ପୂଜିଲେ ଗୁରୁଜନ ଆଦି କରି ॥ ନିଜବଂଶ ନୃପତିଙ୍କୁ ମାନ୍ୟ କରି ରାମ । ଆନ-ନ୍ଦରେ କଲେ ନିଜ ଦେଶକୁ ଗମନ । ୩୯ ।

ପୁତ୍ରୌ ସମର୍ପ୍ୟ ସ ମୁନି ରାଜ୍ଞା ତେନ ସୁପୂଜିତଃ
ବିଶ୍ୱାମିତ୍ରଃ ସ ଶିଷ୍ୟୈସ୍ତୁଷ୍ଟ ସଦ୍ୱଯାତଃ ସ୍ୱମାଶ୍ରମଂ ।୪୦।

ଫେରନ୍ତେ ବେନି ପୁତ୍ରଙ୍କୁ ମୁନି ସମର୍ପଣ । ରାଜା କଲେ ପୂଜା ବିଶ୍ୱାମିତ୍ରଙ୍କ ଚରଣ । ଶିଷ୍ୟଙ୍କୁ ସଙ୍ଗରେ ଘେନି ଆଶ୍ରମକୁ ଗଲେ । ଆନନ୍ଦ ମନରେ ନିଜ ମନ୍ଦିରେ ମିଳିଲେ । ୪୦ ।

ଅତ୍ରାନ୍ତରେ ଜନକଜାରଘୁନନ୍ଦନୌ ଚ
ଦୃଷ୍ଟ୍ୱା ଚିରାନ୍ ମଦନ ବାଣନିପୀଡ଼ିତାଙ୍ଗୌ ।
ଗନ୍ତାସ୍ତଶୈଳଶିଖରଂ ଖରରଶ୍ମି ମାଲୀ
ହର୍ଷାତ୍ ପପାତ ସଲିଲେ ଚରମସ୍ୟସିନ୍ଧୋଃ । ୪୧ ।

ଏହି ସମୟରେ ସୀତା ରଘୁନାଥଙ୍କର । ମଦନ ବାଣରେ ଅଙ୍ଗ ହୋଇଲା ଜର୍ଜର । ଜାଣି ଏହା ଦିନମଣି ବେଗେ ଚଳିଗଲେ । ଅସ୍ତ-ଗିରି ଶିଖରରେ ଅରୋହଣ କଲେ । ଆନନ୍ଦ ମନରେ ପୁଣି ତହୁଁ ଚଳିଯାଇ । ପଶ୍ଚିମ ସମୁଦ୍ର ଜଳ ମଧ୍ୟେ ବୁଡ଼ିରହି । ୪୧ ।

ଅସ୍ତଂ ଯାତେ ସପଦି ନଳିନୀବାନ୍ଧବେ ସିନ୍ଧୁପୂରେ
ପ୍ରାଚୀଭାଗେ ପ୍ରମଦମୁଦିତେ ପଦ୍ମାନାରଙ୍ଗକଲ୍ପେ
ରାମଂ କାମଂ ଗୁରୁଜନଗିରା ମନ୍ଦିରଂ ସୁନ୍ଦରଂ ସ୍ୱଂ
ରମ୍ଭୋରୁସ୍ତଂ ଜନକତନୟା ନନ୍ଦୟନ୍ତୀ ଜଗାମ । ୪୨ ।

ଅସ୍ତ ହୋଇଗଲେ ଯେତେବେଳେ ଦିନମଣି । ପଦ୍ମିନୀଙ୍କ ପରିପୂର୍ଣ୍ଣ ଦିଶେ ଦିଗଠାଣି । ଦେଖୁ୨ ପୂର୍ବଦିଗେ ଚନ୍ଦ୍ର ଉଦେ ହେଲେ । ଗୁରୁଜନଙ୍କ ଆଜ୍ଞାରେ ଜାନକୀ ଚଳିଲେ । ଗୃହେ ପ୍ରବେଶିଣ ଯେ ଆନନ୍ଦ ମନେ ରହି । ଲଭିଲେ ମନ୍ଦିରେ ପୁଣି ଶ୍ରୀରାମଙ୍କୁ ଯାଇଁ । ୪୨ ।

ପ୍ରାଚୀଭୃତେ ସବିତେ ତରଣୌବିରହିଣୀକ୍ଲାନ୍ତମୁଦ୍ରେ ସମୁଦ୍ରେ
ନିଦ୍ରାଲୌ ନୀରଜାଲୌ ବିକଶତି କୁମୁଦେ ଚକ୍ରବାକେ ସଶୋକେ ।
ଆକାଶେ ସାବକାଶେ ତମସି ଶମମିତେ ନିର୍ବିକାରେ ଚକୋରେ
କନ୍ଦର୍ପେ ନଲ୍ପଦର୍ପେ ବିଚରତି କିରଣୈ ଶର୍ବରୀସାର୍ବଭୌମ ॥

ଏମନ୍ତ ସମୟେ ସୂର୍ଯ୍ୟ ବିରହେ ଉଦୟ । ସମୁଦ୍ରେ ଉଠିଲା ଜୁହାରର ଉଚ୍ଛାଳୟ । ପଦ୍ମପୁଷ୍ପଗଣ ତହୁଁ ହୋଇଲେ ମୁଦ୍ରିତ । କୁମୁଦିନୀଗଣ ହୋଷେହେଲେ ପ୍ରସ୍ଫୁଟିତ ॥ ଶୋକରେ ଆକୁଳ ଚକ୍ରବାକପକ୍ଷୀ ହେଲ । ପାଇ ଅବସର ଆକାଶ ନିର୍ମଳ ହେଲା । ବିନାଶ ପ୍ରାପତ ହେଲା ଅନ୍ଧକାର ଘୃତ । ଚକୋର ପକ୍ଷୀ ବିକାର ରହିଲ ଟୁଟିତ । ଅତି ପ୍ରବଳ ହେଲ କନ୍ଦର୍ପ ଦର୍ପଗୁଣ । ଆକାଶକୁ ଆଚ୍ଛାଦିଲା ଚନ୍ଦ୍ରମା କିରଣ । ୪୩ ।

ସ୍ୱୈରଂ କୈରବକୋରକାନ୍ ବିଦଳୟନ୍ ଯୂନାଂ ମନଃଖେଦୟ-
ନ୍ନମ୍ଭୋଜାନି ନିମୀଳୟନ୍ ମୃଗଦୃଶାଂ ମାନଂ ସମୁନ୍ମୂଳୟନ୍ ।
ଜ୍ୟୋତ୍ସ୍ନାଂ କନ୍ଦଳୟନ୍ ତମଃ କବଳୟନ୍ନମ୍ଭୋଧି ମୁଲ୍ଲୋଳୟନ୍
କୋକାନାକୁଳୟନ୍ ଦିଶୋ ଧବଳୟନ୍ନିନ୍ଦୁଃ ସମୁଜ୍ଜୃମ୍ଭତେ । ୪୪ ।

ଚନ୍ଦ୍ରମା ଉଦୟ ବିକଶିଲେ କୁମୁଦିନୀ । ଖେଦହେଲା ହୃଦେ ଯୁବା ଯୁବକ କାମିନୀ । ହୋଇଲେ ମଳିନ ପଦ୍ମପୁଷ୍ପ ଗୁଣମାନ । ନାରୀ-ମାନଙ୍କ ହୃଦରେ ତୁଟିଗଲା ମାନ । ଏହାଠାରେ ମିଳି ଶୀତଳ କିରଣ ରାଶି ଅନ୍ଧକାର ଶବଦକୁ ବେଗେ ଦେଲା ନାଶି । ସମୁଦ୍ର ଉଚ୍ଛୁଳି ଦିଗ ଦିଶିଲା ଧବଳ । ଚକ୍ରବାକ କୁଳ ଶୋକେ ହୋଇଲେ ଆକୁଳ । ୪୫ ।

ଅଦ୍ୟାପି ସ୍ତନଶୈଳଦୁର୍ଗବିଷମେ ସୀମନ୍ତିନୀନାଂ ହୃଦି
ସ୍ଥାତୁଂ ବାଞ୍ଛତି ମାନ ଏଷ ଧିଗିତି କ୍ରୋଧାଦିବାଲୋହିତଃ ॥
ଉଦ୍ୟନ୍ ଦୂରତରପ୍ରସାରିତକରଃ କର୍ଷତ୍ୟସୌ ତତ୍କ୍ଷଣାତ୍
ଫୁଲ୍ଲତ୍କୈରବକୋଷନିଃସରଦଳିଶ୍ରେଣୀକୃପାଣଂ ଶଶୀ । ୪୬ ।

ଗିରି ଶୃଙ୍ଗ ପରାୟେ ଥିବାରୁ ସ୍ତନଦ୍ୱୟ । ହୋଇଛନ୍ତି ତେଣୁ ବିଷମ ତାଙ୍କ ହୃଦୟ । ରହିବାପାଇଁ ତହିଁରେ ବଳାଇଛ ମନ । ଜାଣି ମୋ

ଉଦୟ ପର୍ଯ୍ୟନ୍ତ ଏହିମାନ ॥ ଏମନ୍ତ ପ୍ରକାରେ ବହି କ୍ରୋଧ ନାଶାକର । ବଢ଼ାଇ ଦେଲା ଦୂରକୁ ଅପଣାର କର । ଫୁଟିଥିବା କଇଁ ଫୁଲେ ଅସିଣ ଭ୍ରମର । କାଟେ କ. ମାନକୁ ସେହି ଛୁରୀରେ ଶରୀର ॥

ଶ୍ରୀରାମଃ ସଖୀଂ ପ୍ରତି

କର୍ପୂରୈଃ କିମପୂରିତଂ କିଂ ମଲୟଜେ ରାଲେପି କିଂ ପାରଦୈ
ରକ୍ଷାଲି ସ୍ଫଟିକାନ୍ତରୈଃ କିମଘଟି ଦ୍ୟାବାପୃଥିବ୍ୟୋର୍ବପୁଃ ।
ଏତତ୍ତର୍କୟ କୈରବକ୍ଲମହରେ ଶୃଙ୍ଗାରଦୀକ୍ଷାଗୁରୌ
ଦିକ୍କାନ୍ତାମୁକୁରେ ଚକୋରସୁହୃଦି ପ୍ରୌଢ଼େ ତୁଷାରଦ୍ୟୁତି ।୪୬।

ସଖୀମାନଙ୍କୁ ଅନାଇ ବୋଇଲେ ଶ୍ରୀରାମ । କର୍ପୂରେ ଲିପ୍ତ ହୋଇଣ ପୁରିଛି ଚନ୍ଦନ । ସ୍ଫଟିକେ ନିର୍ମିତ କିବା ପାରାରେ ଧଉତ । ପୃଥିବୀ ଆକାଶ ଦେହ ଦିଶେ ଏହିମତ ॥ ତୁମ୍ଭେ ସହଚରୀଗଣେ କର ଅନୁମାନ । କୁମୁଦର ଦୁଃଖହରେ ନିଶାକର ଜାଣ । ସେ ପୁଣି ଅଟଇ ଶୃଙ୍ଗାରର ଦୀକ୍ଷାଗୁରୁ । ରମଣୀ ମନ ହରଣ କରଇ ଦୂରରୁ । ଆବର ଚକୋର ପକ୍ଷୀର ପରମ ମିତ୍ର । ମୁକୁର ପୂର୍ବ ଦିଗରୁ ହୋଇଛି ଉଦିତ । ଯେତେ-ବେଳେ ଉଦେ ହୁଏ ପ୍ରୌଢ଼ାବସ୍ଥା ତାର । କରେ ଶୀତଳ କିରଣ ଜଗତେ ବିସ୍ତାର । ୪୬ ।

ପଞ୍ଜରସ୍ଥିତା ମନ୍ଦିର ସାରିକା ସଖୀନାଂ ଗମନାୟ
ଆଶିଷଃ ପଠତି ।

ଚକ୍ରକ୍ରୀଡ଼ାକୃତାନ୍ତସ୍ତିମିରଚୟତନୂସ୍ପର୍ଶସଂହାରଚକ୍ରଂ
କାନ୍ତଃସଂଯୋଗସାକ୍ଷୀ ଗଗନସରସି ଯୋରାଜତେ ରାଜହଂସଃ ।
ସମ୍ଭୋଗରମ୍ଭକୁମ୍ଭଃ କୁମୁଦବନବଧୂବୋଧନିଦ୍ରା ଦରିଦ୍ରୋ
ଦେବଃକ୍ଷୀରୋଦଜନ୍ମା ଜୟତି ରତିପତେର୍ବାଣନିର୍ବାଣଶାଣଃ ।୪୭

ଥାଇ ପିଞ୍ଜରରେ ଶାରୀ ଏମନ୍ତ କହଇ । ଶ୍ଳୋକପଢ଼ି ଆଶୀର୍ବାଦ କରେ ଯିବାପାଇଁ । ଚକ୍ରବାକ ପକ୍ଷୀକ୍ରୀଡ଼ା ବିନାଶକୁ ଯମ । ଅନ୍ଧକାର ବିନାଶନେ ଯେହୁ ଚକ୍ରସମ । ହୋଇଥାଏ କାନ୍ତା ସଂଯୋଗକୁ ସାକ୍ଷୀପର

ରାଜହଂସ ପ୍ରାୟ ଅଛେ ଗଗନ ବିହାର ॥ ହୁଏ ପୂର୍ଣ୍ଣକୁମ୍ଭ ପର ସନ୍ଧ୍ୟେତ ଆରମ୍ଭେ । ବିକଶିତ ହୁଅନ୍ତି ଏ କୁମୁଦିନୀ ଯେବେ ॥ ତେବେ ରଯାଣ ହୁଅଇ କନ୍ଦର୍ପର ବାଣ । ଜୟଯୁକ୍ତ ହୁଅନ୍ତୁ ଭୂରତେ ଭଗବାନ ।

ଇତ୍ଥଗ୍ଭ୍ୱା ସଖୀଞ୍ଚୁ ଗତାସୁ ।

ଅଙ୍କେ କୃତ୍ୱା ଜନକତନୟାଂ ଦ୍ୱାରକୋଟେ ସ୍ତଠାନ୍ତାତ୍
ପର୍ଯ୍ୟାଙ୍କାଙ୍କେ ବିଫୁଲ୍ଲପୁଲକୋ ରାଘବୋ ନମ୍ରବକ୍ତ୍ରାଂ ।
ବାଣାନ୍ ପଞ୍ଚ ପ୍ରବଦତି ଜନଃ ପଞ୍ଚବାଣୋଽପ୍ରମାଣୈ
ବାଣୈଃ କିଂ ମାଂ ପ୍ରହରତି ଶନୈର୍ବ୍ୟାହରନ୍ନାନନାଂ୍ସ୍ମ । ୪୮ ।

ଲଜ୍ଜାଶିଳା ଚନ୍ଦ୍ରମୁଖୀ ଜନକତନୟା । ଦେଖି ଦ୍ୱାର ନିକଟରେ ରଘୁନାଥ ସ୍ନୟା । କହନ୍ତି ଯେ ଲୋକ କନ୍ଦର୍ପର ପଞ୍ଚବାଣ । ଜାଣିଲି ସେ କଥା ନିଷ୍ଟେ ଏବେ ଅପ୍ରମାଣ । ଚାହମ୍ଭର ଯେଣୁକରେ ସେ ବାଣ ପ୍ରହାର । ଅସଂଖ୍ୟବାଣ ହୃଦୟେ ଲଗଇ ମୋହର । ଏତେକହି କୋଳକରି ପଲଙ୍କ ଉପରେ । ବସାଇଲେ ନେଇ ଅତି ଆନନ୍ଦ ମନରେ । ୪୮ ।

କାପଟେନ ।

ଭ୍ରାନ୍ତ ସ୍ୱ ଚଓସ୍ଥିତରାମଚନ୍ଦ୍ରଂ ସା ରୁନ୍ଧତୀ ନିର୍ଗମଶଙ୍କୟେବ ।
ସ୍ତନୋପକଣ୍ଠାପିତପାଣିପଦ୍ମା ସଂଜାତନିଦ୍ରା ହରିଣାୟତାକ୍ଷୀ । ୪୯ ।

ହୃଦୟ ପ୍ରାଣବଲ୍ଲଭ କାଳେ ଯିବେ ଛାଡ଼ି । ଏହିଭୟେ କରେ କର ରଖାଇଲେ ଯୋଡ଼ି । ରଖି ହୃଦେ କରପଦ୍ମ ଜନକନନ୍ଦନୀ । ନିଦ୍ରାଗଲେ କପଟରେ ହରିଣୀନୟନୀ । ୪୯ ।

ସୀତ ବକ୍ଷସ୍ଥଲସ୍ଥଂ ଭ୍ରମରପ ଲୋକ୍ୟ ରାମୋ ଭାବୟନ୍ତ୍ରି ।
ମଦନଦହନଶୁଷ୍ୟତ୍କାନ୍ତକାନ୍ତାକରାଗ୍ରେ
ହୃଦି ମଲୟଜପଙ୍କେ ଗାଢ଼ଲଗ୍ନାଙ୍ଗୁଲୀଭିଃ ।
ଉପରିବଡତପଙ୍କୋ ଲକ୍ଷଠେଡଃଲାଞ୍ଛମଗ୍ନଃ ।
ଶରଇବ କୁସୁମେଷୋରେଷପୁଙ୍ଖାବଶେଷଃ । ୫୦ ।

ଶୁକ୍ଳହୃଦସ୍ପନ୍ଦଶ୍ରୀ କାମିନୀ ଜନମାନଙ୍କେ । ଲାଗିଛି ଚନ୍ଦନ ପୁଣି ଯେଉଁ ବକ୍ଷସ୍ଥଳେ । ଲଗିବାରୁ ଗାଢ଼େ ଭ୍ରମରର ପାଦ ବେନି । ପଯଦ୍ୱୟ ବିସ୍ତାର ହେଲେ ଉଚ୍ଚ ଗାମିନୀ । ଦେଖି ରାମଚନ୍ଦ୍ର ନିଜ ହୃଦରେ ବିଚାର । ଶେଷ ଶର କନ୍ଦର୍ପର ଅଟଇ ଯେ ଅଳି । ଧର ଅଭ ନୋଧେ ରତିପତି ଏହି ଶର । ଲକ୍ଷ୍ୟକରି ବକ୍ଷସ୍ଥଳେ କଲେକ ପ୍ରହାର । ୫୦ ।

ତଦାବସରେ ।

ପୃଥୁଲଜଘନଭାରଂ ମନ୍ଦମାଲୋଲୟନ୍ତୀ
ମୃଦୁଚଲଦଲକାଗ୍ରା ପ୍ରସ୍ଫୁରତ୍କର୍ଣ୍ଣପୂରା ।
ପ୍ରକଟିତଭୁଜମୂଳା ଦର୍ଶିତସ୍ତନ୍ୟାଲ୍ପଲା
ପ୍ରମଦୟତି ପତିଂ ଦ୍ରାଗ୍‌ଜାନକୀ ବ୍ୟାଜନିଦ୍ରା ୫୧ ।

ଧୀରେ ଧୀରେ ଚଳାଇଲେ ବିଶାଳ ଜଘନ । ଶିର ଅଳକାକୁ ଆସ୍ତେ ୨ କମ୍ପାଇଣ । ବେଲଜାଣି ନାଚଇ କର୍ଣ୍ଣର କର୍ଣ୍ଣଫୁଲ । ଉରସ୍ଥଳ ବାହୁମୂଳ ଆଉ ଦେଖିବାର ॥ ଏହିପରି ହାବଭାବ ସୀତା ପ୍ରକାଶିଲେ । କପଟ ନିଦ୍ରାରେ ପତି ମନ ହରିନେଲେ । ୫୧ ।

ଅଥ ଜାନକୀ ପ୍ରବୁଦ୍ଧ ।

ସ୍ପୃଷ୍ଟଃ ସ୍ୱପ୍ନେ ତ ବିଭେତ ପ୍ରେମତୋ ବାଲଭାବା—
ନ୍ନିଲିତ ସୁରତସଙ୍ଗେ ପର୍ଯ୍ୟଙ୍ଗମାକୁଞ୍ଚୟନ୍ତୀ ।
ଅହହ ନହି ନହୀତି ବ୍ୟାଜମନ୍ଦ୍ୟାଲପନ୍ତୀ
ସ୍ମିତମଧୁରକଟାକ୍ଷୈ ର୍ଭାବମାବିଷ୍କରୋତି । ୫୨

ଉଠି ପ୍ରଭାତରୁ ସୀତାଦେବୀ ନିଦ୍ରାତେଜି । ପତି ସଙ୍ଗେ ରତି ଅତି ଆନନ୍ଦରେ ମଜ୍ଜି ॥ ବାଳକ ସ୍ୱଭାବ ପରି କରି ମନେ ଭୟ । ପତି ସଙ୍ଗେ ମିଶିବାରୁ ହରଷ ହୃଦୟ ॥ ସଙ୍କୋଚ କରି ଅଙ୍ଗକୁ ଆହା ଆହା ଭାଷି । ନାହିଁ ୨ କରନ୍ତି କପଟେ ଶୁଭ୍ରକେଶି ॥ କରି ମନ୍ଦହାସ୍ୟ ପୁଣି ଛନ୍ଦ କଟାକ୍ଷରେ । ନାନା ଭାବ ଭଙ୍ଗି ପତି ସଙ୍ଗତରେ କଲେ ।୫୨ ।

ଶ୍ରୀରାମଃ ସାନନ୍ଦଂ ଉକ୍ତି ଲାସ-
ମୂଳ୍ଛାସସ୍ମୃତି ।

ଅରଣ୍ୟଂ ସାରଙ୍ଗୈ ଗିରିକୁହରଗର୍ଭଶ୍ଚ ହରିଭି
ଦଶୋଦ୍ଦିଷ୍ଟଂ ମାତଙ୍ଗୈଃ କ୍ଷିତିମପି ବନଂ ପଙ୍କଜବନୈଃ ॥
ପ୍ରିୟାଚକ୍ଷୁର୍ମଧ୍ୟସ୍ତନବଦନସୌନ୍ଦର୍ଯ୍ୟବିଜିତୈଃ
ସତାଂ ମାନ ମ୍ଲାନେ ମରଣମଥବା ଦୂରସରଣଂ । ୫୩ ।

ଶ୍ରୀରାମ ବୋଇଲେ ସୀତା ତୁମ୍ଭନେତ୍ର ଶୃହି । ମୃଗମାନେ ଲଜ୍ଜାରେ ଅରଣ୍ୟଲୁଚିରହି । କଟିଶୋଭା ଦେଖିଣ ଯେ ଲୁଚିଲେ କେଶରୀ । ଗିରି ଗୁହା ମଧ୍ୟେ ଯାଇ ରହିଲେ ଏ ଡରି । ଉରଜ ଶୋଭା ନରେଖି ଗଜ ପଇ ଲଜ । ଦିଗଦିଗନ୍ତେ ପଳାନ୍ତି ହୋଇଣ ନିସ୍ତେଜ ॥ ଯଦ୍ୟପି ପାଆନ୍ତି ସାଧୁଜନ ଅପମାନ । ଜୀବନେ ମରନ୍ତି କିବା ଛାଡ଼ନ୍ତି ସେ ସ୍ଥାନ । ୫୩ ।

ଦୃଷ୍ଟ୍ୱା ମୁଖଂ ତେ ସରସୀରୁହାଣି
ଭୃଙ୍ଗାଷମାଳାଂ ଜଗୃହୁର୍ଜପାୟ ।
ଏଣୀଦୃଶସ୍ତେଽପ୍ୟବଲୋକ୍ୟ ବେଣୀଂ
ଭୋଗଂ ଭୁଜଙ୍ଗା ଧୃପତନ୍ତିଗେପ । ୫୪ ।

ଦେଖି ତୁମ୍ଭର ଶ୍ରୀମୁଖ ମାରଶରଗଣ । ଭୃଙ୍ଗାକ୍ଷମାଳାକୁ ଘେନି ଜପିଲେ ବହନ । ତୁମ୍ଭ ବେଣୀ ଏଣୀନେତ୍ର ଶୋଭାକୁ ଅନାଇ । ନାଗ-ରାଜଗଣ ଗଡ଼େଞ୍ଜି ଲୁଚିଲେକ ଯାଇଁ । ୫୪ ।

ସ୍ୱର୍ଣ୍ଣଂ ସୁବର୍ଣ୍ଣଂ ଦହନେ ସୁଦେହଂ
ଚିକ୍ଷେପ କାନ୍ତିଂ ତବ ଦନ୍ତପଙ୍କ୍ତ୍ୟାଂ ।
ବିଲୋକ୍ୟ ତୂର୍ଣ୍ଣଂ ମଣିବୀଜପୂର୍ଣ୍ଣଂ
ଫଳଂ ବିଦୀର୍ଣ୍ଣଂ କିଲ ଦାଡ଼ିମସ୍ୟ । ୫୫ ।

ଦେଖିଣ କର୍ଣ୍ଣ ସୁବର୍ଣ୍ଣ ସୁନ୍ଦର ତୁମ୍ଭର । ପୋଡ଼ିନିଜଦେହ ତୂର୍ଣ୍ଣ କଲେକ ଅନଳର । ତ.ନ୍ତୁମ୍ଭ ବୀଜଦନ୍ତୀ ହୀରପରି କାନ୍ତି । ଦେଖି ବିଦାରିଛି ତାହା ପୁରୁଷର ମତି । ୫୫ ।

ରାମଃ ରାବଣଂ ।

ସୀତାଂ ମନୋହରତରାଂ ଗିରମୁଦ୍‌ଗିରନ୍ତୀ
ମାଲ୍ୟଂ ତବ ଭୁଜଭୁଜେ ପରିପୂର୍ଣ୍ଣକାମଃ ।
ରାମ ସ୍ତଥା ତ୍ରିଭୁବନେଽପି ଯଥା ନ କୋଽପି
ରାମାଂ ଭ୍ରମନ୍ତି ଭୁଜଭୁଜେ ନ ଚ ଭୋକ୍ଷ୍ୟତୀଶଃ । ୫୬ ।

କାମ କଳାରେ ଅଟନ୍ତି ଶ୍ରୀରାମ ପ୍ରବୀଣ । କହନ୍ତି ଜାନକୀ ମିଷ୍ଟ-କଥା ଅନୁକ୍ଷଣ ॥ ଯେଉଁ ସମ୍ଭୋଗ ସଂସାରେ କରିନାହିଁ କେହି । ସେପରି କଲେ ଶ୍ରୀରାମ ରଘୁକୁଳସାଇଁ । ଏ ମର୍ତ୍ତ୍ୟ ଭୁବନେ ଯେତେ-ଛନ୍ତି ନୃପ ମଣି । କେହି କରିନାହିଁ ବା କରିବ ନାହିଁ ପୁଣି । ୫୬ ।

ଅଂଗାମିଦୀର୍ଘଚରଦସ୍ତିରମାନ୍ଧରସୀତ୍
କ୍ଷତୈବ ରଙ୍ଗଭବନେଽଭୁତକାମକେଳିଃ ।
ଶ୍ରୁତ୍ୱା ତଯୋର୍ଗିରମପୂର୍ବଂସୁଦେ ତୁଷନ୍ତୀ
ମୁଦ୍‌ଗୀର୍ଣ୍ଣକର୍ଣ୍ଣସରଣୀଂ ଚରଣା ପୃଥନାଂ । ୫୭ ।

ଦେବ ବଚ୍ଛେଦ ଏକଥା ଅଗମ୍ଭିର ଜାଣି । ଶ୍ରୁତପଥେ କୁକ୍କୁଟ ମାନଙ୍କ ରବ ଶୁଣି । ରନ୍ଧ୍ର ରଙ୍ଗ ଭୁବନରେ ଜନକନନ୍ଦନୀ । ଯୁକ୍ତିଲେ ଗିରିଜା ଯେ କି ସତୀ ଶିରୋମଣି । ୫୭ ।

ଏତଛ୍ରୀଲହନୂମତା ବିରଚିତେ ଶ୍ରୀମନ୍ମହାନାଟକେ
ବୀରଶ୍ରୀଯୁତରାମଚନ୍ଦ୍ରଚରିତେ ପ୍ରତ୍ୟଦ୍ଧୃତେଽନୁକ୍ରମେଃ ।
ମିଶ୍ର ଶ୍ରୀମଧୁସୂଦନେନ କଥନା ସନ୍ଦର୍ଭସନ୍ଧୀକୃତେ
ବୈଦେହୀସ୍ୱରତାଭଧୋଽଯ ଗତବାନଙ୍କୋ ଦ୍ୱିତୀୟୋମହାନ୍ ॥

ଏ ମହାନାଟକ ହନୁମନ୍ତ ବିରଚିତ । ରାମଙ୍କ ଚରିତେ ମୋହୁ ଅଛଇ ଜଗତ ॥ ସନ୍ଦର୍ଭଛନ୍ଦରେ ମିଶ୍ର ଶ୍ରୀମଧୁସୂଦନ । ରଚିଛନ୍ତି ଦ୍ୱିତୀୟାଙ୍କେ ବୈଦେହୀ ମିଳନ । ଆବର ପରଶୁରାମ ଦର୍ପଚୂର୍ଣ୍ଣ ବାଣୀ । ଜନଙ୍କ ହିତେ କହଇ ଦାସ ଚିନ୍ତାମଣି ।

ଇତି ମହାନାଟକେ ଦ୍ୱିତୀୟୋଽଙ୍କଃ ।

# ତୃତୀୟ ଅଙ୍କ

ଭୁକ୍ତ୍ୱା ଚୈତ୍ରଗ ନୃପ୍ତୁରମ୍ୟାନ୍ କତତୟବୃଦ୍ଧବସାନ୍ ରଘବୋ ଧର୍ମପତ୍ନ୍ୟା
ସାର୍ଦ୍ଧଂ ବର୍ଦ୍ଧିଷ୍ଣୁ କାମଃ ଶ୍ରବଣମୁନିପିତୁଃ ପ୍ରାପ ହା ଶାପକାଳଂ ।
ଧତ୍ତେ ତସ୍ମିନ୍ ହବସ୍ଥାନ୍ ମଳିନକିରଣତାଂ ହା ମହୋତ୍ପାତହେତେ
ରୁଲ୍କାଦଣ୍ଡଃ ପ୍ରଚଣ୍ଡଃ ପ୍ରପତତି ନଭସଃ କମ୍ପତେ ଭୂତଧାତ୍ରୀ । ୧ ।

ନିଜପତ୍ନୀ ସହ ରାମ କାଟି କଷ୍ଟଦିନ । ନାନାବିଧ ସମ୍ଭୋଗେ ନ ପୂରଇ ତାଙ୍କ ମନ । ଦଶରଥଙ୍କୁ ଯେ ପୂର୍ବେ ଶାପ୍ୟ ଦେଇଥିଲେ । ଶ୍ରବଣମୁନିର ପିତା ଅନ୍ଧମୁନି ଥିଲେ । ସେହିକାଳ ଉପଗତ ହେଲା ଏତେ କାଳେ । ସୂର୍ଯ୍ୟଦେବଙ୍କ ପ୍ରଖର କିରଣର ଜାଲେ । ଆକାଶୁ ଖସିଲ ଭସ୍ମଙ୍କର ଉଲ୍କାଗଣ । ମହା ଉତପାତେ ହେଲା ଭୂମି କମ୍ପମାନ । ୧ ।

ଦିଗ୍‌ଭାଗୋ ଧୂମ୍ରଖୈଭୂଦଦହ ଦିହୁତଦସ୍ମୁ ରତାସ୍ଃ ସ୍ଫୁରନ୍ତି ।
ସ୍ୱର୍ଭାନୋର୍ଭାନବୀୟୁଗ୍ରହହସମୟେ ଭୈରବା ରକ୍ତବୃଷ୍ଟିଃ ।
ମଧ୍ୟାହ୍ନେ ଜମ୍ବୁକାନାଂ ପ୍ରଭବତି ନିତରାଂ ସ୍ଫୀତବାଗ୍ଭୁଂପ୍ରବୋଧ
ବାରଂବାରଂ ଗର୍ଜ୍ଜିତପ୍ରଳୟ ଇବ ମହାମେଦିନୀଘୋଷଜାତଃ । ୨ ।

ଦେଖାଗଲା ଦିଗଦିଗ ଧୂସର ଯେ ବର୍ଣ୍ଣ । ହୋଇଲା ଉଦୟ ଦିବସରେ ତାରାଗଣ ॥ ରାହୁ ଅସି ଅସମୟେ ସୂର୍ଯ୍ୟଙ୍କ ଗ୍ରାସିଲା । ଦିବସରେ ଆକାଶରୁ ରକ୍ତ ବୃଷ୍ଟି ହେଲା । ଦିବସରେ ଶିବାଗଣ ଆସି ଡାକ ଦେଲେ । ପର୍ବତ ସମାନ ଘୋରଧ୍ୱନି ଜାତ କଲେ । ୨ ।

ଅତ୍ରାନ୍ତରେ ଦଶରଥଃ ।

ସ୍ୱମେ ଧର୍ମଚର୍ଯ୍ୟଂ ଦୃଷ୍ଟ୍ୱା ଲୋକସୌଖ୍ୟକରଂ ଚ ଯତ୍
ଯୌବରାଜ୍ୟାଭିଷେକାୟ ରାମ୍ଭେମତିରଜାୟତ । ୩ ।

ଧାର୍ମିକ ପ୍ରବର ପ୍ରଜାଜନ ସୁଖକାରୀ । ଶ୍ରୀରାମଙ୍କୁ ଅଯୋଧ୍ୟା ଈଶ୍ୱର ଜାଣିପାରି । କରାଇବେ ଯୁବରାଜ ଅଯୋଧ୍ୟାନଗରେ । ଏମନ୍ତ ବାଞ୍ଛରେ ରାଜା ଆପଣ ମନରେ । ୩ ।

ଅଥ ରାମାଭିଷେକାର୍ଥଂ ଦଶରଥଂ ପ୍ରତି
ବଶିଷ୍ଠବାକ୍ୟଂ ।

ତ୍ୱଂ ରାଜବର୍ଯ୍ୟାତ୍ମଜନାମ୍ନବନ୍ତଂ ଗୁଣୋଭିରାମଂ ନରଲୋକ କାନ୍ତଂ ।
ରାମଂ ନୃଦେବାର୍ହସି ଲୋକନାଥମଥାଭିଷେକ୍ତୁଂ ଯୁବରାଜମୁର୍ବ୍ୟାଂ ।୪।

ଏଥୁଅନ୍ତେ ମହର୍ଷି ବଶିଷ୍ଠ ମୁନିବର । ବୋଇଲେ ଏମନ୍ତ ଦଶର-ଥଙ୍କୁ ଆବର । ଅହେ ଦଶରଥ ଶୁଣ ଏ ମୋର ବଚନ । ଶ୍ରୀରାମଙ୍କୁ ଅଭିଷେକ କରାଅ ବହନ । ତ୍ରୈଲୋକ୍ୟର ନାଥ ଅଟନ୍ତି ଯେ ରଘୁନାଥ ସର୍ବଗୁଣଯୁତ ଆତ୍ମବନ୍ତ ଶୁଚିବନ୍ତ । ୪ ।

ସୁମନ୍ତ୍ରୋ ବହିର୍ନିଃସୃତ୍ୟ ନାଗରାନ୍ ପ୍ରତି ।
ସ୍ତ୍ରୀଯୂଂ ଜରାମୁପଗତାମବଲୋକ୍ୟ ରାଜ୍ଞା
ରାମଂ ଚ ରାଜ୍ୟବହନକ୍ଷମମାକଲଯ୍ୟ ।
ରାଜ୍ୟାଭିଷେକପରମୋତ୍ସବମତ୍ର କର୍ତ୍ତୁ
ମାଦିଷ୍ଟବାନ୍ ପୁରଜନାଃ କୁରୁତ ପ୍ରମୋଦଂ । ୫ ।

କହିଲେ ବାହାରେ ଯାଇଁ ସୁମନ୍ତ୍ର ଏମନ୍ତ । ଦେଖି ଆପଣାର ବୃଦ୍ଧାବସ୍ଥା ଦଶରଥ । ଶ୍ରୀରାମଙ୍କୁ ରାଜ୍ୟକ୍ଷମ ଜାଣି ନୃପମଣି । କରାଇବେ ରାଜ୍ୟ ତାଙ୍କୁ ଅଭିଷେକ ପୁଣି । କର ଘରେ ଘରେ ସର୍ବେ ଉତ୍ସବ ବିଧାନ । ନୃପତିଙ୍କ ଏହି ଆଜ୍ଞା ଶୁଣ ପ୍ରଜାଗଣ । ୫ ।

ରାମାଭିଷେକେ ମଦବିହ୍ୱଲାୟାଃ
କରଚ୍ୟୁତୋହେମଘଟସ୍ତରୁଣ୍ୟାଃ ।
ସୋପାନମାସାଦ୍ୟ ଚକାର ଶବ୍ଦଂ
ଠଠଂ ଠଠଂ ଠଂ ଠଠଠଂ ଠଠଂ ଠଃ । ୬ ।

ଧର ହେମଘଟ ଏକନାରୀ ଆସୁଥିଲା । ରାମ ଅଭିଷେକ ନାଦେ ଉନମତ୍ତ ହେଲା । ଖସିଲା ହସ୍ତରୁ ଘଟ ପଡ଼ି ସୋପାନରେ । ଠଣ ଠଣ ଶବ୍ଦକରି ଗଡ଼ି ଗଡ଼ି ଚଲେ । ୬ ।

ଅଥ କୈକେୟୀ ସ୍ୱଗତଂ । ପଢତମିଦମନର୍ଥଂ । ଅନନ୍ତରଂ ରାଜାନମୁପସୃତ୍ୟ ପ୍ରକାଶଂ କଥୟତି । ଜୟତୁ ଜୟତୁ ମହାରାଜୋ ଦଶରଥଃ । କେକୟି ଆଗମ୍ୟତାଂ । ଉପସୃତ୍ୟ କଥୟତି କେକୟୀ ଏବମେବଂ ରାଜାନଂ ପ୍ରତି । ଅମଙ୍ଗଳୀୟଂ ବଧୂର୍ୟତୋଽସ୍ୟାଃ ଆଗମନାନୁପଦମେବ ମହୋତ୍ପାତା ଦୃଶ୍ୟନ୍ତେ । ତଦେନାଂ ଦୂରତୋ ନିଃସାରୟ । ମହ୍ୟଂ ଚ ପ୍ରାକ୍ ସ୍ୱୀକୃତ ବରଯୁଗଂ ଦୀୟତାଂ । ତଦେବଂ ! ସୀତାଲକ୍ଷ୍ମଣ ସହିତସ୍ୟ ଶ୍ରୀରାମସ୍ୟ ବନପ୍ରସ୍ଥାଣଂ ଭରତସ୍ୟ ଚ ଚକ୍ରବର୍ତ୍ତିତ୍ୱେଽଭିଷେକଃ । ତତୋ ଦଶରଥ ରାମଭଦ୍ର ପ୍ରାଣାଧିକପ୍ରାଣ ଇତ୍ୟୁକ୍ତ୍ୱାମୁମୋହ ॥

ଦେଖି ଉତ୍ପାତ ଘଟନା କେକୟୀନନ୍ଦନୀ । ମନେ ମନେ ଅନର୍ଥ ଘଟିବା କଥା ଗୁଣି ॥ ଗଲେ ରାଜାଙ୍କ ନିକଟେ ଯାଇଁଣ ପ୍ରକାଶ । ଜୁଅ ଜୟଯୁକ୍ତ ତୁମ୍ଭେ ଅଯୋଧ୍ୟା ନରେଶ ॥ ଜାଣି ଦଶରଥ କୈକେୟୀଙ୍କ ଆଗମନ । ଆସ ଆସ ପ୍ରିୟେ ବୋଲି କୃତ୍ୟ କୃତ୍ୟ ଧନ ॥ କୈକୟୀ ବୋଲନ୍ତି ଅହେ ଶୁଣ ମହାରାଜ । ରକ୍ତବୃଷ୍ଟି ହୁଅଇ ନୟନେ ମୋର ଆଜ ॥ ସର୍ବ ଅମଙ୍ଗଳ ଏହି ଜାନକୀ ଅଟଇ । ଏହା ଆଗମନେ ବହୁ ଉତ୍ପାତ ଘଟଇ । ତେଣୁ ଏ ବଧୂକୁ ପାଶୁଁ କରନ୍ତୁ ଅନ୍ତର । ଦିଅ ମୋର ପୂର୍ବ ଅଙ୍ଗୀକୃତ ଦୁଇବର । ଭରତକୁ କର ରାଜ୍ୟେ ଅଭିଷେକ ମୋର । ରାମ-ଲକ୍ଷ୍ମଣ ସୀତାଙ୍କୁ ପେଷ ବନଘୋର । ଶୁଣି ଅଚେତନ ପ୍ରାୟ ହୋଇ ଦଶରଥ । ଆହାଆହା କହି ଯାଇଁ ପଡ଼ିଲେ ତୁରିତ । ୦ ।

ଶ୍ରୀରାମଂ ପ୍ରତି ଶ୍ଲୋକଃ ।

ଭୂପୁତ୍ରୀ ତବ ପତ୍ନୀ ତଦପି ତସ୍ୟାଭୁବଃ ପରିଗ୍ରହଶ୍ଚମନୁ-
ଚିତ ମିଦମିତି ମତ୍ୱା କେକୟୀ ତନ୍ନିବାରୟତି । ୦ ।

ଏହି ସମୟରେ ଶ୍ରୀରାମ ନିକଟେ ଯାଇଁ । କୈକେୟୀ କହିବା କଥା କହିଲେ ବୁଝାଇ । ତୁମ୍ଭର ବନିତା ଯେ ଅଟନ୍ତି ଭୂମିସୁତା । ହୋଇବେ କିପରି ସେ ବନିତା ତାର ମାତା । ଏହି କଥା ନୃପତିଙ୍କ ଅଗରେ ସେ । ଅଭିଷେକ ନିବାରଣ କଲେକ କୈକେୟୀ ।

ସୁମନ୍ତ୍ରଃ ସ୍ୱଗତଂ ।

ରାଜ୍ଞ ଏତେଷାଂଽଭିପ୍ରାୟଃ । ତତ୍ ସ୍ୱୟମେବ ଗତ୍ୱା ରାମ-
ଚନ୍ଦ୍ରାୟ ନିବେଦୟାମୀତି ନିଷ୍କ୍ରାନ୍ତଃ । ୦ ।

ମନେ ବିଚାରି ସୁମନ୍ତ କଲେ ଯେ ନିଶ୍ଚୟ । ନୃପତିଙ୍କର ଅଟଇ ଏହି ଅଭିପ୍ରାୟ । ଶ୍ରୀରାମଙ୍କ ଆଗେ ଏହା ନିକେ ନିଜେ ଯାଇଁ । ଏହିସବୁ କଥା ମାନ କହିବ ବୁଝାଇ । ୦ ।

ଉପସୃତ୍ୟ ଜୟତୁ ଜୟତୁ ରାମଃ । ଭୃତ୍ୟସ୍ତେ
ସୁମନ୍ତ୍ରୋଽସ୍ମୀତି ନିବେଦୟନ୍ନ୍ୟାମ୍ନାନମନ୍ୟଚ । ୦ ।

ହୋଇ ଉପସ୍ଥିତ ତହିଁ ସୁମନ୍ତ କହଇ । ହୁଅ ରଘୁନାଥ ତୁମ୍ଭେ ସର୍ବ-ଗୁଣେ ଜୟୀ । ମୁଁ ତୁମ୍ଭର ଦାସ ଅଟେ ସୁମନ୍ତ ସାରଥି । ଶୁଣ ମୋର ନିବେଦନ ଏବେ ଦାଶରଥି । ୦ ।

ଶ୍ରୁତ୍ୱାଥ କେକୟସୁତା ନଗରୀଜନାନାଂ
ମାଙ୍ଗଲ୍ୟମୁନ୍ମଦକଳାକୁଳବାରଯୋଷଂ ।
ତୁଭ୍ୟଂ ଶ୍ରିୟଂ ଦଦତି ଶଙ୍କରସଖେ ମହୀନ୍ଦ୍ରେ
ପ୍ରାକ୍ ସ୍ୱୀକୃତଂ ବରଯୁଗଂ ସମଯାଚତୈନଂ । ୭ ।

ଯାଉଁଥିଲେ ତୁମ୍ଭ ତାତ ଦଶରଥ ରାୟ । କରିବାକୁ ରାଜ୍ୟେ ଅଭିଷେକରେ ଉପାୟ । ନଗରେ ଉତ୍ସବ ନାନାସ୍ଥାନେ ନୃତ୍ୟଗୀତ । କେକୟସୁତା ତା ଦେଖି ହୋଇଲା ଚକିତ । ବୋଇଲେ ପୂର୍ବେ ନୃପତି ଥିଲେ ବରଦେଇ । ସେହି ବେନିବର ଏକ୍ଷଣି ମୁଁ ମାଗିବଇଁ । ୭ ।

ତଦେବଂ ବରଯୁଗଂ ।

ରାମୋ ଯାତୁ ବନଂ ଚତୁର୍ଦ୍ଦଶ ସମା ମୂର୍ଦ୍ଧ୍ନା ଜଟା ଧାରୟନ୍
ବନ୍ୟାଂ ବୃତ୍ତିମୁପାଗତୋ ବିରଚିତାଂ ସୀତାସଖଃ ସାନୁଜଃ ।
ରାଜ୍ୟଂ ସାନୁଚରଂ ସମୂଳତଦିଦଂ ସନ୍ଦୀୟତାଂ ମତ୍ସୁତେ ।
ଶ୍ରୁତ୍ୱୈବଂ ସ ତୁ ନିଷ୍ଠୁରଂ ବଚ ଇଦଂ ଭୂମିଂଗତୋ ବିହ୍ୱଳଃ । ୮ ।

ପ୍ରଥମବର ବନକୁ ଚଳିବେ ଆପଣ । ସଙ୍ଗତରେ ଥିବେ ତୁମ୍ଭ ଜାନକୀ ଲକ୍ଷ୍ମଣ । ଶିରେ ବାନ୍ଧି ଜଟା ଧରିଥିବେ ମୁନିବେଶ । ଏହାପର କଟାଇବେ ଚଉଦ ବରଷ । ଦ୍ୱିତୀୟବରେ ମୋ ପୁତ୍ର ହେବେ ରାଜା ପୁଣି । ଭରତକୁ ରାଜ୍ୟଭାର କର ସମର୍ପଣ ॥ ଏହାପର ନାରାୟଣେ ବଚନକୁ ଶୁଣି । ମୂର୍ଚ୍ଛାଯାଇଁ ଭୂମିରେ ପଡ଼ିଲେ ନୃପମଣି । ୮ ।

ଇତି ସ୍ୱମନ୍ତଃ ଶ୍ରୀରାମଂ କଥୟିତ୍ୱା ଚରଣେ ପତିତ୍ୱା ନିଷ୍କ୍ରାନ୍ତଃ ।

ଏତେ କହି ଶ୍ରୀରାମଙ୍କ ପାଦତଳେ ପଡ଼ି । ସେଠାରୁ ସୁମନ୍ତ ମନ୍ତ୍ରୀ ଅଇଲା ବାହୁଡ଼ି ।

ଶ୍ରୀରାମୋଲକ୍ଷ୍ମଣଂ ପ୍ରତି ।

ବତ୍ସ ଲକ୍ଷ୍ମଣ ନିଜଂ ପ୍ରଜାବତୀମ୍‌ଦାସ୍ୟ ଅଟଗ୍ର ଭବ । ଅହଂସ୍ୱଭ୍ରୁଂ ତାତଂ ନତ୍ୱା ଯାବଦାଗଚ୍ଛାମୀତି । ୦ ।

ଲକ୍ଷ୍ମଣଙ୍କୁ ଅନାଇ କହନ୍ତି ରଘୁନାଥ । ଜାନକୀଙ୍କ ସଙ୍ଗେ ଯେଣ ଆସ ଯା ତୁରିତ ॥ ଏକସଙ୍ଗ ହୋଇ ଯେତେବେ ଗୃହ ତିନିଜଣ । ବଦାସ୍ତୁ ମ ଗି ନମିବା ପିତାଙ୍କ ଚରଣ ।

ତାତଂ ଦଶରଥଂ ନତ୍ୱା ମାତରୌ ଜନନୀଂ ତତଃ ।
ମୈଥିଲ୍ୟା ସହିତୋରାମୋଲକ୍ଷ୍ମଣେନ ବନଂ ଯଯୌ । ୯ ।

ତହୁଁ ରାମଚନ୍ଦ୍ର ଅତି ବେଗେ ଚଳିଗଲେ । ପିତାଙ୍କପାଦେ ପ୍ରଥମେ ନମସ୍କାର କଲେ । ବନ୍ଦଣି ବିମାତା ଆଉ ମାତଙ୍କ ଚରଣ । ବନେ ବାହାରିଲେ ସଙ୍ଗେ ଘେନିଣ ଲକ୍ଷ୍ମଣ । ୯ ।

ଶୁତ୍ୱାଜ୍ଞାପରିପାଳନାୟ ଚ ବନଂ ସମୁପସ୍ଥିତଂ ରାଘବଂ
ଦୃଷ୍ଟ୍ୱା ସୌ ଭରତା ବିଦେହତନୟା ଶ୍ୱଶ୍ରୂଜନଂ ପୃଚ୍ଛତି ।
ନତ୍ୱା କୋଶଳକନ୍ୟାକାଂଘ୍ରି ଯୁଗଳଂ ପଶ୍ଚାତ୍ ସୁମିତ୍ରାଂ ପୁନ-
ଦୃଷ୍ଟ୍ୱା ହା ଶୁକସାରିକାପିକକୁଳଂ ରାମ ନୂଗା ତ୍ରସ୍ଥିତା । ୧୦ ।

ପିତୃ ଅଜ୍ଞାପାଳି ରାମ ଚଳିଲେ ବନକୁ । ଜାନକୀ ଯାଇଁ ପ୍ରଣମି ପୁଚ୍ଛିଲେ ଶାଶୂଙ୍କୁ । ମୁଁ ଯିବି ବନକୁ ମାତ ଆଜ୍ଞାଦିଅ ମୋତେ । ଶାଶୂଙ୍କ

ଚରଣେ ବନ୍ଦ କହନ୍ତି ଯେ ଏତେ । ପୁଣି ଯାଇ ସୁମିତ୍ରାଙ୍କ ଚରଣେ ବନ୍ଦିଲେ । ଆଉ ସମସ୍ତ ଶାଶୂଙ୍କ ଚରଣେ ନମିଲେ । କରି ଶୁଭ ଶାସ୍ତ୍ରିକ ଏହା ଦରଶନ । ଶ୍ରୀରାମଙ୍କ ପଛେ ପଛେ ଚଳିଲେ ବାହାନ ।୧୦।

ଲକ୍ଷ୍ମଣଂ ପ୍ରତି ସୁମିତ୍ରା ବାକ୍ୟଂ ।

ରାମଂ ଦଶରଥଂ ବିଦ୍ଧି ମାଂ ବିଦ୍ଧି ଜନକାତ୍ମଜାଂ
ଅଯୋଧ୍ୟାମଟବୀଂ ବିଦ୍ଧି ଗଚ୍ଛ ବତ୍ସ ଯଥାସୁଖଂ । ୧୧ ।

ଏହି ସମୟେ ସୁମିତ୍ରା ଲକ୍ଷ୍ମଣଙ୍କୁ ଗୃହେଁ । କହିଲେ ସକଳ କଥା ତାହାଙ୍କୁ ବୁଝଇ । କରିଥିବୁ ବାବୁ ଶ୍ରୀରାମଙ୍କୁ ପିତୃ ଜ୍ଞାନ । ଜାନକୀଙ୍କୁ ମାନିଥିବୁ ମୋହର ସମାନ । ଅଯୋଧ୍ୟା ସମାନ ଅରଣ୍ୟକୁ ମଣୁଥିବୁ । ସୁଖେ ତେବେ ବନବାସେ ଦିନ କଟାଇବୁ । ୧୧ ।

କୌଶଲ୍ୟା ।

ବୈକୁଣ୍ଠବୈଭବ ସୁଖଂ ପରି ହାଯ୍ୟବତ୍ସ
ସତ୍ତ୍ୱଂ ସୁଯୁଂ ଦଶରଥାଲୟମାଗତୋଽସି ।
ଅତ୍ରାପି କେକୟନରେନ୍ଦ୍ରସୁତାଂ ବହାଯ୍ୟ ।
ମାଂ ପାପିନୀଂ କଥମହୋ ଜନନୀମକାର୍ଷୀଃ । ୧୨ ।

ଏମନ୍ତ ସମୟେ ଦେବୀ କଉଶଲ୍ୟା ରାଣୀ । ଶ୍ରୀରାମଙ୍କୁ ଗୃହେଁ ଶ ଯେ କହନ୍ତି ଏ ବାଣୀ ॥ ଛାଡ଼ିଣ ବୈକୁଣ୍ଠ ସୁଖ ବିଭବ ସକଳ । ଆସି ଦଶରଥ ଘରେ ହେଲ ଅବତାର । ଛାଡ଼ିକରି ଅରେ ବାବୁ କେକେୟୀ ନନ୍ଦିନୀ । ଜନନୀ କଲୁ କାହିଁ ପାଇଁ ଏ ପାପିନୀ ।୧୨ ।

କଲ୍ୟାଣୀ ପାଣିକମଲେ ତବ ଲକ୍ଷ୍ମଣୋଽୟଂ
ବ୍ରହ୍ମୋ ନ ରାମବଚସ୍ୟୋ ଦତଦେବତାସୀତ୍ ।
ଯାଚେ ପୁନଃ ପୁନରହଂ ବନ ବାସିନୀନାଂ
ଶଶ୍ରୁରହ୍ୟଂ ଜନନୀ ଜୀବତୁ ନେତି ବାଚ୍ୟଂ ।୧୩ ।

ଆଗୋ ସୁଲକ୍ଷଣୀ ତୁମ୍ଭ କର କମଳରେ । ଲକ୍ଷ୍ମଣଙ୍କ ଅଣିବେଗେ ସମର୍ପିଣ କରେ । କି କହିବି ମୁହିଁ ଆଉ ଶ୍ରୀରାଙ୍କ ପାଇଁ । ପଡ ଯେଣୁ

ପୁତ୍ରଙ୍କ ଦେବତା ଅଟଇ ॥ ମାଗୁଣି ମୋହର ଏହି କଥା ବାରମ୍ବାର ।
ଜୀଇଅଛୁ ଶାଗୁ ବୋଲ୍ ନ ବୋଲିବ ମୋର ।୧୬ ।

ବାଳା ବୈଦେହ ତନୟା ଲଲିତୌ ଭବନ୍ତୌ
ଦିଗ୍ ଦକ୍ଷିଣା ଚ ରଜନୀଚର ଚକ୍ରଯୁକ୍ତା ।
ତଦ୍ବସ୍ତ ବତ୍ସଲତୟୈବଦମୁଦାହରାମୋ
ମା ଗଚ୍ଛ ରାମ ନୟଦକ୍ଷିଣ ଦକ୍ଷିଣାଶାଂ ।୧୪ ।

ଅଟଇ ବାଳିକା ସୀତା ବିଦେହ ନନ୍ଦନୀ । କୋମଳ ଶରୀର ଯେ
ବାଳକ ଭାଇ ବେନି । କରିଛନ୍ତି ଅସୁରେ ଦକ୍ଷିଣ ଦିଗେ ବାସ । ସ୍ନେହ
ଭରେ ତେଣୁ ହିତ କହୁ ଅଛୁ ବସ୍ତ । ଶୁଣୁଥିବ ରାମ ନୀତପ୍ରତି ନ୍ୟାୟ
ପଥ । ନ ଗମିବ ଦକ୍ଷିଣ ଦିଗକୁ କଦାଚତେ ।୧୪ ।

ଅତ୍ରାନ୍ତରେ ପୌରାଃ ।

ଅଭିନବଗୁଚ୍ଛଗ୍ରାମେ ରାମେ ବିମୁଞ୍ଚିତ ପତ୍ତନଂ
ତରୁଣ କରୁଣା ପାରାବାରେ ନିମଜ୍ଜିତ ସଜ୍ଜନେ ।
ଅଚଳଦଚଳୈରୁର୍ବୀ ସୁର୍ବୀ ପରଂ ନତୁ କୈକୟୀ
କଠିନ କୁଳିଶତୁଲ୍ୟଂ ପ୍ରାୟୋ ମନଃ ଖଳୁ ଯୋଷିତାଂ ।୧୫।

ଏବଂ ଶୁଣି ଗ୍ରାହି ରାମ ବୀର ଚୂଡ଼ାମଣି । ବନେ ଯାନ୍ତି ଲକ୍ଷ୍ମଣ ସୀତାଙ୍କୁ
ସଙ୍ଗେ ଘେନି । ଅଯୋଧ୍ୟା ନଗରେ ଯେତେ ନର ନାରୀ ଗଣ ।
କରୁଣା ସିନ୍ଧୁଙ୍କୁ ଦେଖି କରନ୍ତି କାରୁଣ୍ୟ । ଅଚଳ ପରାଏ ହୋଇ
ଧରଣୀରେ ଥିଲେ । ରାମଙ୍କ ଗମନ ଦେଖି ଚଞ୍ଚଳମନ ହେଲେ ।
ତଥାପି ଯେ ନ ଟଳିଲା କୈକେୟୀର ମନ । ନାରୀର ହୃଦୟ ତାର
କୁଳିଶ ସମାନ ।୧୬ ।

ଅଥ ବନପ୍ରସ୍ଥାନେ ସୀତା ବଚନାତ୍
ରାମସ୍ୟ ଖେଦଃ ।

ସଦ୍ୟଃପୁରୀ ପରିସରେଷୁ ଶିରୀଷମୃଦ୍ୱୀ
ଗତ୍ୱା ଜବାତ୍ତ ଚତୁରାଣି ପଦାନି ସୀତା ।

ଗନ୍ତବ୍ୟମସ୍ତି କିୟଦିତ୍ୟସକୃଦ୍‌ବ୍ରୁବାଣା
ରାମାଶ୍ରୁଣଃ କୃତବତୀ ପ୍ରଥମାବତାରଂ ।୧୬।

ଶିରୀଷ କୋମଳ ଅଙ୍ଗୀ ଜନକ କୁମାରୀ । ପଦବ୍ରଜେ ଚଳେ କାଶ୍ମି ପଥ ତ୍ୱରା କରି । ପଚାରନ୍ତି ବାରମ୍ବାର ସ୍ୱାମୀଙ୍କ ଏମନ୍ତ । ଆଉ ଅଛି କାନ୍ତ ପୁଣି କେତେଦୂର ପଥ ॥ ଏମନ୍ତ ବଚନ ମୁଖୁଁ ଶୁଣି ସୀତାଙ୍କର । ଅଶ୍ରୁଜଳେ ପୂର୍ଣ୍ଣ ହୋଇଲା ନେତ୍ର ରାମଙ୍କର । ୧୬ ।

ଧରଣୀଂ ପ୍ରତି ଶ୍ରୀରାମଃ ।

ଅରୁଣତରମମନ୍ଦଂ ସ୍ନିଗ୍ଧ ପାଦାରବିନ୍ଦଂ
କଠିନତରଧରଣ୍ୟାଂ ଭୀତଭୀତାର୍ପୟନ୍ତୀ ।
ଅବନି ତବ ସୁତେୟଂ ପାଦବିନ୍ୟାସଦେଶେ
ତ୍ୟଜ ନିଜକଠିନତ୍ୱଂ ଜାନକୀ ଯାତ୍ୱରଣ୍ୟଂ ।୧୭।

ପୃଥିବୀକୁ ଶ୍ରୀହରି କହୁଛନ୍ତି ରଘୁନାଥ । ତେଜ ବସୁମତୀ କାଠିନ୍ୟତା ଅଗୋ ମାତ । ଅତ୍ୟନ୍ତ କୋମଳଅଙ୍ଗୀ ଦୁହିତା ତୁମ୍ଭର । କାଠିନ୍ୟ ହେତୁ ଅରକ୍ତ ହୋଇଲା ପୟର ॥ ଧୀରେ ଧୀରେ ଚାଲୁଛନ୍ତି ପାଇ ମନେ ଭୟ । ଏ ଜନକନନ୍ଦିନୀଙ୍କୁ ଦୁଃଖ ଗୋ ନ ଦିଅ । ୧୭ ।

ପଥି ସୀତାଂ ପ୍ରତି ପଥିକବଧୂନାଂ ବାକ୍ୟଂ ।
ପଥି ପଥିକବଧୂଭିଃ ସାଦରଂ ପୃଚ୍ଛ୍ୟମାନା ।
କୁବଲୟଦଳନୀଳଃ କୋଽୟମାର୍ଯ୍ୟେ ତବେତି ।
ସ୍ମିତବିକସିତଗଣ୍ଡଂ ବ୍ରୀଡ଼ାବିଭ୍ରାନ୍ତ ନେତ୍ରଂ
ମୁଖମବନମୟନ୍ତୀ ସ୍ପଷ୍ଟମାଚଷ୍ଟସୀତା । ୧୮ ।

ନୀଳ ପଦ୍ମଦଳ ପରି ଶ୍ୟାମଳ ମୂରତି । ପଥିକ ଯୁବକଗଣ ଦେଖି କହୁଛନ୍ତି ॥ ସୀତାଙ୍କୁ ପୁଚ୍ଛିଲେ ଏଯେ ପୁରୁଷ ରତନ । ତୁମ୍ଭର ଅଟନ୍ତି କିସ କହନ୍ତୁ ବଚନ । ଅଳପ ହସି ଜାନକୀ ଫୁଲି ଗଣ୍ଡସ୍ଥଳ । ଲାଜରେ ଠାରି କହନ୍ତି ନୟନ ଯୁଗଳ । ବଦନ ଲୁଆଁଇ ଆସ୍ୟ ଦେଖାଇଲେ ପୁଣି । ଏଥୁଁ ଜାଣ ଗଲା ଏ ଯେ ବର ଏହୁ ପତ୍ନୀ । ୧୮ ।

ମଧ୍ୟେ ଚରଣୋ ପାତଂ ନ୍ୟସ୍ୟନ୍ତ୍ୟାଂ ଭୂଃ ସଦର୍ଭ
ଦ୍ୱାରଚୟ ସିକତାନ୍ତଂ ମୂର୍ଦ୍ଧ୍ନିଘର୍ମଃ କଠୋରଃ ।
ତଦଭିତ ଜନକପୁତ୍ରୀ ଲୋଚନୈରଶ୍ରୁ ପୂର୍ଣ୍ଣୈଃ
ପଥି ପଥିକବଧୂଭିର୍ବୀକ୍ଷିତା ଶିକ୍ଷିତା ଚ । ୧୯ ।

ପୃଥିବୀରେ କୁଶକଣ୍ଟା ବହୁତ ଅଛଇ । ସୀତାଙ୍କର ଅଙ୍ଗୁ ପଥଶ୍ରମେ ଝାଳ ବହି ॥ ଦେଖିଣ ଏ କଷ୍ଟ ପଥେ ଯେ ରମଣୀଗଣ । କାନ୍ଦଣ ସୀତା ଦେବୀଙ୍କୁ ପୁଚ୍ଛନ୍ତି ବଚନ ॥ ସମସ୍ତଙ୍କ ବସ୍ତ୍ରକାନ୍ତି ବାଛଅ ସୁନ୍ଦରୀ । ତହିଁରେ କୋମଳ ପଦ ଦେବୀ ଯାନ୍ତୁ ଚଳି । ଶୁଣି ପଥିକ ବଧୂଙ୍କଠାରୁ ଏହିକଥା । ଚଳୀଗଲେ ଧୀରେ ଧୀରେ ଜନକ ଦୁହିତା । ୧୯ ।

ପ୍ରଥମ ପଥିକ ମଧ୍ୟେନ୍ କାନନେ ରାମଚନ୍ଦ୍ରଂ
ତଦନୁ ଚରଣଗମ୍ୟା କାନ୍ତମେକାକିନୀ ସା ।
ତ୍ୱରିତମଗଣୟନ୍ତୀ ପର୍ଯ୍ୟଟନ୍ତୋ ଦିଗନ୍ତାନ୍
ଭଜତି ହି ହିମରଶ୍ମିଂ ରୋହିଣୀବନ୍ନିଶାୟାଂ । ୨୦ ।

ଏକାକିନୀ କାନ୍ତ ସଙ୍ଗେ ଜନକନନ୍ଦନୀ । ପଥଶ୍ରାନ୍ତ ଦୁଃଖ କଷ୍ଟ ମନରେ ନ ଆଣି । ଭଜେ ନିଶିରେ ଚନ୍ଦ୍ରକୁ ଯେସନ ରୋହିଣୀ । ଶ୍ରୀରାମଙ୍କ ପଛେ ତେଡ଼େ ସୀତାଠାକୁରାଣୀ । ୨୦ ।

ସୀତାଂ ପ୍ରତି ରାମବାକ୍ୟଂ ।

ଗ୍ରାବ୍ଣଃ ଖଣ୍ଡଂ ପରିହର ପୁରଃ କଣ୍ଟକାନ୍ୟତ୍ର ବାରୁ-
ଦ୍ଧି ଶ୍ୱଭ୍ରୈଃ ପଦମବହିତା କାଂଚବଦୂତୈଃ କୁରୁଷ୍ୱ ।
ଉର୍ଦ୍ଧ୍ୱଗ୍ରୀବଂ ବନମଯ୍ୟ ଶିରଃ ପଶ୍ୟ ବଲ୍ଲୀଂ ଶିରସ୍ଥା
ମଗ୍ରସ୍ଥା ତେ ଚଳିତଚମରୀ ସୂଚ୍ୟୁଗ୍ରା ତାବଦାସ୍ତେ । ୨୧ ।

ବୋଲନ୍ତି ଶ୍ରୀରାମ ଆଗୋ ଶୁଣ ପ୍ରାଣ ପ୍ରିୟେ । ଶିଳ ଖଣ୍ଡ ଦେଖ ଦାଣେ କଣ୍ଟାଲତା ପ୍ରାୟେ । ଲତାକଣ୍ଟାରେ ବେଷ୍ଟିତ ହୋଇଛି ଏ ବନ । ସାବଧାନ ହୋଇ ତୁମ୍ଭେ କର ଗୋ ଗମନ । ମସ୍ତକ ଲୁଆଁଅ ବଙ୍କର ଗ୍ରୀବାଦେଶ । ଉପରେ ଅଛଇ କଣ୍ଟା ପନ୍ଥ ଯେ ବିଶେଷ ॥

ମହାନାଟକ



ଯାଉଥିଲ ତୁମ୍ଭ ଆଗେ ଦେଖ ଏ ଗ୍ରାମଟି । ସ୍ଥିର ହୋଇ ରହି ଅଛୁ ଦେଖ ଗୋ କପଟି । ୨୧ ।

ଶ୍ରୀରାମଂ ପ୍ରତି ଜାନକୀ ।

ପଦକମଲରଜୋଭିଃ ସ୍ତ୍ରୀକୃପାଷାଣଦେହା
ମଲଭତ ଯଦହଲ୍ୟାଂ ଗୌତମେ ଧର୍ମପତ୍ନୀଂ ।
ତ୍ୱୟି ବିଚରତି ଶୀର୍ଣ୍ଣଗ୍ରାବ୍ଣି ବିନ୍ଧ୍ୟାଦ୍ରିପାଦେ
କତି କତି ଭବିତାର ସ୍ତାପସା ଦାରବନ୍ତଃ । ୨୨ ।

ଜାନକୀ ବୋଇଲେ ଅହେ ଶୁଣ ପ୍ରାଣନାଥ । ଲାଗି ତୁମ୍ଭ ପାଦ ହେଲା ପାଷାଣମୁକତି । ଅହଲ୍ୟା ନାମରେ ଥିଲା ଏକ ଯେ ରମଣୀ । ଗଉତମଙ୍କ ଭଜିଲେ ଆନନ୍ଦରେ ପୁଣି । ଭ୍ରମଣ କରିବା ନାଥ ଏ ବିନ୍ଧ୍ୟ ପର୍ବତେ । ଦାରବନ୍ତ ହୋଇଯିବେ ତପିଗଣ କେତେ । ୨୨ ।

ଶ୍ରୀରାମମନୁବ୍ରଜ୍ୟାଗତଃ ସୁମନ୍ତ୍ରୋ-
ଦଶରଥଂ ପ୍ରତି ।

ଭବଦଗିରା ରାଜ୍ୟମପାସ୍ୟ ତୂର୍ଣ୍ଣଂ
ବନଂ ଜଗାମୈକରଘୁପ୍ରବୀରଃ ।
ନିଷଙ୍ଗ ପୃଷ୍ଠଃ ଶରଗୁପହସ୍ତଃ
ସହାନୁଜେନୈବ ତୁ ସୀତୟା ଚ । ୨୩ ।

ଛାଡ଼ି ଆସି ସୁମନ୍ତ ସାରଥି ଶ୍ରୀରାମଙ୍କୁ । କହେ ଅଯୋଧ୍ୟାରେ ଦଶରଥ ନୃପତିଙ୍କୁ । ପାଳି ତୁମ୍ଭ ବାକ୍ୟ ରାମ ପ୍ରବେଶିଲେ ବନ । ସଙ୍ଗତରେ ରହିଛନ୍ତି ଜାନକୀ ଲକ୍ଷ୍ମଣ । ନାହିଁ ଅଙ୍ଗେ ଆଭରଣ ତୁଣୀର କାନ୍ଧରେ । ଏକମାତ୍ର ଧନୁଅସ୍ତ୍ର ଧରିଛନ୍ତି କରେ ।୨୩।

ଏତଚ୍ଛ୍ରୁତ୍ୱା ଦଶରଥଃ ।

ଅଦ୍ଭୁତସ୍ୟାଭିଷେକାୟ ପ୍ରସ୍ଥିତସ୍ୟ ବନାୟ ଚ ।
ନ ମୟା ଲକ୍ଷିତସ୍ତସ୍ୟ ସ୍ୱଳ୍ପୋଽପ୍ୟାକାରବିଭ୍ରମଃ । ୨୪ ।

ଏ ବଚନ ଶୁଣିଣ କହନ୍ତି ଦଶରଥ । ଅଭିଷେକ ନିମନ୍ତେ ଡାକିଲି

ରଘୁନାଥ ॥ ଏହର ମୂଢ଼ପଣେ ତାଙ୍କୁ ବନକୁ ପେଷିଲି । ସେରୂପକୁ ଅତ୍ଧାନେ ନେତ୍ରେ ନ ଦେଖିଲି । ୨୪ ।

ହୃଦୟାନ୍ନାପଯାତେ ଽସି ଧ୍ୟାସ୍ରୁ ସର୍ବାସୁ ବୃଷଟେ ।
ବତ୍ସ ରାମ ଗତୋଽସୀତ ଫଲାପାଦନୁମୀୟତେ । ୨୫ ।

ସେହି ରାମ ରୂପ ହୃଦୟରୁ ଯାଉ ନାହିଁ । ତାହାର ଚରିତ୍ର ଠାଣି ମନୁ ନ ଭୁଲଇ । ଶୁଣି ଲୋକ ମୁଖୁଁ ବନବାସ ଦୁଃଖ କଥା । ମନରେ ସର୍ବଦା ମୋର ହୁଏ ସେହି ଚିନ୍ତା । ୨୫

ଶ୍ରୁତ୍ୱା ସୁମନ୍ତ୍ରବଚନେନ ସୁତପ୍ରୟାଣଂ
ଶାପସ୍ୟ ତସ୍ୟ ଚ ବଶନ୍ତ୍ୟ ବିପାକବେଲାଂ ।୦।
ହା ରାଘବେତି ସକୃଦୁଚ୍ଚରତେ ନୃପେଣ
ନିଶ୍ୱସ୍ୟ ଦୀର୍ଘତରମୁଚ୍ଛ୍ୱସିତଂ ନ ଭୂୟଃ । ୨୭ ।

ସୀତା ସହିତ ଲକ୍ଷ୍ମଣ ରାମବନ ଗଲେ । ସୁମନ୍ତଠାରୁ ନୃପତି ଯେବେହୁଁ ହୁଁ ଶୁଣିଲେ ॥ ଅନ୍ଧମୁନି ଶାପ ମୋତେ ଫଳିଲା ନିଶ୍ଚୟ । ପୁତ୍ର ମୁଖ ନ ଦେଖି ଯେ ନ ରହିବ କାୟ ॥ ଉପସ୍ଥିତ ହେଲା ଏବେ ସେ ସମୟ ଅସି । ଦୀର୍ଘଶ୍ୱାସ ଛାଡ଼ି ହାୟ ରାମ ରାମ ଭାଷି । ୨୬ ।

ପ୍ରାଣେ ଧିକ ତମଂ ରାମଂ ବନଂ ପ୍ରବଜ୍ୟ ଭୂପତିଃ ।
ଶୋକାଗ୍ନି ନା ଜହୌ ଦେହଂ ତମପଶ୍ୟନ୍ ପ୍ରିୟଂ ସୁତଂ । ୨୬ ।

ପ୍ରାଣରୁ ଅଧିକ ମୋର ଅଟନ୍ତି ଶ୍ରୀରାମ । ଏହି ଚିନ୍ତା ଦଶରଥ ଚିନ୍ତି ଅନୁକ୍ଷଣେ ॥ ଶୋକରେ ବିହ୍ୱଳ ହୋଇ ଛାଡ଼ିଲେ ଜୀବନ । ନ ଦେଖିଣ ନେତ୍ରେ ନିଜ ପୁତ୍ରର ବଦନ । ୨୭ ।

ଅଥ ପୌରଜନଃ ।

ଜାତଃ ସୂର୍ଯ୍ୟକୁଳେ ପିତା ଦଶରଥ କ୍ଷୋଣୀଭୁଜାମଗ୍ରଣୀଃ
ସୀତା ସତ୍ୟପରାୟଣା ପ୍ରଣୟିନୀ ଯସ୍ୟା ନୁଜୋ ଲକ୍ଷ୍ମଣଃ ।
ଦୋର୍ଦ୍ଦଣ୍ଡେନ ସମୋ ନ ଚାସ୍ତି ଭୁବନେ ପ୍ରତ୍ୟକ୍ଷବିଷ୍ଣୁଃ ସ୍ୱୟଂ
ରାମୋ ଯେନ ବିଡମ୍ବିତୋଽପି ବିଧିନାଽନ୍ୟସ୍ମିନ୍ ଜନେ କା କଥା ॥

ଗୁରଜନମାନେ ସଟବ କରନ୍ତ ନାଗ୍ୟର । ସୂର୍ଯ୍ୟବଂଶୋଦ୍ଭବ ଦଶରଥ ନୃପବର ॥ ଯାହାଙ୍କର ପିତା ଅଯୋଧ୍ୟାର ନରନାଥ । ପତିବ୍ରତା ସୀତା ଯାହା ବଧୂ ଜଗନ୍ନାଥ ॥ ସୁମିତ୍ରାନନ୍ଦନ ଅଟେ ଯାହାଙ୍କର ଭାଇ । ତାର ଭୁଜବଳ ତୁଲ୍ୟ ତ୍ରିଭୁବନେ ନାହିଁ ॥ ସ୍ୱୟଂ ପରଂବ୍ରହ୍ମ ଶ୍ରୀରାମ ଯେ ନାରାୟଣ । ହୋଇଛନ୍ତି ତେଣୁ ବିଧାତା ତାହାଙ୍କୁହିଁ ବାମ ॥ ଅନ୍ୟଜନ ଅବା ହେଲେ କସ ନ ହୋଇବ । କେବଳ ପ୍ରଧାନ ବଳ ଅଟଇ ଦାଇବ । ୨୮ ।

ଜାମାତା ପୁରୁଷୋତ୍ତମୋ ଭଗବତୀ ଲକ୍ଷ୍ମୀଃ ସ୍ୱୟଂ କନ୍ୟକା
ଧୂତୋ ଯତ୍ର ବଭୂବ କୌଶିକମୁନି ଯଜ୍ୱା ବଶିଷ୍ଠଃ ସ୍ୱୟଂ ।
ଦାତା ଶ୍ରୀଜନକଃ ଦାନସମୟେ ଚୈକାଦଶସ୍ଥା ଗ୍ରହାଃ
ଂ ବ୍ରୂ ମୋଦ୍ଭବିତବ୍ୟତାଂ ବଳବତୀଂ ରାମୋଽପି ଯାତୋବନଂ

ଶ୍ରୀପୁରୁଷୋତ୍ତମ ପ୍ରଭୁ ଯହିଁରେ ଜାମାତା । ଲକ୍ଷ୍ମୀ ଭଗବତୀ ଦେବୀ ଅଟନ୍ତି ଦୁହିତା ॥ କରିଥିଲେ ଦୂତପଣ ବିଶ୍ୱାମିତ୍ର ମୁନି । କୁଳ-ପୁରୋହିତ ବଶିଷ୍ଠ ମହର୍ଷି ଜାଣି ॥ ଦାତା ଜନକ ନୃପତି ପ୍ରଦାନ ସମୟେ । କରିଥିଲେ ସ୍ଥିତି ଏକାଦଶସ୍ଥାନେ ଗ୍ରହେ ॥ କେହି ନ କହିଲେ ରାମ ବନଯିବା କଥା । ଯାହା ସେ ହେବାକୁ ଥିବ ନିଶ୍ଚେ ହୋଇବ ତା । ୨୯ ।

ବନଗ୍ରେ ରାମେ କାକାଚରନ୍ଂ ।
ରକ୍ଷୋଽଭଗ୍ନରତକ୍ରିପିଣ୍ଡମିବ ସ୍ତନଂ ଯୋ
ଦେବ୍ୟାବଦେହଦୁହିତୁର୍ବିଦଦାର କାକଃ ।
ଐଷୀକମସ୍ତ୍ରମଧିକୃତ୍ୟ ତଦା ତମସ୍ମା
ଜ୍ଜାଣୀଚକାର ତରସା ରଘୁରାଜପୁତ୍ରଃ । ୩୦ ।

ତପ୍ତ ପିଣ୍ଡର ସମାନ ରାକ୍ଷସ ମାରଣ । ବଇଦେହନନ୍ଦନୀ ସୀତାଦେବୀ-ଙ୍କର ସ୍ତନ ॥ ଅପି ବିଦାରନ୍ତେ କାକ ଅନୁଜ ଲକ୍ଷ୍ମଣ । କଣାକଲେ ନେତ୍ରେ ମାରଣ ଐଷିକ ବାଣ । ୩୦ ।

ଅଥ ମନ୍ତ୍ରିଣାନୀତେ ମାତୁଳଗୃହାଦ୍ଭରତେ
ମାତ୍ରା ସହ ତସ୍ୟ ଉକ୍ତିପ୍ରତ୍ୟୁକ୍ତୀ ।

ମାତସ୍ତାତଃ କ୍ୱ ଯାତଃ ସୁରପତିଭବନଂ ହା କୁତଃ ପୁତ୍ରଶୋକାତ୍
କୋଽସୌ ପୁତ୍ରଶ୍ଚତୁର୍ଣ୍ଣାଂ ତ୍ୱମବରଜତୟା ଯସ୍ୟ ଜାତଃ କିମସ୍ୟ ।
ପ୍ରାପ୍ତୋଽସୌ କାନନାନ୍ତଂ କିମିତି ନୃପଗିରା କିଂ ତଥାସୌ ବଭାଷେ
ମଦ୍ୱାଗ୍ବଦ୍ଧଃ ଫଳଂ ତେ କିମିହ ତବ ଧରାଧୀଶତା ହା ହତୋଽସ୍ମି ॥

ସମୁଖର ଯାଇଁ ମନ୍ତ୍ରୀ ଅଣିଲେ ଭରତ । ପଚାରିଲେ ଘରେ ଅଛି କହ ଅଗୋ ମାତଃ ॥ ପିତାମୋର କୁହ କେଉଁଠାରେ ରହିଛନ୍ତି । ପୁତ୍ରଶୋକେ ନାଶବୋଲି କୈକେୟୀ ବୋଲନ୍ତି । କୁହ ଚାରି ପୁତ୍ରମଧ୍ୟେ କେଉଁ ପୁତ୍ର ପାଇଁ । ଜ୍ୟେଷ୍ଠପୁତ୍ର ରାମ ଲାଗି କହିଲେ କୈକେୟୀ । କି ବିପତ୍ତି ଶ୍ରୀରାମଙ୍କୁ ପଡ଼ିଲା ଗୋ ମାତଃ । ବୋଇଲେ ପିତାଙ୍କ ଆଜ୍ଞା ଚଳିଲେ ବନସ୍ତ । କେଉଁ ହେତୁ ବନସ୍ତକୁ ପଠାଇଲେ ପିତା । ମୋ ବଚନେ ଗଲେ କହେ କେକୟଦୁହିତା ॥ କି ଫଳ ଲଭିଲ ଏହା କରାଇଣ ତୁମ୍ଭେ । କୈକେୟୀ ବୋଇଲେ ତୁମ୍ଭେ ରାଜା ହେବ ଏବେ । ଏ ବଚନ ଶୁଣି ଶୋକେ ଭରତ କହଇ । ହାୟ ବଧି କି ହେଲା ମୁଁ ନ ମଲି କିପାଇଁ । ୩୧ ।

ସୈଷା ନକ୍ରଷ୍ଟମତିରସ୍ମତ୍କୁଲୋଦିତେଷୁ
ଧର୍ମେଷୁ ସତ୍ସ୍ୱପି ଖଲା ପିଶିତାଶିନୀବ ।
ମାକନ୍ଦଶାଳିନି ବନେ ବିଷବଲ୍ଲିକେବ
ହା ହନ୍ତ କେକୟସୁତା କଥମାବିରାସୀତ୍ । ୩୨ ।

ଆମ୍ଭ କୁଳ ବୃତ୍ତି କେଡ଼େ ନୀଚ ବୃତ୍ତି କଲା । ରାକ୍ଷସୀ ପରାୟେ ଏହା ପ୍ରକୃତ ହୋଇଲା । ଚୂତବନେ ଯେଉଁପରି ହୁଏ ବିଷଲତା । ସେହିପରାୟେ ହୋଇଲା ଏ କୈକେୟୀମାତା । ୩୨ ।

ଅନମ୍ରମୌଳିମଣିବାହିତରାଜବେଶ ।
ମାନନ୍ଦସୂନ୍ମଖିଳାନବଲୋକନେନ ।

ହା ହନ୍ତ କେକୟସୁତାନୟନାଭିରାମଂ
ରାମଂ କଥଂ ତୁ ମୃନବେଶଧରଂ ଚକାର । ୩୩ ।

ସର୍ବ ଗୁଣଗ୍ରାହୀ ପୁଣି ସର୍ବ ଗୁଣଯୁତ । ସର୍ବଜନ ମନ କରୁଅଛନ୍ତି ଆନନ୍ଦିତ । ସକଳ ନୟନାଭିରାମଚନ୍ଦ୍ର ଗୁଣମଣି । ମୁନିବେଶ ହେଲେ କୈକେୟୀଙ୍କ ବୋଲ ଶୁଣି ॥

ଭରତଂ ଦୃଷ୍ଟ୍ୱା କୌଶଲ୍ୟାବଲାପଃ ।
ଦଶରଥନୃପତେଃ ସୁତଃ ସ ରାମୋ
ବନୟୁବତୀଂ ବଧୂଂ କ୍ରମେଣ ଲବ୍‌ଧ୍ୱା ।
ଅହହ ଯୁଗପଦେବ ସର୍ବମେତ-
ନ୍ମମ ମୁଷିତଂ ବଧିନାତନାର୍ଦ୍ଧକ୍ଷଣେନ । ୩୪ ।

ଭରତଙ୍କୁ ଗୃହିଁଣ କୌଶଲ୍ୟା ଶୋକେ କହି । ଯେ ଅବନୀପତିଙ୍କର ପତ୍ନ ନରସାଇଁ । ହୋଇଣ ରାମ ତାହାଙ୍କ କୋଳରେ ଜନମ । ପାଇଲେ ଉତ୍ତମ ନାରୀ ସର୍ବ ଗୁଣୋତ୍ତମ । ଅତ କ୍ଷଣାର୍ଦ୍ଧେ ବିଧି କଲା ହରଣ । ହାୟ ହାୟ ମୋହର ଯେ ଅଟେ ମନ୍ଦକର୍ମ । ୩୪ ।

## ଶତ୍ରୁଘ୍ନ ବାକ୍ୟଂ ।

ସାଯୋଧ୍ୟା ନଗରୀ ତଦାଶ୍ରମପଦଂ ତେ ଯଜ୍ଞଯୂପା ଇମେ ।
ତେଽମୀ ପୌରବଧୂ ବିଲାସସୁଭଗା ସ୍ତେଽମୀ ଲତାମଣ୍ଡପାଃ ।
ସୈବେୟଂ ସରଯୂ ରଘୂଦ୍ୱହରହଃକ୍ରୀଡ଼ା କଥାସାକ୍ଷିଣୀ
ସର୍ବଂ ପୂର୍ବମିବାସ୍ତି ନାସ୍ତି ଚ ପରଂ ରାମାବତାରୋ ହରେଃ ।୩୫।

ଏମନ୍ତ ସମୟେ କହେ ଶତ୍ରୁଘନ ବୀର । ପୂର୍ବପର ବିରାଜଇ ଅଯୋଧ୍ୟା ନଗର । ଆଶ୍ରମମାନ ଯେ ବିରାଜନ୍ତି ପୂର୍ବପର । ଯଜ୍ଞଶାଳମାନ ରହିଅଛି ସେହିପର ॥ ପୁରବଧୂଙ୍କର ଦେଖ ଭାଗ୍ୟଲତାମାନ । ବିରାଜେ ସରଯୂନଦୀ ରାମ କ୍ରୀଡା ସ୍ଥାନ ॥ ସର୍ବ ସ୍ଥାନମାନ ବିରାଜଇ ପୂର୍ବପର । ନାହାନ୍ତି କେବଳ ରାମ ଅଯୋଧ୍ୟା ବିହାର । ୩୫ ।

ଅଥ ଭରତସ୍ୟ ଚିତ୍ରକୂଟଗମନଂ ।

କୃତ୍ୱୋର୍ଦ୍ଧ୍ୱ ଦୈହିକଂ ସଜ୍ଜଶ୍ଚିତ୍ରକୂଟଂ ଗତସ୍ତଦା ।
କଥୟାମାସ ଭରତସ୍ତତ୍ର ରାମଂ ପିତୁର୍ମୃତିଂ । ୩୬ ।

ସାରି ପ୍ରେତକାର୍ଯ୍ୟ ତହୁଁ କୈକେୟୀନନ୍ଦନ । କଲେ ଚିତ୍ରକୂଟେ ରାମ ପାଶକୁ ଗମନ । ଯାଇଁ ଶ୍ରୀରାମଙ୍କୁ ତହୁଁ ଶୁଣାଇ ବାରତା । ତୁମ୍ଭଙ୍କୁ ବନକୁ ପେଷି ନାଶ ହେଲେ ପିତା । ୩୬ ।

ଅଥ ରାମବିଳାପଃ ।

ହା ତାତେତି ନ ଜଳ୍ପିତଂ ନ ରୁଦିତଂ ନ ସ୍ୱୀକୃତଂ ତଦ୍ବଚଃ
ସ୍ନାତଂ ନୋ ନ ନିରାକ୍ଷିତଃ ପରିଜନଃ ପିଣ୍ଡୋ ନ ଦତ୍ତଂ ଜଳଂ
ହା ଧାତଃ କିମକାରି ତଚ୍ଚ ଦୁଶ୍ଚିତଂ ଯେନ ବ୍ରଜନ୍ କାନନଂ
ନାପଶ୍ୟ ପିତରଂ ପ୍ରୟାଣସମୟେ ବୃଦ୍ଧଂ ଗୁରୁଂ ଶର୍ମଦଂ । ୩୭ ।

ହା ତାତ କହିଣ ରାମ ଭୂମିପରେ ଶୋଇ । ଜୀବନ ଚେଜିଲ ଅରେ ବଚନ ନ କହି । ପାଳିଲି ବଚନ ତୁମ୍ଭ ସତ୍ୟର ନିମନ୍ତେ । ତେଣୁ ନ ପାରିଲି ଦେଖି ମୃତ୍ୟୁ ଶବ ନେତ୍ରେ ॥ ଦେଲି ନାହିଁ ଜଳ କିବା ମୁଖ ଅଗ୍ନି ତାତ । ହାୟ ହାୟ ବିଧି ମୋତେ କଲୁ ଅନାଥ । ପ୍ରାଣ ଯିବା ସମୟରେ ନ ପାରିଲି ଦେଖି । ଅଭାଗ୍ୟ କାପାଳୁଁ ତେଜି ଅଇଲି ଉପେକ୍ଷି । ୩୭ ।

ତତଃ ପିଣ୍ଡଦାନଂ ।

ଇଦଂ ଭୁଙ୍କ୍ଷ୍ୱ ମହାରାଜ ଇଙ୍ଗୁଦୀଫଳମୁତ୍ତମଂ ।
ଯଦନ୍ନାଃ ପୁରୁଷରାଜଂସ୍ତଦନ୍ନାଃ ପିତୃଦେବତାଃ । ୩୮ ।

କରୁଅଛୁ ତାତ ଏ ଇଙ୍ଗୁଦୀ ଫଳ ଦାନ । ସନ୍ତୋଷରେ ହେ ତୁହିଁ କରନ୍ତୁ ଗ୍ରହଣ । ଖାଇ ଅନ୍ନ ଯେହେତୁ ତୋଷ ହୁଅନ୍ତି ପୁରୁଷ । ଅଟେହି ପିତୃଦେବ ସେହିପରି ଭୁଞ୍ଜି ଅସ । ୩୮ ।

ଭରତଂ ପ୍ରତି ରାମଶିକ୍ଷାବଚନଂ ।

ପରସ୍ତ୍ରୀ ମାତେବ କ୍ୱଚିଦପି ନ ଲୋଭଃ ପରଧନେ
ନ ମର୍ଯ୍ୟାଦାଭଙ୍ଗଃ କ୍ଷଣମପି ନ ନୀଚେଷ୍ୱଭିରୁଚିଃ ।

ଋପୌ ଶୌର୍ଯ୍ୟଂ ଧୈର୍ଯ୍ୟଂ ବିପଦି ବିନୟଂ ସଂପଦି ସତା
ମିଦଂ ବର୍ତ୍ମ ଭ୍ରାତର୍ଭରତ ନିୟତଂ ଯାସ୍ୟସି ସଦା ।୩୯।

ଦେଖିବ ପର ନାରୀଙ୍କୁ ମାତାର ସମାନ । ନ କରିବ କେବେ ହେଲେ ଲୋଭ ପର ଧନ ॥ ଆପଣା ମର୍ଯ୍ୟାଦା ଭଙ୍ଗ ନ କରିବ କାହିଁ । ଛାଣି ସୁଦ୍ଧା ନୀଚ ଲୋକଙ୍କ ସଙ୍ଗତେ ନ ରହି । ଦେଖାଇବ ଶତ୍ରୁଠାରେ ସଦା ପ୍ରିୟ ଭାବ । ବିପଦ ସମୟେ ଧୀର ସ୍ୱଭାବ ବହିବ । ହୋଇବ ସମ୍ପଦ ସମୟରେ ଯେ ବିନୟୀ । ସାଧୁ ଜନମାନଙ୍କର ପଥ ଅଟେ ଏହି । ସବୁବେଳେ ଏହି ପଥେ ଚଳ ହେ ଭରତ । କହିଲି ମୁ ଯାହା ପାଳି ଚଳିବ ନିୟତ । ୩୯ ।

ବାଞ୍ଛା ସଜ୍ଜନସଙ୍ଗମେ ପରଗୁଣେ ପ୍ରୀତିର୍ଗୁରୌ ନମ୍ରତା
ବିଦ୍ୟାୟଂ ବ୍ୟସନଂ ସ୍ୱଯୋଷିତି ରତି ର୍ଲୋକାପବାଦାଦ୍ଭୟଂ ।
ଭକ୍ତିଃ ଶୂଳିନି ଶକ୍ତି ରାତ୍ମଦମନେ ସଂସର୍ଗମୁକ୍ତିଃ ଖଳେ—
ଷ୍ୱେତେ ଯତ୍ର ବସନ୍ତି ନିର୍ମଳ ଗୁଣାସ୍ତେଭ୍ୟୋ ନରେଭ୍ୟୋ ନମଃ ।

ସନ୍ଥ ସଜ୍ଜନ ସଙ୍ଗତେ କରୁଥିବ ପ୍ରୀତି । ନମ୍ରତାରେ ଗୁରୁଜନ ପୂଜା କର ଭକ୍ତି ॥ ଆପଣାର ନାରୀଠାରେ ରଖିଥିବ ସ୍ନେହ । ଲୋକ ଅପବାଦ ପ୍ରତି କରୁଥିବ ଭୟ । ସଦାଶିବେ ଭକ୍ତି ଆତ୍ମା ଦମନେ ଶକତି । ନ କରିବ କେବେବେଳେ ଦୁର୍ଜ୍ଜନ ସଙ୍ଗତି ॥ ଏହିପରି ଗୁଣି ଜନେ ଥିବେ ଯେଉଁ ସ୍ଥାନେ । ସେ ସ୍ଥାନେ ବସତି କରୁଥିବ ପ୍ରତିଦିନେ । ୪୦ ।

ସାମାନ୍ୟୋଽୟଂ ଧର୍ମସେତୁର୍ନରାଣାଂ
କାଲେ କାଲେ ପାଲନୀୟୋଭବଦ୍ଭିଃ ।
ନତ୍ୱା ନତ୍ୱା ଭାବିନୋଭୂମିପାଲାନ୍
ଭୂୟୋଭୂୟୋ ଯାଚତେରାମଚନ୍ଦ୍ରଃ । ୪୧ ।

ଲୋକଙ୍କର ଧର୍ମପଥ ରହିବ ଯେମନ୍ତ । ପାଳନ କରିବ ସଦାକାଳ ଧରି ସତ୍ୟ । ବାରମ୍ବାର ଏହି ମୋର ମାଗୁଣି ଅଟଇ । ନୃପତି ଯେ ହେବେ ତାଙ୍କୁ ନମସ୍କାର ହୋଇ । ୪୧ ।

( ଭରତୋ ଗଗନମାଲୋକ୍ୟ ନାଟ୍ୟଯୁତ । )

ହ୍ନା ହନ୍ତ ମାତରହହ କୁଳତାନଲୋମାଂ-
କାମା ଦହତ୍ତ୍ଵନ୍ନେଶୈଳକୃପାଣବାଣାଃ ।
ମଥ୍ନନ୍ତୁ ତାନ୍ ବସହ୍ତେ ଭରତଃ ସଲ୍ଲିଳଂ
ଶ୍ରୀରାମଚନ୍ଦ୍ର ପଦପେ୍ୟ ସୁ ନ ବିପ୍ରୟୋଗଂ । ୪୨ ।

ଏହା ଶୁଣି ଅକାଶକୁ ଅନାଇ ଭରତ । ହା ମତ କେକେୟୀ ତୁହି କଲୁ ଗୋ ଏମନ୍ତ ॥ ଅନଳ ନ ପାଇ ମୋର ଜଳ ଇଲୁ ଗାନ । ଶିଳାରେ ମୋ ଶିର ପିଟାଇ ଅନୁବରତ ॥ କୁଳୀଶ ଖଡ଼ଗ ମୋର ଗାତ୍ରେ ପ୍ରହାରଲୁ । ତହୁଁ ବଳି ଦୁଃଖ ଅଜ ଯହା ପଛେ ଦେଲୁ ॥ ଏହି ପ୍ରଭୁ ରଘୁନାଥ ବିଚ୍ଛେଦ ବାରତା । ସହି ନ ପାରଇ ରହି ଶୁଣି ଏହି କଥା । ୪୨ ।

ଭରତଂ ପ୍ରତି ରାମଃ ।

ମା- ବ୍ୟଧତେ ନହି ତଥା ବିପନେଷୁ ବାସେ
ରାଜ୍ୟେଽରୁଚି ଜ୍ଜନକବତ୍ସଲସ୍ୟ ।
ରାମାନୁଜସ୍ୟ ଭରତସ୍ୟ ଯଥା ତ୍ରାସ୍ୟାଃ
ପାଦାରବିନ୍ଦଯୁଗଳକ୍ଷତ ରୁଦ୍ଧୀକାନ୍ୟୈଃ । ୪୩ ।

ଭରତକୁ ଗୁହିଁଣ ବୋଲନ୍ତି ରଘୁନାଥ । କେକେୟୀ ନନ୍ଦନ ତୁମ୍ଭେ ମୋର ସାନଭ୍ରାତ । ଅଟ ବଡ଼ ପ୍ରିୟ ବାବୁ ତୁମ୍ଭେ ପିତାଙ୍କର । ତୁମ୍ଭଙ୍କୁ କରନ୍ତି ସ୍ନେହ ଜନନୀ ତୁମ୍ଭର । ରାଜ୍ୟେ ଲୋଭ ନାହିଁ ତୋର ମନରୁ ଜାଣୁଛୁ । ମୋତେ ବନବାସ ଦୁଃଖ ତେସନ ହେଉଛି । ଜାନକୀ ଚରଣ କ୍ଷତ ବାଧଇ ଯେମନ୍ତ । ସେପରି ତୋ କଥା ମୋତେ ବାଧୁଛି ଭରତ ॥

ତତଃ ସୀତାଂ ପ୍ରଣମତି ଭରତେ

ମୂର୍ଦ୍ଧ୍ନା ବଦ୍ଧଜଟେନ ବଲ୍କଲଭୃତା ଦେହେନ ପାଦାନତଂ
କୁର୍ବାଣେ ଭରତେ ତଥା ପ୍ରରୁଦିତଂ ତାରସ୍ଵରୈସୀତାୟା

ଯେନୋଦ୍ଧୃତ୍ୟଗ୍ରିବହଙ୍ଗମର୍ଗତତରୁ ନିଃସତ୍ତ୍ୱଦଶାପଦଃ ।
ଶୈଳେନ୍ଦ୍ରୋଽପିକଲୌଷ ଭୂଟ୍ଟେଙ୍କଭୃଙ୍ଗୁସାସ୍ରଃ ପୟଃପ୍ରସ୍ରବୈଃ ।

ଶିରେ ଜଟାଭାର କଷା ବସ୍ତ୍ର ପରିଧାନ । ଭରତ ଚରଣେ ସୀତା କରନ୍ତି ପ୍ରଣାମ ॥ ତାହା ଦେଖିଣ ହୃଦୟ ହୋଇଲା ବିକଳ । କରନ୍ତି ରୋଦନ ଚିତ୍ରକୂଟର ଶିଖର । ରୋଦନ ଶୁଣିଣ ବୃକ୍ଷ ଛାଡ଼ ପକ୍ଷୀଗଣ । ବୃକ୍ଷ ଛାଡ଼ ଏଣେ ତେଣେ କରନ୍ତି ଗମନ । ଗିରିପରୁ ବାରିଧାର ଘନ ଘନ ବହି । ଯଥା ଯାଏ ଯେଉଁପରି ଗିରାନ୍ଦ୍ର କାନ୍ଦଇ । ୪୪।

ଶ୍ରୀରାମଂ ପ୍ରତି ଭରତଃ ।

ଅଯୋଧ୍ୟା ରାଜ୍ୟମଲଂକରୋତୁ ବିପିନେ ବାସୋ ମୟା ସ୍ୱୀକୃତ —
ସ୍ତାତାଜ୍ଞାପରିପାଳନବ୍ରତଫଲଂ ଗୃହ୍ଣାତୁ ମତ୍ତୋ ଭବାନ୍
ଇତ୍ୟୁକ୍ତେଽପ୍ୟବଗମ୍ୟ ନାକୃତ ମନୋରାଜ୍ୟେ ଯଦା ରାଘବଃ
ସମ୍ପ୍ରାପ୍ତୋ ଭରତସ୍ତଦା ନିଜପୁରୀମାଦାୟ ତତ୍ପାଦୁକେ । ୪୫ ।

କରନ୍ତୁ ରାଜ୍ୟପାଳନ ଅହେ ରଘୁବୀର ! ମୁଁ କରିବି ବନବାସ ଅଙ୍ଗୀକାର କର । ପିତାଜ୍ଞା ପାଳନର ଯେ ବ୍ରତ ଫଳ ଯାହା । କର ମୋଠାରୁ ଗ୍ରହଣ ପ୍ରଭୁ ରଘୁନାହା । ଏ ବଚନ ଭରତଙ୍କ ମୁଖୁଁ ଶୁଣି ରାମ । ଜାଣିଲେ ରାଜ୍ୟପାଳଣକୁ ତ ଏ ଅକ୍ଷମ । ଦେଲେ ପାଦୁକା ତାହାଙ୍କୁ ଦେଲେ ତତକାଳ । ଘେନି ଭରତ ବ୍ୟାକୁଳେ ଚଳିଲେ ନଗର । ୪୫ ।

ଚତୁର୍ଦ୍ଦଶ ସମାନ୍ତେ ତ୍ୱଂ ଯଦି ନାୟାସି ରାଘବ ।
ସତ୍ୟଂ ସତ୍ୟଂ ବଦାମ୍ୟଗ୍ନୌ ପ୍ରଯୁଚ୍ଛାମି କଳେବରଂ । ୪୬ ।

ଭରତ କରଇ କର ଯୋଡ଼ ନିବେଦନ । ଚତୁର୍ଦ୍ଦଶ ବର୍ଷ ଅନ୍ତେ ନ ଦେଲେ ଦର୍ଶନ ॥ ଅନଳ ଜାଳିଣ ନିଶ୍ଚେ ଦହିବି ଶରୀର । ସତ୍ୟ ସତ୍ୟ ସତ୍ୟ ଏହି ପ୍ରତିଜ୍ଞା ମୋହର । ୪୬ ।

ରାଜ୍ୟେ ତେ ଅଭିଷିଚ୍ୟାଥ ନନ୍ଦିଗ୍ରାମଂ ଗତଃ ସ୍ୱୟଂ ।
ରାଘବାଗମନାପେକ୍ଷୀ ଭରତୋଽପାଳୟନ୍ମହୀଂ । ୪୭ ।

କଲେ ପାଦୁକାକୁ ଅଭିଷେକ ଅଯୋଧ୍ୟାରେ । ଆପେ ରହିଲେ ଯାଇଁଣ ନନ୍ଦିଗ୍ରାମଠାରେ । ରାମଙ୍କ ଆସିବା ଯାଏ ସେହି ସ୍ଥାନେ ରହି ପାଳିଲେ ଭରତ ଅତି ଯତନରେ ମହୀ । ୪୭ ।

ବଂଗ୍ତୁ ନିବର୍ତ୍ତ୍ୟ ଭରତଂ ହ୍ୱପଦାଦ୍ୟୁ ଚନ୍ଦ—
କୂଟସ୍ଥଲୀମଥ ବିରାଧବଧଂ ବିଧାୟ ।
କୁମ୍ଭୋଦ୍ଭବେନ ମୁନିନା ସହ ମନ୍ତ୍ରୟିତ୍ୱା
ରାମୋନିବାସକରୋଦଥ ପଞ୍ଚବଟ୍ୟାଂ । ୪୮ ।

ପଠାଇଣ ଭରତଙ୍କୁ ରାଜ୍ୟେ ରଘୁବୀର । ପଞ୍ଚବଟୀ ଅଭିମୁଖେ କରନ୍ତି ଗମନ ॥ ବିରାଧ ନାମେ ରାକ୍ଷସ ତଥେ ବଧ କରି । ଅଗସ୍ତିଙ୍କ ଆଶ୍ରମକୁ ଗଲେ ତହୁଁ ଚଳି ॥ ମହାଋଷି ଅଗସ୍ତିଙ୍କ ଆଜ୍ଞା ପାଳି ତହୁଁ । ପଞ୍ଚବଟୀ ବନରେ ବିଶ୍ରାମ କଲେ ଯାଇଁ । ୪୮ ।

ତଂ ପଶ୍ୟେଦମିବ ବାଞ୍ଛ୍ୟ ସ୍ୱଶଙ୍କଂ କମ୍ପମାନକମନୀୟକଲାପାଃ
ତାଣ୍ଡବାନି ବିଦଧୁ ସ୍ତ୍ରୁଟିଷଣ୍ଡେ ଦଣ୍ଡକାବନଶିଖଣ୍ଡିଯୁବାନଃ ।୪୯।

ଥିଲେ ଦଣ୍ଡକା ଅରଣ୍ୟେ ଯେ ମୟୂରପନ୍ତି । ଶ୍ରୀରାମଙ୍କୁ ଦେଖି ଭସ୍ତି ଧାଇଣ ଗୃହାନ୍ତି । ଦେଖିଲେ ଘନ ବରନ ଦାଶେ ରାମ ରୂପ ଆନନ୍ଦରେ ନୃତ୍ୟକଲେ ଟେକିଣ କଳାପ ॥ ମନେ ମନେ ଭାବିଲେ ଏ ବରଷା ସମୟ । ସର୍ବେ ମିଳି କଲେ କେଳି ତେଜି ମନୁ ଭୟ ।

ଲକ୍ଷ୍ମଣେନ ବଚିନା ରଘୁନାଥପ୍ରେରିତେନ ବିପିନାଦୁପନୀତଂ
ସ୍ୱର୍ଣ୍ଣବର୍ଣ୍ଣମକରୋଦଧିକର୍ଣ୍ଣଂ କର୍ଣ୍ଣିକାରକୁସୁମଂ କରଭୋରୁଃ ।୫୦।

ରାମ ଆଜ୍ଞା ପାଇ ଗଲେ ସୁମିତ୍ରାନନ୍ଦନ । ବନୁ କଣିଅର ଫୁଲ ଆଣିଲେ ବହନ । ସ୍ୱର୍ଣ୍ଣ ପରି ବର୍ଣ୍ଣ ଦେଖି ଫୁଲ ମନୋହର । ଜନକନନ୍ଦନୀ ତୋଷେ ଘେନିଲେ କର୍ଣ୍ଣର ।

ଦୃଷ୍ଟ୍ୱାତଦୈନ୍ୟଂଜନକାତ୍ମଜାଦ୍ୱା
ସ୍ତବୈବ ରାମଃ ସହ ଲକ୍ଷ୍ମଣେନ ।

ଗୋଦାବରୀତୀରସମୀପଦେଶେ
ଚକାର ଚାରୁଂନିଜପର୍ଣ୍ଣଶାଲାଂ । ୪୧ ।

ପାଇବାରୁ ପଥଶ୍ରମ ଜନକନନ୍ଦିନୀ । ତା ଦେଖି ଶ୍ରୀରାମ ସଙ୍ଗେ ଲକ୍ଷ୍ମଣଙ୍କୁ ଘେନି ॥ ଗୋଦାବରୀ ନଦୀ ତଟ ନିକଟେ ମିଳିଲେ । ରଚିଲ ପର୍ଣ୍ଣକୁଟୀର ତହିଁ ନିର୍ମାଣିଲେ ।

ଅଥ ପଞ୍ଚବଟୀସ୍ଥାନେ ସୂର୍ପଣଖାୟା
ଆଗମନଂ ।

ସ୍ତ୍ରୀମାୟୟା ହରତି ସୂର୍ପଣଖେତି ବୃଦ୍ଧ୍ୟା
ସୌମିତ୍ରିଣା ସପଦି ଖଡ଼୍‌ଗନିକୃତ୍ତନାସା ।
ଯା ରାବଣସ୍ୟ ଭଗିନୀ କୁପିତାଥ ତସ୍ୟ
ପ୍ରତ୍ୟାନନାୟ ଖରଦୂଷଣସୈନ୍ୟମୁଗ୍ରଂ । ୪୨ ।

ଏଥୁଅନ୍ତେ କଲେ ପଞ୍ଚବଟୀ ବନେ ବାସ । ସୂର୍ପଣଖା ନାମେ ଦିନେ ଅସୁରୀ ପ୍ରବେଶ । ରମଣୀ ମାୟାରେ ମୁହିଁ ଏହାଙ୍କୁ ମୋହିବି । ଏହି-ପରି ମନେ ମନେ ରାକ୍ଷସୀ ଭାବି । ତାହା ଜାଣିଲେ ତକ୍ଷଣେ ସୁମିତ୍ରା ନନ୍ଦନ । ତୀକ୍ଷ୍ଣ ଶରେ କାଟିଲେ ତାହାର ନାସା କର୍ଣ୍ଣ ॥ ପଳାଇଣ ରାକ୍ଷସୀ ଗଲା ତହୁଁ ଖରେ । ସୈନ୍ୟ ସହିତେ ଆଣିଲା ଖରଙ୍କୁ ସତ୍ବରେ । ୪୨ ।

ଶ୍ରୀରାମସ୍ୟ ଗାମ୍ଭୀର୍ଯ୍ୟଂ ।

କପୋଲେ ଜାନକ୍ୟାଃ କରିକଲଭଦନ୍ତଦ୍ୟୁତିମୁଷି
ସ୍ମରସ୍ମେରସ୍ଫାରୋଡ୍ଡମରପୁଲକଂ ବକ୍ତ୍ରକମଲଂ ।
ମୁହୁଃ ପଶ୍ୟନ୍ ଶୃଣ୍ୱନ୍ ରଜନିଚରସେନାକଲକଲଂ ।
ଜଟାଜୂଟଗ୍ରନ୍ଥିଂ ଦୃଢ଼ୟତି ରଘୂଣାଂ ପରିବୃଢ଼ଃ । ୪୩ ।

ସୀତାଦେବୀଙ୍କ କପୋଳ ଅତି ମନୋହର । ଜିଣିଛି ଶୋଭାରେ କରିବର ଗଣ୍ଡସ୍ଥଳ । ମନ୍ଦମନ୍ଦ ହାସମୁଖେ କରନ୍ତେ ପ୍ରକାଶ । ଦେଖିଲେ ଜନ୍ମଇ କନ୍ଦର୍ପର ମନେ ହାସ । ଏମନ୍ତ ସମୟେ ଆସି ରାକ୍ଷସ ସକଳେ ।

ଶ୍ରୀରାମଙ୍କ ପାଶେ ଯାଇଁ ବେଢ଼ିଲେ ଗନ୍ଧିଲେ ॥ ଶୁଣି କଳକଳ ଧ୍ୱନି ଉଠିଲେ ଶ୍ରୀରାମ । ବାନ୍ଧିଲେ ଝୁନ୍ତୁରେ ଜଟା କଟିବନ୍ଧନ ନ । ୫୩ ।

ତତୋ ରାକ୍ଷସବଧଃ ।

ଚତୁର୍ଦ୍ଦଶସହସ୍ରକଂ ପରମଚଣ୍ଡରକ୍ଷୋବଳଂ
ନିହତ୍ୟ ସମରାଙ୍ଗଣେ ସକଳମେକବାଣେନ ସଃ ।
ଖରଂ ତ୍ରିଶିରସାନ୍ୱିତଂ ତଦନୁ ଦୁର୍ଦ୍ଧରଂ ଦୂଷଣଂ
ଜଘାନ ଘନଘୋଷଣୈସ୍ତ୍ରିତକାମୁ କୋ ରାଘବଃ । ୫୪ ।

ଚଉଦସହସ୍ର ପ୍ରଚଣ୍ଡ ରାକ୍ଷସଙ୍କ ବଳ । ଏକ ଏକ ବାଣେ ରାମ ବଧିଲେ ସକଳ ॥ ଘନ ଘନ୍ତ କଣି ଶୁଣେ କାର୍ମୁକଟଙ୍କାର । ରଣେ ନାଶ ଗଲେ ତ୍ରିଶିର ଦୂଷଣ ଖର । ୫୪ ।

ତତୋ ରାବଣକୃତ୍ୟଂ

ସୀତାରୁପଂ ସୁଧାହ୍ରଦ୍ୟଂ ଶ୍ରୁତ୍ୱା ସୂର୍ପଣଖାମୁଖାତ୍ ।
ରାମଂ ମୋହାୟ ମାରୀଚଂ ପ୍ରେଷୟାମାସ ରାବଣଃ । ୫୫ ।

ସୂର୍ପଣଖା ମୁଖୁଁ ଶୁଣି ଲଙ୍କାର ରାବଣ । ଅତ୍ୟନ୍ତ ସୁନ୍ଦର ସୀତାଙ୍କର ରୂପ ଗୁଣ । ମାରୀଚକୁ ପଠାଇଲା ଶ୍ରୀରାମଙ୍କ ପାଶେ । ହରଷ ହୃଦୟେ ତାଙ୍କୁ ଭୁଲାଇବା ଆଶେ । ୫୫ ।

ମାରୀଚଃ ସ୍ୱଗତଂ ।

କୃତାନ୍ତଦଣ୍ଡଦୋର୍ଦ୍ଦଣ୍ଡ ସକଳଚଣ୍ଡାଂଶୁବଂଶ ଖଣ୍ଡଲୋରାମଚନ୍ଦ୍ରଃ । ଅଯମ୍ପି ମହେନ୍ଦ୍ରାବସ୍କନ୍ଦସ୍ଥାନୋଲଙ୍କେଶ୍ୱରଃ । ତଦବଶ୍ୟଂ ଶମନଭବନାତିଥିନା ଭବିତବ୍ୟଂ ଜୀବତେନାଦ୍ୟ । ୦ ।

ରାମାଦପି ଚ ମର୍ତ୍ତବ୍ୟଂ ମର୍ତ୍ତବ୍ୟଂ ରାବଣାଦପି ।
ଉଭାଭ୍ୟାମପି ମର୍ତ୍ତବ୍ୟଂ ବର ରାମାନ୍ନ ରାବଣାତ୍ । ୫୬ ।

ମନେ ମନେ ବିଚାରିଲା ମାରୀଚ ରାକ୍ଷସ । ଜାଣିଲି ମୋହର କାଳ ପୂରିଲା ଅବଶ୍ୟ ॥ ଯେଉଁ ଶ୍ରୀରାମଙ୍କ ଭୁଜଦଣ୍ଡ ଯମଦଣ୍ଡ । ତାରୁ ବଳି ଇନ୍ଦ୍ରତୁଲ୍ୟ ଅତ୍ୟନ୍ତ ପ୍ରଚଣ୍ଡ ॥ ଇନ୍ଦ୍ରକୁ ଜିଣିଲା ଯେନୁ ଲଙ୍କାର ଈଶ୍ୱର ।

କାରେ ସ୍ୱର୍ଗପୁର ବାହୁବଳେ ଅଧିକାର । ଆଜ ମୋର ହେବ ରାମହସ୍ତରେ ମରଣ । ନ ଗଲେ ନରକ କଷ୍ଟେ ଏ ଦୁଷ୍ଟ ରାବଣ । ଜାଣୁଛି ମରଣ ମୋର ଏ ଦୁହିଁଙ୍କ ହସ୍ତେ । ରାବଣ ହସ୍ତେ ନ ମରି ମରେଁ ରାମ ହାତେ । ୫୬ ।

ଅନନ୍ତରଂ ମାରୀଚଃ ।

ମୂଳକିତଫଳମୂଳୈସ୍ତନ କାଳଂ କ୍ଷୟନ୍ତଂ ।
ଦଶରଥକୁଳଦୀପେ ସୀତୟା ଲକ୍ଷ୍ମଣେନ ।
ଗମୟତ ଦଶକଣ୍ଠୋତ୍କଣ୍ଠୟା ପ୍ରେରିତଂ ଦ୍ରାକ୍
କନକମୟକୁରଙ୍ଗ ଜାନକୀ ସଂଦଦର୍ଶ । ୫୭ ।

ଏମନ୍ତ ବିଗ୍ରହ ମନେ କଣ୍ଟି ଦୂର ଯାଇ । ମାୟା କରି ବନରେ କନକମୃଗ ହୋଇ । ଜାନକୀ ସହିତେ ବନେ ଶ୍ରୀରାମ ଲକ୍ଷ୍ମଣ । ଭୁଞ୍ଜି ନାନା ଫଳ ମୂଳ ସୁଖେ ନ୍ୟନ୍ତ ଧନ । ଲଭିବା ଆଶେ ସୀତାଙ୍କୁ ପାପିଷ୍ଠ ରାବଣ । ପଠାଇଲା ମାରୀଚଙ୍କୁ ରାମ ସନ୍ନିଧାନ ॥ ଗୃହିଁଥିଲେ ଜାନକୀ କୁଟୀର ଦୁଆରେ । ଦେଖିଲେ ସୁବର୍ଣ୍ଣ ମୃଗ ଚରୁଛି ବନରେ । ୫୭ ।

ତତଃଶୀଘ୍ରଂ ଶ୍ରୀରାମଂ ପ୍ରତି
ସୀତାବାକ୍ୟଂ ।

ଚରୃଶବିତସର୍ବାଙ୍ଗଂ ଦୃଷ୍ଟ୍ୱା ମାୟାମୃଗଂ ତଦା ।
ଜାନକୀ ହର୍ଷୟାମାସ ଦେହି ଦେହୀତି ମେ ପ୍ରଭୋ । ୫୮ ।

ସ୍ୱର୍ଣ୍ଣମୃଗ ଦେଖି ସତୀ ରାମଙ୍କୁ ବୋଲଇ । ଦେଖ ଏକ ମୃଗ ବନେ ଚଳେବେଗ ହୋଇ । ହୋଇଛି ତାହାର ଅଙ୍ଗ ରତ୍ନରେ ଜଡ଼ିତ । ମାଗୁଅଛି ଦିଅ ମୋତେ ଆଣି ଏହା କାନ୍ତ । ୫୮ ।

ସ୍ନେହାତ୍ ପୁନଃ ପୁନଃ

ପ୍ରିୟତମ ମୃଗମଭୂତାଙ୍ଗମେନଂ
ମୃଗପତିବାହନମ ଦେହି ମେ ପ୍ରସୀଦ ।

ଇତି ଜନକସୁତାବଚୋଽନୁରୋଧାତ୍
କନକମୃଗଂ ସଶରୋଽନ୍ୱୟାୟ ରାମଃ । ୫୯ ।

ବାରମ୍ବାର ସ୍ନେହଭରେ ଜାନକୀ ମାଗନ୍ତି । ଯେବେ ମୋଠାରେ ପ୍ରସନ୍ନ ହୁଅ ପ୍ରାଣପତି ॥ ଦିଅ ଆଣି ଏ ବଚନ କୁରଙ୍ଗଟି ମୋତେ । ତୁମ୍ଭ ପରାକ୍ରମ ଯହିଁ ପରାସ୍ତ ଜଗତେ ॥ ସୀତାଙ୍କର ଅନୁରୋଧେ ଶ୍ରୀରାମ ବାହାର । ମୃଗ ମାରିବାକୁ ଗଲେ ଧରି ଧନୁଶର । ୫୯ ।

ଶ୍ରୀରାମଃ ।

ବତ୍ସ ଲକ୍ଷ୍ମଣ ! ତ୍ୱଂ ଅସ୍ୟାଃ ପ୍ରଜାବତ୍ୟାଃ ସହାୟୋ ଭବ ।
ଯାବଦହଂ କୁରଙ୍ଗଂ ନିହତ୍ୟାଗଚ୍ଛାମୀତି ନିଷ୍କ୍ରାନ୍ତଃ ।

ଲକ୍ଷ୍ମଣଙ୍କୁ ବୋଲେ ମୁଁ ଆସିବ ପରକ୍ଷଣେ । ଜାନକୀଙ୍କୁ ଜଗି ରଖି ଥିବ ଅନୁକ୍ଷଣେ ॥ ଏତେକହି ବାହାରିଲେ ଧନୁଶର ଧରି । ମାୟାମୃଗ ପଛେ ଗଲେ ପଥ ଅନୁସରି । ୫୯ ।

ରାମସ୍ୟ ମାୟାମୃଗାନୁସରଣଂ ।

ଆନ୍ଦୋଳୟନ୍ ବାଣିଖମେକକରେଣ ଗୃହ୍ଣନ୍
କୋଦଣ୍ଡଦଣ୍ଡମପରେଣ କରେଣ ସଜ୍ୟଂ ।
ସଂନହ୍ୟ ପୁଷ୍ପଲତୟା ପଟଳଂ ଜଟାନାଂ
ରାମୋ ମୃଗଂ ମୃଗୟତେ ବନବୀଥିକାସୁ । ୬୦ ।

ଧରି ଧନୁ ହସ୍ତେ ଗଲେ ମୃଗକୁ ଗୋଡ଼ାଇ । ତୀକ୍ଷ୍ଣଶର ଏକ ଛନ୍ତି ଗୁଣରେ ଚଢ଼ାଇ । ଜଟାଯୁଟେ ବାନ୍ଧିଛନ୍ତି କୁସୁମଲତାରେ । ଖୋଜନ୍ତି ମୃଗକୁ ରାମ ଲତା ଅଭ୍ୟନ୍ତରେ । ୬୦ ।

ମୃଗଚରିତଂ ।

ହସ୍ତାଭ୍ୟାଂ ସମୁପୈତି ଲେଢି ଚ ତୃଣାନ୍ୟସ୍ପୃଶ୍ୟତାଂଗାହତେ
ଗୁଲ୍ମାନ୍ ପ୍ରାପ୍ୟ ନିବର୍ତ୍ତତେ କଣଳୟାନାଘ୍ରାୟ ଗୃଧ୍ରାୟ ଚ ।
ଭୂୟସ୍ତ୍ରସ୍ୟତି ପଶ୍ୟତି ପ୍ରତିଦିଶଂ କଣ୍ଡୂୟତେ ସ୍ୱାଂ ତନୁଂ
ଦୂରଂ ଧାବତି ତିଷ୍ଠତି ପ୍ରଚଳତି ଭ୍ରାନ୍ତେଷୁ ମାୟାମୃଗଃ । ୬୧ ।

ରାମଙ୍କୁ ଦେଖିଣ ମୃଗ କରି କ୍ଷିପ୍ରଗତି । ଯୁନି କେତେବେଳେ ତୃଣ ଭକ୍ଷେ ଦୂରେ ଅତି । ଅଦୃଶ୍ୟ ହୋଇଣ କାହିଁ ରହଇ ଲଟଣି । ପୁଣି ଆଗେ ଭକ୍ଷେ ଯାଇଁ ଲତା ଗୁଳ୍ମମାନ ॥ ଭୟେ ନିରୀକ୍ଷଣ କରେ ଦିଗ ବାରମ୍ବାର । ଧାଇଁ ଯାଇ କେତେବେଳେ ପ୍ରବେଶଇ ଦୂର । ପୁନରପି ବନ ପ୍ରାନ୍ତେ କରଇ ଗମନ । ଏହିପରି ମାୟାମୃଗ ଭ୍ରମଇ କାନନ । ୬୧ ।

ସୀତା ଲକ୍ଷ୍ମଣଂ ପ୍ରତି ।

ଚିରସ୍ଥିତ ମୃଗାନ୍ୱେଷୀ ନାଥଃ କଥଂ ରଘୁନନ୍ଦନୋ
ବନାଦଭ୍ୟେତି ନୋଽଦ୍ୟାପି ରକ୍ଷୋଭିର୍ବିନିପାତିତଃ ।
ମୁହୁରପି ଭବାନ୍ କ୍ରୋଶେ ନ ଜ୍ୟାୟସଃ ପରିମାର୍ଗଣେ
ବ୍ରଜତି ତଦହୋ ଚେତଃ କିଂ କିଂ ନ ଲକ୍ଷଣ ଶଙ୍କତେ । ୬୨ ।

ଲକ୍ଷ୍ମଣଙ୍କୁ ଚାହିଁ ସୀତା ବୋଲନ୍ତି ଉତ୍ତର । ବିଳମ୍ବ ହୋଇଲା ପ୍ରଭୁ ଗଲେ କେତେଦୂର ॥ ଭୟଙ୍କର ବନ ଦୁଷ୍ଟ ରାକ୍ଷସେ ରହନ୍ତି । ଖୋଜିଅଣ ଯାଇଁ ଜ୍ୟେଷ୍ଠଭାଇ ରଘୁପତି ॥ କହୁଅଛି ବାରମ୍ବାର ନ କର ଗମନ । ସ୍ଥିରହୋଇ ରୁହ ଭୟ ନ କର ଯେ ମନ । ୬୨ ।

ତିରାକ୍ଷ୍ଟେ ରାମେ କରୁଣକଟୁଭିର୍ମୈଥିଲସୁତା
ବଚୋଭିଃ କୋଦଣ୍ଡାଟନିଜନିତରେଖାନ୍ତରଗତାଂ ॥
ବିଧାୟୈନାଂ ରାମସ୍ତ୍ରୁଟିତପଦପଦ୍ମାଙ୍କିତଭୁବଂ
ତଦଧ୍ୱାନଂ ପଶ୍ୟନ୍ କଥମପି ସ ସୌମିତ୍ରି ରଗମତ୍ । ୬୩ ।

ସୀତାଙ୍କ ମୁଖରୁ ଶୁଣି କଟୁଉକ୍ତିମାନ । ବାହାରିଲେ ରାମ ପାଶେ ସୁମିତ୍ରାନନ୍ଦନ ॥ ଭୂମିତଳେ ଧନୁ ହୁଲେ କାଟିଲେ ଯେ ଗାର । ଶପଥ ଦେଇ ସୀତାଙ୍କୁ ରଖାଇ କୁଟିରେ ॥ ବାହାରିଲେ ପଥେ ଚିହ୍ନି ପାଦପଦ୍ମ ଚିହ୍ନ । ପଥମଧ୍ୟେ ଅତିକଷ୍ଟେ କରନ୍ତି ଗମନ । ୬୩ ।

କପଟପରବ୍ରାଜକରୂପଧାରୀ ରାବଣଂ
ଅମୁପୈତି ॥

ନୀତେ ଦୂରଂ ଜାନକହରଣେଚ୍ଛଦ୍ମନା ରାମଚନ୍ଦ୍ରଃ
ପଶ୍ଚାଦେନଂ ଭ୍ରୂତମନୁସରତ୍ୟେଷ ବଦ୍ଧଃ କନିଷ୍ଠଃ ।
ବଭ୍ୟଦ୍ ବିଭ୍ୟତ୍ପ୍ରବିଶତି ତତଃ ପର୍ଣ୍ଣଶାଲାଂ ସ ଭିକ୍ଷୁ
ର୍ଦିଙ୍ନାଥେଭ୍ୟଃ କଥଯତି ନିଜାମାକୃତିଂ ସ୍ୱବଶୋଽଧୌ । ୭ ।

ଦୂରକୁ ରାମଙ୍କୁ ନେଲାଗଲା ମାୟାମୃଗ । ପଛରେ ଲକ୍ଷ୍ମଣ ଗଲେ ହୋଇ ଉଦବେଗ । ଯେଉଁ ରାବଣ ଗଙ୍କରେ ଦେବଙ୍କୁ ନ ଗଣେ । ଭିକ୍ଷୁବେଶେ ମିଳ ପର୍ଣ୍ଣକୁଟିରେ ତକ୍ଷଣେ । ୭୦ ।

ରାମୋନ୍ମୁକ୍ତୈକବାଣପ୍ରତିହତହୃଦୟଃ କାଞ୍ଚନାଙ୍ଗଃ କୁରଙ୍ଗଃ
ସଦ୍ୟୋ ମାରୀଚନାମାଜନି ରଜନୀଚରଃ ସାନ୍ଦ୍ରରକ୍ତାର୍ଦ୍ରବକ୍ଷଃ ।
ଭିକ୍ଷୁଃ କୋଽପି କ୍ଷଣୋଦ୍ୟନ୍ମଣିଖଚିତଚଲତ୍କୁଣ୍ଡଳଶ୍ରେଣୀଶୋଭା-
ବୀଚୀଖେଲତ୍କପୋଲଶ୍ଚିରତଦଶଶିରା କୁମ୍ଭକର୍ଣ୍ଣାଗ୍ରଜୋଽଭୂତ୍ । ୭୧ ।

ଏଣେ ମୃଗକୁ ପ୍ରହାର କରି ରାମ ବାଣି । ହୃଦେ ବାଜନ୍ତେ ପଡ଼ିଲା ତେଜିଣ ପରାଣି । ମୃଗରୂପ ତେଜିଣି ଧଇଲା ନିଜରୂପ । ରକ୍ତେଜର୍ଜର ଅଙ୍ଗ ଅସୁର ସ୍ୱରୂପ ॥ ଏଣେ କୁମ୍ଭକର୍ଣ୍ଣ ଭ୍ରାତ ଧରି ଯୋଗୀବେଶ । ପର୍ଣ୍ଣକୁଟୀରେ ଯାଇଣ ହୋଇଲା ପ୍ରବେଶ । ଧରି ଦିଗମ୍ବର ରୂପ କର୍ଣ୍ଣରେ କୁଣ୍ଡଳ । କନ୍ଧରେ ପଇତା କଷାବସ୍ତ୍ର କମଣ୍ଡଳ । ୭୫ ।

ବାଣେନ ଦିବ୍ୟେନ ରଘୁପ୍ରବୀରେ
ମୃଗସ୍ୟ ବକ୍ଷସ୍ଥଲବଦ୍ଧଲକ୍ଷ୍ୟଃ ।
ବିବ୍ୟାଧ ଯାବତ୍ତରସା ତପସ୍ୱୀ
ଦଶାନନସ୍ତାବଦିହାଜଗାମ । ୭୬ ।

ଯେତେବେଳେ ଶ୍ରୀରାମ ପେଷିଲେ ଦିବ୍ୟଶର । ପଶିଲା ଯେ ଶର ଯାଇଁ ମୃଗ ବକ୍ଷସ୍ଥଳ ॥ ସେତେବେଳେ ସୀତାଙ୍କ ପାଶରେ ଦଶାନନ । ତପସ୍ୱୀ ବେଶରେ ଆସି ମିଳିଲା ବହନ । ୭୭ ।

ତାଂ ରାମରାମାନୁଜବିପ୍ରଯୁକ୍ତାଂ
ଚନ୍ଦ୍ରାର୍କହୀନାମିବ ପୂର୍ବସନ୍ଧ୍ୟାଂ ।
ଅବପ୍ରପେଦେ କୃତଭିକ୍ଷୁରୂପୋ ।
ଲଙ୍କାପତିଃ ଶଙ୍କରତୋଽପ୍ୟଶଙ୍କଃ । ୬୭ ।

ପୂର୍ବଦିଗେ ସନ୍ଧ୍ୟାକାଳେ ଚନ୍ଦ୍ର ସୂର୍ଯ୍ୟ ହୀନ । ରାମଲକ୍ଷ୍ମଣବିଚ୍ଛେଦେ ଜାନକୀ ତେସନ ॥ ଏମନ୍ତ ବେଳେ ଭିକ୍ଷୁକ ବେଶେ ଲଙ୍କପତି । ଦେଖିଲେ ତାହାଙ୍କୁ ଶଙ୍କା ଶଙ୍କର କରନ୍ତି । ୬୭ ।

ଅଥ ଚ ।

ଭିକ୍ଷାଂ ପ୍ରଯୃଚ୍ଛ ଖଲୁ ସୂର୍ଯ୍ୟକୁଲାବତଂସେ
ବଂଶେ ବିଦେହନୃପତେଃ ପ୍ରଥିତାସି ସାଧ୍ୱି ।
ଏତଦ୍‌ଗୃହାଣ ହରିପାଦରଜୋବିମିଶ୍ରଂ
ନିର୍ମାଲ୍ୟଦାମ ସକଳେପ୍ସିତସିଦ୍ଧିହେତୁଂ । ୬୮ ।

ବୋଲଇ ରାବଣ ଭିକ୍ଷା ଦିଅ ଗୋ ସୁନ୍ଦରୀ । ସୂର୍ଯ୍ୟବଂଶ କୁଳବଧୂ ତୁମ୍ଭେ ସତୀନାରୀ । ଧେନ ବିଷ୍ଣୁ ପଦରେଣୁ ଏ ନିର୍ମାଲ୍ୟ ମାଳ । ସର୍ବ ମନ-ବାଞ୍ଛା ସିଦ୍ଧି ହୋଇବ ତୁମ୍ଭର । ୬୮ ।

ସୀତା ।

ଦୃଗ୍‌ଭଙ୍ଗିମନ୍ଦମଗତୈରସତୀରହସ୍ୟ-
ମନ୍ୱେଷୟନ୍ କପଟଭିକ୍ଷୁକଲକ୍ଷିତୋଽସି ।
ଅସ୍ୟଂ ପ୍ରଭୁଃ ସୁଭଗ ନାହମିତ କ୍ଷମସ୍ୱ
ଭୈକ୍ଷାୟ ମାକୁରୁ ମୃଷା କୃସୁମାଞ୍ଜଳିସ୍ତେ । ୬୯ ।

ଦେଖି ମନ୍ଦମନ୍ଦ ଗତ ନେତ୍ରଭଙ୍ଗୀମାନ । ଅସତୀ ରହସ୍ୟ କରୁଅଛ ଅନ୍ୱେଷଣ ॥ ଦେଖୁଅଛୁ ତୁମ୍ଭଙ୍କୁ କପଟ ପ୍ରାୟେ ମୁହିଁ । ତେଣୁ ଭିକ୍ଷା ଦେବାକୁ ମୁଁ ସମର୍ଥ ନୁହଇ । ବୃଥାରେ ଅଞ୍ଜୋଳ ନ ଦେଖାଅ ତୁମ୍ଭେ ଅଉ । ଏହି ଦୋଷ ମୋର ବାରେ କ୍ଷମା କରିହେଉ । ୬୯ ।

ରାବଣଃ ।

ଭିକ୍ଷାବିସର୍ଜନବତୀମବଗମ୍ୟ ଚୈକାଂ
ସ ସ୍ୟନ୍ଦନୋପରି ନିବେଶ୍ୟ ବିଦେହପୁତ୍ରୀଂ ।
ଲଙ୍କାଧିପଃ ସମହରଚ୍ଛଳଭିକ୍ଷୁରୂପଃ
ଶୂନ୍ୟାଂ କୁଟୀଂ ପରିନିରୀକ୍ଷ୍ୟ ସୁପୂର୍ଣ୍ଣକାମଃ । ୭୦ ।

କର କଠାଲ ରାବଣ ଭିକ୍ଷା ନେବାକାଳେ । ଧାରଣ କରଣ ଭିକ୍ଷୁରୂପ କପଟରେ ॥ ବଳେ ଧରଣ ସୀତାଙ୍କୁ ରଥରେ ବସାଇ । ଘେନିଗଲା ଶୂନ୍ୟେ ମହାନନ୍ଦେ ଲଙ୍କ ଯାଇଁ । ୭୦ ।

ସ ବ୍ୟାହରନ୍ ଧର୍ମିଣି ଦେହି ଭିକ୍ଷା
ମଲଙ୍ଘୟନ୍ଲକ୍ଷ୍ମଣଦତ୍ତରେଖାଂ ।
ଜଗ୍ରାହ ତଂ ପାଣିତଳେ କ୍ଷିପନ୍ତୀଂ
ସମାହ୍ୱୟନ୍ତୀଂ ରଘୁରାଜପୁତ୍ରୌ । ୭୧ ।

ଭିକ୍ଷାଦିଅ କହି ଧର୍ମ ଦେଖାଇ ଭଣ୍ଡାଇ । ଲକ୍ଷ୍ମଣ କାଟିବା ଗାର ଲଙ୍ଘନ କରାଇ ॥ ଦିଅନ୍ତେକ ଭିକ୍ଷା ଅତି ଜାନକୀ ତା କରେ ॥ ଧରି ରାବଣ ତାହାଙ୍କୁ ହରିନେଲା ବଳେ । କାନ୍ଦନ୍ତି ଜାନକୀ ଦେବୀ ବୋଲନ୍ତି ବଚନ । ଅହେ ପ୍ରାଣେଶ୍ୱର ରାମ ହେ ବୀର ଲକ୍ଷ୍ମଣ । ୭୧ ।

ହା ରାମ ହା ରମଣ ହା ଜଗଦେକବୀର
ହା ନାଥ ହା ରଘୁପତେ କିମୁପେକ୍ଷସେ ମାଂ ।
ଇତ୍ଥଂ ବିଦେହତନୟାଂ ବହୁଧାଲପନ୍ତୀ-
ମାଦାୟ ରାକ୍ଷସପତିର୍ନଭସା ଜଗାମ । ୭୨ ।

ଅହା ରାମ ହେ ରମଣ ଅହେ ପ୍ରାଣନାଥ । ବୀରପଣେ ତୁମ୍ଭ ନାମ ଏ ଜଗତେ ଖ୍ୟାତ । ଛାଡ଼ିଗଲ ଅହା ମୋତେ କେଣେ ଏକାକରି । କରନ୍ତି କେତେ ରୋଦନ ଜନକକୁମାରୀ । ଏମନ୍ତେ ରାବଣ ସୀତାଙ୍କୁ ରଥେ ବସାଇ । ଅକାଶମାର୍ଗରେ ଗଲା ଶୂନ୍ୟପଥେ ନେଇ । ୭୨ ।

ରାବଣସ୍ୟ ରଥସଙ୍ଗତା ସତୀ ନୂପୁରଂ ପରିସସର୍ଜ ସତ୍ୱରଂ ।
ଉତ୍ତରୀୟମପି କଙ୍କଣଂ କ୍ୱଚିଚ୍ଛାରୁହାରମପି ସା ସ୍ଥଲେ ସ୍ଥଲେ । ୭୩ ।
ଚଳନ୍ତେ ଶୂନ୍ୟପଥରେ ଜନକନନ୍ଦନୀ । ଶ୍ରୀଅଙ୍ଗୁ ବସନ ଯୁରକଲେ ସେହିକ୍ଷଣି ॥ ପାଦରୁ ନୂପୁର ହସ୍ତରୁ କଙ୍କଣ ଫେଇ । ରତ୍ନହାର ମାନ ଦ୍ୟନ୍ତି ଛିଣ୍ଡାଇ ପକାଇ । ୭୩ ।

ଜଟାୟୁ ବୃତ୍ତାନ୍ତଃ ।

ଇତୋ ବାଣଂ ରାମଃ କ୍ଷିପତି ହରିଣେ ମୁକ୍ତକରୁଣଃ
ସଗୃପଃ ସୌମିତ୍ରିଃ ସ୍ୱଜନମନୁଯାତି ଦ୍ରୁତମିତଃ ।
ଇତଃ ସୀତା ଭିକ୍ଷାମୁପନୟତି ଭିକ୍ଷୋଃ କରତଳେ
ନଭସ୍ୟଂ ବ୍ୟୋମ୍ନି ପ୍ରେକ୍ଷନ୍ ଯୁଗପଦହମାଲୋକୟମିଦଂ । ୭୪ ।

ବୃକ୍ଷରେ ଜଟାୟୁ ପକ୍ଷୀ ଆପଣାର ମନେ । ବୋଇଲେ ମୃଗକୁ ବାଣ ରାମ ଏହି ସ୍ଥାନେ । ଗଲେ ସୁମିତ୍ରାନନ୍ଦନ ଘେନି ଶରାସନ । ଶ୍ରୀରାମଙ୍କ ଅନ୍ୱେଷଣେ କରନ୍ତି ଗମନ । ଏହିକ୍ଷଣି ସୀତାଦେବୀ ଏହିସ୍ଥାନେ ଥିଲେ । ଭିକ୍ଷା ଆଣି ଭିକାରି ହସ୍ତରେ ବେଗେ ଦେଲେ ॥ ଦେଖୁଥିଲି ଏ ତିନିଙ୍କି ଆକାଶରେ ରହି । ଶୂନ୍ୟ କୁଟୀର ଦିଶୁଛି ନାହାନ୍ତି ଯେ କେହି । ୭୪ ।

ମାରୀଚମୃଗମ୍ୟାବ୍ୟଗ୍ରେ ରଘୁବୀରେ ଚ ଲକ୍ଷ୍ମଣେ ।
କଥମେଷା କୁରଙ୍ଗାକ୍ଷୀ ରାବଣସ୍ୟ ରଥୋପରି । ୭୫ ।

ଯହୁଁ ମୃଗ ମାରିବାକୁ ଗଲେ ରଘୁବୀର । ତାହାଙ୍କର ପଛେ ଗଲେ ସୁମିତ୍ରା କୁମର । କୁରଙ୍ଗନେତ୍ରୀ ଜାନକୀ ଜନକକୁମାରୀ । ରାବଣରଥ ଉପରେ ରହିଲେ କିପରି । ୭୫ ।

ଆକାଶେ ଜଟାୟୁଷଂ ଦୃଷ୍ଟ୍ୱା ରାବଣଃ
ସ୍ୱଗତଂ ।

ମୈନାକଃ କିମୟଂ ରୁଣଦ୍ଧି ଗଗନେ ମନ୍ମାର୍ଗମବ୍ୟାହତଂ
ଶକ୍ତିସ୍ତସ୍ୟ କୁତଃ ସ ବଜ୍ରପତନାଦ୍ଭୀତୋ ମହେନ୍ଦ୍ରାଦପି ।
ତାର୍କ୍ଷ୍ୟଃ ସୋଽପି ସମନ୍ୱିତଃ ସ୍ୱପତିନା ଜାନାତି ମାଂ ରାବଣଂ ।
ହା ଜ୍ଞାତଂ ସ ଜଟାୟୁରେଷ ଜରସା କ୍ଲିଷ୍ଟୋବଧଂ ବାଞ୍ଛତି ।୭୬।

ଦେଖି ଆକାଶରେ ଜଟାୟୁକୁ ଦଶାନନ । କରଇ ବିଚାର ପୁଣି ଆପଣାର ମନ । ମୈନାକ ପର୍ବତ ଏକା ଇନ୍ଦ୍ରର ଆଦେଶେ । ପଥ ନିରୋଧ କରିବାପାଇଁ କିବା ଆସେ । ବଜ୍ର ପତନକୁ ଭୟ କରଇ ଯେ ସେହି । ସେହି ଇନ୍ଦ୍ର ସଦାକାଳେ ମୋତେତ ଡରଇ ॥ ସେ କାହିଁ ଆସିବ ମୋତେ ବାଧ କରିବାକୁ । ପର୍ବତ ନୁହଇ ବୋଲି ଭାବଇ ମନକୁ । ଗରୁଡ଼ କି ଅବା ଏହି ବିନତାନନ୍ଦନ । ଜାଣଇ ସେହି ମୋହର ପରାକ୍ରମ ମାନ ॥ ପାତାଳେ ଥିଲି ବେଳେ ସେ ବିଷ୍ଣୁଙ୍କ ସଙ୍ଗରେ । ଯୁଦ୍ଧକରି ହାରିଛନ୍ତି ମୋର ସହିତରେ ॥ ଜାଣୁଛି ଜଟାୟୁ ପକ୍ଷୀ ଅଟଇ ଯେ ଏହୁ । ଜରା ଅବସ୍ଥା ଥିବାରୁ ମରଣ ଇଚ୍ଛଇ । ୭୬ ।

ରାବଣଂ ପ୍ରତି ଜଟାୟୁଃ ।

ଜନ୍ମ ବ୍ରହ୍ମକୁଳେ ହରାଚ୍ଛିନବଧୌ କୃତ୍ୱା ଶିରଃକର୍ତ୍ତନଂ
ଭକ୍ତିଃ ଶୂଳିନି ଚଣ୍ଡବାହୁଦଳନବ୍ୟାପାରଶକ୍ତିଃ ପରା ।
ହେଳୋତ୍ତୋଳିତକେଳିକନ୍ଦୁକନିଭଃ କୈଳାସ ଉତ୍ପାଟିତ
ସ୍ତତ୍ କିଂ ରାବଣ ଲଜ୍ଜସେ ନ ହରଣେ ଚୌର୍ଯ୍ୟେଣ ପତ୍ନ୍ୟାରଘୋଃ ॥

ବୋଲଇ ଜଟାୟୁ ତୋର ଜନ୍ମ ବ୍ରହ୍ମକୁଳେ । ତୋଷିଲୁ ଶିବଙ୍କୁ ମୁଣ୍ଡ ପକାଇ ଅନଳେ । ଅଛଇ ବହୁତଶକ୍ତି ତୋର ଲଙ୍କେଶ୍ୱର । ବାହୁଦଣ୍ଡ ପ୍ରଚଣ୍ଡ ଯେ ଅଟଇ ତୋହର ॥ ତୋଳିଅଛୁ ପର୍ବତକୁ କନ୍ଦୁକ ପରି । ହେଳା ଖେଳରେ କୈଳାସ ଥିଲୁ ଯେ ଉପାଡ଼ି ॥ ଏଡ଼େ ବୀର ହୋଇ ଲଜ୍ଜାନାହିଁ ତୋତେ ପୁଣି । ଚୋରିକରି ନେଉଅଛୁ ଶ୍ରୀରାମଘରଣୀ । ୭୭ ।

ଜନ୍ମ ବ୍ରହ୍ମକୁଳେ ତପସ୍ତ୍ୱନୁପମଂ ବୀର୍ଯ୍ୟଂ ଚ ଲୋକୋତ୍ତର
କିଂ ଚୈଶ୍ୱର୍ଯ୍ୟ ମହୋ ତ୍ରିଲୋକଜୟିନଃ ସ୍ୱର୍ଗାଙ୍ଗନାସ୍ୱାମିନଃ ।
ଇତ୍ୟସ୍ମାଦପି ବାଞ୍ଛିତଂ କିମଧିକଂ ସୀତା ସମାକୃଷ୍ୟତେ
ଯସ୍ମାତ୍ତ୍ୱଂ ସହ ବାନ୍ଧବୈର୍ଜଗତେ ଯାତୋଽସି ନିଃଶେଷତାଂ ॥

ବ୍ରହ୍ମକୁଳେ ଜନ୍ମ ଯେଣୁ ହୋଇଅଛୁ ତେ ର । ଭୂମ୍ୟର ଉପରେ ତୁମ୍ଭେ ହେଲେ ବେଦବର ॥ ତୋର ସମ ଜଗତରେ ପରାକ୍ରମୀ ନାହିଁ । ତ୍ରିଭୁବନେ ଜୟୀ ସ୍ୱର୍ଗାଙ୍ଗନାପତି ତୁହି ॥ ଏଥୁଁ କି ଅଧିକ ଭୋଗ ହୋଇବ ଅବର । ଅତୁଳ ସମ୍ପଦ ପୁଣି ଅଛଇ ତୋହର ॥ କରି ମୂଢ଼ମଣି କାଳ ସୀତା ଆକର୍ଷଣ । ବଂଶ ସହିତରେ ଯେଣୁ ଲଭିବୁ ମରଣ । ୭୮ ।

ଅବିଦୂଷ ସ୍ତବଦୋଷ ମହଂ ସହେ
ବସୃଜ ସବଶ ବୀରପତିବ୍ରତାଂ ।
ଶୃଣୁ ବଦାମି ଜଟାୟୁ ରହଂ ସଖା
ଦଶରଥସ୍ୟ ରଥ ସ୍ତବ ତିଷ୍ଠତୁ । ୭୯ ।

ସହି ନ ପାରଇ ଦେଖି ଅପରାଧ ତୋର । ଛାଡ଼ିଦିଅ ସୀତା ପତିବ୍ରତା ନାରୀବର ॥ ଦଶରଥଙ୍କର ମିତ୍ର ଅଟେ ପରା ମୁହିଁ । ମୋ ନାମ ଜଟାୟୁ ପକ୍ଷୀ ପ୍ରମାଣ ଅଟଇ ॥ କହୁଅଛୁ ତୋତେ ରଥ ରଖ ଏଠାବରେ । ନୋହିଲେ ଲଢିବା ଯୁଦ୍ଧ ନିଷ୍ଟେ ତୋ ସଙ୍ଗରେ । ୭୯ ।

ତଥାପି ଉମନାଦୃତ୍ୟ ଦଶାନନେ ଗଚ୍ଛତି ।

ଜଟାୟୁଃ ।

ରେ ରେ ଚୌରଃ ପରଦାର ଚୌରକ୍ରମରେ ସୀତା ହୃତ୍ୱା ନୀୟତେ
ତିଷ୍ଠାଧୃଷ୍ଟ ଚନ୍ଦନାଚଳ ତଟଃପ୍ରାପ୍ତୋ ଜଟାୟୁଃ ସ୍ୱୟଂ ।
ମୁଞ୍ଚୈନାଂ ପତିଦେବତାଂ ନ ଖଲୁ ରେନଚ୍ଛ୍ରୋତ୍ର ଚଣ୍ଡାଙ୍କୁଶ
ନୀଡ଼ା କର୍ଷଣନିର୍ଗତା ସମୁଦ୍ଭସଃ ପାସ୍ୟନ୍ତି ଗୃଧ୍ରା ସ୍ତବ । ୮୦ ।

ରହୁ ରହୁ କେବଣେ ଯାଉ ପରନାରୀ ଚୋର । ପଳାଇ ଯିବୁ କି ସୀତା ଘେନିରେ ପାମର । ଥାଉଁ ଥାଉଁ ଏ ସ୍ଥାନେ ଜଟାୟୁ ପକ୍ଷୀବର । ମଳୟଗିରିରେ ବାସ ଅଛଇ ଯେ ମୋର । ଛାଡ଼ ଛାଡ଼ ଏହାଙ୍କୁ ରେ କହୁଅଛୁ ମୁହିଁ । ନାରୀ ଶିରୋମଣି ଅଟେ ପତିବ୍ରତା ଏହି । ନ ଛାଡ଼ିଲେ କରିବି ତୋ ଅଙ୍ଗ ଖଣ୍ଡ ଖଣ୍ଡ । ଅଛଇ ପ୍ରଚଣ୍ଡ ଅଙ୍କୁଶ ପରି ମୋ ତୁଣ୍ଡ । ବହିବ ତହିଁରେ ତୋର ରକ୍ତର ଧାର । ପିଇବେ ଶାଗୁଣା ପକ୍ଷୀ ରକତ ତୋହର ।

ସୀତାଂ ସମାଶ୍ୱାସୟନ୍ କ୍ରୋଧଂ
ନାଟୟତି ।

ମାଭୈଷୀଃ ପୁତ୍ରି ସୀତେ ବ୍ରଜତି ମମ ପୁରୋ ନୈଷ ଦୂରଂ ଦୁରାତ୍ମା-
ରେ ରେ ରକ୍ଷଃ କୃପାଣାନ୍ ରଘୁକୁଳତିଳକସ୍ୟାପହୃତ୍ୟ ପ୍ରୟାସୀ ।
ଚଞ୍ଚ୍ୱାକ୍ଷେପପ୍ରହାର ତ୍ରୁଟିତଧମନିଭିର୍ଦୋର୍ଭି ରକ୍ଷିପ୍ୟମାଣୈ-
ର୍ଗ୍ରାଶାପାଲୋପହାରଂ ଦଶଭିରପି ଭୁଶଂହୃଷ୍ଟ ଲୋଭିଃ କରୋମି । ୮୧ ।

ସୀତାଙ୍କୁ ବୋଲେ ଜଟାୟୁ ନ କର ଗୋ ଭୟ । ବର୍ତ୍ତି ନ ଯିବ ଏ ଦୁଷ୍ଟ ମୋ ଅଗ୍ରୁ ନିଶ୍ଚୟ ॥ ଏହିପରି ସୀତାଙ୍କୁ ଆଶ୍ୱାସି ପକ୍ଷୀବର । ରାବଣକୁ କହେ ମନେ ହୋଇ କ୍ରୋଧଭର । ଆରେରେ ରାକ୍ଷସ ନାରାଚ୍ଚୋର କେଣେ ଯାଉ । ଶ୍ରୀରାମଙ୍କ ଘରଣିକୁ କାହିଁ ପାଇଁ ନେଉ । ଛିଣ୍ଡାଇବ ଚଞ୍ଚୁଘାତେ ତୋର ଦଶଶିର । ଦଶଦିଗକୁ ପେଶିବ ମୁଣ୍ଡକୁ ତୋହର । ୮୧ ।

ଅଃ ପାପିନ୍ ପଶ୍ୟତୋମେ ରଘୁତିଲକବଧୂଂ ଚୌରୟିତ୍ୱା ତ୍ରୟାତୁଂ
ସୀତାଂ ଶୀତାଂଶୁଲେଖାମିବ ଗିରିଶଶିରଃଶାୟିନୀ ମୁଦ୍ୟତୋଽସି ।
ଏଭିଷ୍ଟିତ୍ୱ ସୌଗଂସେ ପ୍ରଖରନଖମୁଖୈର୍ଦ୍ଦା ପ୍ରରୂଢ଼ାନଶୀନ
ତ୍ୱାମଦ୍ୟାହଂ ଗରୁତ୍ମାନ୍ ଉରଗମିବ ସୁଧାକାଙ୍କ୍ଷିଣଂ ସଂହରାମି । ୮୨ ।

ଶିବଙ୍କ ମସ୍ତକେ ଥିବା ଚନ୍ଦ୍ରରେଖା ପରି । ସେହିପରି ରାମଙ୍କ ଘରଣୀ କରୁ ଚୋରି ॥ କି ସାହସେ ତାଙ୍କୁ ଚୋରାଇଣି ନେଇ ଯାଉ । କାହିଁରେ ପାପିଷ୍ଠ ପାପେ ଭୟ ତୋର ଅଉ ॥ ଦେଖ ମୋର ନଖ ମୁଖ ତୀକ୍ଷ୍ଣ ଖଡ୍ଗ ପରି । ଉନ୍ନ ଖଣ୍ଡା ମୁଣ୍ଡ ଅଙ୍ଗ ଦେବ ତୋର ଚିରି ॥ ଅମୃତ ଲୋଭରୁ ସର୍ପ ଗରୁଡ଼ର ଭକ୍ଷ । ତେସନ ଭକ୍ଷିବି ତୋତେ ନିଶ୍ଚୟରେ ମୂର୍ଖ । ୮୨ ।

ଜାନାମି ତ୍ୱଂ ଦଶାସ୍ୟ ପ୍ରବଳ ଭୁଜବଳଚ୍ୟୁତକୈଳସଭାଜଂ
ଜିହ୍ୱାବୈଦେହପୁତ୍ରୀଂ ଜଳନିଧିଶରଣଂ କସ୍ୟ ହେତୋଃପ୍ରୟାସି ।

କ୍ବାଂ ବା ଦୂରଂ ଶରାଣାଂ ଧଣି ଧଣି ପତତାଂ କଂତ୍ରୁ ନାର୍ଲକ୍ଷ୍ୟବାଣ
ବ୍ୟାପାରୋ ନୋ ବଧେୟଃ ସମର ମନ୍ମଥର ଶୀଘ୍ରୁତା ସାହସଞ୍ଜଃ ।୮୩।

ଜାଣେ ତୋତେ ମୁହିଁ ଭଲରୂପରେ ରାକ୍ଷସ । ଭୂଜକି ଲେ ଉପାଡ଼ି ତୁ ଅଳ୍ପରେ କୈଳାସ ॥ ଚୈଗ୍ରିକର ଘେନି ଯାଉ ବଇଦେହନନ୍ଦନୀ । ଜଳନିଧି ଲଙ୍ଘିଯାଉ କା କାରଣେ ଘେନି ॥ ବନାଯୁଦ୍ଧେ ଛାଡ଼ି ଦେବ ନାହିଁ ତୋତେ ପଥ । ପଳାଇ ଯିବାକୁ ନ କର ତୁ ମନୋରଥ ॥ ରଖିଅଛ ଲକ୍ଷ୍ମୀଙ୍କୁ ନେଇଣ ଯଥା ସ୍ଥାନ । ନୋହିଲେ ଦେଖାଅ ରହି ଯୁଦ୍ଧେ ବୀରପଣ । ୮୩ ।

ଅଙ୍କଂ ବକ୍ଷି ପତ ଧ୍ୱଜଂ ଦଳୟିତେ ମୁଦ୍ଧାଭ ନଦ୍ଧଂ ଯୁଗଂ
ଚକ୍ରଂ ଚର୍ଣ୍ଣୟିତ କ୍ଷଣେନ ତୁରଗାନ୍ ରକ୍ଷଃପତେଃ ପକ୍ଷୀରାଟ୍ ।
ଉଚ୍ଚୈର୍ଗର୍ଜିତ ତର୍ଜୟିତ୍ୟଭ୍ରବତ୍ୟାଳମ୍ବତେ ତାଡ଼ୟିତ୍ୟା
କର୍ଷତ୍ୟବଲ୍ଗତ ପ୍ରଚଳିତ ନ୍ୟାଞ୍ଚତ୍ୟୁଦଞ୍ଚତ୍ୟପି । ୮୪ ।

ଏତେକହି ରଥକୁ ଭାଙ୍ଗଇ ପକ୍ଷଘାତେ । ଦଳିଦିଏ ବଳେ ତାର ଧ୍ୱଜାର ସହିତେ । ଛିଣ୍ଡାଇଲା ବେଗେ ତାର ଅଶ୍ୱର ଦଉଡ଼ି । ଅଶ୍ୱ-ମାନଙ୍କୁ ତୁରତେ ଦିଅଇ ଘଉଡ଼ି ॥ ପକ୍ଷ ବିସ୍ତାର କରଇ ତର୍ଜନ ଗର୍ଜନ । ଚଞ୍ଚୁଘାତେ ନାଶକର ଅଶ୍ୱଙ୍କ ଜୀବନ । ଗାଳି ଦେଇ ରାବଣକୁ ଓଗାଳଇ ବାଟ । ଅତି କ୍ରୋଧଭରେ ମାରେ ରାବଣକୁ ଅଣ୍ଟ । ନଖଘାତେ ଅଙ୍ଗ ତାର କଲା ଖଣ୍ଡ ଖଣ୍ଡ । କେଶ ବାସ ଝିଙ୍କିଣ କରଇ ଲଣ୍ଡ ଭଣ୍ଡ । ଝାଡ଼ିଦିଏ ଚଞ୍ଚୁ ଉଡ଼ିଯାଇ ଉପରକୁ । ଚଞ୍ଚୁ-ଘାତ ପର କ୍ଷତ କଲା ରାବଣକୁ । ୮୫ ।

ରାବଣଃ କ୍ରୋଧଂ ନାଟୟତି ।

କ୍ରୁଦ୍ଧସ୍ତତୋ ଦ୍ରୁତଚପେଟଶିଳାତଳେନ
ରକ୍ଷଃ ପିପେଷ ଗଗନେଽଭ୍ରୁତପକ୍ଷିରାଜଂ ।
ଛପତ୍ ସ୍ଥିତାସୁରପତଭ୍ରୁତ ରାମ ରାମ
ରାମେତି ମନ୍ତ୍ରମନିଶଂ ନିଗଦନ୍ ଜଟାୟୁଃ । ୮୬ ।

ଅତି କ୍ରୋଧଭରେ ହୋଇ ଉଠି ଦଶାନନ । ଜଟାୟୁଙ୍କୁ ଦୁଷ୍ଟେ ସେ କଲା ଗୃଧ୍ରପୋଡ଼େ ମାରଣ ॥ ସେ ଗୃଧ୍ରପୋଡ଼ା ଘାତେ ଛେଚି ହୋଇ ଶିଳାପରେ । ଆକାଶରୁ ଖସି ଆସି ପଡ଼େ ଭୂମିତଳେ ॥ କେବଳ ମାତ୍ର ଜୀବନ ବହୁଛି ଶରୀରେ । ରାମ ରାମ ବୋଲି ନାମ ଉଚ୍ଚାରେ ମୁଖରେ । ୮୫ ।

ଅଥ କୃତରଥଭଙ୍ଗଂ ପକ୍ଷିବରଂ ନିହତ୍ୟ
ଛିତିଗତମବଲୋକ୍ୟ ଶ୍ୱାସମାତ୍ରାବଶେଷଂ ।
ଜନକନୃପତିପୁତ୍ରୀଂ ପୁଷ୍ପମାନୀୟ କ୍ଷିପ୍ରଂ
ସରଭସମୁପଦଧ୍ରେ(?)ଶୋକଲୀଲା ବନାନ୍ତେ । ୮୬ ।

ଭୂମିରେ ପଡ଼ିଣ ମାତ୍ର ଶ୍ୱାସ ବହେ ତାର । ଭଗ୍ନରଥ ସହିତେ ପଡ଼ିଛି ପକ୍ଷୀବର ॥ ଏହା ଦେଖିଣ ରାବଣ ଅତି ଖରତରେ । ଜାନକୀଙ୍କୁ ଘେନି ପୁଣି ଉଠିଲା ରଥରେ । ବସାଇ ରଥରେ ଲଙ୍କା ପ୍ରବେଶ ହୋଇଲା । ଅଶୋକବନରେ ନେଇ ସୀତାଙ୍କୁ ରଖିଲା । ୮୭ ।

ଇନ୍ଦ୍ରଜିଦଗ୍ରେ ଶ୍ରୁତକଥଯୁତ ।
ମାର୍ଗଂ ମାର୍ଗଂ ମୃଗଯୁତ ମୃଗ ରାଘବମେ ବାରମେଃ
ଶୋକଂ ଶୋକଂ ଗତବତି ଗତେ ଲକ୍ଷ୍ମଣେଽଲକ୍ଷ୍ମଣେନ ।
ସୀତା ଶୀତାତପତପନଯୋ ରାଜ୍ୟଲଙ୍କାମଲଙ୍କା
ନୀତା ନୀତା ସୁରସୁରବଧୂ ରାବଣେ ରାବଣେନ । ୮୭ ।

ଏ ସମୟେ ମେଘନାଦ ଅଗେ ଗୃହ ଯାଇଁ । ସକଳ କଥା କହିଲା ତାହାଙ୍କୁ ବୁଝାଇ । ତୁମ୍ଭର ଯୁଦ୍ଧରେ ସଦା ରହିଥାଇ ମନ । ତେଣୁ ତୁମ୍ଭ ତାତ କଲେ ଶତ୍ରୁର ଭିଆଣ । ବନବାସେ ରାମ ଥିଲେ ସଙ୍ଗେ ଘେନି ନାରୀ । ମୃଗ ଅନ୍ୱେଷଣେ ଗଲେ ଧନେ ଛାଡ଼ିକରି । ବଳମ୍ବ ଦେଖି ଜାନକୀ ସୁମିତ୍ରାନନ୍ଦନେ । କହୁ କଠୋର ବାକ୍ୟ ପୁଣ ପଠାଇଲେ ବନେ । ଏମନ୍ତ ବେଳରେ ତୁମ୍ଭ ପିତା ଲଙ୍କେଶ୍ୱର । ଯତିବେଶେ ପ୍ରବେଶିଣ ତାହାଙ୍କ ପାଶର । ଦେବତାଙ୍କ ମଧ୍ୟେ ଶ୍ରେଷ୍ଠ ଯେ ସୂର୍ଯ୍ୟଦେବତା ।

ସେହି ବଂଶେ ଜନ୍ମ ତାଙ୍କ ନାମ ଅଟେ ସୀତା । ତାହାଙ୍କୁ ଆଣି ରଖିଛୁ ଅଶୋକବନରେ । ଦେଖିଣ ଅଇଲି ମୁହିଁ ଅଜ ବୃକ୍ଷରେ ॥ ୮୭ ।

ଅର୍କ୍କବାରେ ଧନିଷ୍ଟାର୍କ୍କେ ଏକପ୍ୟର୍କ୍କ ଚନ୍ଦ୍ରେ ଏକ୍କେ ଭାସ୍କରେ ।
ରାବଣେନ ହୃତା ସୀତା କୃଷ୍ଣପକ୍ଷେ ସିତାଷ୍ଟମୀ । ୮ ।

ଯେଉଁ ଦିନ ସୀତାଙ୍କୁ ହରିଲେ ଦଶାନନ । ତାହା କହୁଅଛୁ ଶୁଣ ରାବଣନନ୍ଦନ । ମାଘମାସ ଶୁକ୍ଳପକ୍ଷ ଗୁରୁବାର ଦିନ । ଅଷ୍ଟମୀ ତିଥିରେ କରିଅଛୁ ଯେ ହରଣ । ୮୮ ।

ଅଥ ଜଟାୟୋଃ ଖେଦଃ ।

ନ ମୈତ୍ରୀ ନିର୍ବ୍ୟୂଢ଼ା ଦଶରଥନୃପେ ରାଜ୍ୟବିଷୟେ ।
ନ ବୈଦେହୀତ୍ରାତା ହଠହରଣତୋ ରାକ୍ଷସପତେଃ ।
ନ ରାମସ୍ୟାସ୍ୟେନ୍ଦୁର୍ନୟନବିଷୟୋଽଭୂଦକୃତିନୋ
ଜଟାୟୋର୍ଜନ୍ମେଦଂ ବିତଥମଭବଦ୍ଭାଗ୍ୟରହିତଂ । ୮୯ ।

ଏମନ୍ତ ସମୟେ ପକ୍ଷୀବର ଜଟାୟୁଷ । ବହୁତ ଖେଦ ମନରେ କଲେ ପ୍ରକାଶ । ଦଶରଥ ରାଜାଙ୍କର ମିତ୍ର ହୋଇ ମୁହିଁ । ରାଜକାର୍ଯ୍ୟରେ କିଛି ସାହାଯ୍ୟ କରିନାହିଁ । ବଳାତ୍କାରରେ ରାବଣ ହରିଲା ସୀତାଙ୍କୁ । ରଖି ନ ପାରିଲି ମୁହିଁ ମଧ୍ୟ ଯେ ତାହାଙ୍କୁ ॥ ଦେଖି ନ ପାରିଲି ରାମଚନ୍ଦ୍ରଙ୍କ ବଦନ । ମୁହିଁ ହତଭାଗ୍ୟ ମୋର ବିଫଳ ଜନମ । ୮୯ ।

ରାମଃ ସ୍ୱଗତଂ ।

ସ୍ଫୁରତି କଥମହୋ ମେ ଚକ୍ଷୁରଦ୍ୟାପି ବାମଂ
ବିଷମବିଧିବିଧାନଂ କିଂ ଭବିଷ୍ୟତ୍ୟଶୀଘ୍ରା ତ୍ ।
ଯଦିହ ଜନକପୁତ୍ରୀ କେତକୀଗର୍ଭଗୌର-
ସ୍ତନଯୁଗପରିଣାହଂ ବଲ୍କଲେନ ବୃଣୋତି । ୯୦ ।

ମୃଗୟାରୁ ଅସି ରାମ କହନ୍ତି ବଚନ । ବାମ ନୟନ କାହିଁକି ସ୍ଫୁରଇ ମୋହର । କିଅବା ବିପତ୍ତି ମୋର କପାଳେ ଘଟିବ । ଜାନକୀ କି ଜାଣି କେଧି ମୋପରେ ବହିବ । କେତକୀ କୁସୁମ ଗର୍ଭ ପରାୟେ ଗଉର ।

ହୋଇଛୁ ସୁନ୍ଦର ଯାହାଙ୍କର କଳେବର । ସେ ବୃକ୍ଷ ବକଳ କରିଅଛୁ ଆବରଣ । ଦୁଃଖ କରଇ କି ମନେ ଏ ଲମ୍ବ କାରଣ । ୧୦ ।

ମାରୀଚଂ ହତ୍ୱା ଆଗତସ୍ୟ ରାମସ୍ୟ ପଥି ଲକ୍ଷ୍ମଣେ ନ ସହ ।

ଉକ୍ତି ପ୍ରତ୍ୟୁକ୍ତି ।

ଏକାକିନୀମୁଟଜସୀମ୍ନି ବିହାୟ ସୀତାଂ
କିଂ ବତ୍ସ ମତ୍ସବିଧମାକୁଳମାଗତୋଽସି ।
ଅନାଗତେ ତରସୁତ ତ୍ୱୟି ବୀର ଦେବ୍ୟା
ନୈବ ସ୍ଥିତଃ କଟୁକଭାଷଣବାନ୍ଧବାକ୍ୟୈଃ । ୧୧ ।

ମାରୀଚ ବନାଶିଣ ଆସନ୍ତେ ରଘୁମଣି । ପଥେ ଦେଖିଣ ଲକ୍ଷ୍ମଣେ କହନ୍ତି ଏ ବାଣୀ । ଜାନକୀଙ୍କୁ ଏକାକୀର ଛାଡ଼ି ଯେ ଅଇଲ । କିପାଇ ଦିଶୁଛି ତୁମ୍ଭ ବଦନ ବିକଳ । ଏହା ଶୁଣିଣ ଲକ୍ଷ୍ମଣ ବୋଲନ୍ତି ଉତ୍ତର । ଏଥିର କାରଣ କହୁଅଛୁ ଶୁଣ ବୀର । ବିଲମ୍ବ ଦେଖିଣ କଟୁବାକ୍ୟ କହି ମାତା । ପଠାଇଲେ ତୁମ୍ଭପାଶେ କହଣ କୁକଥା । ୧୧ ।

ମାୟାକୁରଙ୍ଗଂ ବିନିହତ୍ୟ ବାଣୈ
ଭ୍ରାନ୍ତା ସହାଗତ୍ୟ ଦେ ପର୍ଣ୍ଣଶାଳାଂ ।
କୋଣତ୍ରୟଂ ତତ୍ର ସମୀକ୍ଷ୍ୟ ଶୂନ୍ୟଂ
ଦ୍ରଷ୍ଟୁଂ ଚତୁର୍ଥଂ ନ ଶଶାକ ରାମଃ । ୧୨ ।

ଯେଣି ମୃଗଭାର ରାମ ପ୍ରବେଶ କୁଟୀରେ । ଲକ୍ଷ୍ମଣ ସହିତେ ଆସି ହୋଇଲେ ଦୁଆରେ ॥ ଦେଖି ତିନିକୋଣ ଶୂନ୍ୟ ପ୍ରଭୁ ରଘୁନାଥ । ଚତୁର୍ଥକୁ ଦେଖିବାକୁ ନୋହିଲେ ସମର୍ଥ ।୧୨।

ପ୍ରବିଶ୍ୟ ପର୍ଣ୍ଣଶାଳାୟାଂ ନିଷ୍ଟୁ କୋଣେଷୁ ବୀକ୍ଷିତଂ ।
ଚତୁର୍ଥଂ ବୀକ୍ଷିତୁଂ ଭୀତଃ ସୀତାଶୂନ୍ୟଂ ରଘୂତ୍ତମଃ ।୧୩।

ଦେଖିଣ ପର୍ଣ୍ଣକୁଟୀର ଶୂନ୍ୟ ରଘୁମଣି । ସୀତାଙ୍କୁ ନ ଦେଖି ମନେ ହୋଇଲା ଭାଳେଣି । ଚତୁର୍ଥ କୋଣ କେବଳ ମାତ୍ର ରହିଅଛୁ । ଶୋକରେ ଅଧୈର୍ଯ୍ୟ ହୋଇଗଲେ ରଘୁବୀର । ୧୩ ।

ଏଷ ଶ୍ରୀଲହନୂମତା ବିରଚିତେ ଶ୍ରୀମନ୍ମହାନାଟକେ
ବୀରଶ୍ରୀଯୁତରାମଚନ୍ଦ୍ର ବିରଚିତେ ପ୍ରତ୍ୟଙ୍କୁତୈନ୍ନେଙ୍କି ନୈଃ ।
ମିଶ୍ରଶ୍ରୀମଧୁସୂଦନେନ କବିନା ସନ୍ଦର୍ଭ ସଙ୍ଗୀକୃତେ
ବୈଦେହୀହରଣାଭିଧୋଽଯମଗତବାନଙ୍କସ୍ତୃତୀୟେ ମହାନ୍

ହନୂମନ୍ତ ବିରଚିତ ମହ ନାଟକରେ । ରାମଚରିତ ବର୍ଣ୍ଣନ ଅତି ଚମତ୍କାରେ । ସନ୍ଦର୍ଭିଚ୍ଛନ୍ଦରେ ମିଶ୍ର ଶ୍ରୀମଧୁସୂଦନ । ରଚିଛନ୍ତି ତୃତୀୟାଙ୍କେ ବୈଦେହୀହରଣ । ଭାଷାପ୍ରବନ୍ଧରେ କହେ ଚିନ୍ତାମଣି ଦାସ । ସୁଜ୍ଞଜନମାନେ ନ ଧେନିବା ଦୋଷାଦୋଷ ।୯୪।

ଇତି ମହାନାଟକେ ତୃତୀୟୋଽଙ୍କଃ ।

———

## ଚତୁର୍ଥ ଅଙ୍କ

ଶ୍ରୀରାମସ୍ୟ ଖେଦଃ ।

ବହୁରପି ନ ପଦାନାଂ ପଂକ୍ତି ରନ୍ତର୍ନ କାଚିତ୍
କ୍ୱମିଦମିତ୍ୟୁମସୀତା ପର୍ଣ୍ଣଶାଲା କ୍ୱମନ୍ୟା ।
ଅହମପି କ୍ୱଚ ନାସ୍ମିଂ ସର୍ବଥା ରାଘବଶ୍ଚେତ
କ୍ଷଣମପି ନହି ସୋଢା ହନ୍ତ ସୀତାବିଯୋଗଂ ।୧।

ନ ଦେଖି ରାମ କୁଡିଅ ବାହାର ଭିତର । ମନୁଷ୍ୟର ପ ଦଚିହ୍ନ ନାହିଁ କେଉଁଠାର । ଛଳ କରି କିବା ସୀତା ଲୁଚିଛନ୍ତି କାହିଁ । ଏହାଭାବି ମନରେ ସନ୍ଦେହ କରେ ମୁହିଁ । ମୁଁ ନୁହେ ରାଘବ ଏହୁ ବଚନ ପ୍ରମାଣ । ଯେବେ ହୋଇଥାନ୍ତି କିପାଁ ଘଟନ୍ତା ଏମାନ । ଯାହାକୁ ନ ଦେଖି କ୍ଷଣେ ହୁଏ ମୁଁ ଅଧୀର । ତାହାର ବିରହେ କେହ୍ନେ ଧରିବି ଶରୀର ।୧।

ହା ପର୍ଣ୍ଣଶାଲଙ୍ଗଣପୁଷ୍ପବଲ୍ଲି ହା ଭୂତଲ'ବଷ୍ଟୁ ତଚନ୍ଦ୍ରଲେଖେ
ମଲ୍ଲୀବନସ୍ୟାପ୍ୟବଲମ୍ବଶାଖେ ବୈଦେହୀ ବୈଦେହୀକୁତୋଗତାସି ।୨

ମଡ଼ିଅ ଦୁଆରେ ରାମ ଡାକନ୍ତି ଗୋ ସୀତା । ଶୋଭା ଦିଶୁଥିଲ ତୁମ୍ଭ ରୂପ ପୁଷ୍ପଲତା । ଆକାଶେ ବିରଳେ ଯେସନେ ଚନ୍ଦ୍ରରେଖା ପରି । ପ୍ରକାଶୁଥିଲ ତୁମ୍ଭର ଶୋଭା ସେହି ପରି । ଯେଣୁ ଜୀବନକୁ ମୋର ଅଣ୍ଟା ହୋଇଥିଲ । ହାୟ ହାୟ ଗୋ ଜାନକୀ କେଉଁଣେ ଲୁଚିଗଲ ।

ବିତର ବିତର ବାଚଂ କ୍ୱାପି ମୁଗ୍ଧେ କିମେତଦ୍
ବିରମତୁ ପରିହାସଃ ସର୍ବଥା ଦୁଃସହୋଽପି ।
ତ୍ୱମସି ଖଲ ତନୁଜା ହନ୍ତ ସର୍ବସହାୟାଃ
ସୁତବିରହବିମୁକ୍ତପ୍ରାଣରାଜା ମୃତୋଽହଂ । ୩ ।

ତୁମ୍ଭେ ପୃଥ୍ୱୀସୁତା ସବୁ ସହ ପୃଥ୍ୱୀପରି । କହୁଅଛୁ ଅଗୋ ସୀତା ହାସ୍ୟ ମୁଁ ନ କରି । ସୁତ ବିରହେ ଜୀବନ ତେଜିଛନ୍ତି ତାତ । ମୁଁ ଅଟଇ ପୁଣି ସେହି ରାଜାଙ୍କର ସୁତ । ସହି ନ ପାରଇ ତୁମ୍ଭ ପରିହାସ ତେଣୁ । କେଉଁଣେ ଅଛ ଦେଖା ଦିଅ ଦୁଃଖେ ଯାଉ ମନୁ । ୩ ।

ସ ଭୂରଜୋରଞ୍ଜିତ ସର୍ବକାୟୋ
ବଭୌ ବିଭୂର୍ମନ୍ୟୁବିଦୀର୍ଣ୍ଣଚେତାଃ ।
ଯୋଷିଦ୍ ବିୟୋଗାନଳଦହ୍ୟମାନଂ
ସ୍ୱକାନ୍ତମାଲିଙ୍ଗୟତୀବ ଭୂମିଃ । ୪ ।

କହି ଏମନ୍ତବଚନ ଶୋକେ ରଘୁମଣି । ହୋଇ ଅଧୀର ହୃଦୟ ପଡ଼ିଲେ ଧରଣୀ । ଧୂଳିରେ ଧୂସର ଅଙ୍ଗ ସର୍ବାଙ୍ଗ ହୋଇଛି ॥ ଅକୁଳ ହୃଦୟ ଶୋକେ ବିଦୀର୍ଣ୍ଣ କରୁଛି । ବିରହ ଅଗ୍ନି ଦହନ କରଇ ମନକୁ । ତଥାପି ରୂପବର୍ଦ୍ଧନ ଦିଶଇ ଶୋଭନକୁ ॥ ଧୂଳି ଲାଗିବାରୁ ଅଙ୍ଗ ଦିଶେ ଶୋଭାବନ । ସ୍ୱ ପତିକୁ କିବା କ୍ଷିତି କରେ ଆଲିଙ୍ଗନ । ୪ ।

ଅସାବସରେ ମୁନିଜନବାକ୍ୟଂ ।

ଏକଦୈବହି ରାମେଣ ଲବ୍ଧମାଧିଚତୁଷ୍ଟୟଂ ।
ରାଜ୍ୟନାଶୋ ବନବାସୋ ହୃତା ସୀତା ମୃତଃ ପିତା । ୫ ।

ବସି ବିଚାରନ୍ତି ମୁନିଗଣ ଏକାଳରେ । ପାଇଲେ ଶ୍ରୀରାମ ବହୁଖେଦ ଯେ ମନରେ । ନାଶଗଲେ ପିତା ପୁଣି ରାଜ୍ୟ ହେଲା ନାଶ । ହରାଇଲେ ସୀତା ଦେଖ କର ବନବାସ । ୫ ।

ଅସମ୍ଭବଂ ହେମମୃଗସ୍ୟ ଜନ୍ମ ତଥାପି ରାମୋ ଲୁଲୁଭେ ମୃଗାୟ
ପ୍ରାୟଃ ସମାସନ୍ନ ବିପତ୍ତିକାଲେ ଧିୟୋପି ପୁଂସାଂ ମଳିନାଭବନ୍ତି ॥

ଅସମ୍ଭବ କଥା ସୁବର୍ଣ୍ଣର ମୃଗ ଜନ୍ମ । ତାହାପଛେ ରାମଚନ୍ଦ୍ର କଲେକ ଗମନ । ହୁଅଇ ବିପଦ ଯେଉଁ କାଳେ ଉପଗତ । ନାଶହୁଏ ବୁଦ୍ଧି ଦେଖାଯାଏ ବିପରୀତ । ୬ ।

କର୍ମଣା ବାଧତେ ବୁଦ୍ଧିର୍ନବୁଦ୍ଧ୍ୟା କର୍ମ ବାଧତେ ।
ସୁବୁଦ୍ଧି ରପି ଧାମୋଽୟଂ ହୈମଂ ହରଣମନ୍ୱଗାତ୍ । ୭ ।

କର୍ମ ନାଶକରେ ବୁଦ୍ଧି ଏକଥା ପ୍ରମାଣ । ନାଶି ନ ପାରଇ ବୁଦ୍ଧି କର୍ମର ଲେଖନ । ମହାଜ୍ଞାନବନ୍ତ ଯେ ଅଟନ୍ତି ରଘୁମଣି । ବନବାସେ ଥାଇ ଗଲେ ସ୍ୱର୍ଣ୍ଣମୃଗ ଅଣି । ୭ ।

ରାଜ୍ୟଂ ନ ଶଯ୍ୟତା ବନଂ ଗମୟତା ଘୋରୈଶ୍ଚ ଯାମାଚରୈ
ର୍ବୈରଂ କାରୟତା ମତିଂ ଛଳୟତା ମାୟା ମୃଗଚ୍ଛଦ୍ମନା ।
ଦାରାନ୍ ହାରୟତା ବନେ ଭ୍ରମୟତା ନାନାବନାଲୀତଲଂ
ରାମସ୍ୟାପି କୃତଂ ହତେନ ବିଧିନା ଦୁଃଖାତ୍‌ଦୁଃଖଂ ମହତ୍ । ୮ ।

ଛଡ଼ାଇଣ ରାଜଭୋଗ ବନକୁ ପଠାଇ । ଘୋରବନେ ଅସୁରଙ୍କ ସଙ୍ଗେ ଶତ୍ରୁ ହୋଇ । ଅନ୍ତରେ ଦେଖାଇ ମାୟାମୃଗ ଭୁଲାଇଲେ । ଛଳକରି ତାହାଙ୍କର ନାରୀକୁ ହରିଲେ ॥ ଅରଣ୍ୟ ମଧ୍ୟରେ ତାଙ୍କୁ ଭୁଲାଇଲେ ନେଇ । ଏହିମତେ ଅନେକ ଯାତନା ଦେଲେ ବିହି । ୮ ।

ପୁନରପି ରାମସ୍ୟ ଖେଦଃ ।

ନାସ୍ୱାଦିତା ଧରସୁଧା ନ ଶିରୀଷପୁଷ୍ପ
ନ୍ୟସ୍ତ୍ରୀ ମୟୋରସି ଧୃତା ତନୁରାୟତାକ୍ଷ୍ୟାଃ

ବ୍ରୀଡ଼ା ବିରୋଧିନି ବିମୁଞ୍ଚ ହି ମୁକ୍ତକଣ୍ଠ
ମାକ୍ରନ୍ଦିତଂ ନ ଖଲ ଜାନକି ଜାନକୀତି । ୯ ।

ପୁନରପି ଖେଦ ମନେ କରନ୍ତି ଶ୍ରୀରାମ । ସୀତା ଗୁଣ ଗୁଣି ପୁଣି କଲେ ଯେ ରୋଦନ ॥ ବୁହାଇଲେ ବିଶାଳ ନେତ୍ରରୁ ବାରିଧାର । ଶ୍ୟାମଳ ମୂରତି ପୁଣି କୋମଳ ଶରୀର । କରିନାହିଁ ଦୋଷ କିଛି ତୁମ୍ଭ ପାଶେ ମୁହିଁ । ଲଜ୍ଜା ଛାଡ଼ି ଦେଖାଦିଅ କାହିଁ ଅଛ ରହି । ଜାନକୀ ଜାନକୀ ବୋଲି ଉଚ୍ଚେ ଡାକଦେଲେ । କ୍ଷମାକର କ୍ଷମାନିଧି ଅପରାଧ ଥିଲେ । ୯ ।

ହା ବଲ୍ଲଭେ ଜନକବଂଶଜବୈଜୟନ୍ତି
ହା ମଦ୍ବିଲୋଚନଚକୋରନବେନ୍ଦୁଲେଖେ ।
ଇତ୍ଥଂସ୍ଥିତଂ ବହୁବିଲପ୍ୟ ବିଲପ୍ୟ ରାମ
ସ୍ତ୍ରାମେବ ପର୍ଣ୍ଣବସତିଂ ପରିତଷ୍ଟଗୃହ । ୧୦ ।

କେଉଁଣେ ଛାଡ଼ି ଅଗୋ ପ୍ରାଣପ୍ରିୟେ ମୋର ଗଲୁ । ଜନକଙ୍କ ବଂଶେ ଜନ୍ମ ଆନ୍ତେ ପାଶେ ଥିଲୁ ॥ ହୋଇଥିଲ ମୋ ନେତ୍ରର ପ୍ରତିମା ପରାୟେ । ନବୀନ ଚନ୍ଦ୍ର ବଦନ ଦେଖା ଅଗୋ ପ୍ରିୟେ ॥ ଏମନ୍ତେ ବହୁମତରେ କରନ୍ତି ରୋଦନ । କୁଞ୍ଜଅର ଚତୁଃ ପାଶେ କରନ୍ତି ଭ୍ରମଣ । ୧୦ ।

ଅଥ ବିରହଃ ।

ଅସ୍ୟାଲିଙ୍ଗିତମସ୍ୟ ବାନରଗଣସ୍ୟା ସାତ୍ ପ୍ରଣାମଃ କୃତଃ
କିଂ ଗୃହ୍ୟାଲିଖିତା କପୋଲଫଲକେ କସ୍ତୁରିକା ପତ୍ରିକା ।
ଇତ୍ୟାଲୋଚ୍ୟ ବିଲୋଚନୋସ୍ରବିକଶ୍ୱାସ୍ତ୍ରାବହାବସ୍ଥଳୀ
କ୍ଷେତ୍ରଃ କିଂ ଶତଧା ନ ଯାତି ବିରହେ ତସ୍ୟାଃ କୁରଙ୍ଗୀଦୃଶଃ ୧୧

ବାନରଙ୍କ ଭୟେ ଏହିସ୍ଥାନେ ଅଲିଙ୍ଗନ । କରିଥିଲ ପ୍ରିୟେ ନମସ୍କାର ଏହିବନ । କସ୍ତୁରୀପତ୍ର କପୋଳ ଫଳକେ ଲେଖିଲ । ଦେଖି ତୁମ୍ଭଙ୍କୁ ବହୁ ଆନନ୍ଦ ଲଭିଥିଲ ॥ କହି ବନସ୍ଥଳକୁ ଅନାଇ ରଘୁମଣି ।

ମନେ ମନେ ବିଚାର କରନ୍ତି ଏହା ପୁଣି ॥ ସେହି କୁରଙ୍ଗନୟନୀ ସୀତାଙ୍କ ବିରହେ । ଖଣ୍ଡଖଣ୍ଡ କରି ମୋର ତନୁ ନଷ୍ଟେ ଦହେ । ୧୧ ।

ପୁନଃ ପର୍ଣ୍ଣଶାଳାଂ ବିଲୋକ୍ୟ ।

ଅଲିଙ୍ଗ ତାବ ସରସୀରୁହଗର୍ଭବକ୍ତ୍ରା
ପୀତେ ଽଧରେ ଽନ ମଧୁରେମୃଗଲୋଚନାୟାଃ ।
ଭୃଙ୍ଗାଲି ପୀତମକରନ୍ଦବିମର୍ଦ୍ଦିତାନ୍
ପୁଷ୍ପାଣ୍ୟମୂନି ଦୟିତେ କ୍ୱ ଗତାସି ସୁଭ୍ରୂଃ । ୧୨ ।

ବଦନ ନଳିନୀ ପ୍ରାୟ ସୁନ୍ଦର ଯାହାର । ହରିଣୀ ପରାୟେ ଯାର ନୟନ ଯୁଗଳ ॥ ଏହିସ୍ଥାନେ ଅଲିଙ୍ଗନ କରି ସଙ୍ଗେ ତାର । ମଧୁପାନେ ରତ ହୋଇଥାଏ ନିରନ୍ତର ॥ ପିଇ ମକରନ୍ଦ ଏହିସ୍ଥାନେ ଅଳିବୃନ୍ଦ । ଭ୍ରମନ୍ତି କୁସୁମ ବନେ ହୋଇଣ ଆନନ୍ଦ ॥ ରହିଅଛୁ ସବୁକିହି ଗଲପ୍ରିୟା ମୋର । ଦିଶୁନାହିଁ ରୁମ୍ଭ ଗୃହୁ ଭ୍ରୂଲତା ଯୁଗଳ । ୧୨ ।

ହେ ଗୋଦାବରି ପୁଣ୍ୟବାରି ସୁଭଗେ ଦୃଷ୍ଟା ତ୍ୱୟା ଜାନକୀ
ଯାହତ୍ତୁଂ କମଳାନି ବାଗତବତୀ ଯାଦ୍ଧା ବିନୋଦାୟ କିଂ ।
ଇତ୍ୟେବଂ ପ୍ରତିପାଦପଂ ପ୍ରତିପଦଂ ପ୍ରତ୍ୟାପଗଂ ପ୍ରତ୍ୟଗଂ ।
ପ୍ରତ୍ୟେଣଂ ପ୍ରତିବର୍ହିଣଂ ତତଇତସ୍ତାଂ ଜାନକୀଂ ଯାଚତେ । ୧୩ ।

ଦେଖିଛ କି ଗୋଦାବରୀ ଜାନକୀଙ୍କି ମୋର । ସୁନ୍ଦର ପବିତ୍ରବାରି ଅଟଇ ତୁମ୍ଭର । ଫୁଟିଅଛି ଯାହରେ ତୋର ପଦ୍ମଫୁଲମାନ । ତୋଳିବାକୁ ଆସିଥିଲେ ମୋ ନାରୀରତନ । ଏହିପରି ପୁଚ୍ଛି ପୁଚ୍ଛି ଇରି ରାମ ଗତ । ପଥ ମଧ୍ୟେ ପଚାରନ୍ତି ଯାହାକୁ ଦେଖନ୍ତି ॥ ନଦୀଗିରି ବୃକ୍ଷ ମୃଗ ମୟୂରଙ୍କୁ ଗୃହିଁ । ପଚାରନ୍ତି ରାମ ସୀତା ଦେଖିଛ କି କେହି । ୧୩ ।

ଭୋ ବୃକ୍ଷାଃ ପର୍ବତସ୍ଥାବିହଗକୁସୁମଯୁତାବାୟୁନା ଘୂର୍ଣ୍ଣ୍ୟମାନା
ରାମୋଽହଂ ବ୍ୟାକୁଳାତ୍ମା ଦଶରଥତନୟଃ ଶୋକଶୁକ୍ରେଣ ଦଗ୍ଧଃ
ବିମ୍ବୋଷ୍ଠୀ ଚାରୁନେତ୍ରା ସୁବିପୁଳଜଘନା ଦୀର୍ଘକେଶୀ ସୁମଧ୍ୟା
ହାସୀତା କେନ ନୀତା ମମହୃଦୟଗତା କୋଽପିବାନ୍ କେନ ଦୃଷ୍ଟା

ଅଛ ଗିରିପରେ ଯେତେ ବୃକ୍ଷ ଲତାଗଣ । କରିଛ ଫଳକୁସୁମେ ଡଶାଖିକୁ ଧାରଣ ॥ ବହୁଅଛି ମଳୟ ପବନ ଘନ ଘନ । କହୁଅଛି ମୁହିଁ ଶୁଣମୋର ନିବେଦନ । ମୃଗୁଦ୍ଧାସୀ ସୁନ୍ଦର ନୟନୀ ଦୀର୍ଘକେଶୀ । କେଶରୀ ମଧମା ମୋଜାନକୀ ପିକଭାଷୀ ॥ ସବୁବେଳେ ମୋହର ହୃଦୟେ ଥାଏ ରହି ହରିନେଲା କିଏ କେଉଁଣେ ଦେଖିଛ କି କେହି । ଏହା ଶୁଣି ଉତ୍ତର ଦିଅନ୍ତି ବୃକ୍ଷଗଣ । କୁହ ପଚାରୁଛ ତୁମ୍ଭେ କିଏ କିସ ନାମ ॥ କହନ୍ତି ଶ୍ରୀରାମ ମୁହିଁ ଦଶରଥ ସୁତ । ଶୋକାନଳେ ଦଗ୍ଧହୋଇ ଜଳେ ମୋରଚିତ୍ତ ॥ ଏହାଶୁଣି ଯହୁଁ କିଛି ନ କହିଲେ କେହି । କହିଲେ ସର୍ପକୁ ରାମ ଚହାଇଣ ବିନୟୀ । ୧୪ ।

ଭୋ ଭୋ ଭୁଜଙ୍ଗତରୁପଲ୍ଲବଲୋଲଜିହ୍ୱ
ବନ୍ଧୂକପୁଷ୍ପବରଶୋଭିତନେତ୍ରଯୁଗ୍ମ ।
ପୃଚ୍ଛାମି ତେ ପବନଭୋଜନ କୋମଳାଙ୍ଗୀ
ମାର୍ଗେ ଗତା ସପଦି ଚନ୍ଦ୍ରମୁଖୀ ନ ଦୃଷ୍ଟା । ୧୫ ।

ଅଟ ତୁମ୍ଭେ ଭୁଜଙ୍ଗମ ପବନର ପୁଅ । ବନ୍ଧୂଲି କୁସୁମ ପରି ଅଟେ ନେତ୍ର ଦ୍ୱୟ ॥ ପଲ୍ଲବତ ନବପୁଷ୍ପ ନ ଗୋଷ୍ପର ପରି । ହଲୁଥାଏ ସଦାକାଳେ ଜିହ୍ୱା ଯେ ତୁମ୍ଭର ॥ ପଚାରୁଛି ତୁମ୍ଭଙ୍କୁ ଯେ ତେଣୁକରି ମୁହିଁ । ଦେଖିଛ କି ଏହିବାଟେ ଗଲା ଚନ୍ଦ୍ରମୁହିଁ । ୧୫ ।

ସା ରେବାତଟିନୀ ତଦେବ ବିପିନଂ ସୈଷା ନିକୁଞ୍ଜସ୍ଥଳୀ
ସୋଽୟଂ ଭୂମିଧରଃ ସ ଏବ ମଳୟପ୍ରୋଦ୍ଭୂତମନ୍ଦାନିଳଃ ।
ତାନ୍ୟେତାନି ସରାଂସି ହନ୍ତ ବିମଳା ନ୍ୟୁତ୍ତରଙ୍ଗବଦ୍ଧୋରୁହ-
ଦ୍ୱନ୍ଦ୍ୱାପୀଡ଼ନଭାରମନ୍ଦଗମନା ନା ଲୋକ୍ୟତେ ଜାନକୀ । ୧୬ ।

ଅଛି ସେ ବିପିନ ସେହି ରେବାନଦୀ ଅଛି । ସେହିପରି କୁଞ୍ଜସ୍ଥଳୀମାନ ବିରାଜୁଛି ॥ ସେହି ଗିରିମାନ ପୂର୍ବପରି ଅଛି ରହି । ମଳୟ ପବନ ବହେ ମନ୍ଦମନ୍ଦ ହୋଇ । ସେହି ସରୋବର ଶୋହେ ନିର୍ମଳ ସଲିଳେ । ପ୍ରକାଶନ୍ତି ଶୋଭାରାଶି ସେହି ପରକାରେ ॥ କଟଗିରି ଭାରେ ବକ୍ଷଧୀର

ଗତ କଟେର । ଦେଖୁନାହିଁ ସୀତାଙ୍କୁ ମୁଁ ଆଉ ଏଥିଠାରେ । ୧୬ ।

ଆଦାବେବ କୃଶୋଦରୀ କୁଚତଟୀଭାରେଣ ନମ୍ରା ପୁନ
ର୍ଲୀଳାଚଂକ୍ରମଣାଞ୍ଚନେବ ସହସା ଲୀଳାବଧୌ ଶ୍ରାମ୍ୟସି ।
ସ୍ରୋତଃ କାନନଗଣ୍ଡିନିର୍ଝରଝରତ୍ପ୍ରାୟାନପୂର୍ବାନମାନ୍
ଭୂଭାଗାନ୍ କଲ ଭୂରଭୈରବମୃଗାନ୍ ବୈଦେହୀ ଯାସ୍ୟାଃ କଥଂ ।

କୁଶତନୁ ଅଟଇ ଯେ ବହୁତ ରୁମ୍ଭୁର । ତହିଁ କି ହେଉଛି ବହୁଭାର ପଟଧର ॥ କରୁଥିବା ଗତ ମତ୍ତ କୁଞ୍ଜର ଟରାସୁ ବଳାଏ ବହୁତ ଜାତ କରାଅ ଯେ ସ୍ନେହ ॥ ପୂରନ୍ତି ଏ ଭୂମି ବନ ନିର୍ଝର ସହିତେ । ପଶୁ ପକ୍ଷୀ ଆଦି ସର ସହିତ ଯେ କେତେ ॥ ଦେଖି ମନୋହର ବନ ଅଶ୍ରୁ ନ ଲୋଭଇ । ଏହା ଭାବି ଗଲେ ଖୋଜିବାକୁ ରଘୁସାଇଁ । ୧୭ ।

ଗାହଂ ଗାହଂ ଗହ୍ୱରକାନ୍ତାରବନାନ୍ତାନ୍
ଦର୍ଶଂ ଦର୍ଶଂ ଦର୍ପକଭଲ୍ଲି ରିବ ବଲ୍ଲୀଃ ।
ସ୍ମାରଂ ସ୍ମାରଂ ଦୂରଗତାଂ ତାଂଦଥ କାନ୍ତାଂ
ରାମଃ କାନ୍ତାମନ୍ଦ୍ରଚରୋଦାନମରୋଦୀତ୍ । ୧୮ ।

ବନେ ବନେ ବୁଲି ବୁଲି ଗଲେ ରଘୁନାଥ । ତରୁ ଲତାମାନ ଦେଖି ଦେଖିଣ ସମସ୍ତ ॥ ଅନୁବ୍ରତେ ସ୍ମରି ସ୍ମରି କାନ୍ତ ଗୁଣ ମାନ । ରହି ପର୍ବତ ଉପରେ କରନ୍ତି ରୋଦନ । ୧୮ ।

ଅଥ ସୀତାୟାଂ ଅପ୍ରାପ୍ତାୟାଂ ଶ୍ରୀରାମବାକ୍ୟଂ ।

ମଧ୍ୟଂ କେଶରିଭିଃ ସ୍ମିତଂ ଚ କୁସୁମୈର୍ନେତ୍ରଂ କୁରଙ୍ଗୀଗଣୈଃ
କାନ୍ତିଶ୍ଚମ୍ପକକୁଟ୍ମଲୈଃ କଲରୁତଂ ହା ହା ହୃତଂ କୋକିଳୈଃ ।
ବଲ୍ଲୀଭିର୍ଲଲିତଂ ଗତଂ କରିବରୈରିତ୍ଥଂ ବିଭଜ୍ୟାଙ୍ଗସା
କାନ୍ତାରେ ସକଲୈର୍ବିଳାସପଟୁଭିର୍ନୀତାସି କିଂ ମୈଥିଳୀ । ୧୯ ।

କେଶରୀ କଟିକୁ ହାସ୍ୟ କୁସୁମର ପରି । କୁରଙ୍ଗ ନୟନକୁ କୁରଙ୍ଗ ନେଲେ ହରି । ଚମ୍ପକ କଢ଼ି କାନ୍ତିକୁ ସ୍ୱର କୋକିଳର । କୋମଳ ଲତିକା ଅଙ୍ଗ ଗତ ମାତଙ୍ଗର ॥ ବିଳାସ ନିମନ୍ତେ ବନେ ମିଳି ପଶୁକୁଳ । ବାଣ୍ଟି ନେଲେ ସୀତା ଅଙ୍ଗ ଦେଖିଣ କୋମଳ । ୧୯ ।

( ଅଥ ନୂପୁରଂ ପ୍ରାପ୍ୟ ଲକ୍ଷ୍ମଣଂ ପ୍ରତି ଶ୍ରୀରାମଃ )
ଚକ୍ଷୁର୍ମେ ପ୍ରୀଣୟତ୍ୟେତତ୍ସୀତାୟା ଇବ ନୂପୁରଂ ।
ଅବଧାରୟ ସୌମିତ୍ରେ ଭୂଷଣାନ୍ତରଯାମ୍ୟତଃ । ୨୦ ।

ଗମନ୍ତେ ପଥେ ପଡ଼ିଛନ୍ତି ନୂପୁର ଦେଖିଲେ । ଲକ୍ଷ୍ମଣଙ୍କୁ ରଘୁନାଥ ରାମ ଏସନ ବୋଇଲେ ॥ ସୀତାଙ୍କ ନୂପୁର ପରି ଦିଶୁଛନ୍ତି ଏହି । ଦେଖିଲା ବେଳୁଁ ମୋହର ସନ୍ଦେହ ଜନ୍ମଇ ॥ ଏହା ସଙ୍ଗେ ଅନ୍ୟ ଭୂଷଣଙ୍କୁ ସମ୍ଭାଳର । କହ ହେ ଲକ୍ଷ୍ମଣ ଏକା ନିଶ୍ଚେ ଜାନକୀର । ୨୦ ।

ଲକ୍ଷ୍ମଣଃ ପ୍ରାହ ।

ନାହଂ ଜାନାମି କେୟୂରେ ନାହଂ ଜାନାମି କଙ୍କଣେ ।
ନୂପୁରେ ତ୍ୱଭିଜାନାମି ନିତ୍ୟଂ ପାଦାଭିବନ୍ଦନାତ୍ । ୨୧ ।

ରଘୁନାଥ ଶ୍ରୀରାମଙ୍କୁ ତହୁଁ ବୋଇଲେ ଲକ୍ଷ୍ମଣ । ନ ଚିହ୍ନଇ କେୟୂର ମୁଁ ନ ଜାଣେ କଙ୍କଣ ॥ କେବଳ ନୂପୁର ଦ୍ୱୟ ଚିହ୍ନଇ ଯେ ମୁହିଁ । ପ୍ରତିଦିନ ଚରଣ ମୁଁ ବନ୍ଦନା କରଇ । ୨୧ ।

କସ୍ମିଶ୍ଚିଦ୍ଦୂରେ ସୀତୋତ୍ତରୀୟଂ ପ୍ରାପ୍ୟ
ରାମଃ ।

ଦୂ୍ୟତେ ପଣଃ ପ୍ରଣୟକେଳିଷୁ କଣ୍ଠପାଶଃ
କ୍ରୀଡ଼ାପରିଶ୍ରମହରଂ ବ୍ୟଜନଂ ରତାନ୍ତେ ।
ଶଯ୍ୟା ନିଶୀଥକଲହେ ହରିଣେକ୍ଷଣାୟାଃ
ପ୍ରାପ୍ତଂ ମୟା ବିଧିବଶାଦିଦମୁତ୍ତରୀୟଂ । ୨୨ ।

କିଛିଦୂରେ ସୀତାଙ୍କ ଉତ୍ତରୀ ରାମ ପାଇ । ଭଣିଲେ ପଶାଖେଳରେ ପଣ ଅଟେ ଏହି ॥ ହୁଏ ପ୍ରଣୟ ଲୀଳାବେ ଯାଇଁ କଣ୍ଠପାଶ । ହୁଅଇ ରତାନ୍ତେ ଏହି ବ୍ୟଜନ ସଦୃଶ ॥ ନିଶିଥରେ ଶଯ୍ୟା ହୁଏ ଜାନକୀର ଏହି । ବିଧିବଶୁ ଏହାକୁ ଯେ ପାଇଅଛି ମୁହିଁ । ୨୨ ।

ତତଶ୍ଚନ୍ଦ୍ରଂଦୃଷ୍ଟ୍ବା ସୌମିତ୍ରିଂପ୍ରତି
ରାମଃ ।

ସୌମିତ୍ରେ ନନୁ ସେବ୍ୟତାଂ ତରୁତଳଂ ଚଣ୍ଡାଂଶୁରୁଜ୍ଜୃମ୍ଭତେ
ଚଣ୍ଡାଂଶୋର୍ନିଶି କା କଥା ରଘୁପତେ ଚନ୍ଦ୍ରୋଽୟମୁନ୍ମୀଲତି ।
ବତ୍ସୈତଦ୍ବିଦିତଂ କଥଂ ନୁ ଭବତା ଧତ୍ତେ କୁରଙ୍ଗଂ ଯତଃ
କ୍ୱାସି ପ୍ରେୟସି ହା କୁରଙ୍ଗନୟନେ ଚନ୍ଦ୍ରାନନେ ଜାନକି ! ୨୩ ।

ଚନ୍ଦ୍ରକୁ ଦେଖିଣ ଏଥୁଅନ୍ତେ ରଘୁମଣି । ଅନାଇଣ ଲକ୍ଷ୍ମଣଙ୍କୁ କହନ୍ତି ଏ ବାଣୀ ॥ ଦେଖ ପ୍ରଖର ହୋଇଛି ଏ ସୂର୍ଯ୍ୟ କିରଣ । ଆଶ୍ରା-କର ତରୁ ତଳେ ଭାଇରେ ଲକ୍ଷ୍ମଣ । କହିଲେ ଲକ୍ଷ୍ମଣ ସୂର୍ଯ୍ୟ ନୁହନ୍ତି ଏ ଚନ୍ଦ୍ର । ହୁଅଇ କି ରାତେ ସୂର୍ଯ୍ୟ ଉଦେ ରାମଚନ୍ଦ୍ର ॥ ଜାଣିଲ କେମନ୍ତେ ବତ୍ସ ଚନ୍ଦ୍ର ବୋଲି ଏହି । ଲକ୍ଷ୍ମଣ କହିଲେ ମୃଗଚିହ୍ନ ଅଙ୍ଗେ ବହି ॥ ହା କୁରଙ୍ଗ ନେତ୍ରି ସୀତେ ବୋଲି ରାମ କହି । ଚନ୍ଦ୍ରମୁଖୀ ଜାନକୀ ଗୋ କେଣେ ଅଛରହି । ୨୩ ।

ଚନ୍ଦ୍ରଂପ୍ରତି ରାମଃ ।

ଶୀତରଶ୍ମିରସି ଚନ୍ଦ୍ର କଥଂମାଂତାପୟସ୍ୟନଳଗର୍ଭମୟୂଖୈଃ ।
ତ୍ୱାଂଶରେଣ ଶତଧା ବିଭଜେୟଂଜାନକୀମୁଖସମୋ ଯଦି ନସ୍ୟାଃ ।

ଚନ୍ଦ୍ରକୁ ଚାହିଁଣ ପୁଣି କହନ୍ତି ଶ୍ରୀରାମ । ଅତ୍ୟନ୍ତ ଶୀତଳ ଅଟେ ତୁମ୍ଭର କିରଣ ॥ ହେଉଅଛ ମୋତେ ଅନଳର ତେଜପରେ । ଦହି ପକାଉଛ ମୋତେ କିରଣ ବିସ୍ତାରି ॥ ଯେବେ ନୋହିଥାନ୍ତ ସୀତାଙ୍କ ମୁଖ ସମାନ । କାଟନ୍ତି କରଣି ଶତଖଣ୍ଡ ଏହିକ୍ଷଣି । ୨୪ ।

କୁଲାଳୀତିବ୍ରୀଡାବିକଳମତିରାସ୍ଥାନମଧୁନା
ତରୋଧାତୁଂଗତେ ବହୁଲତରପଙ୍କେ ଧନମଣିଃ ।
କଳଙ୍କୀ ମେ ପ୍ରେୟାନିତି ମଳିନତାମେତି ନଳିନୀ
ଦ୍ୱିତୀୟୋଽଭୂଦ୍ଦେବୋଽଦ୍ୟ କୁମୁଦବୃନ୍ଦଂ ବିହସତି । ୨୫ ।

ଜାଣିଲ କୁଳଟର ହେଲ ଅନ୍ଧାର୍ ମୋହର । ଅସ୍ତ ହେଲେ ଲଙ୍କାର ବିକଳେ ଦିନକର ॥ ଯୋଇଲେ ମୋତ୍ରିଯୀ କଲଙ୍କିନୀ ଏକାଳରେ । ମଳିନ ବଦନା ହୋଇଛନ୍ତି ଲଜ୍ଜାଭରେ ॥ ଅଧେ ଆକାଶରେ ଚନ୍ଦ୍ର ହୋଇଲେ ପ୍ରକାଶ । କୁମୁଦବୃନ୍ଦ କରନ୍ତି ଯେଣୁ ଉପହାସ ॥

ରାମଲକ୍ଷ୍ମଣୟୋରୁକ୍ତିପ୍ରତ୍ୟୁକ୍ତୀ ।

କେ ଯୂୟଂ ରଘୁନାଥ ନାଥକମିଦଂ ଭୃତ୍ୟୋଽସ୍ମି ତେ ଲକ୍ଷ୍ମଣଃ ॥
କୋଽହଂ ବତ୍ସ ବଦାଶୁ ଦେବ ଭଗବାନାର୍ଯ୍ୟୋ ଭବାନ୍ ରାଘବଃ ॥
କିଂ କୁର୍ମୋ ବିଜନେ ବନେ ତତ ଇତୋ ଦେବୀ ସମନ୍ୱିଷ୍ୟତେ
କା ଦେବୀ ଜନକାଧିରାଜତନୟା ହା ଜାନକି କ୍ୱାସି ରେ । ୨୬ ।

ହୋଇଣି ବିହ୍ୱଳ ମନେ ପ୍ରଭୁ ରଘୁମଣି । ପଚାରନ୍ତି କିଏ ତୁମ୍ଭେ କହୁଅଛ ବାଣୀ ॥ ଶୁଣି ଉତ୍ତର ଦିଅନ୍ତି ସୁମିତ୍ରାନନ୍ଦନ । ଦେବ ରଘୁନାଥ ଭୃତ୍ୟ ଅଦ୍ଭୁତ ବଚନ ॥ ଅଟଇ ଲକ୍ଷ୍ମଣ ମୁହିଁ ତୁମ୍ଭର ଯେ ଦାସ । ଶୁଣି ପଚାରନ୍ତି ପୁଣି ଜାନକୀବିଳାସ । ମୁଁ କିଏ ଅଛଇ କିମ୍ପା ରହିଛୁ ଏ ସ୍ଥାନ । ଶୁଣିଣି ଲକ୍ଷ୍ମଣ ପ୍ରତି ବୋଲନ୍ତି ଏସନ ॥ ତୁମ୍ଭେ ଦେବ ରଘୁନାଥ ତ୍ରୈଲୋକ୍ୟଈଶ୍ୱର । ରାଘବ ବୋଲିଣି ଖ୍ୟାତ ନାମ ଯେ ତୁମ୍ଭର ॥ ପୁଣି ପଚାରନ୍ତି ରାମ ଲକ୍ଷ୍ମଣଙ୍କୁ ଚାହିଁ । ବୁଲୁଛୁ ଅସିନର୍ଜନ କାନନେ କିପାଇଁ ॥ ଶୁଣି ଲକ୍ଷ୍ମଣ କହନ୍ତି ଏମନ୍ତ ବଚନ । ଖୋଜୁଅଛୁଁ ସୀତାଙ୍କୁ ଏଠାରେ ଅନ୍ୱେଷଣ ॥ ଶୁଣି ରଘୁନାଥ କାନ୍ଦି କହନ୍ତି ତକ୍ଷଣେ ॥ ଅଟଗୋ ଶଶୀମୁଖି ସୀତା ରହିଲୁ ତୁ କେଉଁଣେ । ୨୬ ।

ରାଘବାନୁଶୋଚନଂ ।

ହାରୋ ନାରୋପିତଃ କଣ୍ଠେ ମୟା ବିଶ୍ଳେଷଭୀରୁଣା ।
ଅବୟୋରନ୍ତରେ ଜାତାଃ ସରସ୍ରା ଗରପର୍ବତାଃ । ୨୭ ।

ଶୋକରେ ଅଧୈର୍ଯ୍ୟ ହୋଇ ପୁଣି ରଘୁବୀର । ବିୟୋଗ ଭୟରେ ଗଳେ ନ ଦେନଇ ହାର ॥ ଘଟିଲ ଅନ୍ତର ବେନି ଜଣଙ୍କ ମଧ୍ୟରେ । ରହିଲ ନାଇଁଣ କାହିଁ ପର୍ବତ ସାଗରେ । ୨୭ ।

ଯୋହସ୍ମାତବାଯୋଗଃ ଯୋହ୍ୟୋଗ୍ରଜ୍ୟଂଶ୍ରିୟୋବ୍ଯୋଗୋଽପି
ଯୋଢ଼୍ୱା ବନେପି ବାସଃ ସୋଢ଼ୁଂ ନ ଭବାମି ଜାନକୀବିରହଂ

ସହୁଅଛି ଜନ୍ମଦାତା ପିତାଙ୍କ ବିଯୋଗ । ଛାଡ଼ିଅଛି ମୁହିଁ ପୁଣ ରାଜା ହେବା ଯୋଗ । ଅବର ସହିଲି ବନବାସ କଷ୍ଟ ମୁହିଁ । ଏକା ଜାନକୀ ବିରହ ନ ପାରଇ ସହି । ୨୮ ।

ଇୟଂ ଗେହେ ଲକ୍ଷ୍ମୀ ରିୟମମୃତବର୍ତ୍ତିର୍ନୟନୟୋ
ରିୟଂ ଦେହସ୍ପର୍ଶା ମମ ହୃଦ ଇୟଂ ଚନ୍ଦନମୟୀ ।
ଇୟଂ କଣ୍ଠେ ମାଳା ଶିଶିରମସୃଣା ମୌକ୍ତିକମୟୀ
ପ୍ରିୟେୟଂ ମେ ଗୃହାଃ ଖଳ ଭୁଷଣମସହ୍ୟସ୍ତୁ ବିରହଃ । ୨୯ ।

ମୋହର ଭୁବନ ଲକ୍ଷ୍ମୀ ଅଟଇ ଯେ ସେହି । ମୋ ନେତ୍ରନେତ୍ରେ ଅମୃତ ଅଞ୍ଜନ ଅଟଇ । ସ୍ପରଶ ଯୋଗ୍ୟ ସେହି ମୋହର ଚନ୍ଦନ । ଗଳା ରତ୍ନହାର ମୋର ହୃଦୟ ଚନ୍ଦନ । କଣ୍ଠର ମୁକୁତା ମାଳ ଅଟଇ ଯେ ମୋର । ଶିଶିର ଋତୁ ପରାୟ ଅଙ୍ଗକୁ ଶୀତଳ ॥ ତାହାର ବିରହେ ଧରି ନ ପାରଇ ଦେହ । ପ୍ରିୟତମା ନାରୀ ଶିରୋମଣି ସେ ଅଟଇ । ୨୯ ।

ତଦ୍ଵିୟୋଗସମୁତ୍ଥେନ ତଚ୍ଚିନ୍ତାବିପୁଲାର୍ଚ୍ଚିଷା ।
ରାତ୍ରିନ୍ଦିବଂ ଶରୀରଂ ମେ ଦହ୍ୟତେ ମଦନାଗ୍ନିନା । ୩୦ ।

ଜାନକୀର ହେତୁ ବିଚ୍ଛେଦଅଗ୍ନି ଜଳଇ । ଚିନ୍ତାରୂପ ଶିଖା ସେହି ହେଉଅଛି ବଢ଼ଇ । ତେଣୁ ସେ ମଦନ-ଅଗ୍ନି ଦହଇ ଶରୀର । ଦଗ୍ଧ କରୁଅଛି ଦିବାନିଶି ନିରନ୍ତର । ୩୦

ବାୟୁର୍ଦକ୍ଷିଣତଃ ଶିଖୀ ଚ ପୁରତୋ ଭୃଙ୍ଗଧ୍ୱନିର୍ବାମତଃ
ପଶ୍ଚାଦ୍ଦୁଃସହଚକ୍ରବାକରୁଦିତଂ ଚୈନ୍ଦ୍ରିଂ ସୁଧାଦୀଧିତଃ ।
ଇତ୍ଥଂ ଦୁଃସହପଞ୍ଚତାପସହିତେ ମଧ୍ୟେ ମୟା ଧ୍ୟାୟତା
ନେଷ୍ୟନ୍ତେ କଳି ବା ପ୍ରଜାଗରଭରୈରତ୍ୟନ୍ତଦୀର୍ଘା ନିଶଃ

ପବନ ଦକ୍ଷିଣେ ବହେ ନାଚନ୍ତି ମୟୂର । ବାମଭାଗେ ଧ୍ୱନି କରୁ ଅଛନ୍ତି ଭ୍ରମର । ପୃଷ୍ଠେ ଚକ୍ରବାକ କଲେ ଅସହ୍ୟ ରୋଦନ । ପଡ଼ୁଛି

ଉପରେ ପୁଣି ଚନ୍ଦ୍ରର କିରଣ । ଏହି ପଞ୍ଚତାପ ମଧ୍ୟେ ପଡ଼ିକରି ମୁହିଁ । ଦିବାନିଶି ମୋର ନୟନରେ ନିଦ୍ରା ନାହିଁ । ଜାନକୀ ଚିନ୍ତାରେ ମୁଁ ଯେ ହୋଇ ଉଜାଗର । କେଉଁ ଉପାୟରେ ବସି କଟାଇବି କାଳ । ୩୧ ।

ଚନ୍ଦ୍ରଶ୍ଚଣ୍ଡକରାୟତେ ମୃଦୁଗତିର୍ବାତୋଽପି ବଜ୍ରାୟତେ
ମାଲା ସୂଚିକୁଳାୟତେ ମଲୟଜାଲେପଃ ସ୍ଫୁଲିଙ୍ଗାୟତେ ।
ଅଲୋକସ୍ତିମିରାୟତେ ବିଧିବଶାତ୍‌ପ୍ରାଣୋଽପି ଭାରାୟତେ—
ହା ହନ୍ତ ପ୍ରମଦାବିୟୋଗସମୟଃ ସଂହାରକାଳାୟତେ ।୩୨ ।

ହୋଇଛି ପ୍ରଚଣ୍ଡ ଅଗ୍ନି ଏ ଚନ୍ଦ୍ରକିରଣ । ଲଗୁଅଛି ବଜ୍ରତୁଲ୍ୟ ମନ୍ଦ ସମୀରଣ । ସୂଚିର ସମାନ ହୋଇଅଛି ଫୁଲମାଳ । ଚନ୍ଦନ ଲେପନ ଅଗ୍ନିକଣାର ପ୍ରକାର ॥ ଦିଶଇ ଆଲୋକ ମୋତେ ଅନ୍ଧାର ପରାୟେ ॥ ଜାଣୁଛି ସୀତା ବିଚ୍ଛେଦେ ବିନାଶ ନିଶ୍ଚୟେ । ୩୨ ।

ମଦନଂ ପ୍ରତି ଶ୍ରୀରାମଃ ।

ରେରେ ନିର୍ଦ୍ଦୟ ଦୁର୍ନିବାର ମଦନ ପ୍ରୋତ୍‌ଫୁଲ୍ଲପଙ୍କେରୁହାନ୍
ବାଣାନ୍ ସମ୍ବୃଣୁ ତ୍ୟଜ ଧନୁଃ କିଂ ପୌରୁଷଂ ମାଂ ପ୍ରତି
କାନ୍ତାୟାସ୍ତୁ ବିୟୋଗଜାତହୁତଭୁଗ୍‌ଜ୍ୱାଳାପ୍ରଦଗ୍ଧଂ ବପୁଃ
ଶୀର୍ଣ୍ଣଂ ମୃତମାରଣେ ନହି ପରୋ ଧର୍ମପ୍ରୟୁକ୍ତୋ ବୁଧୈଃ ।୩୩।

ଅରେ ଅରେ ମଦନ ତୁ ନିର୍ଦ୍ଦୟ ବହୁତ । ଫୁଲ ଖଞ୍ଜା ବାଣମାନ କରୁ ବିକଶିତ । ସଂହର ସଂହର ଧନୁ ହସ୍ତରୁ ଆବର । କି ପୌରୁଷ ହେବ ତୋର ମୋତେ ବିନ୍ଧ ଶର ॥ ବିରହ ଅନଳ ଜନ୍ମେ ପ୍ରିୟାର ବିହୁନେ । ଦହଇ ମୋହର ଦେହ ଦେଖ ଅନୁକ୍ଷଣେ ॥ ନିର୍ଜୀବ ଜୀବର ବଧ ନୁହଇ ଉଚିତ । ବିଜ୍ଞଜନମାନେ କହି ଅଛନ୍ତି ଏମନ୍ତ ।

ଆପୁଙ୍ଖାଗ୍ରମମୀ ଶରା ମନସି ମେ ମଗ୍ନାଃ ପରଂ ପଞ୍ଚ ତେ
ନିର୍ଦ୍ଦଗ୍ଧଂ ବିରହାଗ୍ନିନା ବପୁରିଦଂ ତୈରେବ ସାର୍ଦ୍ଧଂ ମମ ।
ତତ୍କନ୍ଦର୍ପ ନିରାୟୁଧୋଽସି ଭବତା ଜେତୁଂ ନ ଶକ୍ୟଃ ପରୋ

ଦୁଃଖୀ ସ୍ୱୟମହମେକ ଏବ ସକଲୋଲୋକଃ ସୁଖଂ ଜୀବତୁ ।୩୪।

ମନରେ ମୋର ତୁମ୍ଭର ଏହୁ ପଞ୍ଚବାଣ । ଏନ୍ଧିଅଛୁ ନିରନ୍ତରେ ଦହିବାକୁ ପ୍ରାଣ ! ସେ ବିରହ ଅଗ୍ନିରେ ଦଗ୍ଧ ମୋ କଳେବର । ପୋଡ଼ା ଅଙ୍ଗକୁ ପୁଣି ପ୍ରହାର କର ଶର ॥ ହେ ମଦନ ହୋଇଅଛୁ ମୁଁ ଆୟୁଧ ହୀନ । ତେଣୁ ଜିଣିବାକୁ ମୋତେ ବଳ ଇଛ ମନ । ଜଗତ ମଧ୍ୟରେ ଏକା ଦୁଃଖି ଅଟେ ମୁହିଁ । ସର୍ବଲୋକ ଜୀଅନ୍ତୁ ଆନନ୍ଦେ ସୁଖିହୋଇ ! ୩୪ ।

ଷଟ୍‌ପଦ୍ୟଶୋକବଚନ ବିଶ୍ରାମ୍ୟ ବୃକ୍ଷଂ ପ୍ରତି ।

ରକ୍ତସ୍ତ୍ୱଂ ନବପଲ୍ଲବୈରହମପି ଶ୍ଲାଘ୍ୟୈଃ ପ୍ରିୟାୟାଗୁଣୈ
ସ୍ତ୍ୱାମାୟାନ୍ତି ଶିଲୀମୁଖ୍ୟାସ୍ମରଧନୁର୍ମୁକ୍ତାଃ ସଖେ ମାମପି ।
କାନ୍ତପାଦତଳାହତସ୍ତବ ମୁଦେ ତଦ୍‌ବନ୍ମମାପ୍ୟାବୟୋ-
ସ୍ତୁଲ୍ୟଂ ସର୍ବମଶୋକ କେବଳମହଂ ଧାତ୍ରା ସଶୋକଃକୃତଃ । ୩୫ ।

ଏତେକହି ଅଶୋକର ତଳେ ରଘୁମଣି । ରହି ବୃକ୍ଷକୁ ଚାହିଁଣ କହନ୍ତି ଏ ବାଣୀ । ଫଳ ପୁଷ୍ପରେ ହୋଇଛ ନବ ପଲ୍ଲବିତ । ମୁହିଁ ପ୍ରିୟାର ଗୁଣରେ ସତତ ଦୁଃଖିତ ॥ କନ୍ଦର୍ପ ଧନୁ ଗୁଣରୁ ମୁକ୍ତହୋଇ ମୁହିଁ ତୁମ୍ଭ ଅଶ୍ରସ୍ତ୍ର କେଉଁଛୁ ଶାନ୍ତ ହେବାପାଇଁ ॥ ଭ୍ରମର ଭ୍ରମରେ ପାଦ କରନ୍ତି ପ୍ରହାର । ଯଥା ହର୍ଷ ଜନ୍ମେ ତୋର ତଥା ହେଉ ମୋର ॥ ତୁମ୍ଭ ଆମ୍ଭ ମଧ୍ୟେ ହର୍ଷ ଜନ୍ମୁ ହେ ଅଶୋକ । ବିଧାତା କେବଳ ମୋତେ ଦେଇଅଛୁ ଦୁଃଖ । ୩୫ ।

ଅଥ ପିକଶବ୍ଦଂ ଶ୍ରୁତ୍ୱା ଲକ୍ଷ୍ମଣଂ ପ୍ରତି
ରାମୋ ବଦତି ।

ପିକକୁଳକଳରବଂ କର୍ଣ୍ଣପୂରେ ନିଧାୟ
କ୍ଷଣମପି ଦୟିତାୟା ଭାଷିତେ ଜାତଶଙ୍କଃ ।
ରଘୁପତିରପି ମୋହାଲ୍ଲକ୍ଷ୍ମଣାଗ୍ରେ ସହର୍ଷଂ
କଥୟତି ଚରଣଷ୍ଟା ଲମ୍ବିତା ରାଜପୁତ୍ରୀ । ୩୬ ।

ଏହି ସମୟରେ ଏଣେ ଶୁଣି ପିକରାବ । କାଟୁକାଳ ଦେଖିଲେ ତାଙ୍କୁ କର୍ଣ୍ଣମଧ୍ୟେ ଠାବ । ମୋହଭ୍ରମେ ଜାନକୀଙ୍କ ବାକ୍ୟଛାପ ମଣି । ଲକ୍ଷ୍ମଣଙ୍କୁ ଗୃହଁ ରାମ କହନ୍ତି ଏ ବାଣୀ । ଯାଉଥିଲେ ଅନେକ ଧନରୁ ସୀତା ହଜି । ଶୁଭଇରେ ଲକ୍ଷ୍ମଣ ତାଙ୍କୁ ଯାଉଛି ମୁଁ ଅଜି ।୩୬।

ପୁନସ୍ତସ୍ୟ ବିରହ ବାକ୍ୟଂ ।

ନେତ୍ରେ ନୀଳସରୋରୁହେଣ ଘଟିତେ ବକ୍ତ୍ରଂ ସରୋଜନ୍ମନା
ବନ୍ଧୂକୈରଧରୋଽପି କୁନ୍ଦମୁକୁଳୈର୍ଦନ୍ତାଃ ଶିରୀଷୈର୍ଭୁଜୌ ।
ଶେଷାଙ୍ଗାନ୍ୟପି ଚମ୍ପକୈସ୍ତୁ ଦଧିରେ ପୁଷ୍ପୈ ବପୁର୍ବେଧସା
କୃତ୍ୱା ତେ ପରମାନତଂ ଚ ହୃଦୟଂ ବଜ୍ରେଣ ମନ୍ୟେ କୃତଂ ।୩୭।

ମୁଖଗଢ଼ା ପଦ୍ମ ପୁଷ୍ପେ ନେତ୍ର ନୀଳୋତ୍ପଳ । ବନ୍ଧୁଲି କୁସୁମ ପତ୍ର ସୁରଙ୍ଗ ଅଧର । କୁନ୍ଦକଢ଼ି ଯେ ରଚିଲେ ଦିଶଇ ଦନ୍ତପନ୍ତି । ଶିରୀଷ କୁସୁମ ସମ ଦିଶେ ଭୁଜକାନ୍ତି ॥ ଚମ୍ପକ ପୁଷ୍ପକୁ ଜିଣି ଦିଶଇ ବରଣ । ଫୁଲମାନଙ୍କରେ ତୁମ୍ଭ ଶରୀର ଗଠନ ॥ କୋମଳ ଅଙ୍ଗକୁ ହୃଦ ଅତ୍ୟନ୍ତ କୋମଳ । ବଜ୍ରେ ଗଢା ହୋଇଅଛି ଶରୀର କେବଳ ୩୭

ଆତ୍ମନିନ୍ଦନଂ ।

ବୈଦେହସ୍ୟ ମହୀପତେରପି ସୁତା ଭୂତ୍ୱା ବିତତ୍ସାପତେ
ସ୍ତ୍ରୀତ୍ୱସ୍ୟ ପ୍ରଥମା ବଧୂର୍ଦଶରଥସ୍ୟାପି ପ୍ରିୟେ ଜାନକି ।
କାକୁସ୍ଥାନ୍ୱୟଲାଞ୍ଛନସ୍ୟ ସତତଂ ଦୀନସ୍ୟ ରାମସ୍ୟ ମେ
ହସ୍ତଂ ପ୍ରାପ୍ୟ ଘନୋଦରେଷୁ ବିପିନେଷ୍ୱେକାକିନୀ ସୀଦସି ।୩୮।

ଅନାଥର ନାଥ ପ୍ରଭୁ ରଘୁକୁଳମଣି । ନିନ୍ଦା କରି ଆପଣାକୁ କହନ୍ତି ଏ ବାଣୀ । ହୋଇ ତୁମ୍ଭେ ବିଦେହ ନନ୍ଦନୀ ରାଜଜେମା । ଦଶରଥ ବଡ଼ ବୋହୂ ହୋଇଥିଲ ପ୍ରିୟା । ଏଡ଼େ ବଡ଼ କୁଳରେ କଳଙ୍କ ଦେଲି ବିହି । ଧରଣି ଶ୍ରୀରାମ ହସ୍ତ ଦୁଃଖଭୋଗ ପାଇଁ ॥ ଗହନ କାନନ ମଧ୍ୟେ ଲୁଚିଲ ଗୋ କେଉଁଣେ । ହୋଇ ଏକାକିନୀ ତୁମ୍ଭ ସଙ୍ଗେ ନାହିଁ ଜଣେ ।୩୮।

ଏବଂ ଦେବାଦସ୍ତଂ ଗତେ ମାର୍ତ୍ତଣ୍ଡମଣ୍ଡଳେ ପ୍ରଚଣ୍ଡମାର୍ତ୍ତଣ୍ଡ
ମିତ୍ରୋଦୟନ୍ତଂ ଶୀତରଶ୍ମି ମଣ୍ଡଳମାଗଣ୍ଡଳଦେଶ୍ୟବଲୋକ୍ୟ
ଲକ୍ଷ୍ମଣଂ ରାମୋବଦତ ।

ସୌମିତ୍ରେ ଦାବଦହ୍ନଃ ଶିଖରଶିଖରକ୍ଷୋଦାବାସିତାଂ ନର୍ମଦୋଦ୍ଧୈଃ
ନୋ ବାର୍ଣ୍ଣ ଦାବବହ୍ନେରୟମୁଦୟଗିରେରୁତ୍ଥିତୋ ହିମାଂଶୁଃ ।
ଧନ୍ୟେ ଧୂମଂ ପୁରସ୍ତାତ୍କମିତ କଥମୟଂ ନୈବ ଧୂମୋଧରଣ୍ୟା
ଶ୍ୟାମତ୍ୱଂ ସଂଗତାଭୂଦୟି ଧରଣିସୁତେ କୁତ୍ର ସୀତେ ସ୍ଥିତାସି ।୩୯।

ଦେଖୁଁ ଦେଖୁଁ ଆସି ଅସ୍ତହେଲେ ଦିନମଣି । ପ୍ରବେଶ ହୋଇଲେ
ତତକ୍ଷଣେ ରବିରାଣୀ । ହୋଇଲେ ଉଦୟ ଶୀତରଶ୍ମି ଅତବେଗେ ।
ପ୍ରଚଣ୍ଡ ମଣ୍ଡଳ ଉଦେ ପୂର୍ବଭାଗେ ॥ ଲକ୍ଷ୍ମଣଙ୍କୁ ଗୁହାରି ବୋଲନ୍ତି ରଘୁ-
ନାଥ । ଶୁଣ ମୁଁ କହୁଛି ଭାଇ ସୁମିତ୍ରାଙ୍କ ସୁତ । ଯାଇ ପର୍ବତ ଶିଖରେ ଲାଗି
ଅନଳ । ଆଣ ଶୀଘ୍ର ଯାଇଁ ଏହି ଝରଣାରୁ ଜଳ ॥ ଲକ୍ଷ୍ମଣ ବୋଇଲେ
ପ୍ରଭୁ ଅଗ୍ନି ଏଥି ନାହିଁ । ଉଦୟ ପର୍ବତୁଁ ଚନ୍ଦ୍ର ଉଦେ ହେଲେ ଏହି ।
ଶ୍ରୀରାମ କହନ୍ତି ଅସମ୍ଭବ କଥା ଏହା । ଧୂମ ଧାରଣି କି ଚନ୍ଦ୍ର କଲେ କୁହ
ଯାହା ॥ ଶୁଣି ପୁଣି ଲକ୍ଷ୍ମଣ କହନ୍ତି ରଘୁସାଇଁ । ଏ ନୁହଇ ଧୂମ
ଛେଳେ ପୃଥିବୀର ଛାଇ । ଶୁଣି ରଘୁନାଥ ପୁଣି କହିଲେ କାତରେ । ଅହୋ
ଗୋ ଜାନକୀ ଲୁଚିଅଛ କେଉଁଠାରେ । ୩୯ ।

ଅଥ ସୀତାନ୍ୱେଷଣେ ପଥି
ଜଟାୟୁଦର୍ଶନଂ ।

ବିଚିନ୍ୱନ୍ତୋ ତେନ ବଦେହପୁତ୍ରୀଂ
ଦୃଷ୍ଟ୍ୱୋଜଟାୟୁଃ ଶ୍ୱସିତ.ବଶେଷଃ ।
ସୀତା ହୃତା ତେ ଦଶକନ୍ଧରେଣେ-
ତ୍ୟାବେଦ୍ୟ ସଦ୍ୟଃ ସ୍ୱତନୁଂମୁମୋଚ । ୪୦ ।

ଖୋଜି ଖୋଜି ବାଟେ ସୀତା ଯାନ୍ତି ରଘୁବୀର । ଦେଖିଲେ ପଡ଼ିଅଛୁ
ଜଟାୟୁ ପକ୍ଷୀବର । ବୋଇଲା ସୀତାଙ୍କୁ ନେଲା ଲଙ୍କାର ରାବଣ ॥ ଏତେ
କହି ସେହିକ୍ଷଣି ଛାଡ଼ିଲା ପରାଣ । ୪୦ ।

ଜ୍ଞାତ୍ୱା ଦଶରଥସୈନଂ ମିତ୍ରଂ ଶତ୍ରୁନିଷୂଦନଂ ।
ହା ତାତ କିମିଦଂ ନାମ ରାମଃ ପକ୍ଷୀନ୍ଦ୍ରମବ୍ରବୀତ୍ । ୪୧ ।

ଶତ୍ରୁହସ୍ତେ ମଲ୍ଲ ପିତାଙ୍କର ମିତ୍ର ଏହ । ତା ଅଙ୍ଗେ ହସ୍ତ ବୁଲାଇ ଦେଲେ ରଘୁରାଇଁ । ଅନାଇଁ ତା'ହାକୁ ରାମ ବୋଇଲେ ବଚନ । ହାୟ ହାୟ ତାତ କିସହେଲା ଏ ଘଟନ । ୪୧ ।

ତଦନନ୍ତରଂ ରାବଣରଥଂ ଦୃଷ୍ଟ୍ୱା
ରାମବାକ୍ୟଂ ।

ଭଗ୍ନୋଽୟଂ କଥମସ୍ତି ରାବଣରଥସ୍ତାତେନ ବଜ୍ରାଙ୍କୁର-
ନୃ ରାବସ୍କରଣେନ ଭଗ୍ନ ରଲ୍ପୟକ୍ଷୋଽହନ୍ଦୂଟଙ୍କ୍ୟଂ ଧନୁଃ ।
ହେ ସୀରଧ୍ୱଜରାଜପୁତ୍ରି ସତଦା ଦୃଷ୍ଟସ୍ତ୍ୱୟା ଧନ୍ୟୟା
ପକ୍ଷୀନ୍ଦ୍ରୋଦଶକଣ୍ଠକୁଞ୍ଜରଶିରଃସଞ୍ଚାରପଞ୍ଚାନନଃ ।୪୨।

ଖଣ୍ଡେଖଣ୍ଡରେ ଦେଖି ରାବଣର ଭଗ୍ନରଥ । ବୋଲନ୍ତି ବଚନ ପ୍ରଭୁ ଜାନକୀର କାନ୍ତ । ଓଠେ,ରଣ ତାତ ବଜ୍ରଧାର ତୁଲ୍ୟ ଅଟ୍ଟେ । ରାବଣର ରଥ ଭାଙ୍ଗିଛନ୍ତି କେଡ଼େ ଆଟ୍ଟେ । କରିଛନ୍ତି ବଙ୍କା ଲଦ୍ଧ୍ୱାଇ ଧନୁଗୁଣ ଭାଙ୍ଗି ଦେଇଛନ୍ତି ତାର ଧନୁ ଛଡ଼ାଇଣ ॥ ରାବଣର ମସ୍ତକ ଉପରେ ହସ୍ତିସମ । ପକ୍ଷୀ କରିଛନ୍ତି ସିଂହପରି ଆଚରଣ ॥ ସୀରଧ୍ୱଜ ରାଜପୁତ୍ରୀ ଅଟ ତୁମ୍ଭେ ଧନ୍ୟ । ଦେଖିଛ ଯେ କାଳେ ଏହି ପକ୍ଷୀର ବଦନ । ୪୨

ତତସ୍ତସ୍ୟ ସଂସ୍କାରଂ କୃତ୍ୱା
ରାମାନୁନୟଃ

ତାତ ତ୍ୱଂ ନିଜତେଜସୈବ ଗମିତଃ ସ୍ୱର୍ଗଂ ବ୍ରଜ ସ୍ୱସ୍ତି ତେ
ବ୍ରୂମସ୍ତେ କିମିମାଂ ବଧୂହୃତକଥାଂ ତାତାନ୍ତିକେ ମା କୃଥାଃ ।
ରାମେଽହଂ ଯଦି ତଦ୍ଦିନୈଃ କତିପୟୈର୍ବ୍ରୀଡ଼ାନମନ୍ନନ୍ଦରଃ
ସାର୍ଦ୍ଧଂ ବନ୍ଧୁଜନେନ ସେନ୍ଦ୍ରବିଜୟୀ ବକ୍ତା ସ୍ୱୟଂ ରାବଣଃ ।୪୩।

କଲେ ରାମ ଏମନ୍ତ ଜଟାୟୁ ସଂସ୍କାର । ହେ ଇଣ ବିନୟ ବହୁ କହିଲେ ଏ ଗିର । ଯାଅ ତାତ ଆନନ୍ଦରେ ତୁମ୍ଭେ ସ୍ୱର୍ଗଧାମ । ହେବ

ସମସ୍ତ ମଙ୍ଗଳ ହୁଅ ସେହୁସ୍ଥାନ । ଏକମାତ୍ର ଏହୁକଥା ରଖିଥାଅ ମନ । କହୁବ ପିତା ଘାଟେଣ ବଧୂଙ୍କ ହରଣ । ମୁହଁ ଯେବେ ଛିତରେ ବହୁବ ରାମ ନାମ । ଅଳ୍ପଦିନେ ବିନାଶିବ ରାକ୍ଷସ ଅଧମ ॥ ଇନ୍ଦ୍ରଜିତ ସହ ଯେତେ ସବବନ୍ଧୁଗଣ । କହୁବ ଯେମନ୍ତେ ଲଙ୍କ ଭରେ ସେ ରାବଣ । ୪୬ ।

ରାମଃ ।

ଏକସ୍ୟ ଦୁଃଖସ୍ୟ ନ ଯାବଦନ୍ତଂ ଗଚ୍ଛାମ୍ୟହଂ ପାରମିବାର୍ଣ୍ଣବସ୍ୟ ତାବଦ୍ଦ୍ୱିତୀୟଂ ସମୁପସ୍ଥିତଂ ମେ ଛିଦ୍ରେଷ୍ୱନର୍ଥା ବହୁଳୀଭବନ୍ତି ।୪୪।

ଏତେକହୁ ବିଳାପ କରନ୍ତି ରଘୁନାଥ । ଦୁଃଖ ପରେ ଦୁଃଖ ଆଣି ଦେଉରେ ବିଧାତ । ହୋଇନାହିଁ ଅଜାଯାଏ ଏକଦୁଃଖ ଶେଷ । ପୁଣି ଅନଦୁଃଖ ଆସି ହେଉଛି ପ୍ରବେଶ ॥ ସମୁଦ୍ରର ପାର ପର ମଣେ ତାକୁ • ମୁହିଁ । ଅନ୍ୟ ଏକଛିଦ୍ର ଦୁଃଖ ଉପସ୍ଥିତ ହୋଇ । ୪୪ ।

ରାଜ୍ୟନାଶୋ ବନେ ବାସୋ ହୃତା ସୀତା ମୃତଃ ପିତା ।
ଏକୈକମପି ଯଦ୍ଦୁଃଖଂ ସମୁଦ୍ରମପି ଶୋଷୟେତ୍ । ୪୫ ।

ରାଜ୍ୟନାଶ ବନବାସ ସୀତାଙ୍କ ହରଣ । ଆଗରୁ ହୋଇଣ ଅଛି ପିତାଙ୍କ ମରଣ । ଗୋଟିଏ ୨ ଦୁଃଖ ହୁଏ ଏହୁପର । ନିଶ୍ଚୟ ଶୋଷି ପାରନ୍ତି ସମୁଦ୍ରର ବାର । ୪୫ ।

ଯୁକ୍ତ ମେବ ହି କୈକେୟ୍ୟା ଭରତସ୍ୟାଭିଷେଚନଂ ।
ଯୋ ନ ରକ୍ଷେତ୍ପ୍ରିୟାମେକାଂ ସ କଥଂ ପାଳୟେନ୍ମହୀଂ ।୪୬।

ଦେଲେ ଭରତଙ୍କୁ ରାଜ୍ୟ ଜନନୀ କୈକେୟୀ । ନାରୀ ରଖି ନପାରେ ଯେ ସେ କି ପାଳେ ମହୀ ।୪୬।

ଭଦ୍ରଂ କୃତଂ ଚ ତାତେନ ଯେନାହଂ ବନବାସିତଃ ।
ଏଷାପି ନ ହି ମେ ବୁଦ୍ଧିଃ କ୍ୱ ମୃଗ କ୍ୱ ହେମଶୃଙ୍ଗଃ ।୪୭।

କରିଛନ୍ତି ଭଲକାର୍ଯ୍ୟ ଜନକ ମୋହର । ବନକୁ ପେଶିଲେ ଘରୁ କରିଣ ବାହାର । କହିଁତ ମାତ୍ରକ ମୋର ବୁଦ୍ଧି ହେଲା ନାହିଁ । ସୁବର୍ଣ୍ଣ ମୃଗକୁ ଦେଖି ଲୋଭକଲି ମୁହିଁ ।୪୭।

ସଗରସ୍ୟ ସାଗରଃ କୀର୍ତ୍ତିର୍ଗଙ୍ଗାକୀର୍ତ୍ତିର୍ଭଗୀରଥାତ୍ ।
ଅସ୍ମାକମସ୍ମିନ୍ ବଂଶେ କୀର୍ତ୍ତିରେକା ଭାର୍ଯ୍ୟା ନ ରକ୍ଷିତା ॥ ୪୮ ॥

ସଗରଙ୍କଠାରୁ ହେଲା ସାଗର ବିଖ୍ୟାତ । ଗଙ୍ଗା ଆଣି କୀର୍ତ୍ତି ରଖି-ଛନ୍ତି ଭଗୀରଥ । ତାଙ୍କ ବଂଶେ ଜନ୍ମ ମୁହିଁ ଅକୀର୍ତ୍ତି ଅର୍ଜିଲି । ଭାର୍ଯ୍ୟା ଗୋଟିଏ ମାତ୍ର ରଖି ନ ପାରିଲି ॥ ୪୮ ॥

ଲବ୍ଧବ୍ୟମର୍ଥଂ ଲଭତେ ମନୁଷ୍ୟୋ
ଦୈବଂ ଚ ତଦ୍ବାରୟିତୁଂ ନ ଶକ୍ତଃ ।
ଅତୋ ନ ଶୋଚାମି ନ ବିସ୍ମୟୋ ମେ
ଲଲାଟଲେଖୋ ନ ପୁନଃ ପ୍ରୟାତି ॥ ୪୯ ॥

ମିଳିବାକୁ ଥିଲେ ଧନ ମିଳେ ମନୁଷ୍ୟଙ୍କୁ । ବାରଣ କରି ନ ପାରେ ବିଧାତା ତାହାକୁ । ଏଥିରେ ମନରେ ଦୁଃଖ କରିବା ନୁହଇ । ଲଲାଟର ଲେଖା କେବେ ଅନ୍ୟଥା ନ ହୋଇ ॥ ୪୯ ॥

ଯା ପାଣିଗ୍ରହଲାଳିତା ସୁତରୁଣୀ ତନ୍ୱୀ ସୁବଂଶେ ଭବା
ଗୌରୀ ସ୍ପର୍ଶସୁଖାବହା ଗୁଣବତୀ ନିତ୍ୟଂ ମନୋହାରିଣୀ ।
ସା କେନାପି ହୃତା ପ୍ରୟତ୍ନୌ ପଥିକ ହେ ଗନ୍ତୁଂ ନ ଶକ୍ତସ୍ତ୍ୱହଂ
ଭକ୍ଷ୍ୟୋ କିଂ ତବ କାମିନୀ ନହି ନହି ପ୍ରାଣପ୍ରିୟା ଯଷ୍ଟିକା ॥ ୫୦ ॥

ଅତିସୁକୁମାରୀ ମୋର ବିବାହିତା ନାରୀ । ସହଜେ କୃଶାଙ୍ଗୀ ମୋର ଜନକକୁମାରୀ । ଉତ୍ତମ ବଂଶରେ ଜନ୍ମ ଅଟଇ ସୁନ୍ଦର । ହୁଅଇ ସୁଖ ସ୍ପର୍ଶ ମାତ୍ରକେ ମୋହର । ଅତି ଗୁଣବତୀ ନିତ ହରୁଥାଇ ମନ । ବାଟରେ ତାହାକୁ ହରିନେଲା କେଉଁ ଜନ । ନ ପାରଇ ଚାଲି ପଥ ମୁହିଁ ତାହାପାଇଁ । କହ ହେ ପଥିକେ ଜାଣିଥିଲେ ଦୟାବହି । ଶୁଣି ଏ ବାଣୀ ବୋଲନ୍ତି ପଥିକେ ଉତ୍ତର । ହେ ଭିକ୍ଷୁ ସେହିକି ଅଟେ କାମିନୀ ତୁମ୍ଭର । ଶ୍ରୀରାମ କହନ୍ତି ନୁହନ୍ତି ସେ ସେହି ନାରୀ । ପ୍ରାଣପ୍ରିୟା ଯଷ୍ଟି-ଛଡ଼ା ଅଟଇ ମୋହରି ॥ ୫୦ ॥

ଅଙ୍କେ ରେତସି ଜାନକୀପଦପଂତ୍ୟଙ୍କେ ଚ ଲଙ୍କେଶ୍ୱର
ସ୍ତ୍ରୀଣାଂ ମଦନାନଳଃ କବଳୟତ୍ୟଙ୍କେ ଚ ରୋଷାନଳଃ ।
ଇତ୍ଥଂ ଦୁର୍ବିଧିସଙ୍ଗମବ୍ୟଥିତକରସ୍ତୁଲ୍ୟେ ଦ୍ୱୟୋ ରେତୟୋ
ରେକଂ ବେଦ୍ମି ତୃଷାଗ୍ନି ଦଗ୍ଧ ମପରଂ ଦଗଧଂ କଷାୟାଗ୍ନିନା ।୫୧

ହୃଦୟ ଅଧରେ ସୀତା କରନ୍ତି ବିହାର । ଅବର ଅଧେ ଖେଳନ୍ତି ଲଙ୍କାର ଈଶ୍ୱର । ତହିଁରୁ ଅଧେକ ଗ୍ରାସେ ମଦନ ଅନଳ । ଅବର ଅଙ୍କେକ କରେ ରୋଷାଗ୍ନି କବଳ । ଦୁଷ୍ଟଙ୍କ ପରସ୍ପରେ ସମଭାବେ ରହେ । ତୃଷ୍ଣା ଅଗ୍ନି ଭାବେ ଯଦି ଅଗ୍ନି ଭାଗେ ଦେହେ । ୫୧ ।

ଅନ୍ୱେଷୟାମି ସୁମୁଖୀଂ ବିମୁଖୋ ବିଧାତା
ତାଂ ବିସ୍ମରାମି ନିବିଡ଼ ପ୍ରଣୟୋ ବିରୋଧୀ ।
ଅଙ୍ଗୀକରୋମି ଗରଳଂ କୁଳୟୋଃ କଳଙ୍କଃ
ଶାନ୍ତିଂ ଭଜାମି କୁଟିଳଂ ଧନୁରନ୍ତରାୟଃ । ୫୨ ।

ଖୋଜୁଅଛି ବନମଧ୍ୟେ ପ୍ରାଣପ୍ରିୟା ମୁହିଁ । ତାହା ଦେଖିଣ ବିଧାତା ବିମୁଖ ହୁଅଇ । ପାଶୋରି ପକାନ୍ତି ଅବା ତାହାଙ୍କୁ ମନରୁ । ବିରୋଧି ହୁଅଇ ଏକା ପୀରତି ବଶରୁ ॥ ଗରଳ ଭୁଞ୍ଜିଣ ମୁହିଁ କରୁଅଛି ଯେବେ । କଳଙ୍କ ହୋଇବ ଉଭୟ କୁଳକୁ ତେବେ । ଛାଡ଼ି ସବୁକଥା ଯେବେ ଶାନ୍ତି ଆଶାକରେଁ । ହୋଇ କୁଟିଳ ଶରାସନ ବିଘ୍ନ ତାରେ । ୫୨ ।

ଗତା ଗତା ଚମ୍ପକପୁଷ୍ପବର୍ଣ୍ଣା
ପୀନସ୍ତନୀ କୁଙ୍କୁମଚର୍ଚ୍ଚିତାଙ୍ଗୀ ।
ଆକାଶଗଙ୍ଗେବ ସୁଶୀତଳାଙ୍ଗୀ
ନକ୍ଷତ୍ରମଧ୍ୟେ * ଇବ ଚନ୍ଦ୍ରରେଖା । ୫୩ ।

ଗଲା ଅଧିଲା ସେହି ଚମ୍ପକବରନୀ । ଲେପକର ଦେହ କୁଙ୍କୁମରେ ପୀନସ୍ତନୀ ॥ ଗଙ୍ଗାଙ୍କର ପରିଯାହା ଅଙ୍ଗ ସୁଶୀତଳ । ତାର ମଧ୍ୟେ ଗତ ଯେହ୍ନେ ଚନ୍ଦ୍ରମାମଣ୍ଡଳ । ୫୩ ।

---

* ଅୟନ୍ତୁ ମହାକବିପ୍ରୟୋଗଃ ।

ନ ମେ ଦୁଃଖଂ ପ୍ରିୟାଦୂରେ ନ ମେ ଦୁଃଖଂ ହୃତେତି ଯା ।
ଏତଦେବହି ଶୋଚାମି ଗୃହେ ଯଦଭିବର୍ତ୍ତିତେ । ୫୪ ।

ରହିଲେ ପ୍ରିୟା ଦୂରରେ ଦୁଃଖ ମୁଁ ନ କରେ । କିବା ତାହାଙ୍କ ହରଣେ ଶୋଚନା ନ ଧରେ ॥ କେବଳ ହୁଅଇ ଶୋକ ଏଥିପାଇଁ ମୋର । ରହିଅଛି ଯାହାଧନୁ ହସ୍ତରେ ଅବର । ୫୪ ।

ବ୍ୟସନଂ କିମତେ ଽପ୍ୟାସ୍ତେ ଜ୍ଞାନଣ୍ଡାଭ୍ୟୁଦୟୋ ମମ ॥
ଶରଣଂ ମରଣଂ ରାଜ୍ୟଂ ମା ପୁନ ର୍ଲକ୍ଷ୍ମଣୋଽସ୍ତୁ ତତ୍ । ୫୫ ।

କାନ୍ଦନ୍ତି ଏ ମନ ଦୁଃଖ ମୋହର ସକଳେ ; କି ଦୁଃଖ ଏଥିରୁ ଆଉ ଅଛି ଏ ଭୂତଳେ । ସାର ଏହାର କେବଳ ରହିଛି ମରଣ । ଯାଉ ରାଜ୍ୟ ପଛେ ଦୁଃଖ ନ ପାଉ ଲକ୍ଷ୍ମଣ । ୫୫ ।

ତତୋ ବାମଂ ତିରସ୍କୃତ୍ୟ ପୁରସ୍କୃତ୍ୟ ଚ ଦକ୍ଷିଣଂ ।
ଧନ୍ୟୋ ବନ୍ୟଶରଣ୍ୟାଂ ତାମରଣ୍ୟାନୀଂ ସ ଗାହତେ । ୫୬ ।

କରି ବାମର ଅଶୁଭମାନ ତିରସ୍କାର । ଦକ୍ଷିଣ ଭାଗ ଶୁଭକୁ କରିଣ ଆଦର । ଯହିଁ ପୂରିଛନ୍ତି ବ୍ୟାଘ୍ର ଆଦି ପଶୁଗଣ । ନିର୍ଭୟେ ସେ ବନେ ରାମ କରନ୍ତି ଭ୍ରମଣ । ୫୬ ।

ଏବଂ ଭ୍ରମନ୍ ଶ୍ରୀରାମଃ କବନ୍ଧଂ
ଦଦର୍ଶ ।

ଅଯୋଜନପ୍ରସର ଦୋର୍ଯୁଗଲେନ ମାର୍ଗ
ମାକ୍ରମ୍ୟ କଣ୍ଟକୁହରେ କୁରୁତେ ନୃକୋଽୟଂ ।
ସୌମିତ୍ରିଶେତି ଗଦିତଃ ସ କବନ୍ଧକଣ୍ଠଂ
ଚଚ୍ଛେଦ ଗର୍ଭକଦଳୀମିବ ରାମଚନ୍ଦ୍ରଃ । ୫୭ ।

ଏହିପରି ଭ୍ରମୁଛନ୍ତି ବନସ୍ତେ ଶ୍ରୀରାମ । କରିଲେ ପଥ ମଧ୍ୟରେ କବନ୍ଧ ଦର୍ଶନ । କରଇ ବାହୁ ବିସ୍ତାର ଯୋଜନ ପର୍ଯ୍ୟନ୍ତ । ପଥେ ଧରି ଗ୍ରାସକରେ ପନ୍ଥିକ ବହୁତ ॥ ଏପରି ଘଟଣା ଦେଖି ପୁଛନ୍ତି ଲକ୍ଷ୍ମଣ । କିଏ ଏହି ଦୁଷ୍ଟ ଅଟେ ଅହେ ରଘୁରାଣ । ମନୁଷ୍ୟ ଏହା ମୁଖକୁ କଦଳୀର ପ୍ରାୟ । ଦୁହିଁ ଛେଦିଲେ ତା କନ୍ଧ ହୋଇ ରାମ ଅଯ୍ୟ ।୫୭।

ଧୃତୋ ରାମଶରେଣ ଦିବ୍ୟମଗମଦ୍ଦେହଂ କବନ୍ଧସ୍ତତୋ
ବାଂ.ଜହ୍ରେ ଶ୍ରମଣାଶ୍ରମେ ହନୁମତା ସଯୁଜ୍ୟ ସୀତାପତେ ।
ସୀତୋଦ୍ଧାରବଧୌ ସମଂ ନିଜବଲୈଃ ସ୍ୱୀକୃତ୍ୟ ସାହାଯ୍ୟକଂ!
ସଂପ୍ରାପ୍ତୋ ପ୍ରତପନ୍ନବାଳିନିଧନଃ ସଖ୍ୟଂ କପୀନ୍ଦ୍ରାଧିପାତ୍ ॥

ହୋଇଣ ପବନ ସେହି ଶ୍ରୀରାମଙ୍କ ବାଣେ । ଧଇଲା ଅପୂର୍ବ ଦେହ କବନ୍ଧ ତକ୍ଷଣେ ॥ ଯଇଁ ତହୁଁ ଶ୍ରୀରାମଙ୍କୁ କହଇ ବଚନ । ଅଛି ଶ୍ରମଣ ଆଶ୍ରମେ ପବନନନ୍ଦନ ॥ ଏବେ ଯାଇଁ ତାର ସଙ୍ଗେ ଭେଟ ରଘୁନାଥ । ସୀତାଙ୍କୁ ଉଦ୍ଧାରକର ଘେନି କପିଯୂଥ ॥ ହୋଇ ସୁଗ୍ରୀବ ସହିତ ମିତ୍ର ରଘୁବୀର । ଅଇସ୍ତ ତାହାର ବାଳିନୃପତିକୁ ମାର । ୪୮ ।

ତତୋ ମାରୁତିଂ ଦୃଷ୍ଟ୍ୱା ।
କିଷ୍କିନ୍ଧ୍ୟାଦ୍ରୌ ରୌଦ୍ରରୁଦ୍ରାବତାରଂ
ଦୃଷ୍ଟ୍ୱା ରାମୋ ମାରୁତିଂ ବାଚମୂଚେ ।
ସୀତା ନୀତା କେନଚିତ୍ କାପି ଦୃଷ୍ଟା
ହୃଷ୍ଟଃ କଷ୍ଟଂ ସହରନ୍ ପ୍ରାହ ବୀରଃ ।୫୯।

ଯାଇଁ ତହୁଁ କିଷ୍କିନ୍ଧ୍ୟା ପର୍ବତେ ରଘୁନାଥ । ଦେଖିଲେ ଯେ ରୁଦ୍ରରୂପୀ ମାରୁତ ଅଗ୍ରତ ॥ ପଚାରିଲେ ଏଥେଁ ତୁମ୍ଭେ ଥାଅ ସଦାକାଳେ । ସୀତାଙ୍କୁ କେ ହରିନେଲା କହ ଜାଣିଥିଲେ ॥ ଶୁଣି ଏ ବାଣୀ କହନ୍ତି ପବନନନ୍ଦନ । ମନୁ କଷ୍ଟ ତେଜି ହୋଇ ଅତି ହୃଷ୍ଟମନ । ୫୯ ।

ହନୂମାନ୍ ।

ପାପେନାକୃଷ୍ୟମାଣା ରଜନିଚରବରେଣମ୍ବରେଣାବ୍ରଜନ୍ତୀ
କିଷ୍କିନ୍ଧ୍ୟାଦ୍ରୌ ମୁମେଚ ପ୍ରଚୁରମଣିଗଣୈର୍ଭୂଷଣାନ୍ୟଚ୍ଛିତାନି ।
ହା ରାମ ପ୍ରାଣନାଥେତ୍ୟହହ ଜହି ବପୁଂ ଲକ୍ଷ୍ମଣେତ୍ୟାଲପନ୍ତୀ
ଯାନୀମାର୍ନୀତ ତାନି କ୍ଷିପତ ରଘୁପତେଃ କାପି ରାମାଞ୍ଚିତେନ୍ଦ୍ରଃ ।୬୦।

ବୋଲନ୍ତି ଅସୁର ଶ୍ରେଷ୍ଠ ପାପିଷ୍ଠ ରାବଣ । ଗଲା ଏହିପଥେ ରଥେ ରମଣୀ ଘେନିଣ ॥ ସେ ରାମା ଫିଙ୍ଗାଇ ନିଜଅଙ୍ଗୁ ଆଭରଣ । ପକାଇ

ପର୍ବତେ କହି ହା ରାମ ଲକ୍ଷ୍ମଣ ॥ ଅହେ ପ୍ରାଣନାଥ ଅହେ ଦେବର ଲକ୍ଷ୍ମଣ । ଶବ୍ଦ ମାର ବୋଲି କହି କରନ୍ତି ରୋଦନ ॥ ନାଅ ଏହି ସେହି ଅଲଙ୍କାର ରଘୁପତି । କହି ତତକ୍ଷଣ ରଖି ଦେଲେକି ମାରୁତି । ୬୦ ।

ଅାଭରଣାନି ଗୃହୀତ୍ୱାଲଙ୍ଗ୍ୟ

ସ୍ମୃ୫ ।

ସର୍ବେଷ୍ଟୁ ସତ୍ସ୍ୱପି ତବାଭରଣେଷ୍ଟୁ ହାରୋ
ନାରୋପିତୋ ହୃଦି ଚିରଂ ହୃଦୟଂ ଗତୋଽପି ।
ମୁକ୍ତାର୍ଥସୂତ୍ରଗୁଣବେଧବଶୁଦ୍ଧିରାଶି
ସ୍ତ୍ରପୃଙ୍ଙ୍କ୍ତିଭେଦଫଳଦାରୁଣମିତ୍ୟବୋଧାତ୍ । ୬୧ ।

ଯେଶା ଆଭରଣ ନିଜ ହୃଦରେ ଲଗାଇ । ରୋଦନ କରି କହନ୍ତି ପ୍ରଭୁ ରଘୁସାଇଁ । ଥିଲେ ଗଳାରେ ଧରଇ ମୁକ୍ତା ସୁନ୍ଦର । ଅତି ଯତନରେ ଗୁନ୍ଥା ହୋଇବାରୁ ହାର । ଥାଏ ଲଗାଇ ସର୍ବଦା ହୃଦରେ ଏହାଙ୍କୁ । ବିଚ୍ଛେଦ ଖେଦ ବେଦନା ଧରଇ ମନକୁ । ସେହି ଦୁଃଖ ହୋଇଅଛି ଅତ୍ୟନ୍ତ ଦାରୁଣ । ଗ୍ଲାନି ଏଣେତେଣେ ଏବେ ରହିଛି ଯେ ପୁଣ । ୬୧ ।

ଅନ୍ୟହ୍ନ ଜନକପୁତ୍ରୀବକ୍ତ୍ରମୁଦ୍ରାମପଶ୍ୟନ୍
ବ୍ରଜତି ପରମହଂସୋ ନ କ୍ଷମୋ ବାପି ଗନ୍ତୁଂ ।
ତଦୁରୁବିରହବହ୍ନି ଜ୍ୱାଲୟା ଦଗ୍ଧଦେହଃ
କମୁତ ପବନସୂନୋ ଭୂଷଣୈସ୍ତମ୍ଭିତୋ ମେ । ୬୨ ।

ଦେଖି ନ ପାରିବାରୁ ମୁଁ ମୁଖ ଛାୟା ତାର । ଯାଉଥିଲି ପିଣ୍ଡୁ ପ୍ରାଣ ବାହାରି ମୋହର ॥ ତା ବିରହ ଅଗ୍ନି ଜ୍ୱାଳା ସହି ନ ହେବାରୁ । ଜୀବନ ନ ଯାଇ ରହି ଅଟକି ଦେହରୁ । କିଅବା ଏ ଅଳଙ୍କାର କରିଛି ସ୍ତମ୍ଭନ । ତେଣୁ ରହିଅଛି ଅହେ ପବନନନ୍ଦନ । ୬୨ ।

ମାରୁତିଃ ସାନୁନୟଂ ।

ଶ୍ରୀରାମ କ୍ଷୋଣିପାଳ ତ୍ୟଜ ନିଜଦୟିତ ଶୋକମେକଃ ସଲୀଳଂ
ଲଙ୍କେଶଂ ଜେତୁମୀଶେ ତମପି କପିପତେରାଜ୍ଞୟାହଂ ହନୂମାନ୍ ।

ସୁଗ୍ରୀବସ୍ୟାଥ ସାର୍ଥଂ ଗିରମବତରଣଂ ପଦବାନ୍ୟାସଲକ୍ଷ୍ମୀ—
ନକ୍ଷେପାଦୁତ୍ପୁଲାକ୍ଷ କପିଭିରପୁବଲଂ ଦଶନାଥ୍ୱାଂ ବଧେହ୍ନ । ୭୩ ।

କରଯୋଡ଼ି ବହନ ବୋଲଇ ମାରୁତ । ତେଜ ମନ ଶୋକ ଅହେ ପ୍ରଭୁ ରଘୁସୁତ । ସୁଗ୍ରୀବ ଆଜ୍ଞାରେ ଲଙ୍କାରେ ଅସୁର ଯେତେ । କ୍ଷଣମାତ୍ରକେ ଜିଣି ମୁଁ ପାରଇ କାଟିତେ ॥ ଅଟଇ ଏ ଗିରି ସୁଗ୍ରୀବଙ୍କ ବାସସ୍ଥାନ । ଶତ୍ରୁହୀନ ହେଲ ପାଇ ତୁମ୍ଭ ଦରଶନ ॥ ତାହାର ଉପରେ ପ୍ରଭୁ ପକାନ୍ତୁ ଚରଣ । କରନ୍ତୁ ସାଥ କ ତାର ଚରିତ ପରଣ । ୭୩ ।

ତତୋ ହନୂମାନ୍ ସହ ଲକ୍ଷ୍ମଣେନ
ରାମେଣ ସୁଗ୍ରୀବପୁରଃସ୍ଥିତୋଽଭୂତ୍
ତାନ୍ ତତ୍ର ସାକ୍ଷାତ୍ କପିଯୂଥନାଥଃ
ଧାପାନ୍ନ ଦଗ୍ଧୁଂ ଦହନଂ ଦଦର୍ଶ । ୭୪ ।

ଏତେ କହି ହନୂମନ୍ତ ରାମଙ୍କୁ ଘେନିଣ । ସୁଗ୍ରୀବଙ୍କ ପାଶେ ପ୍ରବେଶିଲା ତତକ୍ଷଣ ॥ ଦେଖି ଅଗ୍ନି ତୁଲ୍ୟ ରୂପ କପିପତି ଅପି । କହି ଦହିବାକୁ ସ୍ୱଦେହର ପାପରାଶି । ୭୪ ।

ସୁଗ୍ରୀବଃ ।

ଶ୍ରୁତ୍ୱା ରାମସ୍ୟ କାନ୍ତାହରଣମନିଲଜସ୍ୟାନନାଦ୍ବାନରେନ୍ଦ୍ରୋ ।
ନିଃଶ୍ୱାସ୍ୟମ୍ମୀଯ୍ୟସ୍ୟ ନ୍ୟବଦତ ପୁରତସ୍ତଦ୍ବଲାଦ୍ବାଲିନୋଽପି ।
ହା ନାଥେ ବଦ୍ୟମାନେ କମିତି ରଘୁପତି ସ୍ତଂ ନିହନ୍ତୁ ପ୍ରତିଜ୍ଞା
ମାରୁତିଃ ପ୍ରୋଢ଼ରୋଷାନଳ ବହଳକଲାଲଂକୃତୋଽଧୀଜ୍ୟଧନ୍ୱା ।

ହରିନେଲା ଶ୍ରୀରାମଙ୍କ ନାରୀ ଲଙ୍କେଶ୍ୱର । ଶୁଣି ମାରୁତି ମୁଖରୁ ହୋଇଲେ ଅଧୀର । ଯେଉଁ ପରି ମୋର ନାରୀ ହରିନେଲା ବାଲୀ । ସେହି ଦଶା ଦେଖୁଅଛୁ ପ୍ରଭୁ ମୁଁ ତୁମ୍ଭର ॥ କହନ୍ତେ ଖରନିଶ୍ୱାସ ବହେ ରାମ ଆଗେ । ନିଜ ନାଥ ଥାଉଁ ଆନ ନାଥ ଦେଖ ଅଗେ । ହାୟ ହାୟ ବାଳି ଦେଉ ପୁରୁଷେ ଏ ଦଶା । ସୁଗ୍ରୀ ମୁଖୁଁ ଶୁଣି ରାମ ହେଲେ ମନେ ଘୋଷା ॥ ଅତିକୋପେ ରଘୁନାଥ ବଦନ ପ୍ରକାଶି । ପ୍ରତିଜ୍ଞା କରନ୍ତି ବାଳିବଧେ ହୋଇ ରୋଷୀ । ୭୫ ।

ତତଃ ।

ନତ୍ୱା ସସମ୍ଭ୍ରମମଥୋ ଜଗଦେକବୀର
ମାଲିଙ୍ଗ୍ୟନ୍ ରଘୁପତିଂ ଶୁଶୁଭେ କପୀନ୍ଦ୍ରଃ ।
ତଦ୍‌ବିସ୍ମୃତଂ ପୁନର୍ବିଭାବ୍ୟତେ ପ୍ରିୟାୟାଃ
କନ୍ଦର୍ପକେଳିଷୁ ପୁନଦ୍ରୁତଭାବନାଷୁ । ୬୬ ।

ଏହାଶୁଣି କପିମଣି ପ୍ରଣମି ସତ୍ୱରେ । ଶ୍ରୀରାମଙ୍କୁ ଯଇଁ ବେଗେ କୋଳାଗତ କରେ ॥ ପ୍ରିୟା ବିଚ୍ଛେଦ ହେତୁ ତା ଯାଇଥିଲା ଭୁଲି । ସୁଫଳ ଲଭିବ ଆଜ ନାଶ୍ଚେ ମୁଁ ଜାଣିଲି । ବାରମ୍ବାର ଯଇଁକରେ ରାମେ ଆଲିଙ୍ଗନ । ପୁନଃ କନ୍ୟା ଲଭିବୋଲି କଲା ଅନୁମାନ । ୬୬ ।

ଋଷ୍ୟମୂକଗିରୌ ରାମୋ ନିଃସହାୟଃ ପରିଭ୍ରମନ୍ ।
ସଖ୍ୟଂ ସମାନଦୁଃଖେନ ସୁଗ୍ରୀବେଣ ସହାକରୋତ୍ । ୬୭ ।

ନପାଇ ସହାୟ ପ୍ରଭୁ ଜାନକୀରମଣ । ଋଷ୍ୟମୂକରେ ଦୁଃଖରେ କରନ୍ତି ଭ୍ରମଣ ॥ ଆପଣା ସମାନ ଦୁଃଖୀ ସୁଗ୍ରୀବଙ୍କୁ ଜାଣି । ତାହାଙ୍କ ସଙ୍ଗେ ମଇତ୍ର ହେଲେ ରଘୁମଣି । ୬୭ ।

ବଧେନବୈଶାଙ୍କ୍ଷୋକନାଥୋ ବାନରେଣ ରଘୂଦ୍ୱହଃ ।
ପ୍ରାପ୍ତକାମୋ ଜନକଜାଂ ସଖ୍ୟଂ କୃତ୍ୱାସ୍ଥିରୋଽଭବତ୍ । ୬୮ ।

ବଧି ବଈଶ ସମସ୍ତ ଭୁବନ ନାଥ ସ୍ଥିରେ । ଜନକତନୟା ସୀତା ପାଇବା ଆଶାରେ । ସୁଗ୍ରୀବ ସହିତ କରି ମିତ୍ରତା ସ୍ଥାପନ ॥ ରହିଲେ ଶ୍ରୀରାମ ସେ ପର୍ବତେ କଲ୍ୟାଣ । ୬୮ ।

ଅଥ ସୁଗ୍ରୀବପ୍ରତ୍ୟୟାର୍ଥଂ ଦୁନ୍ଦୁଭ୍ୟସ୍ଥି ପ୍ରକ୍ଷେପଶ୍ଚ
ସପ୍ତତାଳଭେଦନଂ ।

ପାଦାଙ୍ଗୁଷ୍ଠେନ ଦୂରଂ ଧରଣିଧରଗୁରୁଂ ଦୁନ୍ଦୁଭେରସ୍ଥିକୂଟଂ
କ୍ଷିପ୍ତ୍ୱା ସୌକ୍ଷିପ୍ରକାସ୍ତ ବିକ୍ରମବଳନିହତାନ୍ ବଦ୍ଧି ବନ୍ଧ୍ୟ ସପ୍ତତାଳାନ୍ ।
ବାଣେନୈକେନ ଶବ୍ଦପ୍ରତିହତସକଳତ୍ରୈଲୋକ୍ୟଗର୍ଭାନ୍ ବିଭିଦ୍ୟ
ପ୍ରତ୍ୟାଶାଂ ବାଲିନାଶେ ପ୍ଲବଗକୁଳପତେଃ ପୋଷୟାମାସ ରାମଃ । ୬୯ ।

ଅଛଇ ଦୁନ୍ଦୁଭି ଅସ୍ଥି ପାଷାଣରୁ ଗରୁ । ଫିଙ୍ଗିଦେଲେ ରାମ ପାଦ ଅଙ୍ଗୁଳିରେ ଦୂରୁ । ସପ୍ତତାଳ ଲତାପ୍ରାୟ ହୋଇଛୁ ବେଷ୍ଟିତ । ଛେଦିଲେ ତାହାକୁ ଏକବାଣେ ରଘୁନାଥ । ଜାତ ହେଲା ଯେତେବେଳ ଭୀଷଣ ଶବଦ । ଶୁଣି ତା ସକଳ ଲୋକେ ହୋଇଲେ ସ୍ତବଧ । ଜାଣିଲା ସୁଗ୍ରୀବ ନିଷ୍ଟେ ନାଶିବେକ ବାଳୀ । ଆନନ୍ଦ ହେଲା ମନରେ ଏମନ୍ତ ବିଚାରି ।

ତାଳ ଭେଦ ସମୟେ ଶ୍ରୀରାମୋ
ବାଣଂ ପ୍ରତ ।
ଭୀବୋଽସ୍ତି ଚେତ୍ କୁଶିକନନ୍ଦନପାଦପଦ୍ମେ
ଯଦ୍ୟସ୍ତ୍ୟହଂ ଦ୍ୱିଜବରସ୍ୟ ତପୋବିହୀନଃ ।
ନାନ୍ୟାଙ୍ଗନାସୁ ଚ ମନଃ ଶର ! ସପ୍ତତାଳାନ୍
ଭିତ୍ତ୍ୱା ତଦା ପ୍ରବିଶ ଭୂତଳମପ୍ୟଗାଧଂ । ୭୦ ।

ଛେଦନ କଲେ ଶ୍ରୀରାମ ଯେବେ ସପ୍ତତାଳ । ବୋଇଲେ ବାଣକୁ ଏହା ଦଶରଥ ବାଳ । ଗୁରୁଙ୍କ ଚରଣେ ଯେବେ ରହିଥିବ ମତି । ବିପ୍ରଙ୍କର ଠାରେ ରହିଥିବ ଭକ୍ତି ॥ ଯେବେ ପରନାରୀ ପରେ ନାହିଁ ମନ ମୋର । ଛେଦିବ ସପତତାଳ ନିଷ୍ଟେ ମୋର ଶର । ଏ ଅତଳ ଭୂତଳ କରନ୍ତି ପ୍ରବେଶ । ପୁଣି ଆସିଣ ତୂଣୀରେ ହୁଅ ପରବେଶ ।୭୦।

ଏକେନୈବ ଶରେଣ ଗର୍ଭକଦଳୀକାଣ୍ଡାବଖଣ୍ଡକ୍ରମାତ୍
କୃତ୍ତେଷୁ ପ୍ରଥମେଷୁ ଦାଶରଥିନା ତାଳେଷୁ ସପ୍ତ ସ୍ୱପି ।
ଶୈଳାଃ ସପ୍ତ ଜଗନ୍ତି ସପ୍ତ ମୁନୟଃ ସପ୍ତାର୍ଣ୍ଣବାଃ ସପ୍ତଧା
ଷ୍ଟେଲୁଃ ସପ୍ତ ରସାତଳାନି ଚ ସ୍ଥିତାଃ ସଂଖ୍ୟା ନ ସାମ୍ୟାଦିହ ।୭୧।

ଛେଦିଲେ ଶ୍ରୀରାମ ସପ୍ତତାଳ ଏକଶରେ । କଦଳୀ ବୃକ୍ଷ ପରିସୁ ଖଣ୍ଡିଲା ମହୀତଳେ ॥ ଏହି ସମୟେ କମ୍ପିଲେ ସପ୍ତଗିରିବର । ଆବର ସପତ ତାଳ ଗମ୍ଭୀର ସାଗର ॥ ସପତଦ୍ୱୀପ ଆବର ହେଲା କମ୍ପମାନ । ଯଷ୍ଟୁ ସମସ୍ତେ ସଂଖ୍ୟାରେ ଅଛନ୍ତି ସମାନ । ୭୧ ।

ବାଲୀ ସମ୍ବୋଧଂ ।

ଶ୍ରୁତ୍ୱା ହତାନ୍ ସମରମୂର୍ଦ୍ଧନି ସପ୍ତ ତାଲାନ୍
ରାମେଣ ପାପହୃଦୟେନ ବନାପରାଧଂ ।
କୋପାନଳଜ୍ୱଳିତହୃତ୍କମଲୋଽଥ ବାଲୀ
ରଙ୍ଗାବତାରମଗମଦ୍ଗିରିଗହ୍ୱରାତ୍ ସଃ । ୭୨ ।

ବନାକ୍ରୋଶେ ସପ୍ତତାଳ କଲେ ରାମ ଛେଦ । ଶୁଣି ବାଳିର ହୃଦୟେ ହେଲା ବହୁ ଖେଦ ॥ କୋଧାନଳରେ ତାହାର ହୃଦୟ ଜ୍ୱଳଇ । ହେଲା ଗିରିରୁ ଉଦୟ ରଙ୍ଗବର୍ଣ୍ଣ ହୋଇ । ୭୨ ।

ତତସ୍ତାରା ସହର୍ଷମାତ୍ମଗତଂ ।

ଅଦ୍ୟାବଶ୍ୟଂ ଶ୍ରୀରାମଚନ୍ଦ୍ର ପ୍ରସାଦାନ୍ନିଜବଲ୍ଲଭସ୍ୟ ବକ୍ଷଃପୀଠେ
ଲୁଠନ୍ତ୍ୟେମୀତି ବାରସୁଗ୍ରୀବସ୍ୟାଶିଷଂ ପଠତି । ୦ ।

ତାରା ସଂତ୍ୟକ୍ତହାରା ଗିରିଶିଖରଚରା ସ୍ରସ୍ତଧମ୍ମିଲ୍ଲଭାରା
ଶୋକାବ୍ଧେଃ ପ୍ରାପ୍ତପାରାର୍ପିତମଦନଶରା ବୀରସୁଗ୍ରୀବଦାରାଃ ।
ନାରା ନାରାଚଧାରା ନିଜରଣମଣିତା ତାପିନଃ ପାପିନୋଽସ୍ୟ
ପ୍ରାଣାନ୍ଶାଣାବତୀର୍ଣ୍ଣା ହରନ୍ତୁ କଳକଳାଶାଳିନୋବାଳିନୋଽଦ୍ୟ ।୭୩।

ତାରାଦେବୀ ଏ ସମୟେ ସହାସ୍ୟ ବଦନେ । ଶତ୍ରାକରେ ଅଶୀର୍ବାଦ ସୁଗ୍ରୀବଙ୍କୁ ମନେ । ଭୁଞ୍ଜିବି ମୁଁ ସୁଖ ରାମଚନ୍ଦ୍ର ପରସାଦେ । ଏହା ଭାବଣ ହୃଦୟେ ଲାଗଇ ଆନନ୍ଦେ ॥ ଅଙ୍ଗରୁ ଖସିଣ ଛିଡ଼ିପଡ଼େ ରତ୍ନହାର । ଫିଟିଛୁ ଅବର କେଶ ବନ୍ଧନ ତାହାର । ଅରୋହିଲା ଗିରିଶିଖେ ସେ ସୁଗ୍ରୀବନାରୀ । ମଦନଶରେ ତା ଅଙ୍ଗ ହେଉଅଛୁ ଘାରି । ହୋଇଅଛୁ ପାର ପୁଣି ଶୋକପାରାବାର । ନିଜ ପତିଠାରେ ମତି ରଖି ନିରନ୍ତର ॥ ଅଟେ ଶ୍ରୀରାମଙ୍କ ବାଣ ଅତି ତୀକ୍ଷ୍ଣଧାର । କରୁଅଛୁ ପାପିଷ୍ଠର ପାପକୁ ସଂହାର ॥ ଏ ବାଲୀ ନୃପତି କେତେ କରିଅଛୁ ପାପ । କାହାର ମନରେ କେତେ ଦେଇନାହିଁ ତାପ । ୭୩ ।

ଲକ୍ଷ୍ମଣଃ ପ୍ରାହ ।

ପୃଥିବ୍ୟାଂ ଚତୁରନ୍ତାୟାଂ ନାସ୍ତି ବାଲିସମୋ ବଲୀ ।
ବଚସାନେନ ଲୋକାନାଂ ଶଙ୍କିତବ୍ୟ ମହେନ୍ଦ୍ରଜଃ । ୭୪ ।

ଶ୍ରୀରାମଙ୍କୁ ଅନାଇଣ ବୋଲନ୍ତି ଲକ୍ଷ୍ମଣ । ନାହିଁ ବାଳିର ସମାନ ବଳୀ ତ୍ରିଭୁବନ । ପୃଥିବୀମଧ୍ୟରେ ଏହି ଅଟେ ଏକ ବୀର । ଶୁଣି ଯାର ନାମ କରନ୍ତି ସମସ୍ତେ ଡ଼ର । ୭୪ ।

ରାମଃ ସାବଜ୍ଞଂ ।

ମାଭୈଷୀର୍ମୟି ସୌମିତ୍ରେ ରାଘବେଽଧିକ୍ୟଧନ୍ୱନି ।
ସତାଂ ଦେହଂ ପରତ୍ୟଜ୍ୟ ନିର୍ଜଗାମାସତାଂ ଭୟଂ । ୭୫ ।

କରଣି ଅବଜ୍ଞା ରାମ କରନ୍ତି ଉତ୍ତର । କିଛିମାତ୍ର ଭୟ ତୁମ୍ଭେ ମନରେ ନ କର । ରହିଛନ୍ତି ରାମଚନ୍ଦ୍ର ବୀର ଧନୁର୍ଦ୍ଧାରୀ । ନ ହୁଅ ଅସ୍ଥିର ତୁମ୍ଭେ କିଛି ଭୟ କରି । ଭୟ ତେଜି ଜାଣ ଲଭିଅଛି ସାଧୁଦେହ । ଅସାଧୁଙ୍କ ଦେହେ ରହେ ଏକଥା ନିଶ୍ଚୟ । ୭୫ ।

ବାଲୀ ପ୍ରାହ ।

ଗୃହାଣ ବାଣଂ ରଘୁରାଜପୁତ୍ର ସୁରାନ୍ସ୍ମର ସମରେଽବତୀର୍ଣ୍ଣଂ
ଜାନାହିମାଂ ଦୁନ୍ଦୁଭିଘାତନଂ ବା ନେଷ୍ୟାମ୍ୟହଂ କାଲଗୃହଂ ତ୍ୱଥିତ୍ୱଂ ।୭୬।

ଧର ବାଣ ବୋଲେ ବାଲୀ ହେ ରଘୁନନ୍ଦନ । ସୁରନାଥ ହେଲେ ଯୁଦ୍ଧେ କରିବି ନିଧନ । ମାରିଅଛି ରଣେ ଦୁନ୍ଦୁଭି ଅସୁର ମୁହିଁ । ସେହିପରି ପେଷି ଦେବି ଯମପୁରେ ନେଇ । ୭୬ ।

ରାମଃ ସକ୍ଷୋଭଂ ସୌମିତ୍ରିଂ ବ୍ରୂତେ ।

କିଂ ବାଲୀ ବାନରାଲୀ ବହଲକଲକଲାହୂତଦେବେନ୍ଦ୍ରବଜ୍ରଂ
ବାଞ୍ଛତ୍ୟାକୃଷ୍ୟ ଯୋଦ୍ଧୁଂ ଶିବ ଶିବ ତୁମୁଲୋତ୍କାଲସଂଗୃହୀତାଙ୍କଃ
ପ୍ରୋଦ୍ୟଲ୍ଲାଙ୍ଗୁଲବଲ୍ଲୀଶିଖରକବଳିତଂ ଚଣ୍ଡଦୋର୍ଦଣ୍ଡକାଣ୍ଡ—
ଭ୍ରାନ୍ତୋନ୍ମୂଲାଗ୍ରଶୈଳପ୍ରହରଣପୁଣଃ କେନ ଯୋଦ୍ଧବ୍ୟ ଏଷଃ ।୭୭।

ଲକ୍ଷ୍ମଣଙ୍କୁ ଗୁହିଁଣ ବୋଲନ୍ତି ରଘୁନାଥ । ସୈନ୍ୟବଳ ଅଛି ଅସ୍ତ୍ର ଏହାର ନାହିଁ ତ । କଳକଳାନାଦ କରି ଅଛନ୍ତି ବାନର ।

ଆକାଶରେ ରହି ଦେଖୁଛନ୍ତି ପୁରନ୍ଦର । ଯୁଝିବି କି ବଜ୍ରଆଣି ଲଙ୍ଗୁଡ଼େ ବାନ୍ଧିଣ । ଜଣାଯାଏ କପିଙ୍କର ଅମ୍ଭ ସହିତେଣ । ଶୁଣି ଏ କୋଦଣ୍ଡ ଶବ୍ଦ ବହି ମନେ ଗର୍ବ । ଦେଖ ଦେଖ ଭାଇ ଆସୁଅଛୁ ହୋଇ ବେଗ । ପାରିଲ ଉପାଡ଼ି ବଡ଼ ବଡ଼ ଗିରିବର । କରନ୍ତି ବ୍ୟାକୁଳ ସୂର୍ଯ୍ୟଦେବଙ୍କୁ ଆବର ॥

ବାଣଂ ପ୍ରତି ।

ବେଦୋଦ୍ଭବେ ଦ୍ୱିଜଗଣେନ ପୁରାଭିଷିକ୍ତୋ
ମୂର୍ଦ୍ଧ୍ନାସ୍ୱମଂ ତ୍ୱମପି ବାଣ ଗୁଣେନ ମନ୍ତ୍ରୈଃ ।
ତତ୍ତେଜସା ପରବଧୂଜନହାରିଣସ୍ତୁଂ
ପ୍ରାଣାନ୍ ଗୃହାଣ ସମରେଷ୍ୱତଦାରୁଣସ୍ୟ । ୭୮ ।

ବାଣକୁ ଚାହିଁ କହନ୍ତି ପ୍ରଭୁ ରଘୁନାଥ । ହୋଇଅଛ ତୁମ୍ଭେ ଦେବଙ୍କ ମଧ୍ୟରୁ ଜାତ । ପୂଜା କରିଛନ୍ତି ତେତେ ଗୁଣ ସହିତରେ । ଅଭିଷେକ ହୋଇଅଛ ଦ୍ୱିଜଙ୍କ ମନ୍ତ୍ରରେ । କରେ ଏ ଦାରୁଣ ଦୋଷ ହିରେ ପରନାରୀ । ସେହି ଅପରାଧେ ପ୍ରାଣ ନେବ ଏହାରି ।୭୮।

ସୁଗ୍ରୀବଂ ପ୍ରତି ଲକ୍ଷ୍ମଣଃ ।

ଅର୍ଯ୍ୟବାଣେନ ଭିନ୍ନୋଽୟଂ ବାଲୀ ଲୁଠତି ଭୂତଳେ ।
ତ୍ୱଦ୍ଦି ପକ୍ଷସ୍ୟ ଶିରସି ପୁଷ୍ପବୃଷ୍ଟିଃ ସୁରୈଃକୃତା । ୭୯ ।

ଚାହିଁ ସୁଗ୍ରୀବକୁ କହୁଅଛନ୍ତି ଲକ୍ଷ୍ମଣ । ମରିଅଛି ରାମବାଣେ ବାଲୀ ନପାରିଣ । ଦେଖ ଯାଇଁ ଏବେ ପଡ଼ିଅଛି ଭୂମିତଳେ । ପୁଷ୍ପ ବର୍ଷନ୍ତି ଦେବେ ତୁମ୍ଭ ଶିରୁଦ୍ଧିରେ ।୭୯।

ବାଲୀ ରାମଂ ପ୍ରତି ।

ସୁଗ୍ରୀବେଽପି କ୍ଷମଃ କର୍ତ୍ତୁଂ ଯତ୍କାର୍ଯ୍ୟଂ ତବ ରାଘବ ।
ତଦହଂ ନ କ୍ଷମଃ କସ୍ମାଦପରାଧଂ ବିନା ହତଃ ।୮୦ ।

ବାଲୀ କହେ ଅହେ ପ୍ରଭୁ ରାଜୀବଲୋଚନ । କପାଇଁ ନାଶିଲ ବିନାଦୋଷେ ମୋ ଜୀବନ । କରିପାରେ କେଉଁ କାର୍ଯ୍ୟ ତୁମ୍ଭର ସୁଗ୍ରୀବ । ନ ପାରନ୍ତି କରି କି ମୁଁ ସେ କାର୍ଯ୍ୟ ରାଘବ ।୮୦ ।

ଅସ୍ତୈର୍ଧ୍ୱୋମ୍ମୂଳିକଳଂକଷବାଷମଣ୍ଡଳଗ୍ରନ୍ଥିଭଙ୍ଗ ପ୍ରସଙ୍ଗ
ନୋଟଲ୍ଲପଙ୍କେଶଦଶନି ଭୁବନବିଜୟଖ୍ୟାତସର୍ବସ୍ୱଦାୟଃ ।
ଯଃକଷ୍ଟଲି ସମୋଽୟଂ ସ ଖଲୁ କଳରୁଚଷତ୍ର ସାଧାରଣ ତ୍ୱା —
ଦନ୍ତର୍ମଧ୍ୟାସ୍ମୀମାନୋବିଜିତଭୃଗୁପତିଂ ତ୍ୱାମଜିତ୍ୱା ଦୁନୋତି ॥୮୧ ।

ଅହେ ପ୍ରଭୁ ମୁହିଁ ଦିନେ ସମୁଦ୍ରର କୂଳେ । ଧରି ଅଣିଥିଲି ବାଂଶଭୁଜେ ବାହୁବଳେ । ଯେହୁ ରାବଣ କୁ ଧରିଆଣନ୍ତି ଏଥ କୁ । ଦେଇ ଥାନ୍ତି ତ୍ରିଭୁବନ ବିଜୟ ଯଶକୁ । ଜିଣିଅଛ ତୁମ୍ଭେ ପର୍ଶୁରାମଙ୍କୁ ସମରେ । ନ ଜିଣିପାରି ତୁମ୍ଭଙ୍କୁ ଅନୁତାପ କରେ ॥୮୧।

ମୁକ୍ତାଫଳାୟ କରିଣଂ ହରିଣଂ ପଳାୟ
ସିଂହଂ ନିହନ୍ତି ଭୁଜବିକ୍ରମ ସୂଚନାୟ ।
କା ନୀତିରୀତିରଯୁକ୍ତ ରଘୁବଂଶବୀର
ଶାଖାମୃଗେ ଜରତି ଯ ସ୍ତବ ବାଣ ମୋକ୍ଷଃ ॥୮୨ ।

ମାରନ୍ତି କରୀକୁ ଜନ ମୁକ୍ତାଫଳ ଆଶେ । ବିନାଶନ୍ତି ହରିଣକୁ ମାଂସର ସକାଶେ । ସିଂହକୁ ମାରି ଦେଖାନ୍ତି ଭୁଜ ପରାକ୍ରମ । ମୋତେ ମାରି ଅରଜିଲ କେଉଁ ନ୍ୟାୟ ଧର୍ମ । ଅଟେ ମୁହିଁ ବୃଦ୍ଧ ପୁଣି ଜାତିରେ ବାନର । ଅରଜିଲ କେଉଁ ଯଶ ବିନ୍ଧି ମୋତେ ଶର ॥୮୨।

ରାମଃ ।

ଅତିକ୍ରାନ୍ତସ୍ୟତେ ଧର୍ମଂକାମବୃତ୍ତସ୍ୟ ବାନର ।
ଭ୍ରାତୃଭାର୍ଯ୍ୟାଭିମର୍ଷେଽସ୍ମିନ୍ ଦଣ୍ଡୋଽୟଂ ପ୍ରତିପାଦିତଃ ॥୮୩ ।

ବୋଲନ୍ତି ଶ୍ରୀରାମ ତୁମ୍ଭେ ଶୁଣ କପିବର ॥ ଲଙ୍ଘିଅଛ ଧର୍ମ ତୁମ୍ଭେ ହୋଇ କାମାତୁର । ହରିଲ କନିଷ୍ଠ ଭାଇ ଭାର୍ଯ୍ୟାକୁ ନେଇ । ସେହୁ କାରଣରୁ ଏହୁ ଦଣ୍ଡ ଅଛି ହୋଇ । ୮୩ ।

ନଚ ତେ ମର୍ଷୟେ ପାପଂ କ୍ଷତ୍ରିୟୋଽହଂ କୁଳୋଦ୍‌ଗତଃ
ତଦଲଂ ପରିତାପେନ ସ୍ୱର୍ଗଂ ଗଚ୍ଛ କପୀଶ୍ୱର । ୮୪ ।

ଜନମିଛୁ କ୍ଷତ୍ରିୟ କୁଳରେ ଯେଣୁ ମୁହିଁ । ପାପଭାର ହେବେଳେ ବନ୍ଧୁ ନ ପାରଇ ସହି । ବୃଥା ଚିନ୍ତା ଆଉ ତୁମ୍ଭେ ନ କର ମନରେ । ଆନନ୍ଦରେ ଯାଅ କପିରାଜ ସ୍ୱର୍ଗପୁରେ । ୮୪ ।

ସଦ୍ୟୋଽନିର୍ଭେଦ୍ୟ ବାଣୈଃ ସମରଭୁବି ତଦା ବାଲିନଂ ରାମଚନ୍ଦ୍ର
କିଷ୍କିନ୍ଧ୍ୟା ରାଜ୍ୟମାଦୌ ପ୍ରକୃତିମଥ ଦଦୌ ତତ୍ର ସୁଗ୍ରୀବହସ୍ତେ ।
ବର୍ଷାକାଲଂ ଘନାନାଂ ଘନରସଦଲିତୋଦ୍ଦାମଦୈଶ୍ୱର୍ଯ୍ୟଚକ୍ରବାଲଂ
କ୍ଷେପ୍ତୁଂଦାଶବତେ ଶିଖରିବରତଟେ ମାଲ୍ୟବତ୍ପର୍ବତସ୍ୟ । ୮୫ ।

ବାଲୀକୁ ବିନାଶେ ରାମ ସମର ଭୂମିରେ । ସୁଗ୍ରୀବଙ୍କୁ ରାଜା କଲେ ନେଇ କିଷ୍କିନ୍ଧ୍ୟାରେ ॥ ହୋଇଅଛି ପୂର୍ଣ୍ଣ ସବ ଦିଗ ଘନରସେ । ତାହା ଦେଖିଣ ଶ୍ରୀରାମ ଚଳିଲେ ବରଷେ । ରହି ଲେଉ ମାଲ୍ୟବନ୍ତ ଗିରି ପାଶେ ଯାଇଁ । କଟୁଚାଲ ଘର କରି ବଞ୍ଚିମିଲେ ତହିଁ । ୮୫ ।

ଏଷ ଶ୍ରୀଲ ହନୂମତା ବିରଚିତେ ଶ୍ରୀମନ୍ମହାନାଟକେ
ବୀରଶ୍ରୀଯୁତରାମଚନ୍ଦ୍ର ଚରିତେ ପ୍ରତ୍ୟୁଦ୍ଧୃତେ ବିକ୍ରମୈଃ ।
ମିଶ୍ରଶ୍ରୀମଧୁସୂଦନେନ କବିନା ସନ୍ଦର୍ଭସଙ୍କୀର୍ତ୍ତିତେ
ସ୍ୱସ୍ମାଦ୍ବାଲିବଧାଭିଧୋଽବ ଗତବାନଙ୍କଶ୍ଚତୁର୍ଥୋ ମହାନ୍ ।

ମହାନାଟକକୁ ରଚି ବୀର ହନୁମନ୍ତ । ବର୍ଣ୍ଣନା କରି ଅଛନ୍ତି ରାମଙ୍କ ଚରିତ । ସଜାଇ ଅଛନ୍ତି ମିଶ୍ର ଶ୍ରୀମଧୁସୂଦନ । ଚତୁର୍ଥ ଅଙ୍କରେ ବାଲୀବଧ ବିବରଣ । ସୁଜନ ଜନଙ୍କ ହିତେ ପଦ୍ୟବନ୍ଧେ ବାଣୀ । ଲେଖି ଲେଖାଇ ଅଛନ୍ତି ଦାସ ଚିନ୍ତାମଣି ।

ଇତି ଶ୍ରୀ ମହାନାଟକେ ଚତୁର୍ଥୋଽଙ୍କଃ ।

---

## ପଞ୍ଚମ ଅଙ୍କ

ରାମାଦ୍ବାଲୀପ୍ରାନ୍ତ ପଶ୍ଚୋଽସ୍ତି କଶ୍ଚିଦ୍ରାମପଦାଶ୍ରିତ ପରଃଽଭିମାନଃ
ତଥାପି ରାମଃ ଶରଦଂ ସମୀକ୍ଷ୍ୟ ପ୍ରତୀକ୍ଷତେ ସମ୍ପ୍ରତି କାଲମେତଂ । ୧।

ନାହିଁ ରାମଙ୍କ ସମ ନ ବଳବନ୍ତ କେହି । ନାହିଁ ପ୍ରେମଠାରୁ ବଳି ଅପମାନ ନାହିଁ । ଅପେକ୍ଷା କର ଛଅ ମାସ ଶରଦ ସମୟ । କାଳ କଟାଇଲେ ରାମ ପ୍ରଭୁ ଦୟାମୟ । ୧ ।

ବର୍ଷାସୁ ମାଲ୍ୟବତି ବିରହୀ ରାମଃ ।

ଯତ୍ତ୍ୱନ୍ନେତ୍ରସମାନକାନ୍ତିସଲିଳେ ମଗ୍ନଂ ତଦିନ୍ଦୀବରଂ
ମେଘୈରନ୍ତରିତଃ ପ୍ରିୟେ ତବ ମୁଖଚ୍ଛାୟାନୁକାରୀ ଶଶୀ ।
ଯେଽପି ତ୍ୱଦ୍‌ଗମନାନୁକାରଗତୟସ୍ତେ ରାଜହଂସା ଗତା
ସ୍ତ୍ୱତ୍‌ସାଦୃଶ୍ୟବିନୋଦମାତ୍ରମପି ମେ ଦୈବେନ ନ କ୍ଷମ୍ୟତେ । ୨ ।

ରହି ବର୍ଷାକାଳେ ରାମ ମାଲ୍ୟବନ୍ତ ପରେ । ହୋଇ ବିରହୀ ରହନ୍ତି ସର୍ବଦା ଚିନ୍ତାରେ । ନୟନ ତୁମ୍ଭର ଇନ୍ଦୀବର ସମ ଥିଲା । ମୋ ଚନ୍ଦ୍ର-ବଦନୀ ସେହି ଜଳେ ମଗ୍ନ ହେଲା । ନାହିଁ ତୁମ୍ଭ ବଦନ ସମାନ କେହି ଆନ । ଲୁଚିଲା କାହିଁ ଲୁଚାଇ ମେଘେ ସେ ବଦନ । କର ତୁମ୍ଭେ ଗତି ହଂସ ଗମନର ପରି । ରହିଲେ କି ଯାଇ ମାନସରୋବର ଧରି ।। ଦେଉଥିଲେ ଯେଣୁ ମନେ ବହୁତ ଆନନ୍ଦ । ସହି ନ ପାରି ବିଧାତା ଲଗାଇଲା ଛନ୍ଦ । ୨ ।

ମନ୍ଦଂ ମରୁଦ୍ବହତି ଗର୍ଜତି ବାରିବାହୋ
ବିଦ୍ୟୁଲ୍ଲତା ସ୍ଫୁରତି କୂଜତି ନୀଳକଣ୍ଠଃ ।
ଏତାବତି ବ୍ୟତିକରେ ରଘୁନନ୍ଦନସ୍ୟ
ମୂର୍ଚ୍ଛୈବ କେବଲମଭୂଦବଲମ୍ବନାୟ । ୩ ।

ବହଇ ମନ୍ଦ ପବନ ଗର୍ଜଇ ବାରିଦ । ବିଜୁଳି ଝଟକେ କରଇ ମୟୂର ନାଦ । ଏତାବତ ବ୍ୟତିବ୍ୟସ୍ତ ହୋଇ ରଘୁନାଥ । କେବଳ ଆଶ୍ରୟ ହେଲା ମୂର୍ଚ୍ଛାହିଁ ଯଥାର୍ଥ । ୩ ।

ସୀତାୟାଃ ପୂର୍ବାବସ୍ଥାଂ ସ୍ମରନ୍
ଶୋଚତି ରାମଃ ।

ପୂର୍ବଂ ପୁରାରିଧନୁଷେ ନନଦେନ ଦୃଷ୍ଟଂ
ରାମଂ ମୁନ୍ତଂ ରଣମୁଖେ ପରତୋ ବିଲୋକ୍ୟ ।

ଶଙ୍କାଶଶାଙ୍କପରିଚିତପ୍ରମୁଖୀ ରବିନ୍ଦାଂ
ତାମେବ ମୈଥିଲସୁତାଂ ସତତଂ ସ୍ମରାମି । ୪ ।

ଚିନ୍ତ ମନେ ସୀତାଙ୍କର ପୂର୍ବାବସ୍ଥାମାନ । ବିରହ ଅଧୀରେ ରାମ କରନ୍ତି ରୋଦନ । ଶିବଧନୁ ଭଗ୍ନକାଳେ ହେଲା ଯେଉଁ ଶବ୍ଦ ଶୁଣି ତାହା ଜମଦଗ୍ନି ସୁତ ହେ ଇସ୍ତବ୍ଧ । ହୋଇ ଅତି କ୍ରୋଧ ରଣ କରିବାକୁ ସେହି । ଗୃହୁଁ ଦେଲି ତେତେବେଳେ ଜାନକୀଙ୍କି ମୁହିଁ ।! ଦେଖିଲି ଯେ କୃଷ୍ଣେ ହିସ୍ଥା ହୋଇଛନ୍ତି ଚିନ୍ତିତ । ପଡ଼ଇ • ସେ କାଳ କଥା ମନରେ ସତତ । ୪ ।

ସ୍ନିଗ୍ଧଶ୍ୟାମଲକାନ୍ତିଲିପ୍ତବିୟତୋ ବେଲ୍ଲଦ୍ବଲାକାଘନା
ବାତାଃ ଶୀକରିଣଃ ପୟୋଦସୁହୃଦାମାନନ୍ଦକେକାଃକଳାଃ ।
କାମଂ ଶନ୍ତୁ ସମଂ କଠୋରହୃଦୟୋ ରାମୋଽସ୍ମି ସର୍ବଂସହେ
ବୈଦେହୀ ତୁ କଥଂ ସହିଷ୍ୟତି ପୁନର୍ହା ଦେବି ଧୀରା ଭବ ।୫।

ଶ୍ୟାମଳ ବରଣ କାନ୍ତି ଅତ୍ୟନ୍ତ ଚିକ୍କଣ । ବକପନ୍ତି ଦେଖାଯାନ୍ତି ବାରିଦେ ଯେସନ । ଜଳ ବିନ୍ଦୁ ବିନ୍ଦୁ ମନ୍ଦ ମନ୍ଦ ସମୀରଣ । ହୋଇଅଛନ୍ତି ଏହି ସବୁ ମୋର ଶନ୍ତୁ ସମ । ସହୁଛନ୍ତି ମୁଁ ଏହା ହୃଦ କଠିଣ ଥିବାରୁ । ହୋଇଥିବ ଅସହ୍ୟ ସୀତାଙ୍କୁ ମହାଗରୁ । ୫ ।

ନୀଳେନ୍ଦୀବରଶଙ୍କୟା ନୟନୟୋର୍ବନ୍ଧୂକବୁଦ୍ଧ୍ୟାଧରେ
ପାଣୌ ପଦ୍ମଧିୟା ମଧୂକକୁସୁମଭ୍ରାନ୍ତ୍ୟା ତଥା ଗଣ୍ଡୟୋଃ ।
ଲୀୟନ୍ତେ କବରୀଷୁ ବାନ୍ଧବଜନବ୍ୟାମୋହଜାତସ୍ପୃହା
ଦୁର୍ବାରମଧୁପାଃ କ୍ୱୟନ୍ତି ତରୁଣି ସ୍ଥାନାନି ରକ୍ଷିଷ୍ୟସି । ୬ ।

ନୟନକୁ ନୀଳପଦ୍ମ ପରି ଅଶଙ୍କାରେ । ଅଧର ବନ୍ଧୂଲି କୁସୁମକୁ ନାନ୍ଦା କରେ । ଭ୍ରମେ ତୁମ୍ଭ କରତଳେ ପଦ୍ମପୁଷ୍ପ ପରି । ଗଣ୍ଡସ୍ଥଳ ମଧୂପ କୁସୁମ ଭ୍ରାନ୍ତି କରି । ମୋହକାରି ବନ୍ଧୁଜନ ଦୁର୍ବାର ଭ୍ରମରେ । ହେବେ ଯାଇଁ ଲୀନ ଏହି ସ୍ଥାନମାନଙ୍କରେ । ସେ ବସିବେ ଯଇଁ କବରୀ ଉପରେ ପୁଣି । ଏ ସ୍ଥାନ ମାନ କେମନ୍ତେ ରଖିବେ ତରୁଣୀ ।

ଲକ୍ଷ୍ମଣଂ ପ୍ରତି ରାମଃ ।
କାର୍ଯ୍ୟେ ଚ ମନ୍ତ୍ରୀ କରଣେ ଚ ଦାସୀ
ଧର୍ମେ ଚ ପତ୍ନୀ ସହନେ ଧରିତ୍ରୀ ।
ସ୍ନେହେଷୁ ମାତା ଶୟନେ ଚ ବେଶ୍ୟା
ରଙ୍ଗେ ସଖୀ ଲକ୍ଷ୍ମଣ ସା ପ୍ରିୟା ମେ । ୭ ।

ମନ୍ତ୍ରୀପ୍ରାୟ ବୁଦ୍ଧି ଯାର କାର୍ଯ୍ୟ ସାଧନରେ । ସହେ ପୃଥ୍ୱୀ ପରି ସବୁ ପ୍ରିୟ ଯେ ଧର୍ମରେ । ମାତାଙ୍କ ପରାୟ ସ୍ନେହ କରଇ ସେ ମୋତେ । ଶୟନରେ ବେଶ୍ୟାପରି ଆଚରଇ ଚତେ । ରଙ୍ଗେ କରଇ ସଖିର ସମ ଆଚରଣ । କାହିଁ ଅଛି ସେହି ମୋର ପ୍ରିୟାରେ ଲକ୍ଷ୍ମଣ । ୭ ।

ଜୀବାତୁଃ କୁସୁମାୟୁଧସ୍ୟ ଭବନେ ସୀମନ୍ତିନୀନାଂ ଶିରୋ-
ରତ୍ନଂ ମଙ୍ଗଳଦେବତା ପ୍ରତିନିଧିର୍ନେତ୍ରୋତ୍ସବଃ କାମିନାଂ ।
ମାଦ୍ୟଦ୍ଦନ୍ତିନିତାନ୍ତମନ୍ଦଗମନା ସା ମେ ପ୍ରିୟା ଜାନକୀ
ସୌମିତ୍ରେ ଶତପତ୍ରଶତ୍ରୁବଦନା କୁତ୍ରାଧୁନା ସୀଦତି । ୮ ।

ସେହି ମୋର ପ୍ରିୟତମା ଅଟେ ଜୀବନ୍ଧନ । ରମଣୀଙ୍କ ଶିରୋମଣି ମଦନର ଧନ । ଅଟଇ ଯେ ପ୍ରତିନିଧି କୁଳ ଦେବଙ୍କର । ଅଟେ କାମୀ ଜନଙ୍କର ନିଧି ନୟନର । କରେ ଗତି ମନ୍ଦ ମନ୍ଦ ମତ୍ତହସ୍ତୀ ସମ । ସର୍ବଦା କରେ ମୋ ପ୍ରିୟା ଶୁଦ୍ଧ ଆଚରଣ । ଯାହାର କି ଅଟେ ଚନ୍ଦ୍ର ପରାୟ ଆନନ । ଅରେ ଭାଇ ଅଛି କାହିଁ ମୋ ଜୀବ ଜୀବନ । ୮ ।

ରାମୋ ନାମ ନୃପାତ୍ମଜସ୍ତଦବଲା ସୀତା ପରାସୌ ସ୍ଥିତଂ
ତତ୍ରେ ପଞ୍ଚବଟୀବନେ ବ୍ୟହରତସ୍ତାମହରଦ୍ରାବଣଃ ।
ଇତ୍ୟେବଂ ନିଜସଙ୍କଥାସ୍ୱପି ବଳଂ ନିଷ୍କାରଣଂ ଶୃଣ୍ୱତଃ
ସୌମିତ୍ରେଃ ଧନୁର୍ଧନୁର୍ଧନୁରିତି ବ୍ୟଗ୍ରା ଗିରଃ ପାନ୍ତୁ ବଃ । ୯ ।

ରାମ ନାମ ଅଟେ ଯାର ନୃପ ଶିରୋମଣି । ସୀତା ନାମ ଧାରୀ ସେହି ତାହାଙ୍କ ରମଣୀ । କରୁଥିଲେ ପଞ୍ଚବଟୀ ବନରେ ଭ୍ରମଣ । ସେ ସୀତାଙ୍କୁ ହରି ନେଲା ଲଙ୍କାର ରାବଣ । ଏତେ ହୀନବଳ କଥା ଶୁଣିବେ

ସକଳେ । ପୁଣି ପୁଣି ରଘୁନାଥ ଏମନ୍ତ ବୋଇଲେ । ଆଣ ଭାଇରେ ଲକ୍ଷ୍ମଣ ଧନୁ ଅସ୍ତ୍ର କାହିଁ । ରକ୍ଷା କରନ୍ତୁ ତୁମ୍ଭଙ୍କୁ ବ୍ୟାଘ୍ର ବାଣୀ ଏହି । ୯ ।

ଇକ୍ଷ୍ୱାକୂଣାଂ କୁଳେ ନ କୋଽପି ଭବିତା ଯସ୍ୟାଙ୍ଗନାରକ୍ଷୟା
ପ୍ରାକ୍ଚୈଷ୍ଟତ ପରସ୍ପରଂ ନିଗଦତାଂ ଶ୍ରୁତ୍ୱା ମୁନୀନାଂ ମୁଖାତ୍ ।
ଯୌମି ତେ କୁଳପାଂଶୁଳସ୍ୟ ଚରିତଂ ଶ୍ରୀରାମଭଦ୍ରସ୍ୟମେ
ଶକ୍ତ୍ୟାନ୍ଦୋଳିତ କେନ ସଂସ୍ଥିତେନ ଗୁରୁଣା ଦୁଃଖଂପରଂ ନାପ୍ସ୍ୟତେ ।୧୦।

କହନ୍ତି ରାମ ବଚନ ଲକ୍ଷ୍ମଣଙ୍କୁ ଚାହିଁ । କରି ନେତ୍ର ଅନ ଅନ ଶୋକଭର ହୋଇ ॥ ନ ଥିବେ ଏପରି କେହି ଜନେ ସୂର୍ଯ୍ୟବଂଶେ । ହରଣ କଲେ ଯାହାଙ୍କ ନାରୀକୁ ରାକ୍ଷସେ ॥ ମୁହିଁ ଜନମିଛି କୁଳରେ କଳଙ୍କ ହୋଇ । ପରସ୍ପର ହେଉଥିବେ ଏହା କୁହାକୁହି । ଥାଇ ଇନ୍ଦ୍ର ଅର୍ଦ୍ଧାସନେ ମୋ ପିତା ଶୁଣିବେ । ତହୁଁ ମନେ ମନେ ଅତିଶୟ ଦୁଃଖୀ ହେବେ । ୧୦ ।

ଅତୀତାୟାଂ ପ୍ରାବୃଷି ଶ୍ରୀରାମଃ ସୀତାନ୍ୱେଷଣେ
ଲକ୍ଷ୍ମଣଂ ପ୍ରତି ପ୍ରାହ ।
ତତୋ ରାମୋ ମହାତେଜା ଲକ୍ଷ୍ମଣଂ ସମୁପାହ୍ୱୟନ୍ ।
ସୁଗ୍ରୀବଂ ପ୍ରେଷୟାମାସ ସ୍କନ୍ଧାବାରଂ ଚକାର ସଃ । ୧୧ ।

ମହାତେଜବନ୍ତ ରାମ ଲକ୍ଷ୍ମଣେ ଡାକିଣ । କହନ୍ତି ଏ ବାଣୀ ବରଷା ଯିବା ଦେଖିଣ । ହେବ ଜନକନନ୍ଦିନୀ ଠାବ କେଉଁ ପରି । ଯାଅ ବେଗେ ଆଣ ତୁମ୍ଭେ ସୁଗ୍ରୀବକୁ ଧରି । ୧୧ ।

ଶ୍ରୀମଦ୍ରାମୋ ବନସ୍ଥଃ କପିବରନଗରଂ ଲକ୍ଷ୍ମଣଃ ପ୍ରେଷିତୋଽହଂ
କଷ୍କିନ୍ଧ୍ୟାଦ୍ୱାରମାଗାଂ ନଦ ପ୍ରଭବଚନାଲ୍ଲକ୍ଷ୍ମଣସ୍ତଂ ଜଗାଦ ।
ଶ୍ରୁତ୍ୱା ରାମେତି ବାକ୍ୟଂ ହସତି କପିବରେ ରାମ ନାମାଙ୍କୁଶସ୍ତେ
କସ୍ତ୍ୱଂ ବା ସମାୟାଃ ସଚକିତମନସା ବକ୍ତି ତୋଽପୌ ପ୍ରଯତ୍ନାତ୍ ॥

ରହଣି ମାଳ୍ୟବନ୍ତରେ ପ୍ରଭୁ ରଘୁବୀର । ପଠାଇଲେ ଲକ୍ଷ୍ମଣଙ୍କୁ କିଷ୍କିନ୍ଧ୍ୟା ନଗର । ପ୍ରବେଶ ହେଲେ ସୌମିତ୍ରି କିଷ୍କିନ୍ଧ୍ୟାର ଦ୍ୱାରେ । ରାମଙ୍କ କହିବା ବାର୍ତ୍ତା ଘେନିଲେ ସତ୍ୱରେ । ତାହାଙ୍କୁ ଶୁଣି ସୁଗ୍ରୀବର ହୋଇ ଭୟ ଭୟ । କେଉଁ ରାମଚନ୍ଦ୍ର ତାହାଙ୍କର କାହିଁ ବାସ । ତୁମ୍ଭେ ଅବା କିଏ ଆସିଅଛ କେଉଁ ଠାରୁ । ଅଷ୍ଟାର୍ଘ୍ୟ ପର ମଣାଇ ତୁମ୍ଭର କଥାରୁ ।୧୨।

ଲକ୍ଷ୍ମଣଃ ପ୍ରାହ ।

ଅଙ୍କେକୌଶିକତାଡ଼କାକୃତବଧୋ ଯଜ୍ଞସ୍ୟ ଚ ତ୍ରାକରଃ
ସୀତାନିର୍ମ୍ମ ହରଚାପଭଙ୍ଗମକରୋଦ୍ରୋଷୋଜିତଃ ଶୂଳିନଃ ।
ମାରୀଚଃ ଖଲୁ ଲୀଳୟାପି ନିହତୋ ବାଲୀ ହତଃ ସଂଶ୍ରୁତଂ
ସୋଽସ୍ମିଂ ସମ୍ପ୍ରତି ରାଘବଃ କପିପତେ ପଞ୍ଚାନନୋ ଗଚ୍ଛତି ।୧୩।

ବୋଇଲେ ଲକ୍ଷ୍ମଣ ଯେକି କୌଶିକ ଅଙ୍କରେ । ଯାଗରକ୍ଷା କଲେ ତାଡ଼କା ବିନାଶି ଖରେ । ଶିବଧନୁ ଭାଙ୍ଗି ସୀତା ବିଭା ହୋଇଛନ୍ତି । ପଥେ ପର୍ଶୁରାମଙ୍କର ଦର୍ପକୁ ନାଶନ୍ତି । ମାରିଛନ୍ତି ମାରୀଚକୁ ଯେ ଲୀଳା ଖେଳାରେ । ବାଳୀକି ନାଶିଲେ ଦେଖିଛତ ସ୍ୱଚକ୍ଷୁରେ । ସେହି ରାମଚନ୍ଦ୍ର ଅଟେ ବୀର ଚୂଡ଼ାମଣି । ସେହି ଶର ଦେଇଛନ୍ତି ଦେଖ ବୀରମଣି । ୧୨।

ସ୍ୱସ୍ତି ଶ୍ରୀରାମପାଦାସ୍ତ୍ରାମାହ୍ୱୟେନ୍ତେ ।

ସମୟେ ତିଷ୍ଠ ସୁଗ୍ରୀବ ମା ବାଲୀ ପଥମନ୍ୱଗାତ୍ ।
ନ ମେ ସଙ୍କୁଚିତୋ ବାଣୋ ଯେନ ବାଲୀ ହତୋ ମୟା ।୧୪

ନ ଯାଅ ହେ ବାଲୀ ସଙ୍ଗେ ସୁଗ୍ରୀବ ରାଜନ । ରଖ ଆପଣା ଜୀବନ ନିୟମ ପାଳଣ । ଶାନ୍ତ ହୋଇନାହିଁ ଦେଖ ସେହି ବାଣ ମୋର । କହି ଦେଇଛନ୍ତି ଏହି ବାଲୀ ହତ ଶର । ୧୪ ।

ଅଥ ସମାଗତେ ଲକ୍ଷ୍ମଣେ
ସୁଗ୍ରୀବଃ ସାନୁକମ୍ପଂ ।

ଦାସୌ ପ୍ରକୃତୟସ୍ତ୍ୱାକଂ ବାନରାଣାଂ ନରେଶ୍ୱର ।
ତାମହଂ ଚାପଲ୍ୟଂ ମିଚ୍ଛାମି ନ ସା ମାଂ ଚାପଲ୍ୟ ମିଚ୍ଛତି ।୧୫।

ଶୁଣି କହନ୍ତି କିଷ୍କିନ୍ଧ୍ୟା ରାଜା ସୁଗ୍ରୀବର । ହୋଇ ବହୁତ ବିନମ୍ର ଯୋଡ଼ି ବେନିକର । ବାନର ଜାତି ଅସ୍ଥିର ପ୍ରକୃତି ଯେ ଏହି । ମନେ ନ ପଡ଼ଇ ରାଜସୁଖ ଭୋଗ ପାଇ । ଛାଡ଼ିବ ପାଇଁ ନାହିଁ ଇଚ୍ଛା ମୁହିଁ କରେ । କିନ୍ତୁ ମୋତେ ସେହି ନ ଛାଡ଼ନ୍ତି କେତେବେଳେ ॥

ପୁନଃ ସାନୁନୟଂ ।

ଦଗ୍ଧଂ ଦଗ୍ଧଂ ତ୍ୟଜତି ନ ପୁନଃ କାଞ୍ଚନଂ କାନ୍ତିବର୍ଣ୍ଣଂ
ଛିନ୍ନଂ ଛିନ୍ନଂ ତ୍ୟଜତି ନ ପୁନଃ ସ୍ୱାଦୁତାମିକ୍ଷୁଦଣ୍ଡଂ ।
ଘୃଷ୍ଟଂ ଘୃଷ୍ଟଂ ତ୍ୟଜତି ନ ପୁନଶ୍ଚନ୍ଦନଂ ଚାରୁଗନ୍ଧଂ
ପ୍ରାଣାନ୍ତେଽପି ପ୍ରକୃତିବିକୃତିର୍ଜାୟତେ ନୋତ୍ତମାନାଂ । ୧୬ ।

ଯେତେ ଦଗ୍ଧ କଲେ କାନ୍ତି ନ ଛାଡ଼ଇ ସୁନା । ନ ଛାଡ଼େ ମଧୁର ହେଲେ ଇକ୍ଷୁଦଣ୍ଡ ଚୂନା । ନ ଛାଡଇ ଗନ୍ଧ ଯେତେ ଘଷିଲେ ଚନ୍ଦନ । ମଲେ ନ ଛାଡ଼ନ୍ତି ସୁଦ୍ଧା ପ୍ରକୃତି କୁଜନ ।

ସୁଗ୍ରୀବଂ ଦୃଷ୍ଟ୍ୱା ଶ୍ରୀରାମଃ ।

ତାତେନ ଦତ୍ତଂ ଭରତାୟ ରାଜ୍ୟଂ
ସୀତା ହୃତା ସଂପ୍ରତି ରାବଣେନ ।
ବିଚିନ୍ତ୍ୟ ରାମୋ ମନସାକୁଳେନ-
ଶ୍ଚକାର ଚାପଂ ରୁଦତୁଂ ପ୍ରବୃତ୍ତଃ । ୧୭ ।

ସୁଗ୍ରୀବକୁ ଚାହିଁଣ କହନ୍ତି ରଘୁନାଥ । ଦେଲେ ଭରତକୁ ଅଯୋଧ୍ୟାନଗର ତାତ । ନେଲା ଚୋରାଇ ସୀତାଙ୍କୁ ଲଙ୍କାର ରାବଣ । ହୋଇଣ ଏମନ୍ତେ ରାମ ଚାପାପରାୟଣ । ବ୍ୟାକୁଳ ହୋଇଣ ରଣ ଆଶେ ଶରାସନ । ବାହୁନିଣ ପୁଣି ବସି କରନ୍ତି ରୋଦନ । ୧୭ ।

ଅନ୍ୟାବସରେ ସୁଗ୍ରୀବଃ ।

ଏତେ ସପ୍ତପୟୋଧୟୋ ଦଶଦଶଃ ସପ୍ତୈବ ଗୋବାଚଳାଃ ।
ପୃଥ୍ୱ୍ୟାଦୀନି ଚତୁର୍ଦ୍ଦଶୈବଭୁବନାନ୍ୟେକଂ ନଭୋମଣ୍ଡଳଂ ।

ଏତାବତ୍ ପରିମାଣ କଲ୍ପବିଷୟେ ବ୍ରହ୍ମାଣ୍ଡଖଣ୍ଡୋଦରେ
କ୍ୱାସୌ ଯାସ୍ୟତି ଜାନକୀ ରଘୁପତେ କିଂ କାର୍ଯ୍ୟମଂତ୍ୟଜ୍ୟତେ ।୧୮।
କହଇ ସୁଗ୍ରୀବ ଶୁଣି ଏମନ୍ତ ବଚନ । ସପ୍ତସିନ୍ଧୁ ସପ୍ତଦ୍ୱୀପେ ଦଶ
ଯୋଜନ ଜାଣ । ଚଉଦଭୁବନ ପୃଥିବୀ ଯେ ଅଧିକର । ଏକ ଆକାଶ-
ରହିଛି ସମସ୍ତ ଅବୋର ॥ ଏଥିର ମଧ୍ୟରେ ସୀତା ଥିବେ ଯେଉଁ ଠାରେ ।
କରିବା ପ୍ରମାଣ ଏହି ବ୍ରହ୍ମାଣ୍ଡ ମଧ୍ୟରେ । ନାହିଁ ଏଥିରୁ ବ୍ରହ୍ମାଣ୍ଡ ଅଡ଼
ଯେ ଅଧିକ ।.ତେଜ୍ୟା କରିଅଛ କହୁଁ ପାଇଁ ଏ କାର୍ଯ୍ୟକ । ୧୮ ।

ରାମଃ

ବ୍ୟସନେ ମହତି ପ୍ରାପ୍ତେ ସ୍ଥିରୈଃ ସ୍ଥାତୁଂ ନ ଯୁଜ୍ୟତେ ।
ଲଙ୍କାଂ ନିଃଶଙ୍କମାଲୋକ୍ୟ କ ଇହାଗନ୍ତୁମର୍ହତି । ୧୯ ।
କହନ୍ତି ଶ୍ରୀରାମ ଶୁଣ ଅହେ କପିବର । ପଡ଼ଇ ବିପତ୍ତି ଯେତେବେଳେ
ହୋଇ ଘୋର । ସ୍ଥିର ହୋଇ ରହିବା ନୁହଇ ତେତେବେଳେ ।
କରଇ ବିଗ୍ରହ କେବେ ଯିବା ଲଙ୍କାପୁରେ । ନ କରଇ ଶଙ୍କା
କାହାରିକୁ ଲଙ୍କମଣି । ସୀତାଙ୍କ ସନ୍ଦେଶ ଦେବ କିଏ ତହୁଁ ଆଣି ॥

ଜାମ୍ବବାନ୍ ।

ଆଞ୍ଜନେୟଃ ସମନେଷ୍ୟେ ଯୋଽସୌ କପିକୁଲୋଦ୍ଭବଃ ।
ଲଙ୍କାପ୍ରସ୍ଥାନଯୋଗ୍ୟୋଽୟଂ କାର୍ଯ୍ୟଂ କୃତ୍ୱା ଗମିଷ୍ୟତି । ୨୦ ।
କହେ କର ଯୋଡ଼ି ତହୁଁ ମନ୍ତ୍ରୀ ଜାମ୍ବବାନ । ଆଣିବ ସନ୍ଦେଶ
ଏକା ବୀର ହନୁମାନ । ଅଞ୍ଜନାକୁମର ସେ ଯେ ଜାତ କପିକୁଳେ ।
ପ୍ରବେଶ କରିପାରିବ ଯାଇଁ ଲଙ୍କାପୁରେ ॥ କାରିତା ଘେନି ବାହୁଡ଼ି
ଆସିବ ତୁରିତ । ପ୍ରମାଣ ଏ କଥା ନିଷ୍ଟେ ଜାଣ ରଘୁନାଥ । ୨୦ ।

ତତୋ ହନୁମାନ୍ ।

ଅଷ୍ଟାଙ୍ଗୁଳମୟଃ କାୟଃ ପୃଚ୍ଛୋ ମେ ଦ୍ୱାଦଶାଙ୍ଗୁଳଃ ।
ବାହୁ ମେ ପଶ୍ୟ ଭୋ ନାଥ କଥଂ ରତ୍ନାକରଂ ତରେ । ୨୧ ।
ଏହା ଶୁଣି କହଇ ପବନର ପୁଅ । ଅଷ୍ଟ ଆଙ୍ଗୁଳି ପ୍ରମାଣ ଅଟଇ
ମୋର ଦେହ । ଲାଙ୍ଗୁଳ ଅଟଇ ମୋର ଦ୍ୱାଦଶ ଅଙ୍ଗୁଳ । ନିତାନ୍ତ

ବାଇଗର ଏହି ବେଳ ବାହୁ ମୋର । ଦୁସ୍ତର ସାଗର ଏଥୁଁ ତରିବ କେମନ୍ତେ । କହନ୍ତୁ ଉପାୟ ପ୍ରଭୁ ଯିବ କେଉଁମତେ । ୨୧ ।

ରାମଃ ।

ଅଧୁନା ରୁଦ୍ରରୂପସ୍ତଂ ଭୋ ଭୋ ପବନନନ୍ଦନ ।
ତ୍ୱତ୍ତୋ ବଳୀୟାନ୍ କଃ କଶ୍ଚିଂ ସମର୍ଥୋଽସ୍ତି ମହୀତଳେ । ୨୨ ।

ଶ୍ରୀରାମ କହନ୍ତି ଶୁଣ ପବନନନ୍ଦନ । ରୁଦ୍ରରୂପୀ ତୁମ୍ଭେ କର ଅସାଧ୍ୟ ସାଧନ ; କେ ଅଛି ସମର୍ଥ ଆନ ତୁମ୍ଭବିନା ଅଉ । ମାରୁତି କହିଲେ ଶ୍ରୀରାମ ମହାବାହୁ । ୨୨ ।

ରାମଂ ପ୍ରଣମ୍ୟ ହନୂମାନ୍ ।

କିଂ ପ୍ରାକାରବିଶାଳତୋରଣବତୀଂ ଲଙ୍କାମିହୈବାନୟେ
କିଂ ବା ସୈନ୍ୟବିନାଶନେଽଥ ସକଳଂ ତସ୍ୟୈବ ଦନ୍ଦହ୍ୟେ ।
ହେଳେହେଳା ତଦଧଃ ତଳେ ଶିଖରୈର୍ବଧ୍ନାମି ବାରାଂନିଧିଂ
ଦେବ ଜ୍ଞାପୟ କିଂ କରୋମି ସକଳଂ ଦୋର୍ଦ୍ଦଣ୍ଡସାଧ୍ୟଂ ମମ ।୨୩।

କହିଣ ପ୍ରତିଜ୍ଞା କହେ ପବନନନ୍ଦନ । ବନ୍ଦନ କରିଣ ଶ୍ରୀରାମଙ୍କ ଶ୍ରୀ ଚରଣ । ଉପାଡ଼ି ଆଣିବି ଲଙ୍କା ପାଚେରି ସହିତେ । ତୁମ୍ଭ ଶ୍ରୀମୁଖରୁ ଯେବେ ଆଜ୍ଞାହେବ ମୋତେ । ବିନାଶ କରିବି ତାର ସଇନ୍ୟ ସକଳ । ଉପାଡ଼ି ପର୍ବତ ବାନ୍ଧି ଦେବି ସିନ୍ଧୁଜଳ । ଆଜ୍ଞାଦିଅ ମୋତେ କିସ କରିବି ଏକ୍ଷଣି । ବାହୁବଳେ ସାଧ୍ୟକରି ପାରେ ସବୁ ପୁଣି । ୨୩ ।

ଅପିଚ ।

ଦେବାଜ୍ଞାଂ ଦେହି ରାଜ୍ଞାଂ ତ୍ୱମସି କୁଳଗୁରୁଃ ଶୋଷୟେ କିଂ ପୟୋଧିଂ
କିଂ ବା ଲଙ୍କାଂ ସଲଙ୍କାଧିପତିମୁନ୍ମୂଳୟେ ଜାନକୀଂ ମାନକାର୍ଣ୍ଣାଂ ।
ସେତୁଂ ବଧ୍ନାମି ସତ୍ତ୍ୱଃ ସ୍ଫୁଟିତଚିତଚିତଶୈଳଭୂତଭଙ୍ଗାଭିରଙ୍ଗା-
ଦୁଭ୍ରାମ୍ୟନ୍ନକ୍ରଚକ୍ରକ୍ରମମକରକୁଳଗ୍ରାହଚୀତ୍କାର ଘୋରଂ । ୨୪ ।

କହଇ ପ୍ରତିଜ୍ଞା କରି ବୀର ହନୁମାନ । ଆଜ୍ଞାଦିଅ ଦେବ ତୁମ୍ଭ ଶ୍ରୀମୁଖୁ ବହନ । ଶୁଖାଇବି ସିନ୍ଧୁ ନାଶିବି ରାକ୍ଷସକୁଳ । ଗୁଣବତୀ ଜାନକୀଙ୍କୁ

କରିବ ଉଦ୍ଧାର। କରିବ କି ଲଙ୍କା ଧ୍ୱଂସ ଉପାଡ ପକାଇ । ହେଲେ ବାନ୍ଧିବ ସିନ୍ଧୁକୁ ପର୍ବତକୁ ନେଇ । ମରିବେ ଲହରୀ ଘାତେ କୁମ୍ଭୀର ମଗର । ନାଶହେବେ ଜଳଜନ୍ତୁ କରିଣ ଚିତ୍କାର । ୨୪ ।

କୂର୍ମ୍ମୋ ମୂଳବଦାଳବାଳବଦପାଂନାଥୋଲସାବଦ୍ଧିଶୋ
ମେଘାଃ ପଲ୍ଲବବଚ୍ଛପ୍ରସୂନଫଳବନ୍ନକ୍ଷତ୍ରସୂର୍ଯ୍ୟେନ୍ଦବଃ ।
ସ୍ୱାମିନ୍ ବ୍ୟୋମତରୁର୍ମ୍ମମ କ୍ରମତଳେ ଛିନ୍ନୋଦ୍ଧୃତ ଗାଂ ମାରୁତେଃ
ସୀତାନ୍ୱେଷଣମାଦ୍ଧଦେଶ ସହସା ରାମଃ ସହର୍ଷଃ ସ୍ୱୟଂ । ୨୫ ।

ହେ ପ୍ରଭୁ ଆକାଶ ମୋତେ ହେଲା ବୃକ୍ଷବର । ସିନ୍ଧୁ ହେଲା ମାଳ କୂର୍ମ ହେଲେ ମୂଳାଧାର । ଲତା ହେଲେ ଦିଗମାନ ମେଘହେଲେ ପତ୍ର । ଫଳ ହେଲେ ତହିଁ ସୂର୍ଯ୍ୟ ଶଶାଙ୍କ ନକ୍ଷତ୍ର । ସେହି ବ୍ୟୋମତରୁ ଅଛି ପାଦତଳେ ମୋର । ଖୋଜିବ ଯତନେ ଯାଇ ଜାନକୀ ତୁମ୍ଭର । ମରୁତ ବଚନ ଶୁଣି ହସି ରଘୁନାଥ । ଆଜ୍ଞାଦେଲେ ସୀତାପାବ କରିଅ ତ୍ୱରିତ । ୨୫ ।

ହନୁମନ୍ତଂ ପ୍ରତି ରାମଃ ।

କ୍ୱମେତନ୍ନହଦାଶ୍ଚର୍ଯ୍ୟଂ ମାରୁତେ ତବ ତେଜସଃ
ନ ବୃଥା ହି ଶ୍ରମଃ କାର୍ଯ୍ୟଃ ସୀତା ଜୀବତି ବାନ ବା । ୨୬ ।

କହନ୍ତି ଶ୍ରୀରାମ ଶୁଣ ପବନନନ୍ଦନ । ନୁହଇ ବଡିବ କିଛି ତୁମ୍ଭଙ୍କୁ ଏମାନ । ଦେଖିଆସ ଜୀବନରେ ଅଛି କି ବା ନାହିଁ । ବୃଥା ଏତେ ପରିଶ୍ରମ କରିବା କିପାଇଁ । ୨୬ ।

ଅଥାତୋମାରୁତିଂ ଦୃଷ୍ଟ୍ୱା ରାମୋ ହର୍ଷମୁପାଗତଃ
ଅନ୍ୱେଷଣାୟ ସୀତାୟା ହନୁମନ୍ତଂ ଦ୍ଧଦେଶ ସଃ । ୨୭ ।

ହରଷିତ ମନେ ରାମ ହନୁମୁଖ ଚାହିଁ । ଆଜ୍ଞା ଦେଲେ ଯାଅ ବାବୁ ଖୋଜ ବେଗହୋଇ ॥ ଅଛି କେଉଁ ସ୍ଥାନେ ସତୀ ପ୍ରାଣପ୍ରିୟା ମୋର ॥ ବାରତା ପାଇଲେ ଶାନ୍ତ ହେବ ମୋ ଶରୀର । ୨୭ ।

କରମୁଦ୍ରାଂ ସମୂହ୍ୟ କୃତ୍ୟ
ବୀରମାରୁତେ ।

ମୁଦ୍ରାଂ ସମୁଦ୍ରମୁଲ୍ଲଂଘ୍ୟ ଶୀଘ୍ରମାଶ୍ୱସ୍ୟ ଜାନକୀଂ
ବନ୍ୟସ୍ୟ ପୁରତସ୍ତସ୍ୟା ଅଗଚ୍ଛ ମତ୍ପ୍ରିୟାବଦ ।୨୮।

ଏତେକହି ରାମ ହସ୍ତୁ ରତ୍ନମୁଦ୍ରା ଫେଇ । ଯାଅ ସମୁଦ୍ର ଲଙ୍ଘଣ ଏ ମୁଦ୍ରିକା ନେଇ ॥ ଶୁଣି ବୀରବର ଏହି ବଚନ ମୋହର । ସୀତାଙ୍କୁ ଆଶ୍ୱାସି ଆସ ବୁଝାଇ ସତ୍ୱର । ୨୮ ।

ସୀତାନ୍ୱେଷଣାୟ ପ୍ରସ୍ଥାପିତସ୍ୟ
ହନୁମତୋ ବାକ୍ୟଂ ।

କ୍ୱାସାଯୋଧ୍ୟା କ୍ୱ ରାମୋ ଦଶରଥବଚନାଦ୍ଦଣ୍ଡକାରଣ୍ୟମାଗା
କ୍ୱାୟଂ ମାରୀଚନାମା କନକମୟମୃଗଃ କ୍ୱାସ ସୀତାପହାରଃ ।
ସୁଗ୍ରୀବେ ରାମମୈତ୍ରୀ କ୍ୱଜନକତନୟାନ୍ୱେଷଣେ ପ୍ରେଷିତୋଽହଂ
ଯୋଽଯୋଽସମ୍ଭାବନୀୟସ୍ତମପି ଘଟୟତି କ୍ରୂରକର୍ମା ବିଧାତା ॥

ମନେ ୨ ବିଚାର କରଇ ହନୁମାନ । କାହିଁ ବା ଶ୍ରୀରାମ କାହିଁ ଅଯୋଧ୍ୟା ଭୁବନ । ହେଲେ କାହିଁ ରାମ ପିତୃସତ୍ୟ ବନଚର । ଦଣ୍ଡକା- ଅରଣ୍ୟେ ରହିଲେ ବିଶ୍ରାମ କରି ॥ କାହିଁ ମାରୀଚ ଅସୁର ମାୟାମୃଗ ହେଲା । ଲଙ୍କାର ରାବଣ କାହିଁ ସୀତାଚୋରି କଲା ॥ କେଉଁ ଦୋଷରେ ରାମ ସୁଗ୍ରୀବଙ୍କେ ମିତ ହେଲେ । ସୀତାଙ୍କୁ ଖୋଜିବା ପାଇଁ ମୋତେ ଯେ ପେଷିଲେ ॥ କେଉଁ ସ୍ଥାନ କଥା କେଉଁ ସ୍ଥାନେ ଅସି ହୁଏ । ଏ ଅସମ୍ଭବ ସମ୍ଭବ ବିଧାତା ଘଟାଏ । ୨୯ ।

ଏପା ତେବଂଚସାଥ ଯୋଜନଶତାପାରେ ସମୁଦ୍ରେ ପୁରୀ
ଲଙ୍କା ତତ୍ର ବିଦେହରାଜତନୟେତ୍ୟାକର୍ଣ୍ଣ୍ୟ ବାୟୋଃସୁତଃ ।
ଅବ୍ଧିଂ ସ୍ୱଲ୍ପଶରୀରଦୁସ୍ତରତରଂ ଦୃଷ୍ଟ୍ୱା ତଥା ବର୍ଦ୍ଧିତ
ବ୍ୟାପ୍ତଂ ଯେନ ତଦାଦ୍ୟୁକେଶରସଟାଟୋପୈର୍ନଭୋମଣ୍ଡଳଂ ।୩୦।

ସମ୍ପ ଉମୁଖୁଁ ବାରତା ପାଇ •ହନୁମାନ । ଜାଣିଲା ଅଟଇ ଲଙ୍କା ଶତେକ ଯୋଜନ ॥ ରାବଣର ଘର ଅଟେ ସମୁଦ୍ର ମଧ୍ୟରେ । ଜନକକୁମାରୀ ରହିଅଛନ୍ତି ସେଠାରେ ॥ ନ ପାରିବ ତରି ଏହା ଦେହେଁ ସାଗରକୁ । ଏମନ୍ତ ବିଚାରି ବଢ଼ାଇଲା ଶରୀରକୁ ॥ ଦେଖୁଁ ଦେଖୁ ବଢ଼ିଗଲା ପବନତନୟ । ଯାଇଁ ଲଗିଲା ଆକାଶମଣ୍ଡଳରେ ଦେହ । ୩୦ ।

ଆରମ୍ଭଂ ବଦଧେ ମହେନ୍ଦ୍ରଶିଖରାଦମ୍ଭୋନିଧେର୍ଲଙ୍ଘନେ
ବୀରଶ୍ରୀରଘୁନାଥପାଦକମଲଂ ଧ୍ୟାୟନ୍ ପୁନର୍ମାରୁତିଃ ।
ମୂର୍ଦ୍ଧ୍ନା ଜାମ୍ବବତୋଽଭିବାଦ୍ୟ ଚରଣୌ ସଂଶିଷ୍ୟ ସେନାପତୀନାଶ୍ୱାସ୍ୟାଶ୍ରୁମୁଖାନ୍ ହୃଃ ପ୍ରିୟଦ୍ରମାନ୍ପ୍ରେଷ୍ୟାନ୍ସମାଦିଶ୍ୟ ଚ ॥

ଶ୍ରୀରାମଙ୍କ ଶ୍ରୀଚରଣେ ଲଗାଇଣ ଧ୍ୟାନ । କରଇ ଶୂନ୍ୟରେ ଗତି ପବନ ନନ୍ଦନ ॥ ଜାମ୍ବବାନ ପାଦପଦ୍ମେ ଲଗାଇଣ ମଥା । ଅଲିଙ୍ଗନ କରିଣ ସକଳ ସେନାପତି ॥ ରୋଦନ କରିବା କପିମାନଙ୍କୁ ଆଶ୍ୱାସି ପ୍ରିୟକପିଗଣେ ମିଷ୍ଟ ବଚନେ ସନ୍ତୋଷି । ଚଢ଼ି ମହେନ୍ଦ୍ରଶିଖରେ ଲଙ୍ଘିବ ସାଗର । ଏମନ୍ତ ବିଚାରି ମନେ କରେ ହନୁବୀର । ୩୧ ।

ଅଥ ସ ବଲସଦନ୍ତଃସ୍ତମ୍ଭିତାକ୍ଷିପ୍ରକାଶଂ
ଜଲଚରଖରଖେଲ ସ୍ଫାତବୋଗ୍ରୈଲିତାଶଂ ।
ଜଲନିଧିମତିବାଲେଲଙ୍ଘିତୁଂ ବାୟୁପୁତ୍ରଃ
ଖଗପତିରିବ ଚଣ୍ଡୋଡ୍ଡୀନମଙ୍ଗୀଚକାର । ୩୨ ।

ଏଥୁଅନନ୍ତରେ ଯେ ଯେ ପବନକୁମର । ସମୁଦ୍ର ଦେଖୁଛନ୍ତି ଦିଶେ ମହାଭୟଙ୍କର ॥ କରୁଛନ୍ତି ଜଳକଲ୍ଲୋଳ ନୟନ ସ୍ତମ୍ଭନ । ଭ୍ରମୁଛନ୍ତି ମହାମହା ଜଳ ଜନ୍ତୁଗଣ ॥ ଶବ୍ଦରେ କମ୍ପୁଅଛି ସବୁ ଦିଗମାନ । ଉତ୍ପାତ ପରାଏ ଶୁଭୁଅଛଇ ଗର୍ଜ୍ଜନ ॥ ଏ ଦୁସ୍ତର ସମୁଦ୍ରକୁ ତରିବାପାଇଁ । ଉଡ଼ଇ ହନୁ ଗରୁଡ଼ପକ୍ଷୀ ପ୍ରାୟେ ହୋଇ । ୩୨ ।

ଲାଙ୍ଗୂଲୋଲ୍ଲାଲିତକେତୁନଭସି ପୃଥୁଗତିଃ ସ୍ଫାରସୀମନ୍ତିତାଙ୍ଗଃ
ସ୍ଫୂର୍ଜଦ୍ଭ୍ରୌଢ଼ୋରୁବେଗୋଚ୍ଛଳିତଜଳନିଧିଃ ଦ୍ୱିଷ୍ଟକୁକ୍ଷୋଭସତ୍ତ୍ୱଃ ।

ଦୂରାସ୍ତିର୍ଣ୍ଣରପୂରାରୁଣମରୁଣରୁଚସ୍ତକଯଃ ସଂହୃଭାରେ
ଷ୍କନ୍ଦେଦ୍ଦଗ୍‌ବାରଣାନାଂକଟତଟେମଭୂତଃ ସୂର୍ଯ୍ୟବମ୍ବ ବଦାତଂ । ୩୩ ।

ଯାଏ ହନୂମନ୍ତ ବୀର ଆକାଶମାର୍ଗରେ । ଧ୍ୱଜା ପରକାରେ ଲଞ୍ଜ ଉଡ଼ଇ ତା ଶିରେ ॥ କରବାୟୁ ଗତ ମେଘ ଦୁଇଭାଗ କରି । ଗମନ୍ତେ ସିନ୍ଦୂଳହରୀ ଘାତରେ ଉଚ୍ଛୁଳି ॥ ଦ୍ବଂଷ୍ଟ୍ରଜନ୍ତୁରପ୍ସ ପୃଷ୍ଠେ କରେଣ ବନ୍ଦନ । ବେଷେ ଅରୁଣ କାନ୍ତିକୁ କରନ୍ତି ଧାରଣ ॥ ତେଜ ଦଶଇ ଅରକ୍ତ ସିନ୍ଦୂର ଘଷଯେ । ଦିଗହସ୍ତୀଗଣ ଦେଖି ହୋଇଲେ ଅଥଯେ ॥ ଅରୁଣ ସଦୃଶ ତେଜ ଦଶଇ ପ୍ରଚଣ୍ଡ । ଚଳଇ ଲଙ୍କାଦେଶକୁ ହୋଇ ଲଣ୍ଡଭଣ୍ଡ ।୩୩।

ରତ୍ନଂ କର୍ଣ୍ଣଟେ ତଳକଂ ଲଲାଟେ
ହାରେ ବରେ ନାଯୃକତାମୁପେତଃ ॥
କଟମେଣ ଭାନୁଃ ପବମାନସୂନୋଃ
ପ୍ରବୋଧଯାମାସ ପଦାରବନ୍ଦଂ । ୩୪ ।

ଲଲାଟେ ତଳକ ଶିରେ ରତନ ମୁକୁଟ । ଗଳେ ରତ୍ନହାର ଦଶୁଅଛି ଝଟଝଟ ॥ ସୂର୍ଯ୍ୟରଶ୍ମି ଦଶେ ପବମାନ କ ବସ୍ତାର । ନମେ ନନ୍ଦନଙ୍କୁ ପ୍ରବୋଧିଲେ ଟେଣ୍ଡେ ଧରି । ୩୪ ।

ଲାଙ୍ଗୁଳେନ ଗଭସ୍ତିମାନ୍ ବଲୟିତଃ ପ୍ରୋତଃ ଶଶୀ ମୌଳିନା
ଜୀମୂତା ବଧୃତାଃ ସଟୋଭିରରୁଣୋ ଦଂଷ୍ଟ୍ରା ଭିରାସାଦ ତଃ ।
ଉର୍ବୀ ଶ୍ରୋଣ୍ୟା ନ୍ଦିଧୟଃ ସ୍ତୁଶୈବ ବଶଦେର୍ଭୀ ମହାହ ସୋର୍ମିଭିଃ
ଲଙ୍କେଶସ୍ୟ ବାଲ୍‌ଘତୋ ଦିଶି ଦିଶି ପୌଢ଼ପ୍ରତାପାନଳଃ ।୩୫।

ଯାଏ ଆକାଶରେ ଯେତେବେଳେ ହନୂମାନ୍ । ହୁଏ ତେତେ-ବେଳେ ଏହିପରି ଅନୁମାନ ॥ ଲାଙ୍ଗୁଳେ ଅଛି କା ଅବା ସୂର୍ଯ୍ୟଙ୍କୁ ଘେରାଇ ଚନ୍ଦ୍ରକୁ ଅଛଇ ଅବା ମସ୍ତକରେ ବନ୍ଧି ॥ ଶରୀର ଆଘାତେ ହେଲେ ମେଘ କମ୍ପମାନ । ଚକିତ କା ଦନ୍ତଘାତେ ହୋଇଛି ଅରୁଣ । ତରଙ୍ଗ ଘାତରେ ସିନ୍ଧୁଜଳ ଉଚ୍ଛୁଳଇ । କ୍ଷଣେ କ୍ଷଣେ ଭୂମିଙ୍କର ହାସ୍ୟ ପ୍ରକାଶଇ । ବ୍ୟାପିଥିଲା ରାବଣର ପ୍ରତାପ ଅନଳ । ହେଲେ ତାହା ଲିଭାଇବ କିବା କପିବଳ । ୩୫ ।

କପୀନାଂ କଟକେ ଘୋରେ ଜାତଃ କଳକଳାଧ୍ୱନି ।
ଆଞ୍ଜନେୟଃ କମେକାକୀ ଗଚ୍ଛେଦ୍ରାବଣ ସନ୍ନିଧିଂ । ୩୬ ।

ମିଳି ବାନର ସକଳ ଏହି ସମୟରେ । କଳକଳାଧ୍ୱନି ଏକାବେଳେ ମିଳିକଲେ ॥ କେମନ୍ତେ ଯିବ ଏ ଏକା ଅଞ୍ଜନାନନ୍ଦନ । କରୁଅଛୁ ରାବଣର ନିକଟେ ଗମନ । ୩୬ ।

ବେଳବନେ.ତାଳତମାଳମାଳାଂ ବିଲୋକ୍ୟମାନଃ ସହସାଞ୍ଜନେୟଃ
ଉଲ୍ଲଙ୍ଘୟନ୍ ବାଳାଧିବାଳମୁଚ୍ଚୈଃ କଲ୍ଲୋଳିନୀବଲ୍ଲଭମୁଲ୍ଲଲଙ୍ଘେ ।୩୭।

ଗମନ୍ତେ ଦେଖଇ ତାଳ ଯେ ତମାଳ ବନ । ତାହା ଦେଖିଣ ଆନନ୍ଦ ହନୁମନ୍ତ ମନ ॥ କରଇ ଗର୍ଜନ ଉଚ୍ଚେ ଆପଣା ଲାଙ୍ଗୁଳ । ଲଙ୍ଘନ କରଇ କଲ୍ଲୋଳିନୀବଲ୍ଲଭକୁ । ୩୭ ।

ପ୍ରବିଶ୍ୟ ସୁରସାମୁଖାନ୍ତରମତୋଗ୍ରାଟମେ ବିନିଷ୍କ୍ରମ୍ୟଚ
ନିମାଦୁଦତମମ୍ବୁଧେସ୍ତୁହିନଶୈଳଜଂ ମାନାୟନ ।
ନିହତ୍ୟ ପଥି ରୋଧିକାଂ ନଭସଂସିଂହିକାଂ ରାକ୍ଷସୀଂ
ବିଲଙ୍ଘ୍ୟ ଜଳଧିଂ ଯଯୌ ପବନଜଃ ସ ଲଙ୍କାପୁରୀଂ । ୩୮ ।

ପଥେ ହେଲା ଭେଟ ନାଗମାତା ସୁରସାର । ଓଗାଳଇ ବାଟେ ମୁଖ ବିସ୍ତାରଣ ତାର ॥ ନଜାଣି ତା ହନୁମନ୍ତ ମୁଖରେ ପଶିଲେ । ତହୁଁ ବାର-ମଣି ପୁଣି ବାହାର ହୋଇଲା ॥ ଉଠଇ କ ସମୁଦ୍ରରୁ ମୈନାକ ପର୍ବତ। ସେହିପରି ଶୋଭାପାଏ ପବନର ସୁତ ॥ ପୁଣି ଓଗାଳଇ ଆସି ସିଂହିକା ଅସୁରୀ । ତାକୁ ମାରି ହନୁମନ୍ତ ଗଲେ ଲଙ୍କାପୁରୀ । ୩୮ ।

ଗତ୍ୱା ଲଙ୍କାଂ ନିଶାୟାଂ ପବନସୁତବରସ୍ତେନ୍ୱେଷୟନ୍ ଜାନକୀଂତା
ଗେହେ ଗେହେ ପ୍ରଯତ୍ନାତ୍ ସ୍ଥଳଜଳବିପିନେ ଗୁଳ୍ମବୃକ୍ଷାନ୍ତରାଳେ ।
ଯତ୍ରାସ୍ତେ କୁମ୍ଭକର୍ଣ୍ଣଃ ସୁରରିପୁଭବନେ ଚତ୍ୱରେ ଗହ୍ୱରେ ବା
ଗାରେ ଶକ୍ରସ୍ୟ କେତୁର୍ନମିଲତ ସୁମୁଖୀ ବିସ୍ମିତୋଽଭୋହନୁମାନ୍ ।

ପଶିଲା ସ୍ୱପ୍ନରେ ହନୁଯାଇଁ ଲଙ୍କାପୁରେ । ଖୋଜଇ ଜାନକୀ ଦେଖି

ପଶି ଘରେ ଘରେ ॥ ତରୁଗୁଳ୍ମ ଲତା ସବୁ ଖୋଜଇ ଯତନେ । ଚଢ଼ି ବୃକ୍ଷ-ପତରେ ଗୃହ୍ନୁଁ ଥାଏ ଏଣେ ତେଣେ ॥ ପଶଇ ଯାଇଣ କୁମ୍ଭକର୍ଣ୍ଣର ନଗର । ଦେଖଇ କନ୍ଧ ବକନ୍ଧ ବୁଲି ଘର ଘର ॥ ଇନ୍ଦ୍ରଜିତର ଭୁବନେ ହୋଇଣ ପ୍ରବେଶ । ନ ପାଇ ସୀତାଙ୍କୁ ମନେ ହୁଅଇ ବିରସ । ୩୯ ।

ତୀରେ ତୀରେ ସରିତ ସରିତ୍ତ ସ୍ଥଧାରେ ସ୍ଥଧାରେ ଚ
ଗ୍ରାମେ ଗ୍ରାମେ ସରସି ସରସି ପ୍ରାନ୍ତରେ ପ୍ରାନ୍ତରେ ଚଂ ।
କୁଞ୍ଜେ କୁଞ୍ଜେ ସକଳବିପିନେ କନ୍ଦରେ କନ୍ଦରେ ଚ
ଭ୍ରାନ୍ତ୍ୱା ଭ୍ରାନ୍ତ୍ୱା ତନୁତନୁରପି ନେକ୍ଷିତା କ୍ୱାପି ସୀତା । ୪୦ ।

ନଦୀତୀରମାନ ଆଉ ସରୋବର ତୀରେ । ଗ୍ରାମମାନଙ୍କରେ ସବୁ ପ୍ରାନ୍ତରେ ପ୍ରାନ୍ତରେ ॥ ସମସ୍ତ ବିପିନ ଆଉ ଲତା କୁଞ୍ଜମାନ । ନ ପାଇଣ ଖୋଜି୨ ପବନନନ୍ଦନ । ୪୦ ।

ମାତୃଭ୍ରାତୃ କଳତ୍ରବନ୍ଧୁସଚିବପ୍ରଖ୍ୟାତପୂର୍ବାଳାୟଂ
ପୌଲସ୍ତ୍ୟସ୍ୟମସ୍ୟ ନିରୂପିତମପି ଶ୍ରୀସୌଧମେକୈକଶଃ ।
ନାନାରୂପରହଃସ୍ଥଳୀ ଚ ଚରିତା ସୀତା ନ ଦୃଷ୍ଟା କ୍ୱଚି-
ଛଟେଙ୍କ ସାଗରଲଙ୍ଘନେ ନିପତିତା ଲଙ୍କେଶଶଙ୍କାକୁଳା । ୪୧ ।

ଭାଇ ବନ୍ଧୁ କୁଟୁମ୍ବାଦି ମାନଙ୍କର ଘର । ଅତି ଯତ୍ନରେ ଖୋଜଇ ହନୁମନ୍ତ ବୀର । ଯେତେ ଅଛି ତହିଁ ରାଜାଙ୍କ ନଗରମାନ । ଖୋଜି୨ କରି ଖୋଜେ ମରୁତନନ୍ଦନ ॥ ଗୁପ୍ତସ୍ଥାନମାନ ଯହିଁ ଅବା ଯେତେ ଥିଲା । ଦେଖି ତାହା ସବୁ ଯହୁଁ ସୀତା ନ ଦେଖିଲା ॥ ମନେ୨ ହନୁମନ୍ତ କଲା ଅନୁମାନ । ଡେଇ ପଡ଼ିଲେକ ଜଳେ ଧରନ୍ତେ ରାବଣ । ୪୧ ।

ସଂକ୍ଷିପ୍ୟାଥ ତନୁଂ ନିରୀକ୍ଷ୍ୟ ସକଳାଂ ଲଙ୍କାଂ ଶରଚ୍ଚନ୍ଦ୍ରକା-
ନିଧୌ ତାଖିଲସୌଧମଣ୍ଡଳମହୋଦ୍ୟୋତପ୍ରସନ୍ନାର୍ଣ୍ଣବା ।
ଦୃଷ୍ଟ୍ୱାଶୋକବନେ ସ ରାକ୍ଷସବଧୂସଂବେଷ୍ଟିତାଂ ଜାନକୀ-
ମାରୁଢୋ ନିଭୃତଂ ସ୍ଥିତଃ ପବନଜଃ କଂ କେଳିଭୂମିରୁହଂ ।

ଅତ୍ୟନ୍ତ ସୁନ୍ଦର ଦଶେ ରାବଣର ପୁର । ତହିଁ ଅଟ୍ଟାଳିକାମାନ ଦିଶଇ ଉଜ୍ଜ୍ୱଳ । ଖୋଜି ଖୋଜି ଚନ୍ଦ୍ରାର୍ଦ୍ଧବେଗେ ସମୁଦ୍ରର ତୀରେ । ହୋଇଣ ବିମୁଖ ପୁଣି ପଶେ ଘରେ ଘରେ । ଦେଖିଲା ଅଶୋକବନେ ସୀତା ରହିଛନ୍ତି ବହୁତ ଅସୁରୀ ତାଙ୍କୁ ବେଢ଼ିଣ ଅଛନ୍ତି । ଧରି କ୍ଷୁଦ୍ର ରୂପ ତହୁଁ ପବନର ସୁତ । ଅଶୋକ ବୃକ୍ଷେ ବସିଣ ହୋଇଲା ଗୁପତ । ୪୮ ।

ସ୍ୱଗତଂ ।

କ୍ୱ ନୁ କୁଳମକଳଙ୍କମାୟତାକ୍ଷ୍ୟାଃ
କ୍ୱ ଚ ରଜନୀଚରସଙ୍ଗମାପବାଦଃ ।
ଅସ୍ତି ଖଲୁ ବିଷମଃ ପୁରାକୃତାନାଂ
ଫଳତି ହି ଜନ୍ତୁଷୁ କର୍ମଣାଂ ବିପାକଃ । ୪୩ ।

ବୃକ୍ଷେ ରହି ହନୁମନ୍ତ କରଇ ବିଚାର । ଦୁଃଖ ଦିଅଇ ବିଧାତା ଏହି ପରକାର । ଆହା ନିଷ୍କଳଙ୍କ ବଂଶ କୁଳବଧୂ ହୋଇ । ଅସୁରଙ୍କ ହସ୍ତେ ରହିଛନ୍ତି ବନ୍ଦ ହୋଇ । କର୍ମର ଲିଖନ କିବା ପୂର୍ବଜନ୍ମ ଦୋଷ । ନ ହୁଏ ଅନ୍ୟଥା କେବେଁ କର ତା ବିଶେଷ । ୪୩ ।

ଅତ୍ରାବସରେ ରାବଣପ୍ରେଷିତାସ୍ୱାଦୂତ୍ୟଃ
ସୀତାଂ ପ୍ରତି ପ୍ରବୋଧବାକ୍ୟଂ ।

ଆଜ୍ଞା ଶକ୍ରସ୍ୟ ରେମଶିପ୍ରଣୟିନୀ ଶକ୍ତିସ୍ତ୍ରିଲୋକାଜୟେ
ଭର୍ତ୍ତୁର୍ଭପତୌ ପିନାକିନ ପଦଂ ଲଙ୍କେତି ଦିବ୍ୟା ପୁରୀ ।
ସଂଭୂତି ଦ୍ରୁହିଣାନ୍ୱୟେ ଚ ତଦହୋ ନେଚ୍ଛାବରୋ ଲଭ୍ୟତେ
ସ୍ୟାଚ୍ଚେଦେଷ ନ ରାବଣଃ କ୍ୱ ନୁ ପୁନଃ ସର୍ବତ୍ର ସର୍ବେ ଗୁଣାଃ ।

ଏହି ସମୟରେ ରାବଣର ଚରଆସି । ଜାନକୀଙ୍କୁ କହେ ବହୁ ବଚନ ଆଶ୍ୱାସି । ଶୁଣ ଶଶୀମୁଖି ରାବଣର କୀର୍ତ୍ତିମାନ । ତିନି ଭୁବନେ ଯା ଆଜ୍ଞା କରନ୍ତି ପାଳନ । ଇନ୍ଦ୍ରାଦି ଦେବତାମାନେ ଆଜ୍ଞାରେ ଚଳନ୍ତି । ଶିବଙ୍କଠାରେ ସର୍ବଦା କରଇ ଭକତି । ବ୍ରହ୍ମାଙ୍କ ଅଂଶରେ ହୋଇ ଅଛଇ ଜନମ । ଇଚ୍ଛା କରଇ ତୁମ୍ଭର ବର ହେବ କାଣ । ଯେବେ

ତୁମ୍ଭ କପାଳରେ ଥିବ ଶୁଭଯୋଗ । ନ ଛାଡ଼ ନ ଛାଡ଼ ରାମା ରାଜରାଣୀ ଭୋଗ । ଯେଉଁ ସବୁ ଗୁଣେ ଯୁକ୍ତ ହୋଇଛୁ ରାବଣ । କହ ଅଛି କାହାଠାରେ ଏହି ସବୁ ଗୁଣ । ୪୪ ।

ଅନ୍ୟାନ୍ତରେ ରାବଣଃ ସାନୁନୟଂ ।

ମୁଗ୍ଧେ ମୈଥିଲି ଚନ୍ଦ୍ରସୁନ୍ଦରମୁଖି ପ୍ରାଣପ୍ରଦୋନୌଷଧେ
ପ୍ରାଣାନ୍ ରକ୍ଷ ମୃଗାକ୍ଷି ମନ୍ମଥନଦୀ ପ୍ରାଣେଶ୍ୱରି ପାହି ମାଂ ।
ରାମସ୍ତୁମ୍ବତି ତେ ମୁଖଂ ସ୍ୱଲଲିତଂ ବକ୍ତ୍ରୈକମାତ୍ରେଣ ତତ୍
ଚୁମ୍ବିଷ୍ୟାମି ଦଶାନନୈଃ ପ୍ରତିଦିନଂ ମୁଞ୍ଚ ଗ୍ରହଂ ମାନିନି । ୪୫ ।

ଜାନକୀ ପଣେ ରାବଣ ହୋଇ ଉପଗତ । କହଇ ବିନୟ କରି ବଚନ ବହୁତ ।। କରୁଛି ଦଣ୍ଡିନୀ ତୋତେ ଜନକ କୁମାରୀ । ପ୍ରାଣ-ମୋର ରଖ ରତିଦାନେ ସୁକୁମାରୀ । ଏ ମଦନ ସିନ୍ଧୁରେ ଯେ ଭାସୁ—ଅଛି ମୁହିଁ । ରଖ ଉଦ୍ଧାରି ଏଥିରୁ ବାରେ ଚନ୍ଦ୍ରମୁହିଁ । ଏକମୁଖେ ରାମଚନ୍ଦ୍ର ଦେଉଛି ଚୁମ୍ବନ । ଦଶମୁଖରେ ଚୁମ୍ବନ ପୁଣି ଆଲିଙ୍ଗନ । ଏହି ମୋର ନିବେଦନ ଘେନ ଚନ୍ଦ୍ରମୁହିଁ । ତେଜ ମନୁମାନ ସଖି କୃପା ହୃଦେ ବହି । ୪୫ ।

ଅୟି ଜନକତନୟେ ତାପିତେନ ତ୍ୱମେବଂ
ନନୁ କମପି କୁମନ୍ତ୍ରଜ୍ଞାନିନା ଶିକ୍ଷିତାସି ।
କଥମମରକିରୀଟୋଦ୍ଘୃଷ୍ଟପାଦାରବିନ୍ଦେ
ପ୍ରଣୟମତି ମୟି ତସ୍ମିନ୍ ମର୍ତ୍ତ୍ୟକୀଟେଽନୁରାଗଃ । ୪୬ ।

ସେ ଅଟେ ଅଜ୍ଞାନୀ ନରଜାତି ସୁକୁମାରୀ । କି ଶିକ୍ଷା ଦେଇଛି ତେତେ ସେହି କଥାଧାରୀ । ଯା ପଦ ବନ୍ଦନ୍ତି ନତଶିର ଦେବଗଣ । ତୋ ଆଗେ ହୋଇଛି ଠିଆ ସେହି ମୁଁ ରାବଣ ।

ସୀତେ ତ୍ୱଂପରମୁଞ୍ଚ ମାନମଧୁନା ରାଜାଦରେ ମୁହୂତଂ
ପଶ୍ୟ ତ୍ୱଂ କନକୋଜ୍ଜ୍ୱଲା ସୁନଟସୀଂ ଲଙ୍କେଶ୍ୱରଂ ଜୀବସୁ ।
ଏକଂ ନାମ ଶତୈକସଜମହଷୀଂ ତ୍ୟକ୍ତ୍ୱାଚ ମନ୍ଦୋଦରୀଂ
ତ୍ୱେବାଥ ବିନୟୁଜ୍ୟତେ ଚ ସକଳଂ ଲଙ୍କାଧିପୋଜ୍ଜ୍ୱୟତାଂ । ୪୭

ତେଜ ମନ୍ଦୁ ଗୁମାନ ଗୋ ଯୁବତୀରତନ । ଦେଖ ମୋର ଲଙ୍କା ଏଥି ଶଙ୍କା ନାହିଁ ଜାଣ । ଏକଶତ ନାରୀ ମୋର ପାଶେ ଖଟୁଥାନ୍ତି । ତାଙ୍କ ମଧ୍ୟେ ଶ୍ରେଷ୍ଠା ମନ୍ଦୋଦରୀ ଯେ ଅଟନ୍ତି ॥ ସବଦେବତାଏ ମୋର ଖଟନ୍ତି ସେବାରେ । ଈଶ୍ୱର ପରାୟେ ମୋତେ ପୂଜନ୍ତି ସକଳେ ॥ ହୋଇ ଏତେ ବଡ଼ ଲୋକ ହେଲି ତୋର ଦାସ ॥ ରଖ ମୋ ଜୀବନ ସଖି ତେଜି ଅନ୍ୟ ଆଶ ।୪୭ ।

ସୀତେ ପଶ୍ୟ ଶିରାଂସି ଯାନି ଶିରସା ଧତ୍ତେ ମହେଶଃ ପୁରା
ତାନି ତ୍ୱତ୍ପଦପଙ୍କଜସ୍ଥି ତାନି ସୁଭଗେ କସ୍ମୁ ଦବଜ୍ଞାସ୍ପଦେ ।
ଶ୍ରୁତ୍ୱୈତତ୍ପରଦାରଲମ୍ପଟବଚଃ ସୀତାହ ତଂ ରାବଣଂ
ନିର୍ମାଲ୍ୟାନି ଶିରାଂସି ମୂଢ଼ ତବ ଧିକ୍ ସୀତାବଚଃ ପାତୁ ବଃ ।୪୮।

ହେ ସୀତା ଏ ମୁଣ୍ଡ ମୋର ବହୁଥିଲେ ହର । ସେ ଶିରକୁ ଲୋଟାଉଛି ପଦ୍ମରେ ତୁମ୍ଭର । ନ କରଣି ହେଲା ସହି ବଞ୍ଚାଅ ଗୋ ପ୍ରାଣ ଦଗ୍‌ଧ କରେ ମରମରେ ସଦା ପଞ୍ଚବାଣ । ଶୁଣି ରାବଣ ବଚନ ସୀତା ଠାକୁରାଣୀ । ଅତିକ୍ରୋଧଭର ହୋଇ ବୋଲନ୍ତି ଏ ବାଣୀ । ଧିକ ଧିକ ବିରପଣ ଧିକ ପୁରୁଷାର୍ଥ । ନାଶହେବୁ ମୂଢ଼ ନାହିଁ ଅଯୁକ୍ତ ବହୁଛ ॥

କାର୍ଯ୍ୟୌକସି ତ୍ୱମ୍ପି ତଣ୍ଟିରମେବ ଯସ୍ୟ
ନବସିତୋ ଯୁଦ୍ଧ ସ ଯେନ ସହସ୍ରବାହୁଃ ।
ରାମସ୍ୟ ତସ୍ୟ ବଳନୋଽଖିଳଶସ୍ତ୍ରବେଦ
ମଧ୍ୟାପିତସ୍ୟ ବିଜୟୀ ମମ ଜୀବନାଥଃ । ୪୯ ।

ବାନ୍ଧିଥିଲା ତୋତେ ଜିଣି ଯେଉଁ ବୀର । ତାକୁ ଜିଣିଲେ ସମରେ ଯେଉଁ ପଶୁଧର । ତାଙ୍କ ହସ୍ତରେ ସେ ପାଇଛନ୍ତି ପରାଭବ । ସବ ବିଦ୍ୟାରେ ନିପୁଣ ଅଟନ୍ତି ରାଘବ ॥ ସେହି ମୋର ପ୍ରାଣନାଥ ମହାବଳୀ ରାମ । ଅସୁରଙ୍କୁ ଜିଣିବାକୁ ଲଭିଛନ୍ତି ଜନ୍ମ । ୪୯ ।

ଅପତଦଥ ଦଶାସ୍ୟୋ ଜାନକୀପଦପଦ୍ମେ
କରଧୃତପଦାସ୍ମୁଗ୍ରସ୍ତାଂ ପୁନର୍ବାକ୍ୟମୂଚେ ।

ସୁରପତିରପି ପାଦେ ମେଽପତଚ୍ଛୀତଯୋଗ-
ନ୍ନପତତି ମସ୍ତି ତୁଷ୍ଟି ବ୍ରୂହି କିଂ ବା କରୋମି । ୫୦ ।

ଜାନକୀର ପାଦେ ପଡ଼ି କହେ ଦଶାନନ । ପାଦ ଛୁଇଁ ଜଗ୍ଧ ହୋଇ ବୋଲଇ ବଚନ । ପଡ଼ଇ ଚରଣେ ମୋର ଦେଖୁ ସୁରପତି । ମୁଁ ପୁଣି ତୋ ପାଦେ ପଡ଼ି କରଇ ବିନତି ॥ ତଥାପି ପ୍ରସନ୍ନ ଚିତ୍ତ ନ ହୁଅଇ ତୋର । ମୋପରେ ଅକଟାକ୍ଷ କାହିଁକି ସମାଦର ।

ଇତ୍ଥଂ ନିଶମ୍ୟ ମଧୁରଂ ନୃପମାହ ବାକ୍ୟଂ
ନମ୍ରାନନା ସପଦି କୋପବତୀ ଚ ସୀତା ।
ଶ୍ରୀରାମବାଣହତରାବଣମସ୍ତକେଷୁ
ଗୃଧ୍ରାଃପଦଂ ଦଧତି ରେନ୍ନମ ତୁଷ୍ଟିଯୋଗଃ । ୫୧ ।

ଏମନ୍ତେ ଶ୍ୱନସ୍ତୁ ବାକ୍ୟ ଶୁଣି ରାବଣର । କହନ୍ତି ଜାନକୀ ଦେବୀ ହୋଇ କୋଧଭର । ଅରେ ପାପିଷ୍ଟ ତୋହର ହୋଇବ ମରଣ । ଶ୍ରୀରାମଙ୍କ ବାଣେ ତୋର ନଷ୍ଟେ ଯିବ ପ୍ରାଣ ॥ ଗୃଧ୍ର ଜମ୍ବୁକ କରିବେ ଆହାର ତୋ ମାଂସ । ତେବେ ଯେ ହୋଇବ ମୁହିଁ ତୋପରେ ସନ୍ତୋଷ । ୫୧ ।

ଯଦନ୍ତରଂ ବାୟୁସବୈନତେୟସ୍ତୟୋ
ର୍ଯଦନ୍ତରଂ ସିଂହଶୃଗାଲୟୋର୍ବନେ ।
ଖଦ୍ୟୋତମାର୍ତ୍ତଣ୍ଡକୟୋ ର୍ଯଦନ୍ତରଂ
ତଦନ୍ତରଂ ତେ ରଘୁନନ୍ଦନସ୍ୟ ଚ । ୫୨ ।

କେଶରୀ ହେବ ଶୃଗାଳ ବାୟସ ଗରୁଡ଼ । ଅନ୍ତର ଯେମନ୍ତ ଅଟଇ ଖଦ୍ୟୋତ ମାର୍ତ୍ତଣ୍ଡ । ସେହିପରି ରାମ ରାବଣର ମଧ୍ୟେ ଭେଦ । ତେମନ୍ତ ପ୍ରାଂଶୁ ତୁମ୍ଭର ତାଙ୍କର ପ୍ରଭେଦ । ୫୨ ।

ସୀତାୟା ପ୍ରତିକ୍ଷିପ୍ତେ ରାବଣେ ସୀତାନିକଟୟୋ
ରୁକ୍ତ ପ୍ରତ୍ୟୁକ୍ତୀ ।
ପୃଚ୍ଛାମି ନିକଟେ ସୁଖେନ ଭବତାଂ କସ୍ତୁ ଦସ୍ୟୁଂ ରାବଣୋ
ନୀତଶ୍ଚେ ନୃପଶେଖରୋ ହରତି ମାମନ୍ୟାଙ୍ଗନାଂ ଜାନକୀ ।

ସୀତେ ମନ୍ମଥପଞ୍ଚବାଣୟୁକହତେ କା ନାମ ନୀତେଃ କଥା
ଯାବନ୍ନାମଶରାହତୋ ନ ପୁରୁଷସ୍ତାବଦ୍ଧଶିଷ୍ଟାୟୁତେ । ୫୦ ।

ଏ ବଚନ ଶୁଣି ବାହୁଡ଼ନ୍ତେ ଦଶଶିର । ଜାନକୀ କହିଲେ ଯାଇ ନିଜଠା ଅଗର । ଶୁଣ ଗୋ ନିଜଠା ରାବଣର ଯେ ବେଭାର । କାପର ଲୋକେ କରନ୍ତି ପ୍ରଶଂସା ଏହାର ॥ ଏତେଡ଼େ ବଡ଼ ରାଜା ହୋଇ ଅବଚାର କହେ । କେଉଁ ପର ନୀତଙ୍କ ଯେ ପଣ୍ଡିତ ବୋଲାଏ ॥ କାନନରେ କଲା ବଳେ ପରନାରୀ ଭ୍ରଷ୍ଟ । ଜାଣିଲି ନିଷ୍ଟୟ ଏହି ରାବଣ ପାପିଷ୍ଠ । ନିଜଠା ବୋଲଇ ଅଗୋ ଶୁଣ ଠାକୁରାଣୀ । ନୀତି ନ ପାଳଇ ଯେଉଁ ଜନ ହୁଏ କାମୀ । ଯେତେବେଳେ ଯାଏ ନ ହୁଅଇ କାମ ନାଶ । ଅଜ୍ଞାନ ଅବସ୍ଥା ଧରି ରହଇ ପୁରୁଷ । ୫୩ ।

ପୁନରପି ନିଜଠା ।

ବଜ୍ରଂ କାର୍ମ୍ମୁକ ବକ୍ରିତଶୋଽପି ଚ ହରେଷ୍ଟକଂ ଚ ବଙ୍କଂ ତଥା
ଦଣ୍ଡଃ ଖଣ୍ଡଃଶତଂ ଯମସ୍ୟ ଦଳିତଃ ପାଶୋଭବେତ୍ ପାଶିନଃ ।
ଲଙ୍କେଶୋରସିଂତସ ମନ୍ମଥଶରେର୍ମଗ୍ନେ ନ ଭଗ୍ନସ୍ତତଃ
କଃ ଶାଖୀ ସଖି ଯସ୍ୟ ପୁଷ୍ପମଭବତ୍ ସ୍ତ୍ରାୟୁଧସ୍ୟାୟୁଧଂ । ୫୪ ।

ଯାହାର ଅଙ୍ଗରେ ନ କାଟଇ ବଜ୍ରଶର । ବକ୍ର ହୁଏ ଚକ୍ର ବାଜ-ନ୍ତେଣ ଯା ଶରୀର । ଶତଖଣ୍ଡ ହୁଏ ଯମଦଣ୍ଡ ବାଜ ଦେହେଁ । ନାଶ ହୁଅଇ ବରୁଣ ପାଶ ଶୁଣ ମାଏ ॥ ଏତେଡ଼କଠିଣ ହୃଦୟ ଅଟେ ରାବଣର କେବଳ ମଗ୍ନ ହୋଇଛି ବାଜ କାମଶର । ସେହି ଫୁଲଶରେ ଯେ ଯେ ହୋଇଅଛି ମୋହ । କନ୍ଦର୍ପ ବାଣକୁ ଠାଣ କାଏ ହେବ ସହି ।

ସୀତାୟା ହୃଦୟେ ଶିରୀଷକୁସୁମପ୍ରାୟେ ପଫାଲେଇକୈଃ
ପୌଲସ୍ତ୍ୟସ୍ୟ ସ ଏବ ଭଗ୍ନକୁଳିଶେ ବଜ୍ରାଧିକେ ବକ୍ଷସି ।
ଆପୁଙ୍ଖଂ ନିମମଜ୍ଜ ମନ୍ମଥଶରସ୍ତତ୍କିଂ ନ ଜାନୀମହେ
ଜ୍ଞାତଂ ଶ୍ରୀରଘୁନନ୍ଦନସ୍ୟ ମହିମା ବ୍ୟକ୍ତାୟୁତେ ସମ୍ପ୍ରତି । ୫୫ ।

ଶିରୀଷ କୁସୁମସମ ହୃଦୟ ତୁମ୍ଭର । ଅଗ୍ନିସୁ ନେବାକୁ ତହିଁ ଭାବେ ଦଶଶିର । କଠିଣ ହୃଦୟ ପୁଣି ତାହାର ଅଟଇ । କନ୍ଦର୍ପ ଶର ଅଧ ତ ସହି ନ ପାରଇ । ହୋଇଅଛୁ ବାକ୍ତ ଯହିଁ ଶ୍ରୀରାମ ମହିମା । କାଣୁ ଅମ୍ଭେ ଭଲରୂପେ ତାଙ୍କ ଗୁଣ ସୀମା । ୫୫ ।

ଅନ୍ୟାନ୍ତରେ ହନୂମାନ୍ ।

ଅଥ ଦଶରଥସୂନୋରାଜ୍ଞୟା ବାୟୁସୂନୋ
ରଜନୀଚରପୁରୀମାଲୋକ୍ୟ ଭୁକ୍ତ୍ୱା ଦିଦଂଶଃ ।
ଅକଳିତଚରମାଣୋ ମାୟୟା ସନ୍ନପସ୍ତାଂ
କ୍ଷିପତି ଜନକକାଗ୍ରେ ଶିଂଶପ ଗ୍ର ବଣାର୍ଣ୍ଣଃ । ୫୬ ।

ରାମ ଆଜ୍ଞାରେ ଯାଇଣ ହନୂମନ୍ତ ବୀର । ମାଛି ରୂପ ଧରିଣ ଖୋଜଇ ଲଙ୍କାପୁର । ଖୋଜି ଖୋଜି କାହିଁ କିଛି କଳନା ନ ପାଇ । କ୍ଷୁଦ୍ର ରୂପଧରି ସବୁ ପୁର ଖୋଜେ ଯାଇ ॥ ପୁଣି ଶିଂଶପା ବୃକ୍ଷର ମୂଳେ ଉଭା ହେଲା । ଜନକନନ୍ଦନୀ ସୀତା ସମ୍ମୁଖେ ଭେଟିଲା । ୫୬ !

ସୀତାଂ ପ୍ରାହ ।

କା ତ୍ୱଂ ପଦ୍ମପଲାଶାକ୍ଷି ପୀତକୌଶେୟବାସିନି ।
ଦ୍ରୁମସ୍ୟ ଶାଖାମାଲମ୍ବ୍ୟ ତିଷ୍ଠସି ତ୍ୱମନିନ୍ଦିତା । ୫୭ ।

କରଯୋଡ଼ି ଉଭାହୋଇ ପବନନନ୍ଦନ । ଜାନକୀଦେବୀଙ୍କୁ ତୋଷେ କହଇ ବଚନ । ଅଗୋ ମାତ ପଦ୍ମପତ୍ରପର ତୁମ୍ଭ ନେତ୍ର । ପିନ୍ଧିଅଛ ପୁଣି ପୀତିବର୍ଣ୍ଣ କଷାବସ୍ତ୍ର । ଯୁବତୀମାନଙ୍କ ମଧ୍ୟେ ଅଟ ଅଗ୍ରଗଣ୍ୟା । ବସିଛ ତରୁ ମୂଳରେ ହୋଇଣ ବିମନା । ୫୭ ।

କିମର୍ଥଂ ତବ ନେତ୍ରାଭ୍ୟାଂ ବାରି ସ୍ରବତି ଶୋକଜଂ ।
ପୁଣ୍ଡରୀକବିଶାଳାଭ୍ୟାଂ ବିପ୍ରକୀର୍ଣ୍ଣ ମିବୋଦକଂ । ୫୮ ।

କେଉଁ ହେତୁ ଶ୍ୱେତପଦ୍ମ ନେତ୍ରୁ ବହେ ବାରି । ପୂର୍ଣ୍ଣଚନ୍ଦ୍ର ମୁଖ ଗୋଟି ଯାଇଛି ଝାଉଁଳି । ୫୮ ।

ସୀତାଂ ପ୍ରାହ ।

ଦୁହିତା ଜନକସ୍ୟାହଂ ବୈଦେହସ୍ୟ ମହାତ୍ମନଃ ।
ସୀତେତି ନାମତଶ୍ଚାହଂ ଭାର୍ଯା ରାମସ୍ୟ ଧୀମତଃ । ୫୯ ।

ବୋଲନ୍ତି ଜାନକୀ ଶୁଣ ବୀର ହନୁମନ୍ତ । ବିଦେହ ନଗର ରାଜା ଅଟନ୍ତି ମୋ ତାତ । ଜନକନନ୍ଦନୀ ମୁହିଁ ନାମ ମୋର ସୀତା । ଶ୍ରୀରାମଚନ୍ଦ୍ରଙ୍କର ଯେ ଅଟଇ ବନିତା । ୫୯ ।

ରକ୍ଷିତା ରଘୁବଂଶସ୍ୟ ଜନକସ୍ୟ ଚ ରକ୍ଷିତା
ରକ୍ଷିତା ଜୀବଲୋକସ୍ୟ ଧର୍ମସ୍ୟ ଚ ପରନ୍ତପଃ । ୬୦ ।

ରଘୁବଂଶ ରକ୍ଷକ ଜନକ ରକ୍ଷ ଯେହୁ । ସବଜୀବଙ୍କ ରକ୍ଷା କରନ୍ତା ଅଟେ ସେହୁ । ନ୍ୟାୟରେ କରନ୍ତି ପ୍ରାଣିମାନଙ୍କ ପାଳନ । ଶତ୍ରୁ ଦେଖିଲେ ତତ୍କ୍ଷଣେ କରନ୍ତି ନିଧନ । ୬୦ ।

ଧନୁର୍ବେଦେ ଚ ବେଦେ ଚ ବେଦାଙ୍ଗେଷୁ ଚ ନିଷ୍ଠିତଃ ।
ବିପୁଳାଂଶୋ ମହାବାହୁଃ କମ୍ବୁଗ୍ରୀବୋ ମହାମନାଃ । ୬୧ ।

ଧନୁର୍ବିଦ୍ୟାରେ ପଣ୍ଡିତ ମହାବଳବନ୍ତ । ବେଦବେଦାଙ୍ଗେ ପାରଗ ସର୍ବଶାସ୍ତ୍ର ଯୁତ । ବିପୁଳ ଭୁଜକୁ ଶୋଭେ ସୁବିଶାଳ ଉର । ମନୋହର ଗ୍ରୀବା ମୁଖ ଛବି କି ମଧୁର । ମାନସ ନିର୍ମଳ ବଡ଼ ପ୍ରଶସ୍ତ ଅଟଇ । ଗୁଣଗ୍ରାହୀ ବୁଦ୍ଧିମନ୍ତ ଧର୍ମେ ମତଥାଇ ॥

ହନୁମାନ ମୁଦ୍ରିକାଂ ଦର୍ଶୟତି ।

ସୁବର୍ଣ୍ଣସ୍ୟ ସୁବର୍ଣ୍ଣସ୍ୟ ସୁବର୍ଣ୍ଣସ୍ୟ ବରାନନେ ।
ଚିତ୍ରଚିତ୍ରଂ ରାମଚନ୍ଦ୍ରେଣ ସୁବର୍ଣ୍ଣସ୍ୟାଙ୍ଗୁରୀୟକଂ । ୬୨ ।

ଏମନ୍ତ ସମୟେ ହନୁ ଅଞ୍ଜନା ନନ୍ଦନ । ରାମଙ୍କ ମୁଦ୍ରିକା ଦେଲା ଦେଖାଇ ବହନ ॥ ନାମ ହୋଇଅଛି ଲେଖା ଅଗୀରଥ ଏହି । ଯାହାକୁ ଛନ୍ତି ଦ୍ୱିଜ ମୁନି ସଦା ଧ୍ୟାଇ ॥ ଏ ମୁଦ୍ରିକାକୁ ତୁମ୍ଭଙ୍କୁ ଦେବାର ନିମନ୍ତେ । ପେଷିଛନ୍ତି ଆଗୋ ମାତ ରାମଚନ୍ଦ୍ର ମୋତେ । ୬୨ ।

ସୀତାହନୁମତୋରୁକ୍ତପ୍ରତ୍ୟୁକ୍ତୀ ।

ମାତର୍ଜାନକି କୋ ଭବାନ୍ ବନମୃଗଃ କେନାନସଂପ୍ରେଷିତ
ସ୍ତୁର୍ଦ୍ଧୌତେ୍ୟନ ରଘୂଦ୍ଵହେନ କମିଦଂ ସ୍ତୋତ୍ରଂ ସ୍ତିତାନ୍ନୁବ୍ରୂହିକ ।
ଦତ୍ତ୍ଵା ତେନ ତଦୈବ ତାଂ ନିଜକରେ ଶାଦାୟ ଗୃହ୍ଣାତି ଚ
ପ୍ରେମାଶ୍ରୁଣି ସସର୍ଜ ସମ୍ୟଗୁଦଭୂଦ୍ ଗାତ୍ରେଷୁ ରୋମୋଦ୍ଗମଃ । ୭୩ ।

ବୋଲନ୍ତି ଜାନକୀ ତୁମ୍ଭେ କଏ କାହା ସୁତ । ଦେଇ ପରଚୟ ତୋଷ କର ମୋର ଚିତ୍ତ ॥ ବୋଲେ ହନୁମନ୍ତ ମୁହିଁ ପବନ ତନୟ । ପେଷିଛନ୍ତି ଦୂତପଣେ ପ୍ରଭୁ ଦୟାମୟ ॥ ପୁଣି ପୁଛନ୍ତି ଜାନକୀ ହସ୍ତରେ କ ଧର । ହନୁ ବୋଲେ ଏହ ରତ୍ନମୁଦ୍ର ପ୍ରଭୁଙ୍କର ॥ ତୁମ୍ଭେ ପ୍ରତେ ଦିବ ବୋଲି ପ୍ରଭୁ ଦେଇଛନ୍ତି । ଶୁଣି ତା ଜାନକୀ ହସ୍ତେ ଘେନାଲେ ତୁଟନ୍ତି ଶିରେ ଲଗାଇଣ ମୁଖେ ଅଲିଙ୍ଗନ କରି । ରୋମାଞ୍ଚିତ ଅଙ୍ଗ ନେତ୍ରୁ ବହେ ପ୍ରେମବାରି ।

ସୀତାମୁଦ୍ରିକୟୋରୁକ୍ତପ୍ରତ୍ୟୁକ୍ତୀ ।

ମୁଦ୍ରେ ତେ କୁଶଳଂ ପ୍ରିୟେ ଜନକଜେ କ୍ଷେମଂ ଚ ରାମସ୍ୟ ତେ
ସତ୍ୟଂ ମାଂ ସ୍ମରତି ପ୍ରବାହ୍ୟ ଲମନାଃ କ୍ଵଂ ଭୂପତେ ପ୍ରେଷିତା ।
କ୍ଵାସୌ ମଦ୍ଵିରହା କ୍ବଥଂ ଚ ନୟତି କ୍ଷ୍ଣେକ୍ତ୍ଵା ମୁହୂର୍ତ୍ତାନପି
କ୍ଲିଷ୍ୟତ୍ୟାଳାପତ ତ୍ଵୟା ବଭ ମୃତତ୍ୟା ମୁହ୍ୟତ୍ୟଧ୍ୟାନ୍ମୃତ । ୭୪

ମୁଦ୍ରିକାକୁ ଅନାଇଣ ବୋଲନ୍ତି ଜାନକୀ । କହ ମୁଦ୍ରିକା ମୋ ପ୍ରଭୁ କୁଶଳେ ଛନ୍ତିକି । କୁଶଳେ ଅଛନ୍ତି କି ଦେବର ଲକ୍ଷ୍ମଣ । ସତ୍ୟେ କହ ମୋର କଥା ପଚାରନ୍ତି ମନ । ନିତ୍ୟେ ତ କି କଥା କରନ୍ତି ବୀରରି । ମୋ ବିଚ୍ଛେଦେ ହୋଇଥିବେ ବଡ଼ହେ କାତର । ମୁଦ୍ରିକା ବୋଲଇ ଶୁଣ ଅଗୋ ବନ୍ଦିଦେବୀ । ଦିନ କାଟୁଛନ୍ତି ରାମ ମହା ଦୁଃଖେ ରହି ॥ ତୁମ୍ଭର ନାମ ଜପନ୍ତି ଦିନ କିବା ରାତି । ବିହ୍ଵଳ ମନରେ ଅଲିଙ୍ଗନ ଲୋଡ଼ନ୍ତି ॥ କେତେ କେତେ ବେଳେ ପୁଣି ହୁଅନ୍ତି ଅଜ୍ଞାନ । ତୁମ୍ଭ ରୂପ ଗଣେମାନ କରୁଥାନ୍ତି ଧ୍ୟାନ । ୭୪ ।

ମୁଦ୍ରେ ବ୍ରୂହି ସ ଲକ୍ଷ୍ମଣାଃ କୁଶଳିନଃ ଶ୍ରୀରାମପାଦାଃ ସ୍ୱୟଂ
ସନ୍ତି ସ୍ୱାମିନି ମା ଶବଧେହି ବଧୂରଂ ଚେତୋଽନୟା ଚିନ୍ତୟା ।
ଏନାଂ ବ୍ୟାହର ମୈଥିଳାଧିପସୁତେ ନାମାନ୍ତରେଣୋ ଧୁନା
ରାମସ୍ତ୍ୱିତି ରହେଣ କଙ୍କଣପଦଂ ଗୃହୈୟ ଚିରଂ ଦତ୍ତବାନ୍ ।୬୫।

ତହୁଁ ଜାନକୀ କହନ୍ତି ମୁଦ୍ରିକାକୁ ଗୃହିଁ । ହେ ମୁଦ୍ରିକା କହ କାନ୍ତ ମୋର କୁଶ କହ ॥ ମୋ ବିଚ୍ଛେଦେ ମନେ ବହୁ ଖେଦ ନ କରିବେ । ଏକଥା ବୁଝାଇ କହ ଦେବ ପ୍ରାଣଧବେ ॥ ସୀତାଙ୍କର ମୁଖୁଁ ଏହା ଶୁଣି ହନୁମାନ । ବୋଇଲେ ମାତ ଏ ମୁଦ୍ରିକା ନାମ ଅଛି ଅନ୍ୟ ॥ କଙ୍କଣ ବୋଲି ଏହାକୁ ଭାବନ୍ତି ମନରେ । କୌଶଲ ଗୋ ମାତଃ ରହି ତୁମ୍ଭ ବିରହରେ । ୬୫ ।

ଅବାଙ୍ଗୁରୀୟକମଣୌ ପ୍ରତିବିମ୍ବମସ୍ୟା-
ଦ୍ରାମସ୍ୟ ସାଦର ମବୀକ୍ଷ୍ୟ ବିଲୋକୟନ୍ତୀ ।
ମଦ୍ରୂପ ଏବ କିମଭୂନ୍ମମ ଚିନ୍ତୟେତି
ମୀମାଂସୟା ଜନକରାଜସୁତା ମୁମୋହ । ୬୬ ।

ରତନ ମୁଦ୍ରିକ ସୀତା ଦେଖନ୍ତି ଆଦରେ । ଶ୍ରୀରାମଙ୍କ ପ୍ରତିବିମ୍ବ ଅଛଇ ତହିଁରେ ॥ ଆପଣାର ରୂପଟିଗୋଟି ପଡ଼ିଚିନ୍ତେଣି ତହିଁ । ସନ୍ଦେହ ମନରେ ବହୁ କଲେ ଗୁଣି ମୁହିଁ ॥ ଆହା କେତେ ଦୁଃଖେ ଥିବେ ପ୍ରଭୁ ମୋହ ପାଇଁ । ଏହା ଭାବି ଦୁଃଖେ ମୋହ ଗଲେ ବଇଦେହୀ । ୬୬ ।

ମାରୁତିଃ ପ୍ରାହ ।

ଅନୁଦ୍ଦିନମନୁଶୈଳଂ କ୍ଷମନାଲୋକ୍ୟ ସୀତେ
ପ୍ରତିଦ୍ଦିନମତଦୀନଂ ବୀକ୍ଷ୍ୟ ରାମଂ ବିରାମଂ ।
ଗିରିବଣନିମଗ୍ନା ସୌ ଯଦିଦା ନ ଦ୍ୱିଧଭୂତ୍
କ୍ଷିତିରପି ନ ବିଦୀର୍ଣ୍ଣା ସା ହି ସର୍ବଂସହୈବ । ୬୭ ।

ଦେଖି ହନୂମନ୍ତ ବୋଲେ ଏମନ୍ତ ବଚନ । ତୁମ୍ଭର ଚିନ୍ତାରେ ପ୍ରଭୁ ହୋଇଲେଣି କ୍ଷୀଣ ॥ ହୁଏ ଅନୁମାନ ପ୍ରଭୁ ନଦେଖି ତୁମ୍ଭଙ୍କୁ । ପାଷାଣ

ତଗଲା ପିବ ଗୃହ୍ନ ଯେ ଦୁଃଖକୁ । ପୃଥ୍ୱୀ ବଦାର୍ଯ୍ୟ ନ ହୋଇ ଯାହା ଯେ ରହୁଛୁ । ସବ ସାହାବୋଲ୍ ନାମ ତେଣୁ ଯେ ହୋଇଛୁ ।

ଆଶ୍ୱାସ୍ୟ ମାରୁତିଃ ।

କ୍ୱଂ ଦୂରମିନ୍ଦୁମୁଖି ସମଣିଳ ମୁଖାନାଂ
କ୍ୱଂ ଦୁର୍ଗମଂ ବଲଭିଦାଂ ହରିଯୂଥପାନାଂ ।
ଦୈବଂ ପ୍ରସନ୍ନମିବ ଦେବ ତାବଦ୍ୟ ସତ୍ୟଂ
ରକ୍ଷାଂସି କାନ୍ନ କୁପିତସ୍ୟ ଚ ଲକ୍ଷ୍ମଣସ୍ୟ । ୬୮ ।

କରଯୋଡ଼ ହନୁମନ୍ତ ବୋଲଇ ବଚନ । ଶୁଣ ଗୋ ଜନନୀ ମୋର ଏହି ନିବେଦନ । ଶ୍ରୀରାମଙ୍କ ହସ୍ତେ ଯେବେ ଧନୁଶର ଥିବ । ତ୍ରିଭୁବନେ ତାଙ୍କୁ କିଛୁ ଅସାଧ ନୋହିବ ॥ ସଙ୍ଗତେ ଅଛନ୍ତି ଯେତେ ଯୂଥପତିଗଣ ଏକେ ୨ ମହାବୀର ଅଟନ୍ତି ପ୍ରମାଣ । ଏକାଯହିଁ କୋପକରେ ଲକ୍ଷ୍ମଣ ବୀର । କ୍ଷଣେ ରହି ନ ପାରିବେ ଏଅସୁର କୁଳ ॥

ଭବସ୍ତ୍ରୁଶାଃ କତତିଦ୍ୱୀର୍ଃ ଶ୍ରୀରାମ ସମୀପେ ସନ୍ତି ।

ଇତ୍ୟୁକ୍ତ୍ୱା ହନୁମନ୍ ବୃତେ ।

ପ୍ରଶଂସା ନାତ୍ମନଃ କୁର୍ଯ୍ୟାତ୍ପରନିନ୍ଦା ତଥୈବଚ
ସତ୍ୟଂ ବଦାମି ତେ ଦେବ ମତ୍ସମୋ ନାସ୍ତି ବାନରଃ ୬୯ ।

ପଚ୍ଚାରନ୍ତି ସୀତାକହ ପବନ କୁମର । ତୁମ୍ଭପର ପ୍ରଭୁପାଶେ ଛନ୍ତି କେତେବୀର । ଶୁଣ ଗୋ ଜନନୀ ଯାହା ପଚ୍ଚାରିଲ ମୋତେ । ଆପଣାର ପ୍ରଶଂସା ମୁଁ କରିବ କେମନ୍ତେ ॥ ସତ୍ୟ କହେଁ ବୀର ନାହିଁ ମୋ ସମ ସଂସାରେ । ପର ନିନ୍ଦା ପର ଅପବାଦ ମୁଁ ନ କରେ । ୬୯ ।

ସମୁଦ୍ରତରଣେ ତବକାଦୃଗ୍ୱୀ ବସାମ୍ଭ ଇତି ସୀତାପୃଃ

ପ୍ରଶ୍ନେ ହନୁମାନ୍ ।

ତବପ୍ରସାଦାତ ପବନ ପ୍ରସାଦାନ୍ ଭର୍ତ୍ତିଷ୍ଟତେ ପାଦରଜଃପ୍ରସାଦାତ୍
ଶିଭଃ ପ୍ରସଦୈଃ ପରିବର୍ତ୍ତିତୋହଂ ବାଲଙ୍ଗିତେ ଗୋଷ୍ପଦ ବସ୍ତମୁଦ୍ରଂ

ବୋଲନ୍ତି ଜାନକୀ ତୁମ୍ଭେ ଶୁଣ ହନୁବୀର । କେଉଁପର ତରିଲ ଏ ଦୁସ୍ତର ସାଗର ॥ ବୋଲେ ହନୁଶୁଣ ମାତଃ ତୁମ୍ଭ ପ୍ରସାଦରୁ । ତଳେ

ଆଗର ମୁହିଁ ପ୍ରଭୁଙ୍କ ଅଜ୍ଞାରୁ ॥ ତୁମ୍ଭ ପଦରଜ ମନରେ ମୁଣ୍ଡେ ଧରି ।
ଆଗର ଲଙ୍ଘିଲି ମୁହିଁ ଗୋଷ୍ପଦର ପରି । ୭୦ ।

ସୀତା

ଚନ୍ଦ୍ରୋ ଯସ୍ୟ ଧନେଶଦାଧିତ ସମସ୍ତୋପ୍ୟୁଂ ସ୍ଫୁଲିଙ୍ଗାୟତେ
କର୍ପୂରଂ କୃଶାନୁରତେ ସଶିକରଃ ଶମ୍ପାସମୋ ଭାସତେ ।
ବାୟୁର୍ବାଡ଼ବବହ୍ନି ବନ୍ଧୁଲପୃକଂ ଦାବାଗ୍ନି ବପ୍ରାମ୍ବୁତଂ
ସନ୍ଦେଶଂ ନୟ ରାମସନ୍ନିଧିମିତୋଯାନ୍ତାଂ ଦ୍ରୁତଂ କାନ୍ତେ । ୭୧ ।

କହନ୍ତି ଜାନକୀ ପ୍ରଭୁ ମୋର ବିରହରେ । ଦିବା ନିଶି କାଟୁଥିବେ କେଉଁ ପରକାରେ । ଚନ୍ଦ୍ରକିରଣ ମଣିବେ ତପନ ପରାୟେ । କର୍ପୂର ଚନ୍ଦନ ଅଙ୍ଗେ ଅଗ୍ନି ପରି ଦହେ । ବଜ୍ରତୁଲ୍ୟ ଲାଗୁଥିବ ମଳୟ ପବନ । ସଲିଳକୁ ମଣୁଥିବେ ଦାବାଗ୍ନି ସମାନ । ଆହେ କପିବର ତୁମ୍ଭେ ବେଗ ହୋଇ ଯାଅ । ପ୍ରଭୁଙ୍କ ଆଗରେ ଏହି ବାରତା ଜଣାଅ । ୭୧ ।

ଅଥ ସନ୍ଦେଶଃ ।

ଶ୍ରୀମଦ୍ରାମପଦାରବିନ୍ଦ ଯୁଗଳେ ଦାତବ୍ୟମେକଂ ଫଳଂ
ସୌମିତ୍ର୍ୟେଂଟଭ୍ୟା ଯୁଗଳଂ ଫଳଂ ତଥା କପିପତେସ୍ତସ୍ୟାପୃତୈକଂଫଳଂ ।
ଏକଂତ୍ୱପି ଫଳଂ ତତସ୍ତଦନୁଜେ ଦେୟଂ ଶୁଭାଶୀଃଶତଂ ।
ପଶ୍ଚାତ୍ସୈନ୍ୟଶତାଧିପପ୍ରଭୃତିନା ଭୋକ୍ତବ୍ୟମେକଂ ଫଳଂ । ୭୨ ।

ଜାନକୀ ବୋଇଲେ ଏହି ଷଡ଼ଫଳ ନିଅ । ଏକ ଗୋଟି ଫଳ ଶ୍ରୀରାମଙ୍କ ହସ୍ତେ ଦିଅ । ଅବର ଗୋଟିଏ ଫଳ ଲକ୍ଷ୍ମଣଙ୍କୁ ଦେବ । ଫଳ ଏକ ଦେବ ତୁମ୍ଭେ ନୃପତି ସୁଗ୍ରୀବ । ମିଳି ସର୍ବ ଯୂଥପତି ଭୁଞ୍ଜି ଏକ ଫଳ ॥ ବାଣ୍ଟି ଏକ ଫଳ ଦିଅ ସଇନ୍ୟ ସକଳ । ଏ ଫଳ ଖାଇଲେ ହେବ ବହୁତ ଅମୃତ । ଏକ ଗୋଟି ଫଳ ତୁମ୍ଭେ ଭୁଞ୍ଜି ହୁଅ ତୋଷ । ୭୨ ।

ସୀତା ସମ୍ଭାଷଣାନ୍ତେ ପବନ ସୁତବରସ୍ୱେଦରଣ୍ୟ ନିର୍ଭଙ୍ଗକ୍ତ୍ୱା କାମୋ
ବ୍ୟାକେନାପ ଦ୍ୱିକୋଽଭୁଦ୍ଗଳିତର ଦନଖଃଶୀର୍ଣ୍ଣକାୟୋଽତିବୃଦ୍ଧଃ

ଶ୍ୱେତୋ ମୁଣ୍ଡୋଽପି ଭୂତ୍ୱା ମଧୁବନ ନିକଟେ ଭକ୍ଷତେ ଗୃଢମନ୍ଦଂ
ଭ୍ରାତର୍ଯୁକ୍ତଂ ପ୍ରଯାଦାଦ୍ଦମମୃତଫଲଂ କିଂ ଦେଭ୍ୟର୍ଥୟାମି । ୭୩ ।

କହିଣ ସୀତାଙ୍କୁ ତହୁଁ ଗଲେ ହନୁମାନ । ଅଶୋକବନେ ପ୍ରବେଶ ହୋଇଲେ ବହନ । କପଟ କରିଣ ଏକ ଚେଟୁବେଶ ଧରି । ପକ୍ୱକେଶ ବୃଦ୍ଧ ବେଶ ହୋଇଗଲେ ଚଳି । ଶୁଣ ହେ ତୋଟାଳଗଣ ଏ ମୋର ବଚନ । କ୍ଷୁଧାଭରେ ଛଟପଟ ହେଉଅଛି ପ୍ରାଣ ॥ ଦିଅ କଣ୍ଟ କଣ୍ଟ ମୋତେ ସ୍ୱାଦୁଫଳ ବାଛି । ବଡ଼ଆଶା କରି ତୁମ୍ଭ ପାଶେ ଅସିଅଛି । ଏତେକହି ଉଠି ମାରି ବୃକ୍ଷକୁ ଉଠିଲା । ଫଳ ଖାଇ ଗଛ ସବୁ ଭାଙ୍ଗି ପକାଇଲା । ୭୩ ।

ରାବଣଂ ପ୍ରତି ଉଦ୍ୟାନପାଳ ।

ମହାରାଜ ଦେବ ଯତତଂ ମାରୁତଶ୍ଚାତ ମନ୍ଦଂ
ସ୍ୱାଧ୍ୟା ଯତ୍ର ନିଯତ ଚକିତସ୍ତୋୟଦସ୍ତୋୟଦାନେ ।
ଲୋକାନ୍ତଂ ଘଟୟତି ସଦା ପ୍ରାତରଂ ବିଶ୍ୱକର୍ମା
ତତୋଽରଣ୍ୟଂ କ୍ଷଣମପି କଥଂ ବାନରେଣୈବ ଭଗ୍ନଂ । ୭୪ ।

ତୋଟା ରକ୍ଷୀଗଣ ଗଲେ ବେଗେ ଧାଇଁ । ରାବଣର ଆଗେ କହିଲେ ଜଣାଇ । ଯେଉଁ ବନେ ରହେ ସଦା ବସନ୍ତ ପବନ । ଯହିଁରେ କି ନ ପଡ଼ଇ ସୂର୍ଯ୍ୟର କିରଣ । ମେଘମାନେ ରହି ତହିଁ ଯଥା ସମୟରେ । ଜଳ ବରଷା କରନ୍ତି ରାବଣର ଡରେ ॥ ଯେଉଁ ବନ ବିଶ୍ୱକର୍ମା ନିର୍ମିତ ଯେଉଁ ତୋଟା । ସେ ତୋଟା ଭାଙ୍ଗଇ ଅଛି ଆସି କପିଟୋଟା । ୭୪ ।

ଦେବାକର୍ଷ୍ଣୟୁ କର୍କଶେନ କପିନା କେନାପି କେଳୀବନେ
ତୋଳଦ୍ଧାଳଧ୍ୱବେଷ୍ଟିତ ବାହୁପିନଃ ସାଟୋପମୋପ୍ତାଟିତାଃ ।
ତେନାନେକବନପାଳକାଃ ସରଭସ ସବେଽପି ନିବାପିତା
ନୃପାଏବ ଅନାଯୁ କେବଲମହଂ ଦୈବେନ ସଂରକ୍ଷିତଃ । ୭୫ ।

ବଡ଼ ନିର୍ଦ୍ଦୟ ବାନର କାହୁଁ ସେ ଅଇଲା । ଅଶୋକବନେ ପ୍ରବେଶି ଘୋର ଖାର କଲା । ଭେଦେବ ଲଙ୍କା ଈଶ୍ୱର ଅଇଲମୁଁ ଧାଇଁ । ନ ମାନଇ ଯେଣୁ ଅମ୍ଭର ବଚନ ସେହୁ । ବଡ଼ ବଡ଼ ବୃକ୍ଷ ମାନ ପକାଏ ଉପାଡ଼ି । ଷ୍ଟେଠେ ବଡ଼ ଫଳ ଫୁଲମାନ ଖାଏ ଝାଡ଼ି ॥ ବାରଣ କଲୁ ବେଲକୁ ମାରଇ ଗୋଡ଼ାଇ । ଭୟବଶୁଁ ତୁମ୍ଭ ପାଶେ ଅଇଲୁଁ ପଳାଇ । ୭୫ ।

ଇତ୍ୟାକର୍ଣ୍ଣ୍ୟ ରାବଣସ୍ୟ ଚେଷ୍ଟା ।

ହନ୍ତୀତି ଜ୍ୱଳିତଃ କ୍ରୁଧା କପିରିତ ବ୍ରୀଡ଼ା ବନମ୍ରାନନୋ
ହେଲୋଲ୍ଲଙ୍ଘିତବାରିରାଶିରିତ ଯତ୍ ଶ୍ଲାଘାବଲତ୍କୁଣ୍ଡଳଃ ।
ରାମସ୍ୟାସ୍ୟମଗାଙ୍ଗ୍ୟାକଲୁଷିତେ ଲଙ୍କାମୁପେତ୍ୟୋଦ୍ଭଟଂ
ବାନ୍ତାମତ୍ୟନଳାମ୍ଭକେ ଦଶମୁଖଃ କାଂ କାଂ ଦଶାଂନୋ ଗତଃ ।

ଶୁଣି ଚୋଟାଳ ବଚନ କ୍ରୋଧେ ଲଙ୍କପତି । ମର୍କଟନାମ ଶୁଣି ହେଲା କୋପମୂର୍ତ୍ତି । ଲଜରେ ନୁହିଁଲା ମୁଖ ତଳକୁ ଲୁଆଇଁ । ହେବେ କପି କେହ୍ନେ ଯେସିଲା ସମୁଦ୍ର ଡେଇଁ । ଶ୍ରୀରାମଙ୍କ ଦୂତ ବୋଲି ଯହୁଁ ସେ ଶୁଣିଲା । ଶିରଝୁଣି ତତକ୍ଷଣି ଆସ୍ଥାନୁ ଉଠିଲା । ଘୋର ବାନର ଅସିଣ ଲଙ୍କାରେ ପଶଇ । କ୍ୱା କ୍ୱା ଗତି ହେବ ବୋଲି ଭାବେ ଈର୍ଷାବହି ।୭୬।

ଅତ୍ରାବସରେ ସୀତାହନୁମତୋ ରହସ୍ୟେ
ନିଜଦାସ୍ୟା କଥିତେ ରାବଣଃ ।

ମୁଦ୍ରାମକଟ ଜନେ ରାମନାକଠାଦାଗତ୍ୟ ଦତ୍ତାନରେ
ସୀତାୟା ଇତି ସମ୍ପ୍ରମାର୍ତ୍ତ୍ତି ଜଟୟାପ୍ରୋକ୍ତୋଽଥ ଲଙ୍କେଶ୍ୱରଃ ।
କ୍ୱଂ କ୍ୱଂ କ୍ୱଂ କମିତି ବ୍ରୁବନ୍ ସରଭସଂ ସିଂହାସନା ଦୁତ୍ଥିତୋ
ରକ୍ଷୋମୁଖ୍ୟଶତୈ ସ୍ତ୍ରମେ ବଦ୍ଧ କପିଂ ଧତ୍ତୁଂ ନଯୋଜ୍ୟାସ୍ଥିତଃ ।୭୭

ଏମନ୍ତ ବେଳେ ନିଜଦାସୀ ହୋଇଲା ପ୍ରବେଶ । ରାବଣକୁ କହେ ଶୁଣହେ ରାକ୍ଷସ ଈଶ । ଦେଖି ମୁଁ ଅଇଲି ଦେବ ଅଶୋକ ମୂଳରେ । ଜାନକୀ ମର୍କଟ କଥାବାର୍ତ୍ତା ହେଉଥିଲେ । ମୁଦ୍ରିକା ଏକ ଯେ

ଅଛୁ ରାମପାଶୁ ଅଣି । ଯେ ମୁଦ୍ରା ଜାନକୀ ପାଶେ ଦେଲା ନେଇ ପୁଣି ॥ ଏ କଥା ଶୁଣିରାବଣ ଉଠିଲା ଝଟତ । ବଡ଼ ୨ ରାକ୍ଷସଙ୍କୁ ନକାର କହନ୍ତି । ତୁମ୍ଭେମାନେ ବେଗ ହୋଇ ଏହିକ୍ଷଣି ଯାଅ । ନ ମାରିଣ ବାନରକୁ ଧରିଅଣି ଦିଅ । ୭୭ ।

ପାଠପାର୍ଶ୍ଵିକାଃ ।

ପ୍ରାକ୍‌ରଙ୍ଗଚାରଣମଧ୍ୟ ପୁରମପ୍ୟଲଙ୍ଘ୍ୟାଂ
ଲଙ୍କାମିମାଂ ବ୍ରଜତି କୋଽପି କପିପ୍ରବୀରଃ
ତଦ୍ଧର୍ମୁଖଂ ପ୍ରଚଳିତ ସ୍ତ୍ୱସ୍ତୁମକ୍ଷନାମା-
ନନ୍ୟୈଷ ରାକ୍ଷସପତେଃ କୁପିତଃ କୁମାରଃ । ୭୮ ।

ପୁଣି ଅକ୍ଷୟକୁମର ପାଶକୁ ଡକାଇ । ବୋଇଲା କପିକି ଧର ବାତ୍ରି ବେଗେ ଯାଇ । ପିତାଆଜ୍ଞା ପାଇ ବୀର ବାହାରହୋଇଲା । ଅନେକ ଅସୁର ସୈନ୍ୟ ସଙ୍ଗତରେ ନେଲା । ଯାଇଣ ମଧୁବନରେ ହୋଇଲା ପ୍ରବେଶ । ଦେବଙ୍କୁ ଦୁର୍ଲଭ ଅଟଇ ଏ ଲଙ୍କାଦେଶ । ବାନର ଗୋଟାଏ ଏଥି ପଶିଲା କେମନ୍ତ । ଭଗ୍ନ ବନ ଦେଖି କ୍ରୋଧମନ ହେଲେ ଦୈତ୍ୟ । ଅକ୍ଷୟ କୁମର ପଶୁଁଥିବ ଆଜ କାହିଁ । କେଣେ ଦଳୁଛି ମୃତ୍ୟୁ ଅଣିଲା କଢ଼ାଇ । ୭୮ ।

( ରାବଣାଙ୍କେପ୍ରେ ମେଘନାଦୋ ହନୁମନ୍ତଂ ପ୍ରତି । )
ହତ୍ୱା କଥଂ ତ୍ୱଦଦ୍ୟରାଜ କୁମାର ମକ୍ଷଂ
ରେ ବାନରାପସଦ କୁତ୍ର ପଳାୟିତୋଽସି ।
ତ୍ୱାଂ ହନ୍ତୁ ମିଚ୍ଛତି ଦଶାନନଶାସନେନ
ଦର୍ପୋଦ୍ଧତୋଧୃତଧନୁର୍ନନୁ ମେଘନାଦଃ । ୭୯ ।

ଦେଖି ହନୁ କ୍ରୋଧେ ଯାଇ ବୃକ୍ଷପାଡ଼ ପ୍ରହାରେ । ଅସୁରକୁ ମାରି ଯମପୁରକୁ ପେଷିଲେ । ସେ ବାରତା ଚର ଯାଇଁ ରାବଣେ କହିଲା । ଶୁଣି ତା ରାବଣ ଇନ୍ଦ୍ରଜିତକୁ ରାଇଲା । ଅରେ ପୁତ୍ର ଯାଇ ବେଗେ କପିବାନ୍ଧିଅଣ । ଅକ୍ଷୟକୁ ନାଶକଲା ସେ ପାପୀ ଦୁର୍ଜନ । ପିତାଆଜ୍ଞା

ପାଇ ଇନ୍ଦ୍ରଜିତ ବାହାରିଲା । ହନୁକୁ ଗର୍ହିଣ କ୍ରୋଧେ ବଚନ ବୋଇଲା । ଅଟଳ ରେ ବାନର କାହିଁ ଯିବୁରେ ପଳାଇ । ଏହିକ୍ଷଣି ମାରିଦେବି ପିତା ଆଗେ ନେଇ । ସାମାନ୍ୟ ପଶୁଯେ ଅମ୍ଭମାନଙ୍କୁ ମଣିଲୁ । ପରାଣ ଦେବାକୁ ଦୃତପଣେ ଆସିଥିଲୁ । ୭୯ ।

ତତୋ ହନୁମାନ୍ ।

ରାମସ୍ୟାଗମନଂ ନିବେଦ୍ୟ ସୁଚରିତାଶ୍ୱାସ୍ୟ ସୀତାଂ ତତ
ସ୍ତସ୍ମିନ୍ମଣିଂ ତଦା ରଘୁପତେଃ ପ୍ରତ୍ୟାଯ୍ୟନାୟ୍ୱାଦଦେ ।
ଭଙ୍କ୍ତ୍ୱା ଶୋକବନଂ ନିହତ୍ୟସହସା ରକ୍ଷାଧିକାନ୍ ରାକ୍ଷସାନ୍
ଦ୍ରଷ୍ଟୁଂ ରାବଣମାତ୍ମବନ୍ଧବଷୟେ ସୌମ୍ୟୋଽଭବନ୍ମାରୁତିଃ । ୮୦ ।

ସୀତାଙ୍କୁ ଜଣାଏ ହନୁମନ୍ତ ପୁଣି ଯାଇ । ଶ୍ରୀରାମ ଆସିବେ ନିଷ୍ଟେ ଚିନ୍ତା କର ନାହିଁ । କହି ଚଳିଗଲା ବେଗେ ପବନ ନନ୍ଦନ । ସୀତା-ଠାରୁ ମଥା ମଣି କରଣ ଗ୍ରହଣ । ମଧୁବନ ଭାଙ୍ଗି ଅକ୍ଷୟକୁମର ମାରି । ରାବଣକୁ ଦେଖିବାକୁ ମନରେ ବାଞ୍ଛି । ଇନ୍ଦ୍ରଜିତ ଫାଶେ ହନୁ ବନ୍ଧାହେଲା ଯାଇଁ । ରାବଣ ଦେଖିବ ବୋଲି ଶାନ୍ତମୂର୍ତ୍ତି ହୋଇ । ୮୦ ।

## ଅଥ ବନ୍ଧେ ହନୁମନ୍ତ ରାବଣ ବାକ୍ୟଂ ।

ରେ ରେ ଦୃତ କପେ କଥମେବ ଚରିତଂ ବାରାଂନିଧିଂ ଦୁସ୍ତରଂ
ଲଙ୍ଘିତ୍ୱା ଜଳଜନ୍ତୁଭିଃ ପରିବୃତଂ ଭୀମଂ ତରଙ୍ଗୋତ୍କଟୈଃ ।
ଅତ୍ୟାଗତୋଽସି ରଥଂ ବିନା କଥମିହ ପ୍ରସ୍ଥାପିତଃ କେନ ବା
ବ୍ରୂହି ତ୍ୱଂ ନହି ବଧ ଏବମଭୟଃ କିଂ ନାମଧେୟୋଽଭବାନ୍ ।

ବାନ୍ଧି ହନୁମନ୍ତକୁ ସେ ନେଲା ଇନ୍ଦ୍ରଜିତ । ରାବଣ ଛାମୁରେ ଦେଲା ନେଇଣ ତୁରିତ । ଦେଖି ବୋଲେ ଲଙ୍କପତି ଆରେରେ ବାନର । କେଉଁ ଦେଶୁଁ ଆଇଲୁ ତୁ କାହିଁ ତୋର ଘର । ଏ ଦୁସ୍ତର ସାଗର ତୁ କେମନ୍ତେ ତରିଲୁ । ଭୀଷଣ ତରଙ୍ଗ ମଧ୍ୟେ କପରି ଆଇଲୁ । କାହାର ଆଜ୍ଞାରେ ଏଥି ଆସିଅଛୁ ତୁହି । କିଏ ତୋର ପ୍ରଭୁ ତୋତେ

ଅଚ୍ଛୁଟରେ ପଠାଇ । ଭସ୍ମ ତେଜ କହ କସ ନାମ କାହା ଦୂତ ।
ତୋତେ ବନ୍ଧିକରି ନୁହେ ଶାସ୍ତ୍ରର ବାହ୍ୟତ । ୮୧ ।

ତତୋ ହନୁମାନ ।

ଶ୍ରୀରାମେଣ ସଲକ୍ଷ୍ମଣେନ କପିନା ଶ୍ରୀମାଲ୍ୟବାନଦ୍ରିତଃ
ସୀତାନ୍ୱେଷଣ କାର୍ଯ୍ୟସାଧନବିଧୌ ସମ୍ପ୍ରେଷିତ ତେ। ନନୃତଃ ।
ଲବ୍ଧ୍ୱା ଚୈବ ବରଂ ତ୍ରିପୁରରିପୁ ରଭଦଃ ସର୍ବତ୍ରଗାମୀ ସ୍ୱୟଂ
ବେତ୍ସି ତ୍ୱଂ ପବନାତ୍ମଜୋ ଦଶମୁଖ ଶ୍ରୀମାନ୍ ହନୁମାନହଂ

ଶୁଣି କହେ ହନୁମନ୍ତ ଅରେ ଦଶଶିର । ତ୍ରିଭୁବନ ବିଜୟୀ ଅଟନ୍ତି ରଘୁବୀର । ତାହାଙ୍କ କନିଷ୍ଠ ଭ୍ରାତା ନାମ ଲକ୍ଷଣ । ମାଲ୍ୟବନ୍ତ ପର୍ବତେ ଅଛନ୍ତି ଘେନି ସୈନ୍ୟ । ମୋତେ ପେଷିଛନ୍ତି ସୀତା ଖୋଜିବାର ପାଇଁ । ଶିବଙ୍କ ବରେ ତ୍ରିପୁର ବୁଲିପାରେ ମୁହିଁ ॥ ନାମମୋର ହନୁମନ୍ତ ଅଞ୍ଜନାର ସୁତ । ପିତା ମୋର ପବନ ମୁଁ ଶ୍ରୀରାମଙ୍କ ଦୂତ । ୮୨ ।

ହତ୍ୱା ବାଳିନମାହବେ କପିତ ମୂମାନାଯ୍ୟ ସୁଗ୍ରୀବକଂ ।
ବିଜ୍ଞାନଂ କୃତନଂ ସଦ ଽଭିଜନ୍ମିନଂ ସଂଗ୍ୟୂଃ ସଦାନନ୍ଦନଂ ।
କୃତ୍ୱା ଚୈବ ବିଶେଷଦେବନିବହାଖ୍ୟାନସ୍ୟଚନ୍ତ୍ରାସ୍ତିତଃ
ଶ୍ରୀରାମ ଜନକ ଅତ୍ମଜାହରଣତଃ କାଳୋପମୋ ଜାୟତେ । ୮୩ ।

ବାଳିକି ବିନାଶି ରାମ କଲେ ସୁଗ୍ରୀ ରାଜା । କପି ସୈନ୍ୟ ସହକଲେ କିଷ୍କିନ୍ଧ୍ୟାରେ ପୂଜା । ମିତ୍ର ଉପକାରୀ ସେ ଯେ ଅଟନ୍ତି ରାଘବ । ଚିନ୍ତିତ ସର୍ବଦା ମନ ପ୍ରବୋଧନ୍ତି ଦେବ । ଶତ୍ରୁଙ୍କର କାଳଯମ ଜାଣିଥ ଶ୍ରୀରାମ । ସୀତାଙ୍କ ବିରହେ ସେହୁ ଧ୍ୟାନହୀନ ସମ ॥

ରାବଣ ହନୁମନ୍ତୋ ବୁକ୍ତ ଦୃଶ୍ୟକ୍ତ ।

ରେ ରେ ବାନର କୋ ଭବାନହମରେ କ୍ଷୁଦ୍ରାନ୍ନ ହନ୍ତାହବେ
ଦୂତୋଽହଂ ଖରଖଣ୍ଡନସ୍ୟ ଜଗତାଂ କୋଦଣ୍ଡଦୀକ୍ଷାଗୁରୋଃ ।
ମଦ୍ଦୋର୍ଦଣ୍ଡ କଠୋରତାଡ଼ନବିଧୌ କୋବା ନିକୁଣ୍ଠାଲୋଃ

କୋ ମେରୁଃକ୍ୱ ଚ ରାବଣୌଘଗଣନା କୋଟି ସ୍ଥୂକାଠାସ୍ୟତେ । ୪
ଅରେ ରେ ବାନର କାହୁଁ ଅଇଲୁ ତୁ ଏଥେ । ମୋ ପୁରେ ପଶିଲୁ ତୋର ଶଙ୍କା ନାହିଁ ଚିତ୍ତେ । ଏ ମୋହର ମଧୁବନ କିମ୍ପା ନଷ୍ଟ କଲୁ । ଅକ୍ଷୟ କୁମରକୁ ତୁ କ୍ଷୟ କରାଇଲୁ ॥ ଶୁଣି ରାବଣରେ ମୁଖେ ବୋଇଲେ ହନୁମନ୍ତ । ସମରେ ମାରିଛୁ ତୋର ପୁତ୍ରକୁ ମୁଁ ସତ ॥ ନାମ ମୋର ହନୁମନ୍ତ ଶ୍ରୀରାମଙ୍କ ଦୂତ । ସୀତାଙ୍କ ବାରତା ଯାଇଁ କହିବି ତୁରିତ ॥ ଯେଉଁ ରାମ ସଂସାରରେ ଏକା ଧନୁର୍ଦ୍ଧର । ଦଣ୍ଡକା ଅରଣ୍ୟେ ଯେଣ୍ଡ ବିନାଶିଲେ ଖର ॥ ଅରେରେ ରାବଣ ଏହି ମୁଷ୍ଟି ଘାତେ ମୁହିଁ । ମହାଗିରିବର ଚୂର୍ଣ୍ଣ କରିଣ ଦିଅଇ । ତୁହି କେତେକ ମାତର ଅଟୁରେ ରାବଣ ॥ କଣ୍ଠରେ ଏହିକ୍ଷଣି ନେଜନ୍ତ ତୋ ପ୍ରାଣ ॥

ଏକୋଽହଂ ପବନାତ୍ମଜୋ ଦଶମୁଖଂ ତ୍ୱଂଗ୍ରପି କୋଠୀଶ୍ୱର
ସ୍ତ୍ୱାଂଜିତ୍ୱା ସମରେ ରଘୋଃ ପ୍ରଣୟିନୀଂ ସୀତାଂ ଚ ନେତୁଂ କ୍ଷମଃ
କିଂତୁ ପ୍ରୌଢ଼ିତୟା ପୁରୋ ଭଗବତା ରାମେଣ ସୁଗ୍ରୀବତୋ
ହତ୍ୱା ଦକ୍ଷିଣ ପାଣିନା ବସୁମତୀଂ ତ୍ୱାଂ ହନ୍ମୁକ୍ତଂବଚଃ । ୮୫ ।

ପବନ ଅତ୍ମଜ ମୁଁ ରେ ଏକା ଅଟୁ ହୋଇ । କୋଠୀଶ୍ୱର ବୋଲାଉରେ ଦଶମୁଖ ତୁହି । ତୋତେ ବିନାଶ କରିଣ ମୁହିଁ ଏହିକ୍ଷଣି । ଜାନକୀ ନେଇ ଦିଅନ୍ତ ରାମଆଗେ ପୁଣି । ସୁଗ୍ରୀଆଗେ ପ୍ରତିଜ୍ଞା ଯେ ପ୍ରଭୁ କରିଛନ୍ତି । ତୋତେ ମାରିବେ ବୋଲିଣି ଛୁଇ ବସୁମତୀ ॥

ରେରେ ରାବଣ ରାକ୍ଷସାଧମ ପଶୋମୂର୍ଖାତିମୂଢ଼ାଧମ
ଗର୍ବଂବର୍ବର ମୁଞ୍ଚ ମୁଞ୍ଚ ଝଟିତି ପ୍ରୀତ୍ୟାବୟଂ ବ୍ରୂମହେ ।
ମୂର୍ଦ୍ଧ୍ନା ସେବସ୍ୱ ରାମଚନ୍ଦ୍ର ଚରଣୌ ଦତ୍ତ୍ୱା ପୁରୋ ଜାନକୀଂ
ତସ୍ମିଁ ଦ୍ରାଜ୍ୟମକଣ୍ଟକଂ କୁରୁଚିରଂପୁତ୍ରେଣ ପୌତ୍ରେଣବା । ୮୬ ।

ତୁ ରାକ୍ଷସାଧମ ମୂର୍ଖ ଅଟୁରେ ରାବଣ । ପଶୁପରି କେତେ ଗର୍ବ କରୁ ଅକାରଣ । ମୋର ଆଜ୍ଞା ପାଳି ବେଗେ ଯାଅରେ ବର୍ବର ॥ ରାମପାଦେ ପଡ଼ ମନୁ ତେଜ ଅହଂକାର । ପାପ ମତି ତୋର ଦନ୍ତେ ଧରରେ ତୃଣ ।

ସୀତାଙ୍କୁ ସମର୍ପି ବେଗେ ପଶଯ ଶରଣ । ତେବେ ଅକଣ୍ଟକ ରାଜ୍ୟ ସୁଖେ ଭୋଗ କର । ପୁତ୍ର ନାତି ଘେନି ରହି ଥାଅ ଚିରକାଳ ॥

ଅସ୍ମାନଂ ପରିରକ୍ଷିତୁଂ ଯଦି ଭବାନ୍ ପୁତ୍ରଂ ଚ ପୌତ୍ରାଦିକଂ
ଭ୍ରାତୃବର୍ଗ କୁଟୁମ୍ବକଂ ପରିଜନଂ ଗୃହଂ ତଥା ସୈନ୍ୟକଂ ।
ରାଜ୍ୟଂ ଗୃପି ମହୋଦ୍ଧତଂ ଦଶଶିରଃ କାଙ୍କ୍ଷତ୍ୟତଶ୍ଚେତ୍ତ୍ୱୟା
ଶ୍ରୀରାମାୟ ମହାତ୍ମନେ ଗୁଣବତେ ତଦ୍ଦୀୟତାଂ ମୈଥିଳୀ ॥

ସୁଖେ ରହିବାର ଆଶା ଥାଏ ଯଦି ମନେ । ଭାଇ ବନ୍ଧୁ କୁଟୁମ୍ବାଦି ପୁତ୍ର ପରିଜନେ ॥ ଗୁରୁ ପରାପ୍ତେ ମାନିଣ ମୋହର ବଚନ । ଭୋଗ କରୁ ଥାଅ ସୁଖେ ଏହି ରାଜ୍ୟଧନ । ଦୟାର ସାଗର ଅଟନ୍ତି ସେ ରଘୁନାଥ । ତାହାଙ୍କ ଚରଣେ ଯାଇଁ ଲୋଟାଅ ତୁ ମାଥ । ୮୭ ।

ଯାବଦ୍ଦାଶରଥେର୍ନ ପଶ୍ୟସି ମୁଖଂ ଯାବନ୍ନ ବାରାଂନିଧି-
ର୍ବଦ୍ଧୋ ଯାବଦୟଂ ଚ ବାନର ବଲାକ୍ରାନ୍ତା ଚ ଲଙ୍କାପୁରୀ ।
ଯାବତ୍ସୋଦରବନ୍ଧୁ ପୁତ୍ର ସୁହୃଦଂ ମୃତ୍ୟୁର୍ନ ଗୃହ୍ଣାତ୍ୟସେ
ତାବଦ୍ରାବଣ ଲୋକନାଥଦୟିତା ସୀତା ସ୍ୱୟଂ ଦୀୟତାଂ । ୮୮ ।

ନଦେଖିଛୁ ଶ୍ରୀରାମଙ୍କ ମୁଖ ଯେତେ ଦିନ । ଯାବତ ନହୋଇଅଛି ସମୁଦ୍ର ବନ୍ଧନ । ଯେତେ ଦିନ ଲଙ୍କାରେ ନ ପଶିବେ ବାନର । ଆକ୍ରମଣ ନ କରିଅଛନ୍ତି ଦୈତ୍ୟବଳ । ଯାବତ ନ ଦେଖୁ ପୁତ୍ର ନାତିଙ୍କ ମରଣ । ଚେତନା ତୋହର କାହିଁ ହେବରେ ରାବଣ ॥ ତେବେ ସମର୍ପିବୁ ନେଇ ସ୍ୱଇଚ୍ଛାରେ ସୀତା । ଯେ ଅଟନ୍ତି ତ୍ରିଭୁବନ ନାଥଙ୍କ ବନିତା । ୮୮ ।

କଂ ବନ୍ଧୁନା ।

ତାବଲ୍ଲଙ୍କେଶ୍ୱରୋ ରାଜା ଯାବନ୍ନାୟାତି ରାଘବଃ ।
ଆୟାତେ ରାଘବେ ବୀରେ ଲଙ୍କା ଲଙ୍କେଶ୍ୱରଃ କୁତଃ । ୮୯ ।

ଅଧିକ କହିବା କିଛି ପ୍ରୟୋଜନ ନାହିଁ । ଯା କିଛି କହୁଛି ତାହା ଶୁଣ ମନ ଦେଇ ॥ ଯେ ପର୍ଯ୍ୟନ୍ତ ଶ୍ରୀରାମ ଲଙ୍କାକୁ ନ ଆସନ୍ତି । ସେ-

ପର୍ଯ୍ୟନ୍ତ ଲଙ୍କେଶ୍ୱର ନାମ ଲଙ୍କେ ସ୍ଥିତ । ଅଛୁ ଏହା ଜାଣି ଥାଅ ହୋଇଲେ ପ୍ରବେଶ । ନଥିବ ଲଙ୍କାର ନାମ ନଥିବୁ ଲଙ୍କେଶ ॥

ରାବଣଃ ।

ଈଶପ୍ରକ୍ଲନମୈଶୀବ ନାଭିଦ୍ୟ ତ କପେସ୍ତନୁଃ ।
ନିହତାଚନ୍ଦ୍ରହାସେନ ରାବଣେ ନାତରଂ ହୟା ।୧୦ ।

ଶୁଣି ହନୁ ବାକ୍ୟ କ୍ରୋଧେ ଜଳିଲ୍ଲା ରାବଣ । ଚନ୍ଦ୍ରହାସ ଖଡଗରେ ହାଣିଲ ବହନ । ବାଜି ହନୁମନ୍ତ ଅଙ୍ଗେ କିଛୁ ଯେ ନହୋଇଲା । ତେତେ ବଡ଼ ଅସ୍ତ୍ରଗୋଟି ବନ୍ଦହୋଇଗଲା । ୧୦ ।

( ଅବାବସରେ କ୍ରୁଦ୍ଧୋ ବିଭୀଷଣ ଃ ।)

ବୈକୁଣ୍ଠ୍ୟମଗେଷ୍ଟୁ କଶା ନିପାତୋ
ମୌଣ୍ଡ୍ରୀୟଂତଥା ଲକ୍ଷ୍ମଣୋଧଂ ନିବେଶ ଃ ।
ଏତାନ୍ ବିଧାନହନ୍ତି ରାଜସେଶ
ଶାସ୍ତ୍ରେଷ୍ଟୁ ଦୂତସ୍ୟ ବଧୋନ ଦୃଷ୍ଟଃ ।୧୧ ।

ତାହା ଦେଖି ବିଭୀଷଣ ବୋଲଇ ବଚନ । ବଡ଼ ଅନ୍ୟାୟ କରୁଛ ଭାଇ ଦଶାନନ । ଦୂତର ବିନାଶ ନୁହେ ଶାସ୍ତ୍ରର ବିହିତ । ଛାଡଦିଅ ମାଡ଼ଦେଇ ଅଙ୍ଗେ କରିକ୍ଷତ । ୧୧ ।

କପିନାଂ କଲ ଲଙ୍ଗୁଲମାଷ୍ଟମେକଂ ବିଭୂଷଣଂ ।
ତଦସ୍ୟ ଦୀପ୍ୟତାମାଶୁ ତେନ ଦଗ୍ଧେନ ଗଚ୍ଛତୁ । ୧୨ ।

ବିଶେଷରେ ଶ୍ରେଷ୍ଠ ଅଟେ କପିଙ୍କ ଲାଙ୍ଗୁଳ । ଲାଙ୍ଗୁଳ ହୀନ ହୋଇଲେ ହେବ କ୍ଷୀଣ ବଳ । ତହିଁରେ ଅଗ୍ନି ଲଗାଇ ଦିଅ ତାକୁ ଛାଡ଼ । ଅଙ୍ଗହୀନ ହୋଇ ପଛେ ଯାଉ ସେ ବାହୁଡ଼ ॥

ରାବଣ ସ୍ତୁଥାଜ୍ଞାପୟତି ।

ଛେତ୍ରୁଂତଜନିତୋଦ୍ୟମଃକ୍ଷତି ଭୁଜାଂ ବଧୋ ନଦୂତୋ ଦରେ-
ଦିତ୍ୟା କର୍ଣ୍ଣ ବିଭୀଷଣସ୍ୟ ବଚନଂ କ୍ରୁଦ୍ଧ୍ୟସ୍ତଦା ରାବଣଃ '

ବଦ୍ଧ୍ୱା ବାଲାଧିବଲ୍ଲଶ୍ଚଂ ବହୁତରୈର୍ବ୍ୱା ସୋଭଗ୍ରାଜ୍ୟପ୍ଲୁ ତୈ-
ର୍ଦତ୍ତ୍ୱା ବହ୍ନି ମହାପଶୂଙ୍କନୂମତଃ କର୍ତ୍ତୁଂ ବିରୂପଂ ବପୁଃ । ୧୩ ।

ବିଭୀଷଣ ବାକ୍ୟେ ମନେ ଭାବେ ଦଶାନନ । ଦୂତ ବଧ ଉଚିତ ନ ହୁଇ କଦାଚନ ॥ ହନୂମନ୍ତକୁ ମାରିବା କଥା ଛାଡ଼ିକରି । କ୍ରୋଧେ ଆଜ୍ଞାଦେଲା ଦୂତମାନଙ୍କୁ ହକାରି । ଅରେ ଦୂତ ଏ କପିର ଲାଙ୍ଗୁଡ଼େ ବସନ । ଗୁଡ଼ାଅଇ ଦେଲେ ଅଗ୍ନି ଲଗାଅ ବହନ ॥ ରୂପ କୁତ୍ସିତ କରି ଛାଡ଼ିଦିଅ ଯାକୁ । ଯାଇଣ କହିବ ଦେଇ ତାହାର ପ୍ରଭୁଙ୍କୁ ।୧୩।

ରାବଣେହନୂମତୋଚୁକ୍ତପ୍ରତ୍ୟୁକ୍ତି ।

ଅଗ୍ନିଃ ପ୍ରଜ୍ୱଳିତଃ ସମାଦ୍ଦଶ ଭୃଶଂ ବର୍ଷନ୍ତୁ ଧାରାଧରା
ବାତୋ ବ ଭ ନ ବାସ୍ୟପି ଧ୍ରୁବମମୀ ଦେବ ସ୍ତବାଜ୍ଞାବଶଃ ।
ଇତ୍ଥଂ ସର୍ବ୍ୟଥ ବୋଭିରୈହନୂମତୋ ଲଙ୍କାପତେର୍ମାନସ
ଦଗ୍ଧଂ ଯାତୁଗଣାନ୍ତେମେଣ ଚ ତଥା ଦଗ୍ଧାପି ଲଙ୍କାପୁରୀ । ୧୪।

ପ୍ରଜ୍ୱଳିତ ହେଲା ଅଗ୍ନି ରାବଣ ଆଜ୍ଞାରେ । ଦେଖି ହନୂମନ୍ତ ବାରି ବରଷ ବୋଇଲେ । ବାୟୁ ବୁହାଇଲେ ଲଙ୍କପତି ଆଜ୍ଞାଦେଇ । ମନାକଲେ ବାୟୁସୁତ ମନା ନ ମାନଇ । ଦେଖିତା ବୋଲଇ ହନୁ ଅରେ ଦଶାନନ । ବଶ କରି ରଖିଅଛୁ ସର୍ବ ଦେବଗଣ । ହନୂମନ୍ତର ବଦନୁ ଅଗ୍ନି କରି ଜାତ । ଦହନ କରଇ ବୁଲି ପବନର ସୁତ । ଗୃହେଁ ଲଙ୍କପତି ଅତି ଆକୁଳହୃଦୟେ । ଲଙ୍କା ପୋଡୁଅଛି ବୋଲି ଏଣେ ତେଣେ ଗୃହେଁ ।

ଅସାବସରେ ଜନାନାଂ ବିତର୍କା ॥

ଅବ୍ଧିଃ କିଂ ବଡ଼ବାନଲେ ନ ତରଣିର୍ବିମ୍ବେନ କିଂବୋଦ୍ଧତୋ ।
ମେଘଃ କିଂ ଚପଲାଞ୍ଚଲେନ ଶଶିଭୃତ୍ କିଂ ଭାଲନେତ୍ରେଣ ବା ।
କାଲଃ କିଂ ଷସୁବହ୍ନି ନେତ୍ର ଧନୁଷା ଧାରାଧରଃ କିଂ ମହାନ୍
ମେରୁଃ କିଂ ଧ୍ରୁବମଣ୍ଡଳେନ ସକପିଃ ପୁଚ୍ଛେନ ଖେ ରାଜତେ ।

ମିଳିଣ ସର୍ବ ଅଥିର କରନ୍ତି ବିଚାର । ସମୁଦ୍ର ମଧ୍ୟରେ ଜଳେ କି ବଡ଼ବାନଳ । ମେଘେ ବିଜୁଳି କି ସୂର୍ଯ୍ୟେ ବିମ୍ବପରି ଦିଶେ । ଚନ୍ଦ୍ର କି

ଝିଲ ନେଦେଖି ଅକାଟଣ ପ୍ରକାଶେ । କାଳକ ପ୍ରଳୟ କଲ ପ୍ରାୟ ଦିଶୁଅଛି । ଇନ୍ଦ୍ରଧନୁ ପରି ଶୋଭା ଧରଣ କରନ୍ତି । ଶିଖା ଧୂବମଣ୍ଡଳକୁ ଦିଶେ ମେରୁ ପରି । ଯେପେ ହନୁ ଅକାଶରେ ବାୟୁଗତ କରି ।

ହନୁମାନ ବଦନ୍ତ ।

ରାମାଗ୍ରେ ନତ ଲକ୍ଷ୍ମଣସ୍ୟ ପୁରତଃ କୃତ୍ୱା ଶରୈର୍ବାନଂ
ସୀତା ନିଷ୍ପପଦେପମାନହୃଦୟା ଚୌର୍ଯ୍ୟେଣ ନୀତା ତ୍ୱୟା ।
ପ୍ରତ୍ୟକ୍ଷଂ ତବ ଦୁର୍ମତେ ବରଗୃହୈଃ ପୂର୍ଣ୍ଣା ଜନୈର୍ବୃତା
ସ୍ୱର୍ଣ୍ଣାଙ୍ଗୁ ଟିକରନ୍ନମୌକ୍ତିକମୟୀ ଲଙ୍କା ମୟା ଦହ୍ୟତେ । ୧୭

ବୋଲେ ହନୁମନ୍ତ ଅରେ ଅଧିର ଦଶଶିର । ଗ୍ରେଗଇ ଅଣିଲୁ ନାରୀ ନ କରି ସମର । ତରଳ ହୃଦୟା ଭୟାତୁର ଯେ ଜାନକୀ । ନିର୍ଲ୍ଲଜ ପଣରେ ଅଣିଅଛୁ ତାଙ୍କୁ ରଖି । ଏହହେତୁ ପୋଡ଼ିଦେବ ଏ ଲଙ୍କା ଭୁବନ । ସୁବର୍ଣ୍ଣ ସ୍ଫଟିକେ ଯାହା କରିଛୁ ନିର୍ମାଣ । ୧୬ ।

ଉଲ୍କାମୁଖାନାଂ ବସୁବହ୍ନିଲାନାଂ ଜଳଂ ଜଳଂ ବ୍ୟାହରତାଂ ମୁଖେଭ୍ୟଃ
ତପ୍ତ୍ରଚ୍ଛବହ୍ନିର୍ଦ୍ୱିଗୁଣପ୍ରଭାବୋ ଦଦାହ ଲଙ୍କାମନ୍ତୁଲୋକ ତାର୍ଚ୍ଚିଃ ।୧୭।

ଉଲ୍କାପ୍ରାୟ ଅଗ୍ନିକଣା ପଡ଼ଇ ମୁଖରେ । ଦେଖି ଭୟପାଇ ଉଠି ରାକ୍ଷସ ସକଳେ । ଜଳ ଅଣି ସମୁଦ୍ରରୁ ଅଗ୍ନିରେ ପକାଇ । ଧାଇଁ ଏଣେ ତେଣେ ସର୍ବେ ଦିଅନ୍ତି ଲିଭାଇ । ତାହାଦେଖି ହନୁ ନିଜ ଲାଞ୍ଜୁ ଅଗ୍ନି-କାଢ଼ି । ଦ୍ୱିଗୁଣ କରଣ ଘର ଦ୍ୱାର ଦିଏ ପୋଡ଼ି । ୧୭ ।

ରାବଣଃ ଜନାନ୍ ପ୍ରତ୍ତ

ଶୀଘ୍ରଂ ରକ୍ଷତ ବାଜିବା ରଣଗୃହଂ ଶଯ୍ୟାଗୃହଂ ଶ୍ରୀଗୃହଂ
ରତ୍ନା ଗାରଧନାଳୟୌ ବଳବତା ବାତେନ ଦୀପ୍ତୋଽନଳଃ ।
ଧୂମବ୍ୟାକୁଳନେତ୍ରବକ୍ତ୍ର ଯୁବତୀବକ୍ଷସ୍ଥଳା ତାଡ଼ନା-
ନ୍ନିବାଳକବୃଦ୍ଧଭୀତବନିତାହାହାରବଃ ଶ୍ରୂୟତେ । ୧୮ ।

ଅସ୍ତ୍ରରଙ୍କୁ ଗୃହଁ ଅଜ୍ଞାଦେଲ ଦଶାନନ । ହସ୍ତୀ ଘୋଡ଼ାଶାଳ-ମାନ ରଖାଅ ବହନ । ରତ୍ନାଗାର ଶୟନମନ୍ଦିର ନାରୀଙ୍କର । ରଖ ରଖ

ବାୟୁବଳେ ଜଳଇ ଅନଳ । ଧୂଆଁରେ ନାରୀଙ୍କ ନେତ୍ର ହୋଇଗଲା ବନ୍ଧ ହୃଦେ କର ଛାଡ଼ି ହାହାକାର କରି କାନ୍ଦ । ବାଳକ ବୃଦ୍ଧ ବନିତା କରନ୍ତି ରୋଦନ । ଦେଖି ହୃଦ ମୋର ଘଣ୍ଟି ହେଉଅଛି ପୂଣି । ୯୮ ।

ଶ୍ରୀଲଙ୍କାମବଲୋକ୍ୟ ଘୋରଦହନୈଃ ସଂଦହ୍ୟମାନାଂ ଭୃଶଂ
ପ୍ରୋବାଚେତ୍ତି ବଚାଂସି ସର୍ବବଦନୈସ୍ତୋୟାର୍ଥୀ ଲଙ୍କେଶ୍ୱରଃ ।
ଅଗ୍ରେ ନୀରଧିରମ୍ବୁଧିର୍ନିଧିରପାଂ ପାଥୋନିଧିଃ ସଂଭ୍ରମା-
ଦମ୍ଭୋଧିର୍ଜଲଧିଃ ପୟୋଧିରୁଦଧିର୍ବାରାଂନିଧିର୍ବାରିଧିଃ । ୯୯ ।

ଲଙ୍କାପୁର ଦଗ୍ଧ ଦେଖି କହେ ଦଶାନନ । ଦଶମୁଖେ କରେ ଜଳେ ପ୍ରାର୍ଥନା ବହନ । ଅଗ୍ରେ ଅମ୍ବୁଧି ପୟୋଧି ପଥୋନିଧି ଆଦି । ଉଦଧି ଯେ ବାରିନିଧି ଅପାଧି ବାରିଧି । ଯେବ ଅଛୁ ଯେଉଁଠାରେ ଆଣ ବେଗେ ଜଳ । ଏ ପ୍ରଳୟ ଅଗ୍ନିକୁ ଯେ ଲିଭାଅ ସତ୍ୱର । ୯୯ ।

ନିକୁମ୍ଭକୁମ୍ଭୋଦରକୁମ୍ଭକର୍ଣ୍ଣୈ କୁମ୍ଭୈରଲଂ କେବଳନାମଧେୟୈଃ ।
ମନ୍ଦୋଦରୀମନ୍ଦିରପାବକୋଽୟଂ ପାନୀୟ ମାନୀୟ ନ କୈର୍ବିନୀତାଃ ।

ବିକଳେ କହେ ରାବଣ ଡାକି କୁମ୍ଭୋଦରେ । କୁମ୍ଭ ନିକୁମ୍ଭାଦି କୁମ୍ଭକର୍ଣ୍ଣ ଆଦିବୀରେ । ଏତେ ବଡ ନାମବହି କିସ କର ତୁମ୍ଭେ । ମନ୍ଦୋଦରୀ ପୁର ଅଗ୍ନି ଦହୁଅଛି ଏବେ । ଜଳରେ ଯାଅ ବହନ ନିଭାଅ ଅନଳ ଦେଖୁଁ ଦେଖୁଁ ପୋଡୁ ଅଛୁ ମନ୍ଦୋଦରୀ ପୁର । ୧୦୦ ।

ଅତ୍ରାବସରେ ହନୂମତ ଶ୍ଳୋକଷ୍ଟା ।

କାପେୟାନ୍ୟକରୋଦସୌ କବଳିତ ବ୍ରଧ୍ନାମୀ ସଦ୍ୟସ୍ତୁଟେ-
ଦ୍ଦନ୍ତାନ ପ୍ରବମୁଗ୍ଧମୈଥିଳସୁତାଜୀବାତୁଭୂତାନ ଚ ।
ଭଗ୍ନାଶେଷଭଟାନ ଉଷ୍ଟ୍ରିତଦଶଗ୍ରୀବାଣୀ ବହ୍ନିନଳ-
ଜ୍ୱଳାପ୍ରଜ୍ୱଳିତସ୍ୱବାଳଧିନତାନିର୍ଦ୍ଦଗ୍ଧଲଙ୍କାନ ଚ । ୧୦୧ ।

ଭାଙ୍ଗି ମଧୁବନ ହନୁ ଲଙ୍କାପୋଡ଼ି କରି । ବଡ଼ ବଡ଼ ରାକ୍ଷସମାନଙ୍କ ନାଶକରି । ଉପାୟ କରି ଆପଣା ବନ୍ଧନ ଫିଟାଇ । ରାବଣକୁ ଅନାଇ

ବହୁତ ଗାଳିଦେଇ । ଲଙ୍କାରେ ସମସ୍ତ ନଗ୍ର ଘର ଦ୍ୱାରମାନ । ପୋଡ଼ି ଜାନକୀଙ୍କ ପାଶେ ପ୍ରବେଶ ହେଲେ । ତାରତା ପାଇ ଜାନକୀ ଜୀବନ ପାଇଲେ । ହନୁମନ୍ତଙ୍କୁ ବହୁତ କଲ୍ୟାଣ ଦେଲେ । ୧୦୧ ।

ତତୋଽଶୋକବନେ ବାୟୁପୁତ୍ରଃ ସୀତାନ୍ତିକେଽବ୍ରବୀତ୍ ।
ଲଙ୍କା ଦଗ୍ଧା ମୟା ଦେବି ବଦାସ୍ୟୋ ଯାସ୍ୟତାମିତି । ୧୦୨ ।

ଅଶୋକ ବନରେ ସୀତା ପାଶେ ହନୁମାନ । କରଯୋଡ଼ି ପାଦେ ପଡ଼ି ବୋଲଇ ବଚନ ॥ ହେ ମାତ ଶିଭର୍ଯ୍ୟେ ଲଙ୍କାନଗ୍ର ପୋଡ଼ି ଦେଲି । କରନ୍ତୁ ବଦାସ୍ୟ ଯିବି ଏହିକ୍ଷଣି କାଳି ॥ ୧୦୨ ।

ଅଥ ପ୍ରଥମମଭିଜ୍ଞାନଂ ।

ସୀତା ଧୂମା କୁଳଂ ଦୃଷ୍ଟ୍ୱା କପିମାଶ୍ୱାସ୍ୟ ଗୃହକୃତ୍ ।
ଉଦସ୍ୟ ଚ ଶିରୋରତ୍ନଂ ବଜ୍ଞାନଂ ସ୍ୱାମିନେ ଦଦୌ । ୧୦୩ ।

ସୀତା ଜାଣିଲେ ହନୁର ବିକଳ ହୃଦୟ । ଆଶ୍ୱାସି ବଚନ କହି ତାଙ୍କୁ କଲେ ଅଭୟ । ମଥାମଣି କାଢ଼ି ହନୁମନ୍ତ ହସ୍ତେ ଦେଲେ । ସ୍ୱାମିଙ୍କ ସାକ୍ଷାତେ ଦିଅ ବୋଲି ସେ କହିଲେ । ୧୦୩ ।

ଅଥ ଦ୍ୱିତୀୟମଭିଜ୍ଞାନଂ ।

ରକ୍ଷୋଽଭିଗୃନ୍ନଚନ୍ଦ୍ରପିଣ୍ଡମିବସ୍ତନଂଯୋ
ଦେବ୍ୟା ବିଦେହଦୁହିତୁର୍ବିଦଦାର କାକଃ ।
ଐଷିକମସ୍ତ୍ରମଥିନ ତସ୍ୟ ତଦା ତମକ୍ଷଣ
କାଣୀଚକାର ଚରମୋ ରଘୁବ୍ରଜଦନ୍ତଃ । ୧୦୪ ।

ଅଭୁର କଥା ଏ ପ୍ରାଣନାଥଙ୍କୁ କହିବ । ଯହିଁରେ କି ତାଙ୍କ ମନେ ବିଶ୍ୱାସ ହୋଇବ ॥ ଥିଲୁଁ ଯେବେ ଚିତ୍ରକୂଟ ଗିରିପରେ ଆମ୍ଭେ । କାକ ଆସି ବିଦାରିଲା ସ୍ତନ ମୋର ଯେବେ । ତାହା ଦେଖି କୋପେ ଅତି ଦେବର ଲକ୍ଷ୍ମଣ । ଐଷିକ ବାଣେ ଫୋଡ଼ିଲେ କାକର ନୟନ ॥

ଅଥ ତୃତୀୟମଭିଜ୍ଞାନଂ ।

ମନଃଶିଳାୟାସ୍ତିଲକଂ ତଥାମେ
ଗଣ୍ଡସ୍ଥଲେ ପାଣିତଲେନ ଘୃଷ୍ଟଂ ।

ସ୍ତଚେରେତ ସଙ୍କ୍ଷାନମିଦଂ ତୃଣସ୍ଥଂ
ଜୀବାମ୍ୟହଂ ବାନର ମାସମାତ୍ରଂ । ୧୦୫ ।

ଅଙ୍ଗୁରି କଥାଏ ମନେ ପଡ଼ଇ ମୋହର । ଲିଭିଗଲା ତାତା ଯେବେ ଲାଗି ଗଣ୍ଡେ କର । ଏ ସଙ୍କ୍ଷାସକଥାମାନ ପ୍ରଭୁଙ୍କୁ କହିବ । ତେବେ ତାହାଙ୍କର ମନ ପ୍ରବୋଧ ହୋଇବ । ଅଙ୍ଗୁରି କଥାଏ ଏକ ମାସ ମଧ୍ୟେ ଯେବେ । ନ ଦେଖେ ପ୍ରଭୁଙ୍କୁ ପ୍ରାଣ ତେଜିବି ମୁଁ ତେବେ । ୧୦୫ ।

ତତୋ ହନୁମାନ୍ ।

ଦଗ୍ଧ୍ୱା ଲଙ୍କାମଶଙ୍କଂ ଜନକନୃପସୁତାଂ ତାଂ ସମାଶ୍ୱାସ୍ୟ ଭୂୟଃ
ପ୍ରତ୍ୟୁଲ୍ଲଙ୍ଘ୍ୟାମ୍ବୁରାଶିଂ ପୁନରପି ମିଳିତୋ ଜାମ୍ବୁବାନମୁଖ୍ୟଯୂଥେ ।
ତେଭ୍ୟଃ ସର୍ବଂ ନିବେଦ୍ୟ ପ୍ରମୁଦିତହୃଦୟୈସ୍ତୈଃସମଂ ସନ୍ନିବୃତ୍ତଃ
ସୁଗ୍ରୀବପ୍ରେମପାତ୍ରଂ ମଧୁବନମଥ ସବ୍ୟକ୍ତଭୋଗଂ ସ ଚକ୍ରେ ।୧୦୬।

ଦହନକରି ଲଙ୍କା ବୀର ପବନ କୁମର । ସୀତାଙ୍କ ସନ୍ଦେଶ ଘେନି ବାହାର ସତ୍ୱର । ଜାନକୀ ପ୍ରବୋଧି ଗଲା ସମୁଦ୍ରକୁ ଡେଇଁ । ଯୂଥପତିଙ୍କ ସନ୍ନିଧେ ହୁଏବେଶିଲା ଯାଇଁ । ସମସ୍ତ ବୃତ୍ତାନ୍ତହନୁ ତାହାଙ୍କୁ କହିଲେ । ଶୁଣି ସକଳେ ଆନନ୍ଦ ମନେ ବାହାରିଲେ । ସୁଗ୍ରୀବଙ୍କ ଥିଲା ଏକ ତୋଟା ମଧୁବନ । ହନୁମନ୍ତ ଅଙ୍ଗଦାଦି ବୀର ସାତଜଣ । ସେ ବନେ ପଶିଣ ଫଳ ମୂଳ ସବୁ ଖାଇ । ବୃକ୍ଷମାନ ଭାଙ୍ଗି ବାହାରିଲେ ତୋଷ ହୋଇ । ୧୦୬ ।

ତୈଃ ପିବଦ୍ଭିରଭିତୋ ମଧୁଚଣ୍ଡଂ
ବାରିତୋଽପି ନିହତୋ ମହାବଳୈଃ ।
ରକ୍ଷୋକ ଦଧିମୁଖୋଽବଧାରିତଃ
ସ ପ୍ଲବଙ୍ଗପତିସନ୍ନିଧିଂ ଯଯୌ । ୧୦୭ ।

ମଧୁବନ ଭାଙ୍ଗି ସର୍ବ ମଧୁରସ ପିଇ । ରକ୍ଷକମାନଙ୍କୁ ବହୁ ମାଡ଼ ଗାଳି ଦେଇ । ତା ଦେଖିଣ ଦଧିମୁଖ ତହୁଁ ଚଳିଗଲା । ସୁଗ୍ରୀବଙ୍କ ଅଗେ ଯାଇଁ ବାରତା କହିଲା ।୧୦୭।

ଏଷଶ୍ରୀଲହନୂମତା ବିରଚିତେ ଶ୍ରୀମନ୍ମହାନାଟକେ
ଧୀରଶ୍ରୀଯୁତରାମଚନ୍ଦ୍ରଚରିତେ ପ୍ରତ୍ୟୁଦ୍ଧୃତେ ନୃପେନ୍ଦ୍ରେଣ ।
ମିଶ୍ରଶ୍ରୀମଧୁସୂଦନେନ କବିନା ସନ୍ଦର୍ଭ୍ୟ ସଜ୍ଜୀକୃତେ
ସୀତାଂ ପ୍ରାପ୍ୟ ସମାଗତେଽପି ଗତବାନଙ୍କୋ ମହାନ୍ପଞ୍ଚମଃ

ଏ ମହାନାଟକ ହନୁମନ୍ତ ବିରଚିତ । ଏଥିରେ ବର୍ଣ୍ଣିତ ବୀର ଶ୍ରୀରାମଚନ୍ଦ୍ର ॥ ମିଶ୍ର ଶ୍ରୀମଧୁସୂଦନଙ୍କର ସଜ୍ଜୀକୃତ । ସୀତା ସନ୍ଦେଶ ଆଣିଲେ ବୀର ହନୁମନ୍ତ ॥ ପଞ୍ଚମ ଅଙ୍କ ଏଠାରେ ସମାପତ ହେଲା । ଶ୍ରୀରାମସୁନ୍ଦର ଚିନ୍ତାମଣି ଗୀତ କଲା ।

ଇତି ଶ୍ରୀମହାନାଟକେ ପଞ୍ଚମୋଽଙ୍କଃ ।



# ଷଷ୍ଠ ଅଙ୍କ

ଜୟତୁ ଜୟତୁ ଦେବଃ ସୁଗ୍ରୀବଂ ପ୍ରଣମ୍ୟ ଚ
ଦଧିମୁଖଃ ।

ବନ୍ଧ୍ୟଂ ଭୂମିଧରଂ ତଦନ୍ତରବନଂ ତଦ୍ଭୋକ୍ତୃମିଚ୍ଛାକୃତଂ
ତସ୍ମା ଧୃଷ୍ଟିତଦେବତାପରିକରଂ ତତ୍ପ୍ରୀତିଦତ୍ତଂ ଫଲଂ ।
ବୈଦେହ୍ୟାମଭିତୋ ବିଚିନ୍ତ୍ୟ କପୟଃ ସୁଗ୍ରୀବସଂପ୍ରେଷିତା-
ସ୍ତେ ହନ୍ତ ପ୍ରବିଶନ୍ତି ଯାନ୍ତି ଦଧତି ଧାୟନ୍ତି ଖାଦନ୍ତି ଚ । ୧ ।

ଜୟ ଜୟ ଦେବ ବୋଲି କରେ ନମସ୍କାର । ଶୁଣ କିଷ୍କିନ୍ଧ୍ୟାନାୟକ ବାନରଈଶ୍ୱର । ଦକ୍ଷିଣକୁ ଯାଇଥିଲେ ଯେଉଁ ଦୂତଗଣ । ସେହି ଆସିଲେ କରି ଜାନକୀ ଅନ୍ୱେଷଣ । କରି ଆରୋହଣ ବନ୍ଧ୍ୟ ପର୍ବତ ଉପରେ । ମଧୁବନ ଫୁଲ ଫଳ ଭାଙ୍ଗିଣ ଖାଇଲେ । ପର୍ବତ ଉପରେ ଥିଲେ ଯେତେ ଦେବଗଣ । ପୂଜାବିଧି କଲେ ତାଙ୍କୁ ସନ୍ତୋଷ ହୋଇଣ । ପ୍ରସନ୍ନ ହୋଇ ଦେବତା ଦେଲେ ଯେଉଁ ଫଳ । ସେ ଫଳକୁ ବାଣ୍ଟି କରି ଖାଇଲେ ସକଳ । ୧ ।

ହନୂମଦାଗମନଜ୍ଞାନତୋ ରମସ୍ୟ
ସୁଗ୍ରୀବଂ ପ୍ରତି ବଚନଂ ।

ମାସମେକଂ ଗତେ ଲଙ୍କାଂ ହନୂମାନ୍ ନିବର୍ତ୍ତିତେ ।
ଚିରଂ ଦୃତସ୍ୟ କଲ୍ୟାଣଂ ଯଦ୍ଦବନ୍ଧୋ ନ ତିଷ୍ଠତି । ୨ ।

ମାସ ଏକ ଗତ ହେବା ଦେଖି ରଘୁପତି । ସୁଗ୍ରୀବକୁ ତାଙ୍କ ପାଶେ ବଚନ ବୋଲନ୍ତି । ଏତେଦିନ ହେଲା ହନୂମାନ ଅବା ଦୂତେ । ଫେରି ନ ଅଇଲେ ଆଜଯାଏ କି ନିମନ୍ତେ । ବଳବନ୍ତ ଦୂତଙ୍କ ହୁଁଏ କାର୍ଯ୍ୟ-ମାନ ସିଦ୍ଧି । କେହି ଯଦାପି ଏହାଙ୍କୁ ରଖିଥାଏ ବାନ୍ଧି । ୧ ।

ଶ୍ରୀରାମଂ ପ୍ରତି ସୁଗ୍ରୀବଃ ଶ୍ରୁତବୃତ୍ତାନ୍ତଃ ।

ଅଦ୍ୟାସ୍ମାକଂ ମଧୁବନମିତ୍ତ୍ ସ୍ଥାତ୍ଭୁଜ ମେକଭୋଗ୍ୟଂ
ଭଙ୍କ୍ତ୍ୱା ଭୁଙ୍କ୍ତେ ପବନତନୟ ସ୍ତେଦଯୌ ଲବ୍ଧକାର୍ଯ୍ୟଃ
ସଦ୍ୟଃ ପ୍ରତ୍ୟାଗତଇବ ତତ୍ପ୍ରୋଚିତତ୍ଥମାଲାପଭ୍ରାଜ-
ସ୍ତ୍ରଦ୍ୱାସ୍ତୁତଃ ସ୍ମିତକଳକଳୋନ୍ନୀତହର୍ଷୋ ହନୂମାନ୍ । ୩ ।

ଶୁଣିଥିଲୁ ଦଧିମୁଖ ଠାରୁ ସୁଗ୍ରୀବର । ଶ୍ରୀରାମଙ୍କ ଆଗେ କହେ ବଚନ ମଧୁର ॥ କାର୍ଯ୍ୟସିଦ୍ଧି ହେଲା ବୋଲି ଭାବଇ ମୁଁ ମନ । ବାହୁଡ଼ିଣ ଆସି କରି ବୀର ହନୂମାନ । ଅମ୍ଭର ହେବାର ସ୍ଥାନ ଏକ ବନ ଥିଲା । ସେ ବନେ ପଶିଣ ଫଳ ଭାଙ୍ଗିଣ ଖାଇଲା ॥ ଏହି କଥା ମାନ ସବୁ ହୋଇନ୍ତେ କୁହାକୁହି । ପ୍ରବେଶ ହୋଇବେ ଏହିକ୍ଷଣି ରଘୁସାଇଁ । କହୁଁ କହୁଁ କଳକଳା ନାଦ ଶୁଭେ ଦୂରେ । ଆସୁଛନ୍ତି ହନୂ ଅବା ଆନନ୍ଦ ମନରେ । ୩ ।

ତତୋ ମରୁସ୍ମିନ୍ନତ ଗୁରୁକେଶରଃ
ପ୍ରସନ୍ନତାରାଧିପମଣ୍ଡଳାଗ୍ରଣୀଃ ।
ବଯୁକ୍ତରମାତ୍ତୁରଦୃଷ୍ଟି ବାକ୍ଷିତୋ
ଯଥା ବସନ୍ତୋ ହନୂମାଂସ୍ତଥାଗତଃ । ୪ ।

ଏମନ୍ତ ବେଳେ ପ୍ରବେଶ ହେଲ ହନୂମନ୍ତ । କି ଜାଣି ବସନ୍ତ ଋତୁ ହେଲ ଉପଗତ । ପବନ ବାତେ ଦୋହଲେ ତା ଲୋମ ଲଙ୍ଗୁଳ । ସମସ୍ତ ସଇନ୍ୟ ମଧ୍ୟେ ସେହି ଶ୍ରେଷ୍ଠବଳ । ଜାନକୀ ବିଚ୍ଛେଦେ ପ୍ରଭୁ ଅତି ଛନ୍ନ ଛନ୍ନ । ଦେଖୁଛନ୍ତି ଅତୁରରେ ଫିଟାଇ ନୟନ ॥

ବସନ୍ତ ପକ୍ଷେ ।

ଯେମନ୍ତ ବସନ୍ତ ଋତୁ କଲେ ଅଗମନ । ତରୁଲତା ପଲ୍ଲବରେ ହୋଇ ଶୋଭିବନ । ପାଇ ଚନ୍ଦ୍ରମା କିରଣେ ବିରହିଣୀ କୁଳ । ଅତୁର ହୋଇ ଦେଖନ୍ତି ହୋଇଣ ଚଞ୍ଚଳ ।୪।

ହନୁମାନ୍ ସ୍ୱଗତଂ ।

ପୀତୋନାମ୍ବୁନିଧିର୍ନକୌଣପପୁରୀ ଚୂର୍ଣ୍ଣୀକୃତା ତତ୍କ୍ଷଣା
ନ୍ନାନୀତାନି ଶିରାଂସି ରାକ୍ଷସପତେର୍ନାନାୟି ଧାତା ମୟା ।
କିଂ କୃତ୍ୱା ରଘୁନନ୍ଦନସ୍ୟ ପୁରତଃ ସ୍ଥାସ୍ୟାମି କିଂ ବା ପୁନ
ର୍ବକ୍ଷ୍ୟାମୀତି ବିଚିନ୍ତୟନ୍ ସ ହନୁମାନ ଶ୍ରୀରାମପାର୍ଶ୍ୱଂ ଗତଃ ।୫।

ଏ ସମୟେ ହନୁମାନ ବିଚାରେ ମନରେ । କି କହିବି ଅବା ଯାଇଁ ରାମଙ୍କ ଅଗରେ ॥ ସମୁଦ୍ରର ପାଣିକତ ପିଇ ନାହିଁ ମୁହିଁ । ଅସୁରର ନଗରକୁ ଚୂର୍ଣ୍ଣ କରି ନାହିଁ ॥ ରାବଣର ଦଶମୁଣ୍ଡ ଅଣିଲି ଛିଣ୍ଡାଇ । କି ଅବା ଅଣିଲି ମୁହିଁ ସୀତାଙ୍କୁ ଛଡ଼ାଇ ॥ କି ଦେଇ କହିବି ମୁହିଁ ପ୍ରଭୁଙ୍କ ସମ୍ମୁଖରେ । ଏତେ ଭାଳି ପ୍ରବେଶିଲା ରାମଙ୍କ ପାଶରେ ।୫।

ରାମହନୁମତୋରୁକ୍ତପ୍ରତ୍ୟୁକ୍ତୀ ।

ହଂହୋ ମାରୁତନନ୍ଦନୋ ଦଶ ଦିଶୋ ଦୃଷ୍ଟା ତ୍ୱୟା ଜାନକୀ
ଦୃଷ୍ଟା ଜୀବତି ଜୀବତି ପ୍ରିୟତମା ମାଂ ଶୋଚତେ ଶୋଚତେ ।
ମଦ୍ୱିଚ୍ଛେଦକୃଶା କୃଶା ବଦତି କିଂ ହା ରାମ ହା ଲକ୍ଷ୍ମଣାଃ-
ଭିଜ୍ଞାନଂ ପ୍ରହିତଂ କିମସ୍ତି ବିତରାମ୍ୟସ୍ତ୍ରେ୍ୟଷ ଚୂଡ଼ାମଣିଃ । ୬ ।

ଏହା ଭାବି ପ୍ରବେଶିଲେ ଶ୍ରୀରାମଙ୍କ ଅଗେ । ହନୁକୁ ଦେଖିଣ ରାମ ପଚାରିଲେ ବେଗେ । ଦେଖିଲୁଟି କି ଜାନକୀ ମୋର ହନୁମନ୍ତ । ଜୀବନରେ

ଅଛନ୍ତି କି ଫେଡ଼ିକନ୍ଧ ସତ । ଶୁଣି ହନୁ ବୋଲେ କଷ୍ଟେ ପ୍ରାଣେ ଛନ୍ତି ସତ । ବେଦନ କରନ୍ତି ତୁମ୍ଭପାଇଁ ଦିବାରାତ ॥ ପୁଣି ପୁଚ୍ଛିଲେ ଶ୍ରୀରାମ ମୋ ବଚ୍ଛେଦେ ଦେହ । ଶୁଖି ଯାଇଅଛୁ କିନା ମୋର ଆଗେ କହ । ଅଞ୍ଜନା ତନୟ ବୋଲେ ପ୍ରଭୁ ରଘୁନାଥ । ତୁମ୍ଭର ବରହେ ଶୁଖି ଅଛନ୍ତି ଯଥାର୍ଥ । ହା ରାମ ହା ରାମ ହା ହା ଲକ୍ଷ୍ମଣ ଲକ୍ଷ୍ମଣ । ବସିକରି ଭାବନା କରନ୍ତି ଅନୁକ୍ଷଣ । ପୁଚ୍ଛିଲେ ଶ୍ରୀରାମ ଆଣି ଅଛ କି ସନ୍ତକ । ଶୁଣି ହନୁ ବୋଲେ ଏହୁ ମଥାମଣି ଦେଖ । ୬ ।

ଚୂଡ଼ାମଣିଂ ପ୍ରାପ୍ୟ ରାମଃ ।

କଣ୍ଠେ ସନ୍ତନୁତେ ଚିରଂ ଚିରମୁରଃପୀଠେ ନିବେଶ୍ୟ ପ୍ରିୟ
ସ୍ପର୍ଶୋଲ୍ଲାସଭରଂ ସମାକଲୟତ ପ୍ରେମ୍ଣା ଚିରଂ ପୃଚ୍ଛତ ।
ସ୍ୱାମିନ୍ୟାଃ କୁଶଳଂ ତବେତ ପୁରତଃ ପଶ୍ୟ ଶ୍ରୁଣୋସି ପୃତୋ
ନିମ୍ନାଦେକ୍ଷଣୀମୀକ୍ଷତେ କ୍ଷଣମମୁଂ ଚୂଡ଼ାମଣିଂ ରାଘବଃ । ୭ ।

ମଥାମଣି ଦେଖି ରାମ କଣ୍ଠ ପାଶେ ନେଇ । ଅତି ସ୍ନେହଭରେ ହୃଦେ ରଖିଲେ ଲଗାଇ । ପଚାରନ୍ତି ସେ ମଣିକି ପ୍ରେମେ ହୋଇ ଭୋଳ । ସ୍ୱାମିନୀଙ୍କର ତୁମ୍ଭର ସବୁଠି କୁଶଳ । କହୁଁ କହୁଁ ଅଶ୍ରୁଜଳ ନୟନୁ ଗଳଇ । ଏତେ ଦିନେ ତୋ ବଚ୍ଛେଦ ଘଟାଇଲା ବିହି । ଆରେ ମଥାମଣି ତୁମୋ ପ୍ରିୟା ଶିରେ ରହୁ । ମୋ ବିକଳ ଦେଖି ପଦେ କଥା ଯେ ନ କହୁ । ୭ ।

ଅଥ ଦ୍ୱିତୀୟବୃତ୍ତାନ୍ତାଭଞ୍ଜନଂ ।

ମନଃଶିଳାସ୍ୟାସ୍ତିଲକଂ ସ୍ୱଚ ଗଣ୍ଡସ୍ଥଳେ ହ୍ୟୟା ।
ସଘୃଷ୍ଟଂ ଜାନକ୍ୟା ବକ୍ଷଃସ୍ପର୍ଶୋନ୍ନଣୀ କୃତଃ ଖଳଃ ।

ହନୁମନ୍ତ ବୋଲେ ପୁଣି ହେ ରଘୁନନ୍ଦନ । ଲିଭିଥିଲା ଗଣ୍ଡସ୍ଥଳେ ଶୀତା କର ମନ । ଦିନେ ବକ୍ଷସ୍ଥଳେ ସୀତାଙ୍କର ଛୁଇଁ କାକ । ପଳାଇଲେ ଚକ୍ଷୁ ଫେଡ଼ିଛ ହେ ରଘୁନାୟକ ।୮।

ଶ୍ରୀରାମେ ହନୁମନ୍ତ ମାଲିଙ୍ଗିତୁମୁପକ୍ରାନ୍ତେ
ହନୂମାନ୍ ।
ପୀତୋନାମ୍ବୁନିଧି ର୍ନ ରାବଣପୁରୀ ନାକ୍ଷିପ୍ୟ ଚୂର୍ଣ୍ଣୀକୃତା
ନାନୀତାନୀ ଶିରାଂସି ରାକ୍ଷସପତେ ନାନାୟି ସୀତା ମୟା ।
ଅଶ୍ଳେଷାର୍ପଣପାତ୍ରତୋଷକମହଂ ନାହାମୀ ବାତ୍ତିହରେ
କାର୍ଯ୍ୟନିତ୍ୟମିଲ ମୃତୋ ବିଜୟତେ ପ୍ରହ୍ଲାଦୟନ୍ ରାଘବଂ ।୯।

ଆଲିଙ୍ଗନ କଲେ ତହୁଁ ଶ୍ରୀରାମ ହନୁକୁ । କି ଉପକାର କରିଛୁ କହିବ ପ୍ରଭୁଙ୍କୁ । ଶୋଷିନାହିଁ ଯେଣୁ ମୁହିଁ ସମୁଦ୍ରର ପାଣି । ରାବଣ ବିନାଶି ସୀତା ନ ଦେଇଛୁ ଆଣି । ତେଣୁ ଆଲିଙ୍ଗନ ଯୋଗ୍ୟ ହୋଇନାହିଁ ମୁହିଁ । କେବଳ ଦୂତର କାର୍ଯ୍ୟ କରିଛୁ ଗୋସାଇଁ । ଶୁଣି ହନୁମୁଖୁଁ ରାମ ଏମନ ବଚନ । ମନରେ ଆନନ୍ଦ ହେଲେ ରାଜୀବଲୋଚନ ।୯।

ଅଥୋ କିଂ ନ ବିହିତଂ ତ୍ୱୟା ?
ଇତ୍ୟୁକ୍ତେ ହନୂମାନ୍
ତ୍ୱତ୍ପ୍ରତାପାନଲେ ନୈବ ନାଥ ଶ୍ରୀରଘୁନନ୍ଦନ ।
ଦଗ୍ଧା ପୂର୍ବୈବ ଲଙ୍କେୟଂ ପଶ୍ଚାଦହ୍ନିର୍ମୟାର୍ପିତଃ । ୧୦ ।

ଶ୍ରୀରାମ ପୁଚ୍ଛନ୍ତି ଆରେ ବାବୁ ହନୁମନ୍ତ । ଲଙ୍କାରେ ଯାଇଣ କଣ କରିଛୁ କି କୃତ । ବୋଲେ ହନୁ ତୁମ୍ଭ କୃପା ପ୍ରତାପ ଅନଳେ । ପୋଡ଼ି ଦେଇଅଛୁ ଲଙ୍କା ନିଶଙ୍କ ମନରେ । ପୁରେ ପୁରେ ପଶି ଅଗ୍ନି ଲଗାଇଣ ଦେଲି । ତୁମ୍ଭ ପ୍ରସାଦରୁ ପ୍ରଭୁ ସୁଖରେ ଆଇଲି । ୧୦ ।

ଅହୋ କିଂ ଭବତା ଯଦସ୍ୟଂ ସମୁଦ୍ରୋ
ଲଙ୍ଘିତଃ ଇତ୍ୟୁକ୍ତେ ହନୂମାନ୍ ।
ଦେବ ତ୍ୱତ୍ପ୍ରବଳ ପ୍ରତାପଦହନୈରମ୍ଭୋନିଧିଃ ଶୋଷିତ ।
ସ୍ତେନେତ୍ଥଂ ସ୍ଥଳବର୍ତ୍ମ ନୈବ ଗତବାଂଲ୍ଲଙ୍କାମଶଙ୍କାମହଂ ।
ରକ୍ଷୋନାୟକନାଗରୀ ନୟନଜୈର୍ନୀରୈସ୍ତଥା ପୂରିତ
ସ୍ତେସ୍ୟାନ୍ନୋଜଲଧିସ୍ତଥା ମମ କୃତଂ କାଲେନ କିଂ ବା ଫଳଂ ।୧୧।

ପୁଣି ପୁଛନ୍ତି ଶ୍ରୀରାମ ଶୁଣି ହନୁ ବୀର । କେମନ୍ତେ ହୋଇଲୁ ପାର ଦୁସ୍ତର ସାଗର । ହନୁ ବୋଲେ ପ୍ରଭୁ ତବ ପ୍ରତାପ ପବନ । ବୋହିବାରୁ ଏ ସମୁଦ୍ର ଶୁଷ୍କ ହେଲା ଜାଣ । କଟିଯୁଗରେ ସେହି ପଥେ ଚଳିଗଲୁ ମୁହିଁ । ଯେ ଲଙ୍କାରେ ଶଙ୍କାକର ନ ପଶନ୍ତି କେହି ॥ ତହିଁ ପଶି ମଧୁବନ ଧ୍ୱଂସି ଖାଇ ଫଳ । ମାରି ପକାଇଲି ବଡ଼ ବଡ଼ ଯେ ଅସୁର । ତାଙ୍କ ନାରୀ ଅଶ୍ରୁଜଳେ ପୂରିଲ ଉଦଧି ! ହରଷରେ ପାରହୋଇ ଆଇଲି ମୁଁ କୁଦି । ୧୧ ।

( ଅଥାପରଂଶ୍ୟ ରାମହନୁମତୋରୁକ୍ତି ପ୍ରତ୍ୟୁକ୍ତୀ । )

କ୍ୱାସ୍ତେ ସୀତା ବସତି ବର୍ପିନେ ଦେବ ଲଙ୍କେଶଗୁପ୍ତେ
କୀଦୃକ୍ ପନ୍ଥା ଜଳଧିପିହିତ ସ୍ତୀର୍ଯ୍ୟତେ ଦୈବଯୋଗାତ୍ ।
ଇତ୍ୟାଖ୍ୟାତେ ପବନତନୟେ ବ୍ରୀଡ଼ବଦ୍ଭ୍ରାନ୍ତନେତ୍ରୋ
ହର୍ଷୋନ୍ମାଦାଭ୍ୟୁପରଗତୋ ବାହ୍ୟଲୋ ରାମଚନ୍ଦ୍ରଃ । ୧୨ ।

ହନୁମୁଖୁଁ ଶୁଣିଣ ବୋଲନ୍ତି ରଘୁପତି । କହ କେଉଁ ସ୍ଥାନେ ମୋର ଜାନକୀ ଅଛନ୍ତି । ହନୁ ବୋଲେ ଅଶୋକ କାନନେ ବନ୍ଦିଦେଇ । ଏକାନ୍ତରେ ଲଙ୍କପତି ରଖିଅଛି ନେଇ । ରାମ ବୋଲନ୍ତି ପବନ ସୁତ କହ ସତ୍ୟ । କେଉଁ ପଥେ ଯିବା ଆଉ କେତେଦୂର ପଥ । ହନୁମନ୍ତ ବୋଲେ ପଥ ସମୁଦ୍ର ମଧ୍ୟରେ । କେବଳ ମୁଁ ପାର ହୋଇଅଛି ଭାଗ୍ୟବଳେ । ଶୁଣି ରାମ ଭ୍ରାନ୍ତନେତ୍ରେ ମନେ କଲେ ଦ୍ୱନ୍ଦ୍ୱ । ବାହ୍ୟଲତ ଚିତ୍ତେ ହୋଇ ହରଷ ବିଷାଦ । ୧୨ ।

ଝଣଂ ଧ୍ୱନିତ୍ୱା ସୀତା କମାହେତ ପ୍ରଶ୍ନେ
ହନୁମାନ୍ ।
ଶ୍ରୀରାମ ରାମ ରଘୁନନ୍ଦନ ରାମ ରାମ
ଶ୍ରୀରାମ ରାମ ଭରତାଗ୍ରଜ ରାମ ରାମ
ଶ୍ରୀରାମ ରାମ ରଣକର୍କଶ ରାମ ରାମ
ଶ୍ରୀରାମ ରାମ ଶରଣଂ ଭଜ ରାମ ରାମ । ୧୩ ।

ସ୍ଥିର ହୋଇ ଘଟଣ ରାମ ପୁଚ୍ଛନ୍ତି ବଚନ । କି ବୋଲୁଥିଲେ ଜାନକୀ କହ ହନୁମାନ । ହନୁ ବୋଲେ ରାମ ରାମ ଯେ ଶ୍ରୀରାମ ରାମ । ରଘୁକୁଳାମ୍ବଜ ଭରତଅଗ୍ରଜ ରାମ । ଶ୍ରୀରାମ ରାମ ସମରେ ନିପୁଣ ପେ ରାମ । ଶରଣବତ୍ସଳ ରାମ ଭଜ ରାମ୨ ॥ ଏହିପରି ଦିବାନିଶି କରନ୍ତି ଭଜନ । ଏହା ବ୍ୟତିରେକେ ଅଉ ନ ଶୁଣିଲି ଆନ । ୧୩ ।

ଇଦାନୀଂ କ୍ରମବଚ୍ଛେଦ ବିଜ୍ଞାପନାର୍ଥଂ ।

ଇନ୍ଦୁ ର୍ଲିପ୍ତ ଇବାଞ୍ଜନେନ ଜଳିତା ଦୃଷ୍ଟି ମୃଗୀଣାମିବ

ପ୍ରମ୍ଲାନାରୁଣମେବ ବିଦ୍ରୁମଦଳଂ ଶ୍ୟାମେବ ହେମପ୍ରଭା ।

ପାରୁଷ୍ୟଂ କଳୟା ଚ କୋକିଳବଧୂ କଣ୍ଠେଷ୍ୱିବ ପ୍ରସ୍ତୁତଂ

ସୀତାୟାଃ ପୁରତସ୍ତୁ ହନ୍ତ ଶିଖିନାଂ ବର୍ହାଃ ସଗର୍ହା ଇବ ।୧୪।

ରାମ ବୋଲନ୍ତି ଅବସ୍ଥା କହ ସବ ଫେଇ । କେଉଁ ପରକାରେ ଧରି ରହିଛନ୍ତି ଦେହି । ହନୁ ବୋଲେ ବସିଥାନ୍ତି ବଦନ ଲୁଅଁ ଇ । ଚନ୍ଦ୍ରମା ବଦନ ଶୁଖି ମଳିନ ଦିଶଇ । ମଳିନ ଦିଶଇ ବେନି ନୟନ ଯୁଗଳ । ଭିନ୍ନ ଭିନ୍ନ ହୋଇ ଦିଶେ ଗଳାର ନୀଳ । ଶ୍ୟାମଳ ଦିଶଇ ତାହାଙ୍କର ସ୍ୱର୍ଣ୍ଣକାନ୍ତି । ସ୍ୱର ସୁମଧୁର ଶିଖି ମୁଁ ପୁଚ୍ଛକୁ ନିନ୍ଦନ୍ତି ।୧୪।

କାର୍ଶ୍ୟଂ କେତପ୍ରତିପଚ୍ଚକଳା ହିମରୁଚଃ ସ୍ଥୂଳାଥ ଚେପ୍ସାଣ୍ଡମା

ନୀଳା ଚେ ବ ମୃଣାଳିକା ଯଦି ପୁନର୍ବକ୍ତ୍ରଃ କଦ୍ୟାନ୍ ବାଷ୍ପଃ ।

ସନ୍ତାପୋ ଯଦି ଶୀତଳୋଦ୍ଭୁତବହସ୍ତସ୍ୟାଃ କଦ୍ୟୁଦ୍ବର୍ଣ୍ୟତେ

ରାମ ତ୍ୱଦ୍‌ଭ୍ରମତମାତ୍ରମେବ ହୃଦୟଂ ଲାବଣ୍ୟଶେଷଂ ବପୁଃ । ୧୫ ।

କି କହିବି ପ୍ରଭୁ ତାଙ୍କ କ୍ଷୀଣ କଳେବର । ହୋଇଛି ପ୍ରତିପଚନ୍ଦ୍ରକଳାର ଆକାର । ବଦନ ଦିଶୁଅଛି ଯେ ପାଣ୍ଡୁର ମଳିନ । ଲୋତକ ଧାରାରେ ଚକ୍ଷୁ ଦିଶେ ରକ୍ତବର୍ଣ୍ଣ ॥ ଚିନ୍ତାରେ ଜଳଇ ତନୁ ଚିତା ଅଗ୍ନି ପରି । ସନ୍ତାପରେ ସବୁବେଳେ ହୋଉଥାନ୍ତି ଘାରି । ଶରୀ ରହିଅଛି ତୁମ୍ଭ ରୂପ ସ୍ମରଣରେ । ଲାବଣ୍ୟପ୍ରତିମା ଗୋଟି ଦହେ ବିଚ୍ଛେଦରେ । ୧୫ ।

ସ୍ୱଭାବାଦେବ ତନ୍ୱଙ୍ଗୀ ତ୍ୱଦ୍‌ବିୟୋଗା ଦ୍ବିଶେଷତଃ ।

ପ୍ରତିପତ୍ପାଠଶୀଳସ୍ୟ ବିଦ୍ୟେବ ତନୁତାଂ ଗତା । ୧୬ ।

ସ୍ୱଭାବରେ ଅଙ୍ଗ ତାହାଙ୍କର ଅଟେ ସରୁ । ସରୁ ହୋଇଅଛୁ ତନୁ ତୁମ୍ଭ ବିରହରୁ । ଯେସନ ଟାଠ ପଡ଼ିଲେ ପ୍ରତାପ ତଥିରେ । ଷୀଣ, ଦୁଃଖ ବାଦ୍ୟ ବୋଲି କହନ୍ତି ସଂସାରେ । ୧୬ ।

କଥଂ ସମୁଦ୍ରଃ ସମୁତ୍ତୀର୍ଣ୍ଣ ଇତି ପ୍ରଶ୍ନେ ।
ଶାଖାମୃଗସ୍ୟ ଶାଖାଯାଃ ଶାଖାଂ ଗନ୍ତୁଂ ପରାକ୍ରମଃ ।
ଯନ୍ମୟା ଲଙ୍ଘିତୋଽମ୍ଭୋଧି ପ୍ରଭାବୋଽୟଂ ତବ ପ୍ରଭୋ ।୧୭।

ବୋଲନ୍ତି ଶ୍ରୀରାମ ହନୂପିବା କେଉଁ ପରି । ଏଡ଼େବଡ଼ ସମୁଦ୍ର କେମନ୍ତେ ହେବା ପାରି । ହନୂବୋଲଇ ଶୁଣିବା ପ୍ରଭୁ ରଘୁସାଇଁ । ଏଡାଳୁ ସେ ଡାଳ କପି ଏ ପାରନ୍ତି ଯାଇଁ । ହେ ପ୍ରଭୁ କରୁଣାସିନ୍ଧୁ ତୁମ୍ଭ କୃପାବଳେ ॥ ଏଡ଼େବଡ଼ ସମୁଦ୍ରକୁଲ ଘଂଲଇଁ ହେଲେ । ୧୭ ।

ରାମ ରାମ ଇତି ନାମ ଜପନ୍ତଃ
ପାମରା ଅପି ତରନ୍ତି ଭବାବ୍ଧିଂ ।
ଅଙ୍ଗସଙ୍ଗ ଭବଦଙ୍ଗୁଳିମୁଦ୍ରଃ
କିଂ ନୁ ଚିତ୍ରମତରଜ୍ଜଳଧିଂ । ୧୮ ।

କେତେ କେତେ ପାପୀ ରାମ ନାମ ଜପି ମୁଖେ । ଅକ୍ଲେଶରେ ତରି ଯାନ୍ତି ଭବସିନ୍ଧୁ ସୁଖେ । ତୁମ୍ଭ ହସ୍ତ ଅଙ୍ଗୁରି ଥିବାରୁ ପାଶେ ମୋର ତରି ମୁଁ ଅଇଲି ହେଲେ ଦୁସ୍ତର ସାଗର । ୧୮ ।

ତତୋ ହନୁମନ୍ତୁଂ ଖାଚ୍ଛୁତ ବୃତ୍ତାନ୍ତସ୍ୟ
ଶ୍ରୀରାମସ୍ୟ ବାକ୍ୟଂ ।

ଚତୁର୍ଦ୍ଦଶପୁରୀ ଲଙ୍କା ସ୍ୱର୍ଣ୍ଣପ୍ରାକାରବେଷ୍ଟିତା ।
ରଥାନାଂ ଚ ଚତୁର୍ଲକ୍ଷେ ଚଶ୍ୱାନାଂ ଚ ନିକୋଟିଭିଃ । ୧୯ ।

ଶୁଣି ରାମଚନ୍ଦ୍ର ପୁଣି ବୋଲନ୍ତି ବଚନେ । ଲଙ୍କା ମଧ୍ୟେ ଅଛୁ ଚତୁର୍ଦ୍ଦଶଟି ଭୁବନ । ସୁବର୍ଣ୍ଣ ପାଚେରୀ ତାକୁ ବେଢ଼ିଣ ରହିଛୁ । ଅଶ୍ୱ ତିନିକୋଟି ଚତୁର ଲକ୍ଷ ରଥ ଅଛୁ । ୧୯ ।

ନିକୋଟ୍ୟଶ୍ଚାଲଙ୍କଂ ଚୈବ ନବକୋଟିସୁରାଳୟଂ ।
କଥଂ ବୀର ତ୍ୱୟା ଦଗ୍ଧଂ ଵଦ୍ୟମାନେ ଦଶାନନେ । ୨୦ ।

ଯହିଁ ଅଛୁ ନବେକୋଟି ଦେବତାଙ୍କ ଘର । ବିଦ୍ୟମାନ ଅଛୁ ଯହିଁ ବଣ୍ଣବା କୁମର । ଡନ୍ନକୋଟି ଅଛି ଜିକା ଅଛଇ ଅବର । ତାହା କେମନ୍ତେ ପୋଡ଼ିଲୁ କହ ହନୁମାର । ୨୦ ।

ହନୁମାନ୍ ।

ନିଃଶ୍ୱାସେନୈବ ସୀତାୟା ରାଜନ୍ କୋପାନଲେନ ତେ ।
ଦଗ୍ଧା ପୂର୍ବୈବ ଲଙ୍କା ସା ନିମିତ୍ତମଭବଂ ତ୍ୱହଂ । ୨୧ ।

ଶୁଣି ଶ୍ରୀରାମ ବଚନ କହେ ହନୁମାନ । ତୁମ୍ଭ କ୍ରୋଧରୁ ତାହାର ନାଶହେଲା ପଣ୍ୟ । ସୀତାଙ୍କର ନିଶ୍ୱାସରୁ ଲଙ୍କା ପୋଡ଼ିଗଲା । ଏତେ ବଡ଼ ରାଜ୍ୟ ଗୋଟି ଛାରଖାର ହେଲା । ୨୧ ।

ରାବଣଜୟେ ଭବତଃ କାଦୃଗ୍‌ବ୍ୟବସାୟ ଇତ୍ୟପ୍ରଶ୍ନେ ?

ହନୁମାନ ।

ରକ୍ଷସ୍ତଦ୍‌ବହୁକନ୍ଧରଂ ବହୁଭୁଜଂ ଦଂଷ୍ଟ୍ରାନନଂ ଧୀପ୍ରିମ—
ଦଂଷ୍ଟ୍ରାରୌଦ୍ରମହଂ ବିଲୋକ୍ୟ ସହସା ଦଧ୍ରେ ମନଃ ସାଧ୍ୱସଂ ।
ଦେବ ତ୍ୱନ୍ନାମପଯ୍ୟା ବିଜୃମ୍ଭିତଧିୟା କ୍ୱଂ କଂ ଭବେଦ୍ଧୃଷ୍ଟରଂ
ଭକ୍ତ୍ୟୈ କର୍ମଭିଃ ଟ୍ୟେ ନୋଚେତମିତ ତ୍ୟକ୍ତ୍ୱା ମୟା ରାବଣଃ । ୨୨ ।

ହନୁମନ୍ତ ବୋଲେ ଦେବ ଶୁଣ ମୋ ବଚନ । ଅଛନ୍ତି ଲଙ୍କାରେ ବଡ଼ ବଡ଼ ବୀରମାନ । ବଡ଼ ଭୟଙ୍କର ରୂପ ଦିଶେ ବିକଟାଳ । ତାହାର ବହୁତ କନ୍ଧ ତାର ବହୁକର । ବଡ଼ବଡ଼ ଦନ୍ତ ତାର ଦେଖି ହୁଏ ଭୟ । ତୁମ୍ଭର ନାମ ସ୍ମରି ଚଉକରେଁ ଅଯ୍ୟ ।। ହେ ପ୍ରଭୁ ତୁମ୍ଭର କୃପାଯାହା- ଠାରେ ଥିବ । କିଅବା ଅସାଧ ତାକୁ ଜଗତେ ହୋଇବ ।। ରାବଣକୁ ଦେଖି ମାରିବାକୁ ବସିଥିଲି । ତୁମ୍ଭର ପ୍ରତିଜ୍ଞା ଯୋଗୁଁ ଛାଡ଼ିଣ ଆଇଲି । ୨୨ ।

ଲକ୍ଷ୍ମଣବାକ୍ୟଂ ।

ଯୋଽୟଂ ବାରାନିଧିଃ କପୀନ୍ଦ୍ର ବଳଭିଃ ପାତୁଂ ନ କିଂ ଶକ୍ୟତେ
ଯାତୋଽୟଂ କଳଶୋଦ୍ଭବେନ ମୁନିନା ବେତ୍ତାସ୍ମନୋ ନୋ ଗତଂ ।

କା ଶକ୍ତା ଜଳଧେସ୍ତୁ ଶୋଷଣବିଧୌ ଶକ୍ତଃ ପରେ ମାମକେ
କା ଶକ୍ତା କୁଣପାଶିପେ ମୟି ପୁନଃ ଶ୍ରୀରାମଭୃତ୍ୟେ ସ୍ଥିତେ । ୨୬ ।
ବୋଲନ୍ତି ଲକ୍ଷ୍ମଣ ଶୁଣ ପ୍ରଭୁ ରଘୁବୀର । କ୍ଷଣକେ ଶୋଷିବେ କପି ସମୁଦ୍ରର ଜଳ ॥ ଚଳୁ କରିଥିଲେ ପୂର୍ବେ ଯେ ଅଗସ୍ତି ମୁନି । ଏବେ ତୁମ୍ଭେ କର ଚଳୁ କପିବଳ ଘେନି ॥ ନ କର ଭାବନା ତୁମ୍ଭେ ଅହେ ରଘୁନାଥ । ଶୋଷିବା ସମୁଦ୍ରବାରି କହୁଛି ଯଥାର୍ଥ ॥ ଅଛି ମୋର ଶକ୍ତି ଏହା ଶୁଖାଇବା ପାଇଁ । ଶ୍ରୀମୁଖରେ ଆଜ୍ଞା ମୋତେ କରନ୍ତୁ ଗୋସାଇଁ ॥ ନିକଟରେ ଅଛି ତୁମ୍ଭ ଆଜ୍ଞାକାରୀ ଦାସ । ନିଶ୍ଚୟେ ହୋଇବ ଦୁଷ୍ଟ ରାବଣ ବିନାଶ । ୨୩ ।

ଶ୍ରୀରାମଃ ।

ସାଧୁ ବାନର ବୀର୍ଯ୍ୟଂ ତେ ଶ୍ଲାଘନୀୟୋଽସି ମେ ପୁରଃ ।
ଧିଗସ୍ତୁ ମେ ବାହୁବଳଂ ଯତ୍ର ଜୀବତି ରାବଣଃ । ୨୪ ।

ଶ୍ରୀରାମ ବୋଲନ୍ତି ହନୁମନ୍ତଙ୍କୁ ପ୍ରଶଂସି ॥ ସାଧୁ ସାଧୁ କପିବୀର ତୁ ବଡ଼ ସାହସୀ ॥ ଧନ୍ୟ ତୋର ବଳ ବୀର୍ଯ୍ୟ ଧନ୍ୟ ତୋର ମାତ । ତୋ ବାହୁବଳକୁ ଅଛି କେ ଅବା ସାମର୍ଥ ॥ ଶ୍ରୀରାମଙ୍କ ବାଣୀ ଶୁଣି ବୋଲେ ହନୁବୀର । ଧିକ ଧିକ ମୁହିଁ ଧିକ ମୋର ବାହୁବଳ ॥ ଅସୁର ପୁରେ ଅଛନ୍ତି ଜଗତଜନନୀ । ନ ମାରି ରଖିଛୁଁ ଯେଣୁ ରାବଣକୁ ପୁଣି ।୨୪

ଏକୈକସ୍ୟୋପକାରସ୍ୟ ପ୍ରାଣାନ୍ ଦାସ୍ୟାମ୍ୟହଂ କପେ ।
ଅନ୍ୟେଷାମୁପକାରାଣାଂ ଭବାମ ଋଣିନୋ ବୟଂ । ୨୫ ।

ହନୁମନ୍ତ ବାକ୍ୟ ଶୁଣି ବୋଲନ୍ତି ଶ୍ରୀରାମ । ଶୁଝି ନ ପାରିବା ତୋର ଉପକାରମାନ । ଯେବେ ଏ ଜୀବନ ସମର୍ପିବି ତୋତେ ଦେଇ । ତଥାପି ତୋ ପାଶେ ସଦା ଋଣୀଥିବି ହୋଇ । ୨୫ ।

ହନୁମାନ୍ ।

ମଦ୍ୱିଧା ବହବୋ ଭୃତ୍ୟାସ୍ତବ ତିଷ୍ଠନ୍ତି ରାଘବ ।
ତ୍ୱଦ୍ୱିଧୋ ଗୁଣସମ୍ପନ୍ନଃ ସ୍ୱାମୀ ନୈବୋପଲଭ୍ୟତେ ।୨୬।

କି ଆଜ୍ଞା ହେଉଛି ପ୍ରଭୁ ତବ ଶ୍ରୀମୁଖରୁ। କେତେ ସେବକ ଅଛନ୍ତି । ବଳିଣି ମୋଠାରୁ ॥ ତୁମ୍ଭେ ପ୍ରଭୁ ମୁଁ ସେବକ ଥିବି ସଦାକାଳ । ଆଜ୍ଞା ପାଇବି ସ୍ୱାମୀ ଏମନ୍ତ ଠାକୁର । ୨୬ ।

ଅଥ ପ୍ରସ୍ଥାଣଂ ।

ଅଥ ବିଜୟଦଶମ୍ୟାମାଶ୍ୱିନେ ଶୁକ୍ଳପକ୍ଷେ
ଦଶମୁଖବିଜୟାୟ ପ୍ରସ୍ଥିତୋ ରାମଚନ୍ଦ୍ରଃ ।
ବିବୁଧଗଜସମାନୈର୍ଯୂଥନାଥୈଃ ସହାୟୈଃ
କପିଭିରପରିମାଣୈର୍ବ୍ୟାପ୍ତଦିକ୍‌ଚକ୍ରବାଳଃ । ୨୭ ।

ଅଶ୍ୱିନ ମାସର ଶୁକ୍ଳପକ୍ଷ ଯେ ଦଶମୀ । ରାବଣ ବଧନିମନ୍ତେ ହେଲେ ଅନୁଗାମୀ ॥ ଶୁଭ ଦେଖି ଦଶହରା ଦିନ ଯାତ୍ରା କଲେ । ଅକଳିତ କପିବଳ ସଙ୍ଗତରେ ନେଲେ ॥ ଚଳିଛନ୍ତି ଚତୁର୍ଦ୍ଦିଗ ବ୍ୟାପି କପି-ଗଣ । ଐରାବତ ଗଜ ତୁଲ୍ୟ ଯୂଥପତିଗଣ । ୨୭ ।

ଉତ୍‌ଫାଲୈଃ ପ୍ଲବଙ୍ଗାନାମ୍ ... କିଲକିଳାଶବ୍ଦେ ର୍ଦିଶୋନାଦୟନ୍
ଭଞ୍ଜନ୍ ପର୍ବତକାନନାନି ଧରଣୀମୁଦ୍ଧୂନୟନ୍ ସର୍ବତଃ ।
ପ୍ରସ୍ଥାନେ ରଘୁନନ୍ଦନସ୍ୟ ସ ତଦା ସୁଗ୍ରୀବସଂପାଳିତୋ
ଲଙ୍କାସମ୍ମୁଖମୁଚ୍ଚଚାଲ ସହସା ହୃଷ୍ଟଃ କପୀନାଂ ଚୟଃ । ୨୮ ।

ଆନନ୍ଦରେ କୁଦାମାରି କିଳିକିଳା ନାଦେ । ଭୂମି ଗଗନ କମ୍ପଇ ସୈନ୍ୟଙ୍କର ଶବ୍ଦେ । କୋଳାହଳେ ଆକାଶକୁ ଡିଅଁ ମାରି ମାରି । ବଡ଼ ବଡ଼ ବୃକ୍ଷମାନ ପକାନ୍ତି ଉପାଡ଼ି । ସୁଗ୍ରୀବ ଶ୍ରୀରାମ ଅଗ୍ରେ କରନ୍ତି ଗମନ । ପୃଷ୍ଠେ ଚଳିଛନ୍ତି ସର୍ବ ଯୂଥପତିଗଣ । ୨୮ ।

କ୍ଷୋଣୀ ମଜ୍ଜତି ଭୂଧରୈ ର୍ବିଚଳତି କ୍ଷୋଭଂ ପ୍ରୟାତ୍ୟମ୍ବୁଧିଂ ।
କୂର୍ମଃ କୁଞ୍ଚତି ସଙ୍କୁଚତ୍ୟହିପତିର୍ଦ୍ଦେବାଧିପସ୍ତ୍ରସ୍ୟତି ।
ଶୁଭ୍ରାଂଶୁର୍ଜିତବୈରିଣସ୍ତ୍ୱଳିତା ରାମେ ପ୍ରୟାଣୋଦ୍ୟତେ
ଗନ୍ତୁଂ ବାରବଧୂଷଣୋଽପି ସଭୟଃ ସ୍ଥାନାନ୍ତରଂ ବାଞ୍ଛତି ।୨୯।

ସୈନ୍ୟଙ୍କ ଭରରେ ପୃଥ୍ୱୀ ହୁଏ ଦଲମଲ । ଉଚ୍ଛୁଳି ପଡ଼ୁଅଛଇ ସମୁଦ୍ରର ଜଲ ॥ କୂର୍ମରାଜ ଅଥୟ ବାସୁକୀ ସଙ୍କୁଚିତ । ସ୍ୱର୍ଗେ ସୁରପତି ଭୟେ ହୋଇଲେ କମ୍ପିତ । ଲଙ୍କାପୁରେ ବିଭୀଷଣ ଭୟରେ କାତର । ମନେ ବିଚାରଇ କାହିଁ ହେବ ଦେଶାନ୍ତର । ୨୯ ।

ଇତ୍ୟବସରେ ଭିଲ୍ଲଭିଃ ହାସ୍ୟଂ କୃତ୍ୱା
ମାତରଂ ବ୍ରୂତ ।

ନୋ ଶସ୍ତ୍ରଂ ନାପି ଶାସ୍ତ୍ରଂ ନହ ଚ ରଥକଥା ନାପି ଦନ୍ତୀନ ବାଜୀ
ନୋକ୍ଷାଣୋ ନାପି ଚେଷ୍ଟାବିତ ନ ଚ ଶିବିରୋ ନାପି ରାଜା ଜଟାବାନ୍
ନୋ ବିତ୍ତଂ ନାପି ବସ୍ତ୍ରଂ ନଚ ନୃପଚରେନା କାଚଦବାସ୍ତି ମାତଃ
ପ୍ରାତର୍ଦ୍ରଷ୍ଟୁଂ ସ୍ଥିତାଭର୍ଗିରିବରକୁହରେଃଭ୍ରଷି ଭିଲ୍ଲୀଭିରେବଂ । ୩୦ ।

ପର୍ବତ ଅରଣ୍ୟେ ମ୍ଳେଚ୍ଛ ଜାତିମାନେ ଥିଲେ । କପିଙ୍କି ଦେଖିଣ ହସି ୨ ପଳାଇଲେ ॥ ଗୃହେ ପ୍ରବେଶି ଆପଣା ମାତାଙ୍କୁ ପୁଛନ୍ତି । ଅନେକ ବାନର ଆମ୍ଭ ବନକୁ ଆସନ୍ତି । ଅସ୍ତ୍ର ଶସ୍ତ୍ର ନାହିଁ କିବା ଅଶ୍ୱ ହସ୍ତୀ ନାହିଁ । ଓଟ ମହିଷାଦି ରଥ ଆଦି ନ ଦିଶଇ ॥ ଅଛି ଏକ ଜଟାଧାରୀ ନୃପତି ତାଙ୍କର । ଧନ ରତ୍ନ ବେଶ ଭୂଷା ନ ଦିଶେ କାହାର ॥ ଦେଖିଲୁଁ ପ୍ରାତଃକାଳୁଁ ଯେ ବନେ ବନେ ଗଲେ । କାହୁଁ ସେ ଯାଆନ୍ତି ମାତା କହ ଜାଣିଥିଲେ । ୩୦ ।

ଭିଲ୍ଲୀମାତରଃ ।

ବିଜେତବ୍ୟା ଲଙ୍କା ଚରଣତରଣୀୟୋ ଜଳନିଧି
ର୍ବିପକ୍ଷଃ ପୌଲସ୍ତ୍ୟୋ ରଣଭୁବି ସହାୟଶ୍ଚ କପୟଃ ।
ତଥାପ୍ୟେକୋ ରାମଃ ସକଳମପି ହନ୍ତି ପ୍ରତିବଳଂ ।
କ୍ରିୟାସିଦ୍ଧିଃ ସତ୍ତ୍ୱେ ବସତି ମହତାଂ ନୋପକରଣେ । ୩୧ ।

ଶୁଣି ପୁତ୍ରଙ୍କ ବଚନ ବୋଲଇ ଜନନୀ । ଯାଉଛନ୍ତି ରାମ ଲଙ୍କାପୁରକୁ ଏକ୍ଷଣି ॥ ପାଦ ତରଣୀରେ ସମୁଦ୍ରକୁ ପାର ହେବେ । ବିପକ୍ଷ ତାଙ୍କର ଦଶଶିରକୁ ଜିଣିବେ ॥ ସହାୟ ହୋଇଅଛନ୍ତି କପିବଳ ତାଙ୍କୁ ।

ଏକାକୀ ଜିଣିବେ ରାମ ଅସୁରବଳଙ୍କୁ ॥ ଉପକରଣ କି ହେବ ମହତ ଜନର । ଧର୍ମରୁ ନାଶୟ ଜୟ ହୋଇବ ତାଙ୍କର । ୩୧ ।

ସମୁଦ୍ରତୀରେ ରାମୋ ମନସି ଚନ୍ତୟତ ।
ପାରେସିନ୍ଧୁ ପୁରୀ ପୁରାପଦେସବେ ପ୍ରାଚୀରମେଭ୍ରଂଳହଂ
ଫି ହଦ୍ଦ୍ରେଷିବଳଂ ରପୁଙ୍କୟବଳାସ୍ତେ କୁମ୍ଭକର୍ଣ୍ଣାଦୟଃ ।
ଶାକ୍ଯାଳଃ ସରପୁଃ ସ୍ତ୍ରନଦୟସୋ ଭ୍ରାତା ସଖା ବାନରୋ
ମର୍ତ୍ତ୍ୟୈବ ରଘୁବଂଶକେଶରିଯୁବା କୋ ଦଣ୍ଡମଦ୍ଧୀକ୍ଷତେ ।୩୨।

ସମୁଦ୍ରତୀରେ ପ୍ରବେଶ ହୋଇଲେ ଶ୍ରୀରାମ । ବସ୍ତୁରନ୍ତି ଘୋରସିନ୍ଧୁ ତରିବା କେଶନ ॥ ବଡ଼ବଡ଼ ଘରେ ଛନ୍ତି ଲଙ୍କାପୁରେ ରହି କୁମ୍ଭକର୍ଣ୍ଣ ଆଦି ଛନ୍ତି ରାବଣର ଭାଇ । ଲଙ୍କା ଚତୁଃପାର୍ଶ୍ୱେ ଅଛି ସୁଦୀର୍ଘ ପାଚେରୀ । ସିଂହପରି ପରାକ୍ରମୀ ଦୈତ୍ୟେ ଛନ୍ତି ପୂରି । ମହା ବଳବନ୍ତ ଅଟେ ଲଙ୍କାର ନାୟକ । ଅଛନ୍ତି ମୋ ସଙ୍ଗେ ଭାଇ ଲକ୍ଷ୍ମଣ ବାଳକ ॥ ବାନର ସହାୟ ମୋର ଅଛନ୍ତି ସଙ୍ଗରେ । ଏହା ଭାବି ଶ କୋଦଣ୍ଡେ ନିରୀକ୍ଷଣ କଲେ । ୩୨ ।

ହନୁମାନ୍ ।

ଦେବାଜ୍ଞାପୟ କିଂ କରୋମି ସହସା ଲଙ୍କାମହୋବାନୟେ
ଜମ୍ବୁଦ୍ୱୀପମତୋ ନୟେ କିମଥବା ବାରାଂନିଧିଂ ଶୋଷୟେ ।
ହେଲୋତ୍ପାଟିତବନ୍ଧ୍ୟମନ୍ଦରଗିରିସ୍ୱର୍ଣ୍ଣାଦ୍ରିନୈନ୍ଦ୍ର ଚଳଂ—
କ୍ଷେପକ୍ଷୋଭବିବର୍ଦ୍ଧମାନସଲିଳଂ ବଧ୍ନାମି ବାରାଂନିଧିଂ ।୩୩।

ହନୁମନ୍ତ ବୋଲେ ଦେବ କି କରିବେ କହ । ଆଣିବି ଲଙ୍କା ଉପାଡ଼ି ଆଜ୍ଞା ମୋତେ ଦିଅ । ନେଇ କିବା ଜମ୍ବୁଦ୍ୱୀପ ରଖିବି ସେଠାରେ । ସମୁଦ୍ର ଶୁଖାଇଣ ମୁଁ ଜଳ ଶୋଷିପାରେ । ହେଳାରେ ଉପାଡ଼ି ପାରେ ବନ୍ଧ୍ୟ ପର୍ବତକୁ । ସୁବର୍ଣ୍ଣ ନିନେନ୍ଦ୍ର ଗିରି ମନ୍ଦରମାନକୁ । ଉପାଡ଼ିଣ ପକାଇବି ସମୁଦ୍ରରେ ନେଇ । ସେତୁ କରିବି ବନ୍ଧନ ଏକ୍ଷଣି ଗୋସାଇଁ । ୩୩ ।

ରାମଃ ଅପ୍ୟେ ମରୁଉନଯ୍ତୁ ।

କୂର୍ମଂ କ୍ଳେଶୟିତୁଂ ଦିଶଃ ସ୍ଥଗୟିତୁଂ ଭେତ୍ତୁଂ ଧରିତ୍ରୀଧରାନ୍
ସିନ୍ଧୂଂ ଧୂଳିଭରେଣ କର୍ଦ୍ଦମୟିତୁଂ ତେନୈବ ରୋଦ୍ଧୁଂ ନଭଃ ।
ନାସୀରେଷୁ ପୁରଃ ପୁରସ୍ତଲବଲ ପସ୍ୟ ଟକୋଲାହଲ ତୁ
କର୍ତ୍ତୁଂ ବାରବରୂଥିନୀ ମମ ପରଂ ଜୈନଂ ପୁନସ୍ତୁ ଭଜ୍ୟତେଃ । ୩୪ ।

ବୋଲନ୍ତି ଶ୍ରୀରାମ ହନୁମନ୍ତଙ୍କୁ ଅନାଇ । ବାହୁବଳେ ତୋରସୈନ୍ୟ ପାରିବୁ ଚଳାଇ । କୂର୍ମଙ୍କୁ ହୋଇବ କ୍ଳେଶ ଦିଗେ ହେବେ ସ୍ଥିର । ପର୍ବତ ଆଣିବ ତୁମ୍ଭେ ହୋଇ ଅଗଭର । ପକାଇ ସମୁଦ୍ରେ ଗିରିମାନ ସେତୁ ବାନ୍ଧ । ଧୂଳି ଉଡ଼ାଇଣ ଅକାଶରେ ପଥରୁନ୍ଧ । ୩୪ ।

ତନ୍ନୈବ ଚନ୍ଦ୍ରୋ ଦପ୍ୟେ ରାମସ୍ୟ ଚେଷ୍ଟା ।

ସୁଗ୍ରୀବେ ପ୍ରଣୟୋଲ୍ଲଣା ଶଶଧରେ ବଦ୍ଧାଭ୍ୟସୂୟା ସ୍ଥିରଂ
ସାଶ୍ଚର୍ଯ୍ୟାଃ ପବନାତ୍ମଜେ ଧୃତରୁଷଃ ପୌଲସ୍ତ୍ୟବତ୍ୟାଂ ଦିଶି ।
ସୋ ହ୍ରହାଣ୍ଟ ଶରାସନେ ସକରୁଣାଃ ସୌମିତ୍ରିବକ୍ତ୍ରେ ତଥା
ରାମସ୍ୟାବ୍ଧି ନିଯୃନ୍ତରେ ବମବଭ୍ରମ ନାରସା ଦୃଷ୍ଟୟଃ । ୩୫ ।

ସୁଗ୍ରୀବକୁ ପ୍ରିୟଭାବେ ଚାହିଁ ସୀତାକାନ୍ତ । ଇର୍ଷାବଶୁଁ ଦେଖନ୍ତି ଯେ ଶଶୀ ତାରାନାଥ । ଅଶ୍ଚର୍ଯ୍ୟ ହୋଇଣ ହନୁମନ୍ତଙ୍କୁ ଚାହାନ୍ତି । କ୍ରୋଧଭରେ ଦକ୍ଷିଣଦିଗକୁ ଦୃଷ୍ଟି ଦିଅନ୍ତି । ଚାହିଁଲେ ନିଜକୋଦଣ୍ଡେ ଉତ୍ସାହ ମନରେ । ଲକ୍ଷ୍ମଣଙ୍କୁ ଦେଖନ୍ତି କରୁଣ ହୃଦୟରେ । ୩୬ ।

ସମୁଦ୍ରସ୍ୟ ଦକ୍ଷିଣତୀରେ ଲଙ୍କାବୃତ୍ତାନ୍ତଃ

ଲଙ୍କାସ୍ଥାନତବୃନ୍ଦତାପସଭଟାନାନୀୟ ପ୍ରଶ୍ନଃ କୃତୋ
ଲଙ୍କେ ଶେନ ବଲୋକ୍ୟ ବାରନଗରୀଂ ଲଙ୍କାଂ ସଶଙ୍କାମିବ ।
ଧ୍ୟାନଜ୍ଞାନପରାୟଣା ମୁନିଗଣା ଦୈବଂ କମସନ୍ତୁତଂ
ଯେଷାଂ ଯଚ୍ଛଦପ୍ୟେ ସ୍ଫୁରତ୍ୟପି ବଚସ୍ତେନୈବ ତତ୍ପଥ୍ୟତାଂ ।

ଦେଖଇ ରାବଣ ରହି ଆକାଶମାର୍ଗରେ । ଉପାୟ କରନ୍ତି କପି ପଶିବେ ଲଙ୍କାରେ । ଦେଖି ଏ ଦୁର୍ଦ୍ଦଶା ବୃଦ୍ଧ ଅସୁରଙ୍କୁ ରାଇ । ଅବର

ଯେ ଥିଲେ ଯୋଗୀ ଯତ ମୁନି ଯହିଁ । ସମସ୍ତଙ୍କୁ ଏକ କରି ଧରାଇ ରାବଣ
ଆସୁଅଛନ୍ତି ଲଙ୍କାକୁ ସବୁ କପି ସୈନ୍ୟ । ଜାଣିଥିଲେ କୁମ୍ଭ କର୍ଣ୍ଣ ଦାଇବ
ଘଟଣା । ତୁମ୍ଭମାନଙ୍କୁ ଅଛଇ ଭବିଷ୍ୟତ ଜଣା । ୩୭ ।

ରାବଣେ ମାତାମାନକଷ୍ଟ୍ୟା ବ୍ୟସନାଦ୍ରାବଣୋ ନବାର୍ଯ୍ୟିତା ମିଷ୍ଟକୈ
ବିଭୀଷଣୋ ଲଙ୍କନାଥଂ ପ୍ରତ୍ୟାହ । ରାଜନ୍ନିସ୍ତ୍ୱଂ ରାକ୍ଷସକାଳରାତ୍ରୀଃ
ସୀତା ପରିତ୍ୟଜ୍ୟତାଂ । ୦ ।

ନିକଷା ନାମେଣ ଥିଲା ରାବଣର ମାତା । ଯହୁଁ ସେ ଦେଖିଲା
ଲଙ୍କା ଦୁର୍ଦ୍ଦଶାର କଥା । ତା କନିଷ୍ଠ ପୁତ୍ର ବିଭୀଷଣକୁ ଡକାଇ ।
ଦେବାଇଲା ରାବଣକୁ ତୁ ମନାକର ଯାଇଁ । ସୀତାଙ୍କୁ କରୁ ସେ ତେଜ୍ୟା
ମାନ ମୋର ବାକ୍ୟ । ରାକ୍ଷସଙ୍କ କାଳରାତ୍ରୀ ହୋଇବସେ ଦେଖ ।
ଶୁଣି ବିଭୀଷଣ ରାବଣକୁ ଜଣାଇଲା । ମାତାଙ୍କ କହିବା କଥା ସକଳ
କହିଲା । ୦ ।

ଯସ୍ୟ ବାନରମାତ୍ରେଣ ପୁରସ୍ତ୍ୱଂ ବ୍ୟାକୁଳୀ କୃତା ।
କସ୍ତେନ ସହ ଯୁଧ୍ୟେତ ବୁଦ୍ଧିମାନ୍ ରାକ୍ଷସେଶ୍ୱରଃ । ୩୭ ।

ଦେଖ ଦେଖ ଦେବ ଏକେ ଶ୍ରୀରାମଙ୍କ ଦୂତ । ରାକ୍ଷସ ମାରି
ଲଙ୍କାରେ କଲା କେତେ କୃତ । ମନମଧ୍ୟେ ଏହିକଥା କରନ୍ତୁ ବିଚାର ।
ତାହାର ପ୍ରଭୁ ଶ୍ରୀରାମ ନୁହେଁ କେତେବର । ବଡ଼ ବୁଦ୍ଧିମନ୍ତ
ତୁମ୍ଭେ ରାକ୍ଷସଙ୍କ ରାଜା । ଦେବତାମାନେ କରନ୍ତି ତୁମ୍ଭଙ୍କୁ ଯେ
ପୂଜା । ୩୭ ।

ଲଙ୍କା ଦଗ୍ଧା ବନଂ ଭଗ୍ନଂ ଲଙ୍ଘିତଶ୍ଚ ମହୋଦଧିଃ ।
ଯତ୍କୃତଂ ରାମଦୂତେନ ସ ରାମଃ କିଂ କରିଷ୍ୟତି । ୩୮ ।

ଏକଗୋଟି କପି ଆସି ଦେଲା ଲଙ୍କା ପୋଡ଼ି । ପୁଣି ସମୁଦ୍ର
ଲଙ୍ଘିଣ ଗଲା ସେ ବାହୁଡ଼ି । ଏଡେ ବଳିଆର ଦୂତ ଅଟଇ ଯାହାର
ତାହା ପ୍ରଭୁ ସଙ୍ଗେ କିଏ କରିବ ସମର । ୩୮ ।

ତ୍ୟଜ ସ୍ୱଟକୋପଂ କୁଳକୀର୍ତ୍ତିନାଶନଂ
ଭଜସ୍ୱ ଧର୍ମଂ କୁଳକୀର୍ତ୍ତିବର୍ଦ୍ଧନଂ ।
ଅଲଂ ବିରୋଧେନ ଶମୋ ବିଧୀୟତାଂ
ପ୍ରଦୀୟତାଂ ଦାଶରଥାୟ ମୈଥିଳୀ । ୩୯ ।

ଅହେ ଲଙ୍କେଶ୍ୱର ତେଜ କୋଧକୁ ତୁମ୍ଭର । ନକର ବିନାଶ କୁଳ କାରଣ ଅମ୍ଭର । ଧର୍ମବଲୁ ନିଜ କୁଳ ବଂଶ ବୃଦ୍ଧି ପାଇଁ । ଅଧର୍ମ କରିଲେ ନିଶ୍ଚେ କୁଳକ୍ଷୟ ଯାଇ । ପ୍ରୟୋଜନ ନାହିଁ କିଛି ବିବାଦେ ଅମ୍ଭର । ଶ୍ରୀରାମେ ଫେରାଇ ଦିଅ ସୀତାଙ୍କୁ ତାଙ୍କର । ୩୯ ।

ଯାବନ୍ନଲଙ୍କାଂ ସମଭିଦ୍ରବନ୍ତି ବଲୀମୁଖାଃ ପର୍ବତକୂଟମାତ୍ରାଃ ।
ଦଂଷ୍ଟ୍ରାଯୁଧାଶ୍ଚୈବ ନଖାୟୁଧାଶ୍ଚ ପ୍ରଦୀୟତାଂ ଦାଶରଥାୟ ମୈଥିଲୀ ॥

ଯାହାଙ୍କର ଗିରିଶୃଙ୍ଗ ପରିଛନ୍ତି ସୈନ୍ୟ । ଆୟୁଧ ତାଙ୍କର ଅଟେ ନଖଦନ୍ତମାନ । ଯେଉଁପରି ଲଙ୍କାରେ ଟେଷ ପଶି ନ ପାରନ୍ତି । ସୀତା ନେଇ ସମର୍ପଣ କର ତାଙ୍କ କତି । ୪୦ ।

ଯାବନ୍ନଗୃହ୍ଣନ୍ତି ଶିରାଂସି ବାଣା ରାମେରିତା ରାକ୍ଷସପୁଙ୍ଗବାନଂ ।
ବଜ୍ରୋପମା ବାୟୁସମାନବେଗାଃ ପ୍ରଦୀୟତାଂ ଦାଶରଥାୟ ମୈଥିଲୀ

ଯେବେ ସମର୍ପିବ ସୀତା ଶ୍ରୀରାମଙ୍କ ପାଶ । ନ ହୋଇବ ତେବେ ରାକ୍ଷସଙ୍କ ବଂଶ ନାଶ । ବଜ୍ରସମ ଅଟଇ ଯେ ଶ୍ରୀରାଙ୍କ ବାଣ । ନିଶ୍ଚୟ ସେ ବାଣ ନେବ ଅସୁରଙ୍କ ପ୍ରାଣ । ୪୧ ।

ନ କୁମ୍ଭକର୍ଣ୍ଣେନ୍ଦ୍ରଜିତେ ନ ରାଜନ୍
ତଥା ମହାପାର୍ଶ୍ୱ ମହୋଦରୌ ନ ।
ନିକୁମ୍ଭକୁମ୍ଭୌ ନ ତଥାତିକାୟଃ
ସ୍ଥାତୁଂ ସମର୍ଥା ଯୁଧି ରାଘବସ୍ୟ । ୪୨ ।

ହେ ରାଜନ କୁମ୍ଭକର୍ଣ୍ଣ ବୀର ଇନ୍ଦ୍ରଜିତ । ଅତିକାୟ ମହୋଦର ଆଦିଯେ ସମସ୍ତ ॥ କୁମ୍ଭ ନିକୁମ୍ଭାଦି ମହାପାର୍ଶ୍ୱ ଛନ୍ତି ଯେତେ । ବାହାର ହୋଇଲେ ହାରିବେ ଶ୍ରୀରାମ ସଙ୍ଗତେ । ୪୨ ।

ନ ରାବଣୋ ବା ନ ବିଭୀଷଣୋ ବା
ପ୍ରକମ୍ପନୋ ବାପି ନ ଗୃରବାନ୍ଧଃ ।
ନ ରାଘବା ଦାଶରଥେର୍ବିଶେଷାତ୍
ଶକ୍ତସ୍ତୁ ତଚ୍ଛନ୍ଦଶତପ୍ରଭାବଂ । ୪୩।

ଆବର ଅଛନ୍ତି ଯେତେ ବଡ଼ବଡ଼ ବୀର । ଅକମ୍ପନ ପ୍ରକମ୍ପନ ବିଭୀଷଣ ଧୀର । ଏମାନେ ନୋହିବେ ସର ଶ୍ରୀରାମ ବାଣକୁ । ଶତ ଇନ୍ଦ୍ର ହେଲେ ଯୁଦ୍ଧ କି କରିବେ ତାଙ୍କୁ । ୪୩ ।

ରାବଣଃ

ଇନ୍ଦ୍ରଂ ମାଲ୍ୟକରଂ ସହସ୍ର କିରଣଂ ଦ୍ୱାରପ୍ରତୀହାରିଂ
ଚନ୍ଦ୍ରଂ ଛତ୍ରଧରଂ ସମୀରବରୁଣୌ ସମ୍ମାର୍ଜୟନ୍ତୌ ଗୃହାନ୍ ।
ପାଚକ୍ୟେ ଏରନ୍ନଷ୍ଟିତଂ ହୁତବହଂ କିଂ ମଦ୍‌ଗୃହେ ନେକ୍ଷସେ
ରକ୍ଷୋଭକ୍ଷ୍ୟମନୁଷ୍ୟମାନବପୁଷଂ ତଂ ରାଘବଂ ସ୍ତୌଷି କିଂ । ୪୪ ।

ଶୁଣି ବିଭୀଷଣ ବାକ୍ୟ କହେ ଦଶାନନ । କେତେରେ କହୁଛୁ ଟେକି ମାନବର ଗୁଣ । ଇନ୍ଦ୍ର ମୋର ଫୁଲମାଳ ଧାଅଇରେ ନାଥ । ଚନ୍ଦ୍ର ମୋହର ପାଶରେ ଛତ୍ର ଧରଥାନ୍ତି । ହୋଇଛନ୍ତି ରବି ମୋର ସିଂହ ଦ୍ୱାରେ ଦ୍ୱାରୀ । ପବନ ବରୁଣ ଗୃହ ସମାର୍ଜନା କରି । ପାକ ପ୍ରସ୍ତୁତ କରଇ ଅଗ୍ନି ପ୍ରତିଦିନ । ଦେଖୁଛୁଟି ଏହା ସଦା ଗୃହରେ ରହିଣ ॥ ଅଟନ୍ତି ସର୍ବଦା ରକ୍ଷଙ୍କର ଭକ୍ଷ ନର । କହୁ ମାନବର ଗୁଣ କିପାଁ ମୋ ଆଗର । ୪୪ ।

ପ୍ରହସ୍ତଃ ପ୍ରାହ ।

ଶୂରାଃ ଶ୍ରେଷ୍ଠପଥେଷ୍ଟୁ ନୈଃ କତି କତି ପ୍ରାଜ୍ଞୈଃ ପଦଂ ରକ୍ଷିରେ
ତେଷାମେବ ବିଲଙ୍ଘ୍ୟ ଧାମ୍ୟପଦବୀଂ ଜାଗର୍ତ୍ତି ଲଙ୍କାଭଟଃ ।
ଯଦ୍ଦୋର୍ମଣ୍ଡଳଚଣ୍ଡପୀଡ଼ନବଶାନ୍ନୂନଂ ଧ୍ୟଦନ୍ଦରକ୍ରିଚ୍ଛଟା
ଶଙ୍କାମଙ୍କୁରୟନ୍ତି ଶଙ୍କରଗିରେରଦ୍ୟାପି ଧାତୁଦ୍ରବାଃ । ୪୫ ।

ବଭୀଷଣଙ୍କୁ ଅନାଇ ପ୍ରଭୁ ପଚାରନ୍ତେ ଜାଣିଛନ୍ତି ସମସ୍ତ ସାଗରକୁ ଲଙ୍ଘିବା ଏ । ମାନବଙ୍କ ଗୁଣ କହୁ ତାହାଙ୍କ ଅଗ୍ରତରେ । ଦେଖୁଁ ଦେଖୁଁ କୈଳାସକୁ ଉପାଡ଼ିଲେ ହେଲେ । ତହିଁ ରେ ନାନା ପ୍ରକାର ଧାତୁଦ୍ରବ୍ୟ ଥିଲା । ଭୂଜର ଆଘାତ ବାଜି ତରଳି ପଡ଼ିଲା । ଦେଖ ଆଜ ପର- ଯନ୍ତେ ସେହି ଧାତୁମାନ । ଉଜ୍ଜ୍ୱଳ ହୋଇଣ ଦିଶୁଅଛି ରଙ୍ଗ ବର୍ଣ୍ଣ ॥

କୁମ୍ଭକର୍ଣ୍ଣସ୍ୟ ପୁତ୍ରଃ ।

ତଥୈତେନୋଦ୍ଧୃତ୍ୟ ସ୍ଫଟିକଶିଖରୀ ସୋଽପି ବଦଧେ
ସମନ୍ତାଦାମୂଳସ୍ଫୁଟିତବସୁଧାବନ୍ଧବଧୁରଃ ।
ଅମୁଂ ଯୋନାଦ୍ୟାପି ତ୍ରିପୁରହରନୃତ୍ୟବ୍ୟତିକରଃ ॥
ପୁରସ୍ତାଦନ୍ୟେଷାମପି ଶିଖରିଣାମୁଚ୍ଚିଲସ୍ଥିତ । ୪୬ ।

ପୁଣି ବୋଲଇ ବଚନ କୁମ୍ଭକର୍ଣ୍ଣ ସୁତ । ଉପାଡ଼ିଲେ ଯେତେ— ବେଳେ ସ୍ଫଟିକ ପର୍ବତ ॥ ମୂଳ ସହିତ ଉପୁଡ଼ି ପଡ଼ିଲା ମହୀରେ । ବ୍ୟାକୁଳ ହୋଇଣ ଗିରି ଟଳିଲା ହରେ । କରୁଥିଲେ ନୃତ୍ୟ ତହିଁ ଦେବ ତ୍ରିପୁରାରି । ଦେଖିଲେ ଦିଶୁଛି ଗିରି ହସ୍ତେ ଛତ୍ରପରି । ଜାଣିଲେ ସମସ୍ତଠାରୁ ଶ୍ରେଷ୍ଠ ଏ ମନ୍ଦର । ଜଗତ ମଧ୍ୟରେ ଏହି ଅଟଇ ସୁନ୍ଦର । ୪୬ ।

ବଭୀଷଣଃ ।

ଗ୍ରେମୋଽସୌ ଭୁବନେଷୁ ବିକ୍ରମଗୁଣୈଃ ପ୍ରାପ୍ତଃ ପ୍ରସିଦ୍ଧିଂ ପରା—
ମସ୍ମଦ୍ଭାଗ୍ୟବିପର୍ଯ୍ୟୟାଦ୍ୟଦି ପୁନର୍ଦେବୋ ନ ଜାନାତି ତଂ ।
ବନ୍ଦୀ ଯସ୍ୟ ଯଶାଂସିଗାୟତି ମରୁଦ୍ଦ୍ୱାସୈକବାଣାହତଃ-
ଶ୍ରେଣୀଭୂତବିଶାଲତାଲବିବରୋଦ୍ଗୀର୍ଣ୍ଣୈଃ ସ୍ୱରୈଃ ସପ୍ତଭିଃ ।୪୭ ।

ଶୁଣି ବଭୀଷଣ ପୁଣି ବୋଲଇ ବଚନ । ତ୍ରିଭୁବନରେ ପ୍ରକାଶ ରାମ ବୀରପଣ । ଏତେ ବଡ଼ ରାଜା ହୋଇ ନ ପାରୁଛ ଜାଣି । ତେଣୁକରି ଜାଣେ ତୁମ୍ଭେ ହତଭାଗ୍ୟ ପ୍ରାଣୀ । କିଷ୍କିନ୍ଧ୍ୟା ନଗରେ ପରକାଶ ଯାର

ମୃଗ । ସପତ ତାଲ ଭେଦିଲେ ମାର ଏକବାଣ ॥ ସେ ସପତ ସନ୍ଧି-
ଯ୍ୟ ମଧ୍ୟେ ବାଡ଼ୁ ପଣି । ସପତ ସ୍ୱରେ ଗାୟନ କରେ ଯଞ୍ଚରାଶି ।୪୭।

ଅଜନି ରଜନିମଧ୍ୟେ ମଣ୍ଡଳଂ ଚଣ୍ଡରଶ୍ମେ -
ଧନୁରୁଦୟମନଭ୍ର ବଭ୍ରୁତ ଦୋର୍ଦ୍ଦଣ୍ଡକାନ୍ତି ।
ଅହହ ବଧିରଦାମାଂ ଦୃଶଂତେ ବାମ ଏବ
ପ୍ରଦଶ ଜନକପୁତ୍ରୀଂ ମିଳତାମେତୁଂ ରାମଃ । ୪୮ ।

ଦେଖ ରଜନୀରେ ସୂର୍ଯ୍ୟଙ୍କ ମଣ୍ଡଳ ଦିଶେ । ଇନ୍ଦ୍ରଧନୁ ପର ଶୋଭା
ନୟନେ ବିକାଶେ । ବାମ ହୋଇଛୁ ବଧିତା ଜାଣୁଛୁ ତୁମ୍ଭଙ୍କୁ । ଦେଖି
ଜାନକୀ ମିଳଛା କରଅ ରାମଙ୍କୁ । ୪୮ ।

ଯଠସୈନ୍ୟଃ କପିଶାବକୈଃ ସମତରଦୁର୍ଲଙ୍ଘ୍ୟମମ୍ଭୋନିଧିଂ ।
ଦୁର୍ଭେଦ୍ୟାମପି ଦେବଦୈତ୍ୟନିବହୈର୍ଲଙ୍କାପୁରୀଂ ପ୍ରାବଶତ୍
କ୍ଷିପ୍ତ୍ୱା ତାନ୍ ବନରକ୍ଷକାନ୍ ଜନକଜାଂଦୃଷ୍ଟ୍ୱାଚଭଙ୍କ୍ତ୍ୱାବନଂ
ହତ୍ୱାକ୍ଷଂ ପ୍ରଦହନ୍ ପୁରୀଂ ଗତଇତୋ ରାମଃ କଥଂ ମାନୁଷଃ । ୪୯ ।

ଅଦ୍ଭୁତ କଥାଏ ଦେଖ ଅଶ୍ଚର୍ଯ୍ୟ ତାଙ୍କର । ଅଳ୍ପରେ ସାଗର ଡେଇଁ
ଅଇଲ ବାନର । ଅଭେଦ ଯେ ଲଙ୍କା ଦେବ ଦୈତ୍ୟଙ୍କୁ ଅଟଇ ।
ସେ ପୁରେ ପଶିଲ କପି ଛଳେ ଭୟନାହିଁ । ଭାଙ୍ଗି ମଧୁବନ ନାଶି
ତୋଟା ରକ୍ଷାକାରୀ । ସୀତାଙ୍କୁ କରଣ ଠାବ ଗଲା ନିଜପୁରି । ଲଙ୍କା
ପୋଡ଼ ଅକ୍ଷୟକୁମର କ୍ଷୟ କଲା । ବାରତା ନେଇଣ ଶ୍ରୀରାମଙ୍କ ଅଗ୍ରେ
ଦେଲା ॥ ଯାହାଙ୍କର ଦୂତ ଏକା କଲା ଏତେ କୃତ । ସେ ରାମଙ୍କୁ
ନର ବୋଲି ଭାବୁଛ କେମନ୍ତ । ୪୯ ।

ଗତାଂଦ୍ଧୃଷ୍ଟଂ ତ୍ୱାଂ ବିପରୀତବୁଦ୍ଧିଂ ନାଃ ସଂଶୟଂ ରାକ୍ଷସ ଲକ୍ଷ ଯାମି ।
ଯୋ ମାଂ ହ୍ରତଂ ତଥ୍ୟମପିବ୍ରୁବାଣଂନମନ୍ୟସେ ରାକ୍ଷସବାରମଧ୍ୟେ ।
ଜାଣୁଛୁ ଆୟୁଷ କ୍ଷୟ ହେଲାଣି ତୁମ୍ଭର । ତେଣୁ ବିପରୀତ ବୁଦ୍ଧି

ହନୁ ହମନର । ମୋର କଥାକୁ ଅହ୍ନତ ମଣୁଛ ରୋଷ ଇଁ । ଯାହା କହୁଅଛୁ ସତ୍ୟ ଅହେ ଲଙ୍କସାଇଁ । ୫୦ ।

ଯାବଲ୍ଲକ୍ଷ୍ମଣବାଣେନ ଛିନ୍ନପ୍ରାକାରତୋରଣା ।
ନ ଭସ୍ମୀକ୍ରିୟତେ ଲଙ୍କା ତାବତ୍ସୀତା ପ୍ରଦୀୟତାଂ । ୫୧ ।

ଯାବତ ଲକ୍ଷ୍ମଣଙ୍କର ଯେହ୍ନ ତୀକ୍ଷ୍ଣବାଣ । ଭେଦନାହିଁ ଲଙ୍କାଗଡ ପାଚେରି ତୋରଣ । ନ କରଅ ଭସ୍ମ ଏହ୍ନ ଲଙ୍କା ନଗରକୁ । ଅହେ ଲଙ୍କେଶ୍ୱର ଦିଅ ଫେରାଇ ସୀତଙ୍କୁ । ୫୧ ।

ପ୍ରଗୃହ୍ୟ ରତ୍ନାନ୍ ବିଭୂଷଣାନି
ବାସାଂସି ଦିବ୍ୟାନି ମଣୀଂଶ୍ଚ ମୁଖ୍ୟାନ୍ ।
ସୀତାଂ ଚ ରାମାୟ ନିବେଦ୍ୟ ଦେବୀଂ
ବସାମ ଲଙ୍କ ହୃଦୟେ ହ୍ୟଶଙ୍କାଃ । ୫୨ ।

ଅଣ ବାଛି ବାଛି ଭଲ ରତ୍ନ ବସ୍ତ୍ରମାନ । ମଣି ମାଣିକ୍ୟାଦି ସଙ୍ଗେ ଅମୂଲ୍ୟ ରତନ ।। ସୀତଙ୍କୁ ଘେନିଣ ରାମ ପାଶେ ସମର୍ପିବା । ତେବେ ଏ ଲଙ୍କାରେ ସିନା ନିଶ୍ଚିନ୍ତେ ରହିବା । ୫୨ ।

ରାବଣଃ ।

ଜାନାମି ସୀତାଂ ଜନକପ୍ରସୂତାଂ ଜାନାମି ରାମଂ ମଧୁସୂଦନଂ ଚ ।
ଜାନାମି ରାମସ୍ୟ ଶରେଣ ବଧ୍ୟସ୍ତଥାପି ସୀତାଂ ନ ସମର୍ପୟାମି । ୫୩ ।

ଏହାଶୁଣି ବିଭୀଷଣ ମୁଖୁଁ ଲଙ୍କପତି । ବୋଲେ ଜାଣଇରେ ମୁହିଁ ଶ୍ରୀରାମ ଭାରତୀ । ରାମ ନାରାୟଣ ଲକ୍ଷ୍ମୀ ସୀତା ମୁଁ ଜାଣିଛି । ତାଙ୍କ ବାଣେ ମୋର ନାଶ ହେଉ କହୁଅଛୁ । ତଥାପି ନ ଦେବ ସୀତା ପ୍ରତିଜ୍ଞା ମୋହର । ମରିବା ପାଇଁକି ମୋର ଟଳେ ନାହିଁ ଡର ।

ବିଭୀଷଣଃ ।

ଯସ୍ୟଂ ନ ମୁକମୌଳିଖେଳକମଳସ୍ୱର୍ଲୋକକଲ୍ଲୋଳିନୀ
ଲଙ୍କାଲଙ୍ଘନଲମ୍ପଟେନ ଯଶସ ଦିଙ୍ମଣ୍ଡଳୀ କ୍ଷାଳିତା ।

ଯୋଽପଦ୍ମଂ ଜନକାତ୍ମଜାଜନନ୍ଦୀ ଲବ୍ଧ ଭିଲାଷଃ କଥଂ
ହା! ଜାତୋଽସି ପୁଲସ୍ତ୍ୟସନ୍ତତଯଶଃ ଶୀତଦ୍ୟୁତେର୍ଲାଞ୍ଛନଂ । ୫୦ ।

ବୋଲେ ବିଭୀଷଣ ଶୁଣ ଅହେ ଲଙ୍କପତି । ତିନି ଭୁବନରେ ପୂରେ ତୁମ୍ଭର କୀରତି । ନିର୍ମଳ ସଲିଳ ଗଙ୍ଗାପରି ତୁମ୍ଭ ଯଶ । ପୁଲସ୍ତ୍ୟ ମୁନିଙ୍କ ବଂଶେ ହୋଇଛ ପ୍ରକାଶ । ଏଡ଼େବଡ଼ କୁଳେ କପାଁ ଲଗାଉଛ କାଳି । କୀର୍ତ୍ତିଚନ୍ଦ୍ରରେ କଳଙ୍କ ଦେଉଅଛ ବୋଲି । ୫୪ ।

ବିଭୀଷଣଃ ସ୍ୱଗତଂ !

ଜ୍ଞାତ୍ୱୈବଂ ବତ ରାବଣସ୍ୟ ସହକୋ ଲଙ୍କାଂ କଳଙ୍କାଙ୍କିତାଂ
ଦୃଷ୍ଟ୍ୱା ମନ୍ମନତଂ ଚ ଭ୍ରାତରମପି ନ ଶ୍ରୃଣୁତେ ଯଦ୍ଧିତଂ ।
ଇତ୍ୟାଲୋଚ୍ୟ ବିସୃଜ୍ୟମାନମଧୁନା ତ୍ୟକ୍ତ୍ୱାଗ୍ରଜଂ ନଗ୍ନବ-
ସ୍ତ୍ରଙ୍କଂ ଗୃହୀତ୍ୱେଣ ଦ୍ୱରମହଂ ଯାସ୍ୟାମି ହ୍ରମାନ୍ତିକଂ । ୫ ।

ବିଚାରଇ ବିଭୀଷଣ ଆପଣା ମନରେ । ଏ ଲଙ୍କା କଳଙ୍କା ହୋଇ ବୁଡ଼ିବ ଏଠାରେ । ଯେତେ ବୁଝାଇଲେ ନ ବୁଝଇ ଦଶାନନ । ହିତକୁ ଅହିତ ମଣି ନ ଶୁଣେ ବଚନ । ଅତଏବ ଏହା ପାଶୁଁ ଅନ୍ତର ହୋଇବା । ତେଜି ବନ୍ଧୁ କୁଟୁମ୍ବ ସନ୍ନ୍ୟାସ ଦୀକ୍ଷା ନେବା । ଯାଇଁ ଶ୍ରୀରାମଙ୍କ ପାଦେ ପଶିବି ଶରଣ । ଥିବେ ସଙ୍ଗତରେ ମୋର ଅନୁଚରଗଣ । ୫୫ ।

ଅଥଚରଣହତୋ ଦଶାନନେନ
ପ୍ରକୃତବପର୍ଯ୍ୟନ୍ତମସ୍ୟ ଲଙ୍ଘୟିତ୍ୱା ।
ସପଦି ଚ ପଦ୍ମହୃତ୍ୟ ତଂ ସମନ୍ତୀ
ପରିକୁପିତୋ ମନସା ଜଗାମ ରାମଂ । ୫୬ ।

ଏମନ୍ତ ସମୟେ କ୍ରୋଧେ ଉଠିଲା ରାବଣ । ଯାଅରେ ବୋଲିଣ ପାଦ ପ୍ରହାରେ ଚାଳିଣ । ପାଦ ଘାତ ପାଇ ବୀର ଭାବିଲା ମନର । ରାବଣକୁ ଛାଡ଼ିଲାଣି ପ୍ରକୃତି ଏଥର । ଅତି କୋଧଭରେ ମନେ ବହି ଅପମାନ । ବାହାରିଲା ସଙ୍ଗେ ଘେନି ମନ୍ତ୍ରୀ ଚାରିଜଣ । ୫୭ ।

ଉତଷ୍ଟତୁର୍ଭିଃ ସହ ମନ୍ତ୍ରିପୂର୍ବୈଃରୂଟପତ୍ୟ ରକ୍ଷକୂଳ ଧୂମକେତୁଂ ।
ଲଙ୍କାମହାତଙ୍କହାମ୍ବରେଣ ବିଭୀଷଣେ ରାଘବମନ୍ୱୟାତ୍ । ୫୬
ମନ୍ତ୍ରୀସହ ଷେପିଗଲେ ଆକାଶ ମାର୍ଗରେ । ଧୂମକେତୁ ପ୍ରାୟ ଦିଶୁଛନ୍ତି ।
ଗଗନରେ । ଶ୍ରୀରାମଙ୍କ ପାଶେ ଯାଇଁ ହୋଇଲେ ପ୍ରବେଶ । ଏବେ
ହୋଇବ ନିଶ୍ଚୟ ଅସୁରଙ୍କ ନାଶ । ୫୬ ।

ଅନ୍ୟଥା ଶରଣଂ ନାସ୍ତି ତ୍ୱମେବ ଶରଣଂ ମମ ।
ଦଶକଣ୍ଠାନୁଜଂ ରାମରକ୍ଷମାଂ ଶରଣାଗତଃ ।୫୮।

ରହିଣ ଆକାଶେ ବୋଲେ ରାବଣର ଭ୍ରାତ । ଦଶଶିରର କନିଷ୍ଠ ସହୋଦର ମୁଁ ତ । ଅସହାୟ ଜନ ମୁହିଁ ହୋଇଣ୍ଟି ଅନାଥ । ପଶିଲି ଶରଣ ତୁମ୍ଭ ପାଦେ ରଘୁନାଥ । ୫୮ ।

ବିଭୀଷଣେ ସମାୟାତେ ସୂର୍ଯ୍ୟପ୍ରଭମତେଜସି ।
ଉଦାଚେଦୌ ରାବଣଭ୍ରାନ୍ତ୍ୟା ଭଙ୍ଗଂ କପିକୁଳୋଦ୍ଭବତ୍ । ୫୯ ।

କହି ବିଭୀଷଣ କପି କଟକେ ପ୍ରବେଶି । ସୂର୍ଯ୍ୟଙ୍କ କିରଣ ପରି ତାହା ତେଜ ଦିଶି । ଅଇଲା ରାବଣ ବୋଲି କପି ସୈନ୍ୟମାନେ । କଳିକିଳା ରାବ କରି ଗଲେ ଏତେ ବେଳେ ।୫୯।

ହନୂମତାପ୍ୟଂ ନିର୍ଦ୍ଧୃତୋ ରାବଣେନ ବିଭୀଷଣଃ ।
ରାମଚନ୍ଦ୍ର ପଦଦ୍ୱନ୍ଦ୍ୱ କମଲେ ଭ୍ରମରାୟତେ । ୬୦ ।

ଡାକ ଦେଇଣ ବୋଲନ୍ତି ପବନର ସୁତ । ନୁହଇ ରାବଣ ଏ ତାହାର ସାନଭ୍ରାତ ।। ବିଭୀଷଣ ନାମ ଏ ଆସଇ ଏଥିପାଇଁ । ଶ୍ରୀରାମଙ୍କ ଶ୍ରୀଚରଣେ ଶରଣ ଇଚ୍ଛଇ । ୬୦ ।

ଶ୍ରୀରାମଂ ପ୍ରତି ଦ୍ୱାରୀ ।

ଦେବ ଦ୍ୱାର ନଭଃପଥେଷୁ ମିଳିତାଃ ପଞ୍ଚ ନିଶାଚରା
ଏକସ୍ତ୍ୱେବ ବିଭୀଷଣୋ ଦଶମୁଖ ଭ୍ରାତା ପରେ ମନ୍ତ୍ରିଣଃ ।

ଯାଚନ୍ତେ ଶରଣଂ ଭୟାପହରଣଂ କଂ ତନ୍ନ ଜାନୀମହେ
କୃତ୍ୱାକୃତ୍ୱା ବିଚାରଣୈକନିପୁଣସ୍ତ୍ୱଂ ପ୍ରମାଣଂ ପ୍ରଭୁଃ । ୬୧ ।

କହିଲେ ଶ୍ରୀରାମ ପାଶେ ବେଗେ ହନୁ ଯାଇଁ । ପାଞ୍ଚଗୋଟି ରାକ୍ଷସ ଅଛନ୍ତି ଉଭାହୋଇ । ଶୁଣିଲି ସେମାନେ ଅଟନ୍ତି ରାବଣର ଭ୍ରାତା । ମୁଖ୍ୟ ଗୋଟି ଅସୁର ଯେ ଆଣିଛି ସଙ୍ଗତ । ଶରଣ ପଶିବ ବୋଲି ଚରଣେ ତୁମ୍ଭର । ନ ଜାଣଇ କିସ ଭେଦ ଅଛଇ ଏଥିର । ଆପଣେ ଜାଣନ୍ତି ସବୁ କହିବି ମୁଁ କିସ ! ବିଚାରି କରନ୍ତୁ ଆଜ୍ଞା ଯେମନେ ହୋଇବ ଶେଷ । ୬୧ ।

ଇତ୍ୟବସରେ ହନୁମାନ୍ ।

ସତ୍ୟଂ ଦାଶରଥେ ବିଭୀଷଣ ଇତି ଭ୍ରାତାସ୍ତି ଲଙ୍କାପତେ-
ର୍ନାମ୍ନାପିବୃତ୍ତମିଙ୍ଗିତଂ ଲସ୍ୟ ଚରମଃ ଶ୍ରୀକୁମ୍ଭକର୍ଣ୍ଣସ୍ୟ ଯଃ ।
ଦାକ୍ଷିଣ୍ୟାଦ୍ୟଫଲକ୍ଷିତଃ ପିତୃକୁଳାପେକ୍ଷାବଳାକ୍ଷାଣଯୋ
ରତ୍ନୈରାଲୋକବିଲକ୍ଷଣାଂ କଳୟତି ପ୍ରତ୍ୟକ୍ଷଲକ୍ଷ୍ମୀମୟଂ । ୬୨ ।

କରଯୋଡ଼ି ରାମପାଶେ କହେ ହନୁମାନ । ଶୁଣ ଦେବ ରଘୁନାଥ ଏହା ବିବରଣ ॥ ରାବଣର ଭ୍ରାତ ସେହୁ ଅଟେ କୁମ୍ଭକର୍ଣ୍ଣ । ଇଙ୍ଗିତ ମହୀୟ ପ୍ରାପ୍ତି କରଇ ଶୟନ । ତା କନିଷ୍ଠ ଭାଇ ଏହା ନାମ ବିଭୀଷଣ । ଧାର୍ମିକ ସରଳ ମତି ସର୍ବ ସୁଲକ୍ଷଣ । ରକ୍ଷାକରିବା ପାଇଁ କି ପିତୃ ମାତୃ କୁଳ । କରୁଅଛି ଯତ୍ନ ଏହି ଶୁଣ ରଘୁବୀର । ତେଜି ରାକ୍ଷସ ପ୍ରକୃତି ଆସିଅଛି ଧାଇଁ । ଭୋ ପ୍ରଭୁ ତୁମ୍ଭର ଶ୍ରୀଚରଣ ଆଶ୍ରା ପାଇଁ । ୬୨ ।

ସୁଗ୍ରୀବୋ ଲକ୍ଷ୍ମଣଂ ପ୍ରତି ।

ଯସ୍ୟ ନ ସ୍ୱଜନେ ପ୍ରୀତିଃ କୁତସ୍ତସ୍ୟେତରେ ଜନେ ।
ଶଙ୍କିତବ୍ୟୋ ହି ସୌମିତ୍ରେ ଦୂରସ୍ଥୋଽପି ବିଭୀଷଣଃ । ୬୩ ।

ବୋଲନ୍ତି ସୁଗ୍ରୀବ ଶୁଣ ଲକ୍ଷ୍ମଣ ବୀର । ଭାଇ ବନ୍ଧୁ କୁଟୁମ୍ବରେ ସ୍ନେହ ନାହିଁ ଯାର । ସେ କାହିଁ କରିପାରିବ ଆନଠାରେ ପ୍ରୀତି ଏହା ଭାବି ମନେ ମୋର ହେଉଅଛି ଭ୍ରାନ୍ତି । ୬୩ ।

ଲକ୍ଷ୍ମଣଃ

ଯାନ୍ତି ନ୍ୟାୟପ୍ରବୃତ୍ତସ୍ୟ ତିର୍ଯ୍ୟଞ୍ଚୋଽପି ସହାୟତାଂ
ଅପନ୍ଥାନଂ ତୁ ଗଚ୍ଛନ୍ତଂ ସୋଦରୋଽପି ବିମୁଞ୍ଚତି । ୬୪ ।

ବୋଲନ୍ତି ଲକ୍ଷ୍ମଣ ବୀର ସୁଗ୍ରୀବକୁ ଗୁହ୍ଯି । ଯେଉଁ ଜନ ନ୍ୟାୟ-ପଥେ ନରହେ ଚଳଇ । ତାହାଙ୍କ ସହାୟ ସଦା ହୁଅଇ ନୋ ଧର୍ମ । ଛାଡ଼ନ୍ତି ସୋଦର ଦେଖି ତା ଅନ୍ୟାୟ କର୍ମ । ୬୫ ।

ରାମଲକ୍ଷ୍ମଣୟୋରୁକ୍ତିପ୍ରତ୍ୟୁକ୍ତୀ ।

ଧର୍ମାତ୍ମା ଦଶକନ୍ଧରାନ୍ଧହରଭୂତ୍ କସ୍ମାଦୟଂ ରାବଣାତ୍
ସମ୍ଭାବ୍ୟେତେଽଭିନୟେନ କିଂ ନ କୁରୁତେ ସୁଗ୍ରୀବଦ୍‌ବାଲିନଃ ।
ରକ୍ଷୋରାଜସହୋଦରସ୍ୟ ନିଭୃତାଦସ୍ମୋଽପି ସମ୍ଭାବ୍ୟତେ
କିଂ କୁର୍ମଃ ଶରଣାଗତଂ ରିପୁମପି ଦ୍ରୁହ୍ୟନ୍ତି ନେକ୍ଷ୍ୱାକବଃ ।୬୬।

ବୋଲନ୍ତି ଲକ୍ଷ୍ମଣ ଶୁଣ ପ୍ରଭୁ ରଘୁନାଥ । ଛାଡ଼ଦେଲେ ନିଜ ସହୋଦରଙ୍କୁ କେମନ୍ତ । ବୋଲନ୍ତି ଶ୍ରୀରାମ ଶୁଣ ବାବୁ ଲକ୍ଷ୍ମଣେ । ସୁଜନ ଲୋକଙ୍କୁ ଦଣ୍ଡ ଦିଅଇ ଦୁର୍ଜ୍ଜନ । ଦେଖ କେମନ୍ତ ପ୍ରକାରେ ବାଳି ସୁଗ୍ରୀବକୁ । ତଡ଼ି ଦେଇ ବଳେ ହରେ ତାହା ଭାରଯାକୁ ॥ ସେହି ପୁଣି ରାଜା ହେଲା ତାହାକୁ ମରାଇ । ବିଭୀଷଣ ସେହିମତି ଅଛନ୍ତିରେ ଭାଇ ॥ ଲକ୍ଷ୍ମଣ ବୋଲନ୍ତି ଦେବ ହୁଏ ଅନୁମାନ । କପଟରେ ଆସିଥିବ କାଳେ ବିଭୀଷଣ ॥ ଶ୍ରୀରାମ ବୋଲନ୍ତି କିସ କରିବ ଆମ୍ଭର । ଅରକ୍ଷକୁ ରକ୍ଷା ଆମ୍ଭ କୁଳର ବେଭାର । ଶତ୍ରୁ ଯଦି ଆସି ପଶେ ଆମ୍ଭର ଶରଣ । କରିବୁଁ ରକ୍ଷା ତାହାକୁ ବଂଶର ଏ ଧର୍ମ । ୬୭ ।

ଇତ୍ୟବସରେ ବିଭୀଷଣଃ ।
ସୁଗ୍ରୀବସ୍ୟ ଶ୍ରିୟଂ ଦୃଷ୍ଟ୍ୱା । ଲକ୍ଷ୍ମଣସ୍ୟ ଚ ସେବନଂ ।
ବିଭୀଷଣସ୍ୟ ଦୋଳେବ ମତିରାସୀତ ଯାତ ଚ ।୬୬ ।

ଲକ୍ଷ୍ମଣଙ୍କ ସ୍ନେହ ସୁଗ୍ରୀବର ଶ୍ରୀକୁ ଚାହିଁ । ମନରେ ଆନନ୍ଦ ହେଲେ ରାବଣର ଭାଇ । ଦୋଳାଯନ୍ତ୍ର ପରି ଯହିଁ ଗତାୟାତ କରେ । ରାମ ପଦ ଭୃତ୍ୟ ହେବା ଭାବଇ ଅନ୍ତରେ । ୬୬ ।

ଦୃଷ୍ଟ୍ୱା ବାନରବାହିନୀମନଳ୍ପଜାନ୍ଧଂକାରହୁଂକାରିଣୀଂ
ପୌଲସ୍ତ୍ୟଃ ପ୍ରବିବେଶ ବିସ୍ମିତଇବ ପ୍ରତ୍ୟେକ ମାଲୋକୟନ୍
ସୁଗ୍ରୀବ ପ୍ରମୁଖୈରସ୍ୟଂ ପ୍ରତିପଥଂପ୍ରତ୍ୟୁଦ୍‌ଗତାଦ୍‌ ପ୍ଲବଗୋ
ନିର୍ବ୍ୟାଜଂ ରଘୁନନ୍ଦନସ୍ୟ ଚରଣେ ବିନ୍ୟସ୍ୟ ସ୍ୱୀୟଂ ଶିରଃ ॥

ଦେଖଇ ଯେ ବିଭୀଷଣ ବାନରଙ୍କ ଗତି । ଆନନ୍ଦେ ଶବ୍ଦ ମନରେ ହୁଙ୍କାର କରନ୍ତି । ବିସ୍ମିତରେ ବିଭୀଷଣ ରାମପାଶେ ଯାଇଁ । ନମସ୍କାର କରେ ନିଷ୍କପଟ ଚିତ୍ତେ ରହି । ସୁଗ୍ରୀବ ସହିତେ ଯେତେ ଯୂଥପତିକୁଳ । ପୂଜିଲେ ସକଳେ ବହୁ କରିଣ ଆଦର । ୬୭

ନୃପତିମୁକୁଟରତ୍ନଂ ଜ୍ଞାତ ପ୍ରସ୍ଥାଣପ୍ରଶସ୍ତିଂ
ପ୍ଲବଗବଳନିମଜ୍ଜଦ୍ଭୂଭରକ୍ରାନ୍ତଦେହଃ ।
ଲିଖତି ଦଶନଟଙ୍କୈ ରୁତ୍ପତଦ୍ଭିଃ ପତଦ୍ଭି-
କରଠକମଠଭର୍ତ୍ତୁଃ ଖର୍ପରେ ସର୍ପରାଜଃ । ୬୮ ।

ଶ୍ରୀରାମଙ୍କ ପାଦେ ପଡ଼ି ବୀର ବିଭୀଷଣ । କର ଯୋଡ଼ି ବାକ୍ୟରେ ସ୍ତୁତି କରି ଗାନ ॥ ହେ ସର୍ବ ନୃପ ମୁକୁଟମଣି ରଘୁନାଥ । ଯୁଦ୍ଧକୁ ବାହାର ବେଳେ ଯେଣୁ କପିଯୂଥ । ଭରେ କମ୍ପିଲା ବାସୁକୀ ଗାତ୍ର ଯେତେବେଳେ । କୂର୍ମରାଜ ତାକୁ ରକ୍ଷା କରଇ ପୃଷ୍ଠରେ । ୬୮ ।

ଭ୍ରାନ୍ତ୍ୱା ଦିଗ୍‌ବଳୟଂ ସୁବାହୁଦମନସ୍ତ୍ୱତ୍କୀର୍ତ୍ତି ହଂସୀ ଦିବଂ
ଯାତା ବ୍ରହ୍ମମରାଳସଙ୍ଗମବଶାତ୍ତସ୍ୟୈବ ଗର୍ଭିଣ୍ୟେ ଭୂତ୍ ।

ପଶ୍ୟ ସ୍ୱର୍ଗତରଙ୍ଗିଣୀପରସରେ କୁନ୍ଦାବଦାତଂତସ୍ମା
ମୃଳ୍ପଂ ଭାତି ବିଶାଳମଣ୍ଡଳସଦୃଶଂଶୀତଦ୍ୱି ଦ୍ୟୋମଣ୍ଡଳଂ । ୬୯ ।

ତୁମ୍ଭ କୀର୍ତ୍ତି ଗୁଣ ପ୍ରଭୁ କି କହିବ ମୁଖେ । ଦିଗ୍‌ବିଜୟ କଲେ ତୁମ୍ଭ କୀର୍ତ୍ତି ହଂସୀ ସୁଖେ । ସବୁ ଦିଗ ବୁଲିଯାଇ ମିଳିଲେ ସ୍ୱର୍ଗରେ । ବ୍ରହ୍ମାଙ୍କ ବାହନ ହଂସ ସାଙ୍ଗେ ଭେଟ ହେଲେ । ହଂସ ସଙ୍ଗ ପାଇ ହଂସୀହୋଇ ଗର୍ଭବାସ । ସ୍ୱର୍ଗେ ନଦୀକୂଳେ ଦେଲେ ଏକ ଅଣ୍ଡା ଶେଷ । ସେ ଅଣ୍ଡା ଅଟଇ ଦେଖ ଏ ଚନ୍ଦ୍ରମଣ୍ଡଳ । ଆକାଶରେ ଦିଶୁଅଛି କେଡ଼େନ୍ତ ଉଜ୍ଜ୍ୱଳ । ୬୯ ।

କୃତ୍ୱା ମେରୁମୁଦୂଖଳଂ ପ୍ରହସତା ବୃନ୍ଦେନ ଦିଗୋଷିତାଂ
ସ୍ୱର୍ଗଙ୍ଗାମୁଷଳେନ ଶାଳୟ ଇବ ତ୍ୱତ୍କୀର୍ତ୍ତୟଃ କଣ୍ଡିତାଃ ।
ଧାମାଂ ରାଶିରସୌ ତୁଷାରଶିଖରୀ ତାରାଗଣାସ୍ତୁକ୍ଷଣାଃ
ସଂସର୍ପଚ୍ଛଳିସୂର୍ପ ମଣ୍ଡଳପତଚ୍ଛ୍ୟୋତ୍ସ୍ନାଂ ଶବାଃ ପାଂଶବଃ । ୭୦ ।

ଆନନ୍ଦେ ମିଳିଣ ସବୁ ଦିଗନାରୀମାନେ । କଲେ ତୁମ୍ଭ କୀର୍ତ୍ତି ଧାନ୍ୟ କ୍ଷେତକୁ ଯତନେ । ପର୍ବତକୁ ଭୂମି କରି କଲେ ଉଦୁଖଳ । ଆକାଶ ଗଙ୍ଗାଙ୍କୁ କଲେ ଅବର ମୁଷଳ । ତହୁଁ କୀର୍ତ୍ତି ଧାନ କାଢ଼ି କୁଟନ୍ତେ ଗୃଉଳ । ଗଦା କରନ୍ତେ ହୋଇଲା ସେ ହିମଗିରିଲ । ଚଷୁ ହୋଇଅଛୁ ଏ ଆକାଶ ତାରାଗଣ । କୁଣ୍ଡା ହୋଇଅଛୁ ଦେଖ ଏହାଙ୍କ କାରଣ । ୭୦ ।

ନାଭ ଷୀରସମୁଦ୍ରସାନ୍ଦ୍ରଲହରୀ ଲବଣ୍ୟଲକ୍ଷ୍ମୀମୁଷ—
ସ୍ତ୍ୱତ୍କୀର୍ତ୍ତେସ୍ତୁଲନାଂ କଲଙ୍କମଳିନୋ ଧତ୍ତେ କଥଂ ଚନ୍ଦ୍ରମାଃ ।
ସ୍ୟାଦେବଂ ତ୍ୱଦଗ୍ରତସୌଧଶିଖରପ୍ରୋଦ୍‌ଭୂତଶସ୍ପାଙ୍କୁର—
ଗ୍ରାସବ୍ୟଗ୍ରମନାଃ ପତେତଦୁଦରେ ପୁନସ୍ତସ୍ୟାଙ୍କଶାୟୀ ମୃଗଃ । ୭୧ ।

ହେ ପ୍ରଭୁ ରଘୁନନ୍ଦନ ତୁମ୍ଭ କୀର୍ତ୍ତି ଗୁଣ । କରଇ କି କ୍ଷୀରସିନ୍ଧୁ ଶୋଭାକୁ ହରଣ । ନୁହଇ ଚନ୍ଦ୍ରମା ତାହାସଙ୍ଗେ ସମସର । କଳଙ୍କପର

ଅଙ୍ଗରେ ରହିଅଛୁ ପୂରି । ତୁମ୍ଭ ଶତ୍ରୁ ସୌଧଶିଖେ ଯେବେ ହୁଏ ଧ୍ୱଂସ । ଯେତେବେ ଚନ୍ଦ୍ରକୋଳୁ ମୃଗ ଅସିକରେ ଗ୍ରାସ । ନୋହିବ ଯେ ତୁମ୍ଭ କୀର୍ତ୍ତିସମ ଏ ସଂସାରେ । ଶୋଭା ଗୃହିଁ ଲୋଭ ହେବେ ସକଳ ଅମରେ । ୭୧ ।

କୋଦଣ୍ଡମଣ୍ଡଳବଳଃ ପ୍ରଚଣ୍ଡବାଣ-
ତୁଣ୍ଡେନ ଖଣ୍ଡିତଦଶାନନବାହୁଦଣ୍ଡଃ ।
ଆଖଣ୍ଡଳାଚଳଗଣ୍ଡନଚନ୍ଦ୍ରହାସଃ
ଶ୍ରୀଜାନକୀପତିରୁଦଃ ସ୍ଥଢ଼ପ୍ରତିଜ୍ଞଃ । ୭୨ ।

ଛୋଟଦେବ ତୁମ୍ଭ କୋଦଣ୍ଡେ ହେବ ଖଣ୍ଡ ଖଣ୍ଡ । ଛୁଡ଼ି ପଡ଼ିବ ବାହୁର ସହ ଦଶମୁଣ୍ଡ । ହୁଅନ୍ତୁ ତପର ବଧିବାକୁ ଇନ୍ଦ୍ରଜିତ । ପ୍ରତିଜ୍ଞା କରନ୍ତୁ ମୁଖେ ପ୍ରଭୁ ରଘୁନାଥ । ୭୨ ।

ପାତୁଂ ତ୍ରୀଣି ଜଗନ୍ତି ସନ୍ତତମକୂପାରାତ୍ ସମଭ୍ୟୁଦ୍ଧରନ୍
ଧାତ୍ରୀଂ କୋଲକଳେବରେ ହରିରଭୂଦ୍ ଯସ୍ୟୈକଦଂଷ୍ଟ୍ରାଙ୍କୁରାତ୍ ।
କୂର୍ମଃ କନ୍ଦତି ନାଳତି ଫଣିପତିଃ ପତ୍ରନ୍ତି ଦିଗ୍ଦନ୍ତିନୋ
ମେରୁଃ କୋଷତି ମେଦିନୀ ଜଲଜତି ବ୍ୟୋମାପି ରୋଲମ୍ବତି । ୭୩

ଧରଣୀ ରକ୍ଷା ନିମନ୍ତେ ବରାହ ରୂପରେ । ଯାହୁଁ ତୋଳି ଧରିଥିଲ ଛନ୍ଦଳ ଆକାରେ । ପୂର୍ବେ ସେ ଧରଣୀ ରହିଥିଲ ସିନ୍ଧୁ ମଧ୍ୟେ । ଏକଦନ୍ତେ ତୋଳି ଧରିଥିଲ ଯେ ଆନନ୍ଦ । ଦିଗଗଜ ହେଲେ ଦନ୍ତ କୂର୍ମ ଦନ୍ତମୂଳ । ମେରୁକୋଷ ହେଲ ଯେସନେକ ପଦ୍ମଫୁଲ । ନାଗରାଜା ହୋଇଥିଲେ ମୃଣାଳର ପରି । ଆକାଶ ଭୃଙ୍ଗ ପରାୟେ ରହିଥିଲ ଛେରି । ୭୩ ।

କୂର୍ମଃ ପାଦୋଽସ୍ୟ ଯଷ୍ଟିର୍ଭୁଜଗପତିରସୌ ଭାଜନଂ ଭୂତଧାତ୍ରୀ
ତୈଲାପୂରାଃ ସମୁଦ୍ରାଃ କନକଗିରିରୟଂ ବୃତ୍ତବର୍ତ୍ତିପ୍ରରୋହଃ ।

ଅଚିଷ୍ଟଣ୍ଡ୍ରଂ ଶୁଚ୍ଚୈଶ୍ଚଚର୍ଗଗନମଳିନମା କଜ୍ଜ୍ୱଳଂ ଦଧ୍ୟାନାଃ
ଶଦ୍ରୁଶ୍ରେଣୀପତଙ୍ଗା ଜ୍ୱଳନ୍ତି ରଘୁପତେ ତ୍ୱତ୍ ପ୍ରତାପପ୍ରଦୀପଃ । ୭୪ ।

ଅହେ ପ୍ରଭୁ ରଘୁନାଥ ତୁମ୍ଭ ମହିମାରେ । ପ୍ରତାପପ୍ରଦୀପ ତୁମ୍ଭର ଜଳେ ନିରନ୍ତରେ ॥ ଦୀପରୁଖା ପାଦ କୂର୍ମ୍ମ ବର ଯେ ଅଟନ୍ତି । ଅହୀବର ବାସୁକୀଟା ବାଡ଼ ହୋଇଛନ୍ତି । ପୃଥିବୀ ବଇଠା ତେଲ ସିନ୍ଧୁଜଳ ହେଲା । କନକ ଗିର ତହିଁରେ ବତୀ ବୋଲଇଲା । ଅଂଶୁଶିଖା ହେଲା ତହିଁ ସୂର୍ଯ୍ୟଙ୍କ କିରଣ । ଶିଖର କଜ୍ଜ୍ୱଳ ଏହି ମଳିନ ଗଗନ । ସେ ଦୀପ ଅଗ୍ନିରେ ଅରି ପତଙ୍ଗ ପରାୟେ । ଶତ୍ରୁ ତୁମ୍ଭର ପଡ଼ିବେ ଆପଣା ଇଚ୍ଛାୟେ । ୭୪ ।

ତୁଲାଧାରେ ଧାତା ବହନ୍ତି ବସୁଧା ଶୂର୍ପପଦଙ୍କଂ
ଫଣୀଶଃ ସ୍ୟାସ୍ତୁନଂ କନକଶିଖରୀ ମାନପଲିକା ।
ତୁଲାଦଣ୍ଡଃ ସତ୍ୟଂ ଯଦି ଭବତି ଦାମୋଦରଗଦା
ତଦାପ୍ୟେକୈକଶ୍ୟ ସ୍ତବ ଗୁଣସମୂହସ୍ତୁଲୟିତୁଂ । ୭୫ ।

ତୁଲାଧାର ଧର ପୃଥ୍ୱୀ ଧଇଲେ ବିଧାତା । ଅହୀବର ବାସୁକୀ ତହିଁରେ ହେବ ସୂତା ॥ କନକ ପର୍ବତ ହେବ ତୁଳିବା ପାଷାଣ । ତୁଲାଦଣ୍ଡ ହେବ ବିଷ୍ଣୁ ଗଦାର ସମାନ । ତେବେ ତୁମ୍ଭର ମହିମା ନ ହେବ ତଉଲ । ସାକ୍ଷାତ ବିଧାତା ଅଟି ଦଣ୍ଡି ଯେବେ ଧର ।୭୫।

କ୍ୱା ଶୃଙ୍ଗାରକଥା ତଥା ରଣକଥା ଗୀତାଦିକାନାଂ କଥା
ମାଦ୍ୟଦ୍ଦନ୍ତିକଥା ତୁରଙ୍ଗମକଥା କୋଦଣ୍ଡ ଦୀକ୍ଷାକଥା ।
ଏତଚ୍ଚୈବାସ୍ତୁ ପରଂ ପଲାୟନକଥା ତ୍ୱଦ୍‌ବୈରିଭୂମିଭୃତାଂ
ଦେବ ଶ୍ରୀରଘୁନାଥ ବୈରି ନଗରେ ସ୍ୱପ୍ନେଽପି ନାନ୍ୟାକଥା ।

ଛାଡ଼ିଲେ ଶୃଙ୍ଗାର କଥା ତୁମ୍ଭର ବଇରୀ । ନୃତ୍ୟଗୀତ ମାନ ସବୁ ଦେଲେଣି ପାଶୋରି । ଛାଡ଼ିଲେଣି ରଣକଥା ଗଜ ଅଶ୍ୱ କଥା । ଧନୁଶିକ୍ଷା ଆଦି ଯାହା ଯୁଦ୍ଧର ବ୍ୟବସ୍ଥା । ଅନ୍ୟକଥା ସ୍ୱପ୍ନ ପ୍ରାୟେ ନ ଅଣନ୍ତି ମନେ । ପଳାଇବା ଚିନ୍ତ ପଥ ସାଧନ୍ତି ସାଧନେ । ୭୬ ।

ଅଭ୍ୟଙ୍କ୍ତୀ ଯଦ୍ଧ ନ ଶ୍ରୁକ୍ରୁପ୍ୟନ୍ଧି ମୃଷା ବାଚଂ ନ ଚେନ୍ନାନ୍ୟସେ
ତଦ୍‌ବ୍ରୂମେ ଭ୍ରୂତକୀର୍ତ୍ତି ନେଷୁ ରସନା କେଷା ନ କଣ୍ଠସ୍ଥତେ ।
ଦେବ ତ୍ୱତ୍ପ୍ରତାପ ।ପତପନଜ୍ୱଲାବଲୀଶେଷିତାଃ
ସର୍ବେ ବାରିଧୟସ୍ତ୍ୱବାରିବନିତାନେନାମ୍ବୁଭିଃ ପୂରିତା ।୭୭।

ମିଥ୍ୟା ନ କରିବ ଯେବେ ମୋର ବଚନକୁ । କୋପ ନ କରିବ ଅତିଭକ୍ତ ବର୍ଣ୍ଣିବାକୁ । କହିବି ଅଭୁତ କୀର୍ତ୍ତି ତୁମ୍ଭର ତୁଟାଇ । ନ କହିବା ଯାଏ ଜିହ୍ୱା କଣ୍ଠୁ ନ ଛାଡ଼ଇ । ତୁମ୍ଭର ପ୍ରତାପ ରବି କିରଣ ବିସ୍ତାର । କରିଥିଲ ଶୋଷଣ ଯେ ସମୁଦ୍ରରୁ ବାରି । ତୁମ୍ଭର ଶତ୍ରୁ ସ୍ତ୍ରୀ ନେତ୍ର ବାରିବିନ୍ଦୁ । ସେ ଲୋତକ ଜଳେ ସିନ୍ଧୁ ପୂର୍ଣ୍ଣ ଅଛି ହୋଇ । ୭୭ ।

ରାମଦୂତଂ ହନୁମନ୍ତଂ ସ୍ତୌତି

ରଥଃ କ୍ଷୋଣୀ ଲୋକୋ ଧନୁରଗପତିର୍ଜ୍ୟା ଫଣିପତିଃ
ସୁରେନ୍ଦ୍ରା ଯୋଦ୍ଧା ସରସିଜଭବଃ ସାରଥିରପି ।
ଶରଃ ଶୌରିର୍ଦେବ ସ୍ୱି ପୁରପୁରଦାହେ ପରିକରେ
ତ୍ୱୟା ଭସ୍ମୀଭୂତା କନକମୟଲଙ୍କା ହନୁମତା । ୭୮ ।

ହନୁମନ୍ତଙ୍କୁ ସ୍ତୁତି କରନ୍ତି ବିଭୀଷଣ । ଶ୍ରୀରାମଚନ୍ଦ୍ରଙ୍କ ଦୂତ ପବନ ନନ୍ଦନ । ଯେଉଁ ପରି ତ୍ରିପୁରାସୁରଙ୍କୁ ପୋଡ଼ିଲେ ହର । ଲଙ୍କା-ପୋଡ଼ି ଦେଲ ତୁମ୍ଭେ ସେହି ପରକାର । ସକଳ ଭୁବନ ତହିଁ ହୋଇଅଛୁ ରଥ । ଶରାସନ ହୋଇଛି ହିମାଳୟ ପର୍ବତ । ହୋଇ-ଛନ୍ତି ନାଗରାଜା କାର୍ମୁକର ଗୁଣ । ଯୋଦ୍ଧା ହୋଇଛନ୍ତି ତହିଁ ପାର୍ବତୀରମଣ । ବ୍ରହ୍ମା ହୋଇଲେ ସାରଥି ବିଷ୍ଣୁ ହେଲେ ଶର । ଏତେ ମେଳି ଦହିଥିଲେ ତ୍ରିପୁରାର ପୁର । ଏକା ହୋଇ ତୁମ୍ଭେ ପୋଡ଼ି ଦେଇଅଛ ଲଙ୍କା । ସୁରଗଣ ଦେଖି ଯାକୁ କରୁଥାନ୍ତି ଶଙ୍କା । ୭୮ ।

ବିଭୀଷଣସ୍ୟ ଚେଷ୍ଟା ।

ଦୃଷ୍ଟ୍ବା ବାନରବାହିନୀମଦ୍ଭୁତାହୁଂକାରଦ୍ଧୁ କାରଣାଂ
ଶଙ୍କ ବାନ୍ ସ ବିଭୀଷଣଃ ଷଣମଭୂଦ୍ଧୁବାର ଦୋବକ୍ରମଂ ।
ପଶ୍ୟନ୍ ଦାଶରଥିଂ ପ୍ରମୋଦଲହରୀ ଗାମ୍ଭୀର୍ଯ୍ୟମାଜ୍ଞୃତ
ସ୍ତସ୍ତଃ ସଂଭ୍ରତବିକ୍ରମୋ ନ ଚଳିତୁଂ ସ୍ଥାତୁଂ ନ ଗନ୍ତୁଂ କ୍ଷମଃ ।୭୯

ବାନରବାହିନୀଙ୍କ ହୁଁକାର ଧ୍ୱନି ଶୁଣି । ଦେଖି ନେତ୍ରେ ବିଭୀଷଣ ଭୟ ମନେ ଆଣି । ରଣୋନ୍ମତ୍ତ ସୈନ୍ୟଙ୍କୁ ଦେଖଇ ହୋଇ ସ୍ଥିର । ଶ୍ରୀରାମଙ୍କ ପର ଦୃଷ୍ଟି ପଡ଼ିଲା ତାହାର । ଦେଖି ଆନନ୍ଦ ସାଗରେ ବୁଡ଼ିଲା ତା ମନ । କ୍ଷଣେ ପରାକ୍ରମେ ତାଙ୍କ କରେ ନିରୀକ୍ଷଣ । ରୂପକୁ ଅନାଇ ପାଦପାଣି ନ ଚଳିଲା । ଭକତ ଭାବତାହାର ହୃଦେ ଉଦେ ହେଲା । ୭୯ ।

ତଂ ଦୃଷ୍ଟ୍ବା ରାମଃ

ଦ୍ୱିଃ ଶରଂ ନୈବ ସଂଧତ୍ତେ ଦ୍ୱିଃ ସ୍ଥାପୟତି ନାଶ୍ରିତାନ୍
ଦ୍ୱିର୍ଦଦାତି ନଚାର୍ଥିଭ୍ୟୋ ରାମୋ ଦ୍ୱିର୍ନୈବ ଭାଷତେ ।୮୦।

ଶ୍ରୀରାମଙ୍କୁ ଦେଖିଣ ବୋଲଇ ବିଭୀଷଣ । ଅଶ୍ରିତ ଜନକୁ ମୁହିଁ କରଇ ପାଳନ । ଦୁଇଥର ଶର ମୁହିଁ ସନ୍ଧାନ ନ କରେ । ନ ଦୁଅନ୍ତି ବିମୁଖ ଯେ ମାଗୁଥିବା ନରେ ॥ ଆବର ନ କରେ ମୁହିଁ ଦୁଇଥର ଦାନ । ନ କହଇ କାହାକୁ ମୁଁ ଦୁଇଟି ବଚନ । ୮୦ ।

ପିତୃହନ୍ତା ସ୍ୱହନ୍ତା ବା ପୁନଃ ଶରଣମାଗତଃ
ପ୍ରାଣାଂସ୍ତ୍ୟାପି ପରିତ୍ୟଜ୍ୟ ରକ୍ଷିତବ୍ୟଃ କୃତାତ୍ମନା ।୮୧।

ପିତୃନାଶକ ହୋଇ କି ମୋ ନିଜଶତ୍ରୁ ହୋଇ । ଆସି ଯେବେ ମୋହଠାରେ ଶରଣ ପଶଇ । ମୁଁ ତାହାକୁ କରେ ଜାଣ ନିଷ୍ଟେହୁଁ ପାଳନ । ତା ନିମନ୍ତେ ଥାଉ ଅବା ଯାଉ ମୋର ପ୍ରାଣ । ୮୧ ।

ରାମବିଭୀଷଣୟୋରୁକ୍ତିପ୍ରତ୍ୟୁକ୍ତି

ଅପ୍ୟେ ରକ୍ଷୋନାଥ ନାନୁଜ କୁଶଳମପେ ବ କୁଶଳଂ
ଯତୋ ଯୌଷ୍ମାକୀଣଂ ଚରଣକମଳଂ ଦୃଷ୍ଟମଗାତ୍ ।
କାମ୍ୟଂ ଦେଶଂ ପୁଷ୍ପକମଳଯେବୈବ ବିଦ୍ଧତଂ
ଭବାନପ୍ୟେବ ଭୂକ୍ତି ଜନଗରଲଙ୍କା ରକ୍ଷ୍ୟତଃ । ୮୨ ।

ଅହେ ରାକ୍ଷସ ନୃପତି ଅନୁଜ ତୁମ୍ଭର । କୁଶଳ ବାରତା ସବୁ କ୍ଲାନ୍ତ ମୋ ଆଗର । ଶ୍ରୀରାମଙ୍କ ବାକ୍ୟ ଶୁଣି ବୋଲେ ବିଭୀଷଣ । କୁଶଳ ମୋ ସବୁ ଦେଖି ତୁମ୍ଭ ଶ୍ରୀଚରଣ । ପୁଛନ୍ତି ଶ୍ରୀରାମ ତୁମ୍ଭେ ଅଛି କାହିଁ । ବୋଲେ ବିଭୀଷଣ ତୁମ୍ଭପଦ ସେବାଇଁ ॥ ଶ୍ରୀରାମ ବୋଲନ୍ତି ଯେବେ ହୋଇବ ଆମ୍ଭର । ଆଜଠାରୁ ଲଙ୍କାରେ ଯେ ହେଲ ନୃପବର । ୮୨ ।

ତସ୍ୟ ତଦ୍ଭକ୍ତିମଧିଗମ୍ୟ ବିଭୀଷଣସ୍ୟ
ସୌମିତ୍ରିଣା ଚ ରଜନୀଚରଚକ୍ରରାଜ୍ୟେ ।
ପ୍ରୀତୋଽଭ୍ୟଷେଚୟଦମୁଂ ପ୍ରଦଦୌ ରଘୂଣାଂ
ପ୍ରାୟଃ ପ୍ରପନ୍ନ କରୁଣାରସଗା ମହାନ୍ତଃ । ୮୩ ।

ଦେଖି ଅତ୍ୟନ୍ତ ଭକତ ବିଭୀଷଣଙ୍କର । ଲକ୍ଷ୍ମଣଙ୍କୁ ଗୃହ୍ଣି ବୋଲନ୍ତି ରଘୁବୀର ॥ ଏ ଲଙ୍କା ନଗରେ ରାଜା କରିଅ ଏହାଙ୍କୁ । ଶରଣ ପଶଇ ଛାଡ଼ି ନିଜ ସୋଦରଙ୍କୁ ॥ ମହତ ଜନର ଅଟେ ଏମନ୍ତ ଦେଖିର । ଆଶ୍ରିତ ଜନଙ୍କୁ କରେ ନିର୍ଭୟ ସତ୍ୱର । ୮୩ ।

ଅତ୍ରାନ୍ତରେ ବାନରାଃ ।

ଅତ୍ରୈବ ବାସ୍ୟ ବିଭୀଷଣସ୍ୟ ଶରଣାପନ୍ନସ୍ୟ ମୁକ୍ତ୍ୱାନତେ
ସନ୍ତୁଷ୍ୟାପୁ ଦଦତ୍ୟମୁଂ ରଘୁପତିର୍ଲଙ୍କାଧିପତ୍ୟଶ୍ରିୟଂ ।
ଏତସ୍ୟୈବ ଭୁଜବନ୍ଧ ପ୍ରଭବତୋ ସୁଗ୍ରୀବରାଜ୍ୟାର୍ପଣେ
ତ୍ରୈଲୋକ୍ୟପ୍ରଥମାନସତ୍ୟଚରିତାଃ ସର୍ବେ ବୟଂ ସାକ୍ଷିଣଃ ।୮୪।

ବାନରେ ମିଳନ୍ତି ସର୍ବେ କ୍ରୁଦ୍ଧାକ୍ରୁଦ୍ଧ ହେଲେ । ବିଭୀଷଣକୁ ଶ୍ରୀରାମ ପୂଜା କରିଲେ ॥ ଯେ ତାଙ୍କ ଚରଣେ ଆସି ପଶିବ ଶରଣ । ନୃପତି ତାହାଙ୍କ କରିବେ ଉଦ୍ଧାରଣ ॥ ସୁଗ୍ରୀବଙ୍କୁ ରାଜାକଲେ କିଷ୍କିନ୍ଧ୍ୟା ନଗରେ । ଦେଖିଅଛୁଁ ଅମ୍ଭେମାନେ ନେତ୍ରରେ ସକଳେ । ୮୪ ।

ଦୃଷ୍ଟ୍ବା ଦାଶରଥେର୍ବିଭୀଷଣମନୁପ୍ରେମାଣମାବର୍ଜିକଂ
ସାନନ୍ଦଂ ଚ ସବିସ୍ମୟଂ ଚ କପୟଃ ଶ୍ଲାଘ ସହସ୍ରଂ ଜଗୁଃ ।
ସୁଗ୍ରୀବାଙ୍ଗଦଜାମ୍ବବତ୍ପ୍ରଭୃତିଭିଃ ସାର୍ଦ୍ଧଂ ହନୂମାନଥ
ପ୍ରାଜ୍ଞସ୍ତସ୍ୟ ବିଭୀଷଣସ୍ୟ କଥନୈଃ ସୌହାର୍ଦ୍ଦମାରବ୍ଧବାନ୍ ।୮୫।

ଦେଖିଲେ ବାନରେ ବିଭୀଷଣଙ୍କର ପ୍ରତି । ବହୁତ ସୁଦୟା କଲେ ପ୍ରଭୁ ଦାଶରଥି ॥ ଅଶ୍ଚର୍ଯ୍ୟ ମନେ କରନ୍ତି ଯୂଥପତି ଗଣ । ବିଭୀଷଣଙ୍କୁ ବହୁତ ପ୍ରଶଂସା କରଣ ॥ ହନୁମନ୍ତ ଅଙ୍ଗଦ ସୁଗ୍ରୀବ ଜାମ୍ବବାନ । ଆଦର କରନ୍ତି ସର୍ବେ ହୋଇ ତୋଷମନ । ୮୫ ।

ଯା ବିଭୂତିର୍ଦଶଗ୍ରୀବେ ଶିରଶ୍ଛେଦେଽପି ଶଙ୍କରାତ୍ ।
ଦର୍ଶନାଦେବ ରାମସ୍ୟ ସା ବିଭୂତିର୍ବିଭୀଷଣେ ।୮୬।

ଶିବଙ୍କ ପ୍ରସାଦୁଁ ଯେ ରାବଣ ଲଙ୍କେଶ୍ୱର । ତପେ ମୁଣ୍ଡ ଛିଣ୍ଡାଇଣ ପାଇଥିଲା ବର । ତାହା ସବୁ ଦେଖୁଁ ଦେଖୁଁ ହରାଇ ବସିଲା । ସେ ବିଭୂତି ଏବେ ବିଭୀଷଣ ଭୋଗକଲା । ୮୬ ।

ତଦନନ୍ତରଂ ସମୁଦ୍ରଂ ପ୍ରତି ରାମଃ ।
ତ୍ୱମସି କୁଳଗୁରୁର୍ମେ ଦେହି ମାର୍ଗଂ ପୟୋଧେ
ଶରସି ବିନିହତୋ ମେ ଭକ୍ତ୍ୟୁକ୍ତୋଽଞ୍ଜଳିସ୍ତେ ।
ଦଶବଦନହୃତା ତେ ସା ସ୍ନୁଷା ପ୍ରତ୍ୟପେୟା-
ଦ୍ୱିପୁଳକୁଳନିଧନେନ ଙ୍ଖ୍ୟତାଂ ମେ କଳଙ୍କଃ । ୮୭ ।

ତଦନ୍ତରେ ସମୁଦ୍ରକୁ କୁହନ୍ତି ରଘୁପତି । କର ଯୋଡ଼ିଣ ବହୁତ ବିନୟ କରନ୍ତି ॥ ଅଟ ତୁମ୍ଭେ କୁଳଗୁରୁ ଅମ୍ଭମାନଙ୍କର । ଛାଡ଼ିଦିଅ ପଥ

ତସ୍ମା ବନ୍ଧଣ ହୁଦର ॥ ପୁତ୍ରବଧ୍ୟକ୍ତ ତୁମ୍ଭର ଲଙ୍କାର ରାବଣ । ସେହିଠାଇ ଚିନେଇଛୁ ବଲ ଲ୍ଲାଘ ସେ କରଣ ॥ ସମରେ ତାହାଙ୍କ ମୁହିଁ ବିନାଶ କରିବି । ତେବେ ସୀତାଙ୍କୁ ମୋହର କଷ୍ଟ ଉଣ୍ଡାଇବି । ୮୭ ।

ଇତ୍ୟୁକ୍ତ୍ୱା ପ୍ରତ୍ୟୁପ୍ରତ୍ୟୁଷ୍ଟିତ ରାମେ ସମୁଦ୍ର ପନ୍ଥାନମତ୍ୟକାତ
ସୌମିତ୍ରିଂ ପ୍ରତି ରାମଃ ।

ଯାଚଞ୍ଚା ଦୈନ୍ୟପରାଭବପ୍ରଣୟିତା ନେଷ୍ଟା କୃଭଃ ଶିକ୍ଷିତା
ସେବ୍ୟାଧମ୍ୱଜତଃ କଦା ତଦ୍ଭୁଲେ ମୌଳୌ ନବଦ୍ଧୋଽଞ୍ଜଳିଃ ।
ତପ୍ରବ୍ୟଂ ବାହିତଂ ତଥାପ୍ୟଦନ୍ୟା ନୈବେ ପରୋଧଃ କୃତଃ
ପାଣିସ୍ତଂ ପ୍ରତି ସପ୍ରତି ପ୍ରତଦେଦଂ ସ୍ତ୍ରୀଷ୍ଟଂ ଧନୁର୍ବାଞ୍ଛତି । ୮୮ ।

ଏହାପର କରଯୋଡ଼ି ବହୁତ ପ୍ରକାର । ସ୍ତୁତି କଲେ ସମୁଦ୍ରଙ୍କୁ ପ୍ରଭୁ ରଘୁବୀର ॥ ତଥାପି ନ ଘୁଡେ଼ ବାଟ ଯହୁଁ ସେ ବରୁଣ । ଲକ୍ଷ୍ମଣଙ୍କୁ ଚାହିଁ ଆଜ୍ଞାଦେଲେ ରଘୁରାଣ ॥ ଇକ୍ଷ୍ୱାକୁ ବଂଶ ନୃପତିମାନଙ୍କର ଗତି । ନମ୍ର ହୋଇ କାହା ସଙ୍ଗେ ନ କରନ୍ତି ପ୍ରୀତି ॥ ଏହାକୁ ବହୁତ ଅମ୍ଭେ ବିନୟୀ ହୋଇଲୁଁ । ତଳେ ଉପରୋଧ ମାତ୍ର କିଛି ନ ଦେଖିଲୁଁ ॥ ବେଗେ ଆଣ କୋଦଣ୍ଡକୁ ଦିଅ ମୋର ହସ୍ତେ । ସମୁଦ୍ରକୁ ଶୁଖାଇବି ଦେଖନ୍ତୁ ସମସ୍ତେ । ୮୮ ।

ଅନନ୍ତରେ ସୂର୍ଯ୍ୟସମୁଦ୍ରସ୍ୟୈ·ରୁକ୍ତିପ୍ରତ୍ୟୁକ୍ତୀ ।

ହେ ସିନ୍ଧୋ ବଦ ଭିନ୍ନମନ୍ ଚଳସି କିଂ ଶ୍ରୀରାମଭଦ୍ରାଶୁଗୋ-
ଦାର୍ଚ୍ଚିର୍ଭ୍ୟ ଭୟେନ୍ କିଂ ତବ ଭୟଂ ଜ୍ଞାତସ୍ତନବସ୍ତୁଦ୍‌ଗୁଣାଃ ।
ତଦ୍ୟେଯଦ୍‌ଦବଦନେ ରମା ରସଦନେ ପୀୟୂଷମା ଭାଷିତେ
ବାହ୍ନୌ କଳ୍ପତରୁର୍ମିଣ ତବଶିଖରେଶ୍ରଣୀଷ୍ୱ ହଳାହଳଂ । ୮୯ ।

ଶ୍ରୀରାମଙ୍କ କୋପଦେଖି ଭୟରେ ବରୁଣ । ଥରହର ହୋଇ ଅଙ୍ଗ କମ୍ପଇ ବହନ । ଦେଖିଣ ଏମନ୍ତଦଶା ବୋଲେ ସୂର୍ଯ୍ୟଦେବ । କାହିଁ-ପାଇଁ କମ୍ପୁଅଛ ଫିଟାଇ କହିବ । ବୋଲଇ ବରୁଣ ଦେଖି ଶ୍ରୀରାମଙ୍କ

ଟର । ଭୟରେ କାତର ହୋଇ କମ୍ପେ ମୋ ଶରୀର । କଣ୍ଠ ଛନ୍ତି ଦ୍ୱାରକାର ଭ୍ରମର କାଉସ୍ତ । ସିନ୍ଧୁ ବୋଲେ ତୁମ୍ଭ ବଂଶ ଜଗତେ ଅଜୟ । ରହିଛନ୍ତି ଲକ୍ଷ୍ମୀଦେବୀ ଯାହାଙ୍କ ସଦନେ । ଚନ୍ଦ୍ର ପୁର ରହିଛନ୍ତି ତାହାଙ୍କ ବଦନେ । ଅମୃତ ଅଛି ସର୍ବାଙ୍ଗ ଶରୀରେ ତାଙ୍କର । କଳକୂଟ ବିଷ ଅଛି ବାର୍ତ୍ତାରେ କେବଳ । ୮୯ ।

ଶ୍ରୀରାମଃ ସକୋପଃ ।

ଗୃହମାନସ୍ୟ ସୌମିତ୍ରେ ସରାନାଶୀବିଷୋ ପମାନ୍ ।
ସମୁଦ୍ରଂ ଶୋଷୟିଷ୍ୟାମି ପାଦୈଯାନ୍ତୁ ପ୍ଲବଙ୍ଗମାଃ । ୯୦ ।

ଲକ୍ଷ୍ମଣଙ୍କୁ ଗୃହିଁଣ ବୋଲନ୍ତି ରଘୁବୀର । ଅଣ ବାନ୍ଧୁ ବେଗକର୍ ଧନୁଶର ମୋର ॥ କ୍ରୋଧଭରେ ହୋଇ ଅତି ଧନୁକୁ ଟେକିଲେ । ସପଃ ତୁଲ୍ୟ ଶୋଷକଙ୍କୁ ଗୁଣେ ଚଢ଼ାଇଲେ ॥ ଶୁଖିଯାଉ ପାଣିସବୁ ଫିଟି ଯାଉ ବାଟ । ଗୃଲଯିବେ ଆନନ୍ଦରେ ମୋର ସବୁ ଥାଟ । ୯୦ ।

ଦମ୍ଭୋଳିକଲ୍ପୈର୍ବିଶିଖୈ ର୍ମଦୀୟୈ
ରମ୍ଭୋନିଧିଂ ପାଂଶୁନିଧିଂ କରିଷ୍ୟେ ।
ସ୍ଥଳୀକରିଷ୍ୟେ ମରୁଭୂ କରିଷ୍ୟେ ।
ଭସ୍ମୀକରିଷ୍ୟେ ମୃଗତୃଷ୍ଣୁସ୍ୟ କରିଷ୍ୟେ । ୯୧ ।

ଦେଖ ଦେଖ ବଜ୍ରତୁଲ୍ୟ ବାଣକୁ ପ୍ରହାର । ସିନ୍ଧୁଜଳ ଶୁଖାଇଣ ଉଡ଼ାଇବି ଧୂଳି ॥ ସ୍ଥଳ ପଥ କରାଇବି ଉଡ଼ାଇବି ମେରୁ । ମୃଗତୃଷ୍ଣା ନ୍ୟାୟ ଏହା ଦେଖାଯିବ ଦୂରୁ । ୯୧ ।

ଶ୍ରୀରାମଚନ୍ଦ୍ରେ ଦଶବକ୍ତ୍ରପ୍ରୀତ୍ୟ ମାର୍ଗାୟ ଧାଏ କୃତବଦ୍ଧକୋପେ ।
ଅଗ୍ନେୟମସ୍ତ୍ରଂ ପ୍ରତିସନ୍ଦଧାନେ ମୈନାକଶୈଳଶ୍ଚଳିତୋ ବଭୂବ । ୯୨ ।

ଏହୁପରି ରାମଚନ୍ଦ୍ର ଭାବନ୍ତି ମନରେ । ଲଙ୍କାକୁ ଯିବାକୁ ଯହୁଁ ପଥ ନ ଦେଖିଲେ । ଅଗ୍ନି ଶରକୁ ଧନୁରେ କରନ୍ତେ ସନ୍ଧାନ । ମୈନାକ ପର୍ବତ ଆଦି ହେଲେ କମ୍ପମାନ । ୯୨ ।

( ଅଥ ଶ୍ରୀରାମୋ ସମୁଦ୍ରଂ ପ୍ରତି ବାଣଂ କ୍ଷିପତି । )

ଦଗ୍ଧାଶା ଧୂମାୟନ୍ତେ ଜ୍ୱଳିତମଭବତ୍ସାଗରଜଲଂ
ପରଭେମ୍ନୀନକ୍ରାଂ ସ୍ଥୂଠେନମଗମନ୍ ଶଙ୍ଖମଣୟଃ ।
ପତତ୍ୟକ୍ତେ ବାଣେ ରଘୁପତିବୃତ୍ତେନାଥ ସହସା
ଦଧାନ୍ ମୂର୍ତ୍ତିଂ ସିନ୍ଧୁ ର୍ଜଲଦମଲିନଂ ପ୍ରାଦୁରଭବତ୍ । ୯୬ ।

କ୍ରୋଧଭରେ ଯହୁଁ ରାମ ଶର ପ୍ରହାରିଲେ । ଜଳ ସ୍ଥଳ ନଭ ଅନ୍ଧ ଅନ୍ଧକାର କଲେ । ଧୂମମୟ ଦେଖାଗଲା ସର୍ବଦିଗମାନ । ବିଚଳିତ ହେଲେ ସର୍ବ ଜଳଜନ୍ତୁଗଣ ॥ ବାହାର ହେଲା ସମୁଦ୍ର ମେଘବର୍ଣ୍ଣ ଧରି । ବାଣଘାତେ ତନୁ ତାର ହେଉଅଛି ଘାରି ॥ ଶ୍ରୀରାମଙ୍କ ପାଶେ ଯାଇ ହୁଅଇ ପ୍ରବେଶ । ମଳିନ ବଦନ କୃଷ୍ଣବର୍ଣ୍ଣ ଅଙ୍ଗଦେଶ । ୯୩ ।

ସମୁଦ୍ରଂ ପ୍ରତି ସୂର୍ଯ୍ୟଃ ।

ହାସଂ ମୁଞ୍ଚ ସମୁଦ୍ର କୋପଦହନୋ ରାମସ୍ୟ ବାଞ୍ଛତ୍ୟୟଂ
ବଲୀଭୂତଦଶ ସ୍ୟସୁନ୍ଦରମୃଗ ମକ୍ଷ୍ଣାପଙ୍କଃ ସାଞ୍ଜନଂ ।
କାମଂ ତେ ମକରୀ ଗଣୋବହରତାମେତସ୍ୟ ଲଙ୍କେଶ୍ୱର—
ସ୍ତ୍ରୀଗଣ୍ଡସ୍ଥଳପତ୍ରଭଙ୍ଗମକରୀବଧ୍ୱଂସିନଃ ସାୟକାଃ । ୯୪ ।

ଦେଖି ସିନ୍ଧୁର ଏ ଦଶା ବୋଲେ ଦିବାକର । ତେଜ ତେଜ ମନୁ ଭୟ ହୁଅ ଦଣ୍ଡେ ସ୍ଥିର । ଲଙ୍କାର ରାବଣ ବଳାତ୍କାରେ ଯାଇ ଆଣି । ବନ୍ଦୀକରି ରଖିଅଛି ଶ୍ରୀରାମଙ୍କ ରାଣୀ । ତାହାଙ୍କ ନେତ୍ରରୁ ଅଶ୍ରୁଜଳ ବହୁଅଛି । ସେ ଜଳ ରାମଙ୍କ କ୍ରୋଧାନଳ ବଢ଼ାଉଛି । ଯେବେ ଏ ଶର ରାବଣ ପୁର ନାରୀଙ୍କର । ଗଣ୍ଡସ୍ଥଳ ମକରୀକୁ ନାଶିବ ତାଙ୍କର । ତେବେ ନିଶ୍ଚିନ୍ତରେ ସର୍ବ ଜଳଜନ୍ତୁଗଣ । ମକର କୁମ୍ଭୀର ସୁଖେ କରିବେ ଭ୍ରମଣ ।୯୪।

ସମୁଦ୍ରଃ ସବିନୟଂ ।

ପ୍ରଳୟଦହନତାମ୍ରଂ ଜ୍ୱାଳିତଂ ତେ ଶରୌଘୈଃ
କଞ୍ଚଳିତସଲିଲେଽହଂ ଦେବ କୋପଂ ଜହୀହି ।

ନଳକରତଳଗାଣ୍ଡୌ ବାନରାଘାତଶୈଳୈ-
ଦରତଯୁ ମୟୂ ସେତୁଂ ସ୍ପୃଷ୍ଟ ପାରଂ ପାୟୁ ହା । ୧୫ ।

ବହୁତ ବାନର ହୋଇ ସମୁଦ୍ର ଶ୍ରମଙ୍କ । କହଇ କର ଯୋଡ଼ିଣ ନବାଂକୋପକୁ । ପ୍ରଳୟ ଅନଳ ସମ ତୁମ୍ଭର ଯେ ଶର । ସେ ଶରେ ଶୁଷ୍କ ହୋଇବ ସବୁ ସିନ୍ଧୁଜଳ । ଆଜ୍ଞା ଦିଅନ୍ତୁ ବାନରେ ପର୍ବତ ଆଣନ୍ତୁ । ନଳକୁ ଛୁଇଁ ତାହା ଜଳରେ ପକାନ୍ତୁ । ନଳ ଛୁଇଁଲେ ଶିଳା ଜଳରେ ଭାସିବ । ତଥିପରେ ସୁଖେ ସୈନ୍ୟ ଯେନ ପାରହେବ ।୧୫।

ସେତୁକରଣାରମ୍ଭେ ରାମଂ ପ୍ରତି ନଳଃ
ରାମରତ୍ନମହଂ ବନ୍ଧେ ଶତକୂଟକଟପେଟକଂ ।
କୌଶଲ୍ୟାସୁଶୁକ୍ତିଭୂତଂ ଜାନକୀକଣ୍ଠଭୂଷଣଂ । ୧୬ ।

କରଯୋଡ଼ି ନଳ ବୋଲେ ଶ୍ରୀରାମଙ୍କୁ ଗୁହାଁ । ଆଜ୍ଞାଦ୍ୟନ୍ତୁ ମୋତେ ପ୍ରଭୁ ବନ୍ଧଦେବା ପାଇଁ । ତୁମ୍ଭେ ମୋର ରତ୍ନତୁଲ୍ୟ କରୁଛି ବନ୍ଧନ । ଅବର ଯେ ରତ୍ନମାନଙ୍କ କଣ୍ଠଭୂଷଣ । କଉଶଲ୍ୟା ଗର୍ଭଜାତ ଶୁକ୍ତିତୁଲ୍ୟା ହୋଇ । ଶତକୂଟେ ପେଡ଼ି ତୁଲ୍ୟ ରହିଥିଲ ଯାଇ । ୧୬।

ଅଥ ସମୁଦ୍ରେ ସେତ୍ୱାରମ୍ଭଃ ।

ଉତ୍ପାଟ୍ୟୋତ୍ପାଟ୍ୟ ଶୈଳାନ୍ ପ୍ରକଟକଠିନତାପ୍ରାପ୍ତପାତାଳମୂଳା—
ନୁତ୍ତୁଙ୍ଗୋତ୍ତୁଙ୍ଗଶୃଙ୍ଗାକଳିତଘନବ୍ୟୋମଶୃଙ୍ଗାନ୍ ଧରିତ୍ରୀକାର୍ଣ୍ଣାନ୍ ।
ଦୁର୍ବାର୍ଯ୍ୟାନାଞ୍ଜନେୟପ୍ରମୁଖକପିଗଣାସ୍ତେ ସମାନୀୟ ରନ୍ତୁଂ
ସିନ୍ଧୌ ବଦ୍ଧାୟୁଦୋର୍ଭ୍ୟାଂବ୍ୟରଚୟତ ନଳୋନାମଯୁଂ ସେତୁବନ୍ଧଂ ॥

ଏହା ଶୁଣି ହନୁ ଆଦି ସୈନ୍ୟଗଣମାନେ । ଉପାଡ଼ିବାକୁ ପର୍ବତ ଗଲେ ଏକେଠେକେ । ବଡ଼ ବଡ଼ ଗିରିମାନ ଥିଲେ ଯହିଁ ଯେତେ । ପାତାଳ ଭେଦିଛି ମୂଣ୍ଡ ଅକାଶ ପର୍ଯ୍ୟନ୍ତେ । ଗିରିମୁଣ୍ଡେ ବୃହି ଅଛନ୍ତି କରିବରଳ । ପକ୍ଷୀପ୍ରାୟ ଗତକର ଅକାଶମାର୍ଗର । ସେ ଗିରିକ ଛୁଇଁ ନଳ ଘଟାନ୍ତେ ଜଳରେ । ଭାସଇ ତା ସିନ୍ଧୁ ମଧ୍ୟେ ସେତୁ ପରକାରେ । ୧୭।

ଇତ୍ୟବସରେ ରାମଂ ପ୍ରତି ଲକ୍ଷ୍ମଣଃ ।

କପୀନ୍ଦ୍ରସେନାପ୍ଲବଗୈଃ ପ୍ରରୋଗୈଃ ପୟୋଧିମଧ୍ୟଂ ଭୂଧରାଙ୍ଘ୍ରିଂ ବ୍ୟଲୋକ୍ୟ ।
ତତ୍ପୃଷ୍ଠଗୈଃ ପଙ୍କମୟଂ ତଦନ୍ୟୈର୍ବସୀଦହମ୍ଭୋନିଧିରେବ ମୂଢେ ।୯୮ ।

ଦେଖି ଲକ୍ଷ୍ମଣ କହନ୍ତି ଶ୍ରୀରାମଙ୍କ ଅଗ୍ରେ । ଯେଉଁ କପିସୈନ୍ୟ ପ୍ରଭୃ ଅସିଗଲେ ବେଗେ । ଦେଖିଥିଲେ ସମୁଦ୍ରକୁ ଜଳ ପ୍ରକାରେ । ତାଙ୍କ ପଛେ ଅଉ ଯେଉଁ କପିଏ ଅସିଲେ । ସେମାନେ ଦେଖିଲେ ସମୁଦ୍ରକୁ ପଙ୍କମୟ । ତାଙ୍କପଛେ ଅସିଗଲେ ଯେଉଁ କପିଚୟ । ଦେଖିଣ ଅଶ୍ଚର୍ଯ୍ୟ ବଡ ହୋଇଣ ପୁଛନ୍ତି । ସମୁଦ୍ର କେଉଁଠାରେ ଥିଲା ବୋଲି ପଚାରନ୍ତି ।୯୮।

ରାମଂ ପ୍ରତି ସୁଗ୍ରୀବଃ ।

ହେମଚତ୍ୱରକପୀନ୍ଦ୍ରୈର୍ନୀୟମାନେ ନଗେନ୍ଦ୍ରେ
ଗିରିକୁହରନିବାସା ରାଘବ ତ୍ୱତ୍ପ୍ରସାଦାତ୍ ।
ସୁରକରିବରପେୟାଂ ପ୍ରାପ୍ୟ ମନ୍ଦାକିନୀଂ ଖେ
ସୁରଲିତକରଦଣ୍ଡାଃ କୁମ୍ଭିନାମ୍ଭଃ ପିବନ୍ତି । ୯୯ ।

ସୁଗ୍ରୀବ ନୃପତି ବୋଲେ ଶ୍ରୀରାମଙ୍କୁ ଶୁଣ । ଥିଲେ ଯେତେ ଚତୁର ଯୂଥପତି ତହିଁ । ଆକାଶମାର୍ଗେ ଅଣିଲେ ଗିରିମାନ ଘେନି । ବାଟେରେ ଭେଟିଲେ ଯାଇଁ ନଦୀ ମନ୍ଦାକିନୀ । ସେ ମନ୍ଦାକିନୀରୁ ଜଳ ବହେ ନିତି ପ୍ରତି । ସେ ଗିରି ସ୍ରୋତ ସମୀପେ ଐରାବତ ହସ୍ତୀ । ଶୁଣ୍ଢେ ତୋଳିଣ ତହିଁରୁ ଜଳ ଅନନ୍ଦରେ । ପିଇ ହସ୍ତୀଗଣ ଅନ୍ତି ସେ ଗିରି କନ୍ଦରେ ।୯୯।

ଅନ୍ୟାବସରେ ବିଭୀଷଣଃ ।

ଏତେ ମଜ୍ଜନ୍ତି କସ୍ମାତ୍ତ୍ୟପ୍ଲବଂ ତେ ପ୍ରସ୍ତରାଦୁସ୍ତରେ
ଧିଙ୍କୌ ହନ୍ତ ତରନ୍ତି ରାଘବଭୟଂ ସପାଦଯନ୍ତୋ ଭୃଶଂ ।
ନୈତେ ଗ୍ରାବଗୁଣା ନ ବାରିଧିଗୁଣା ନୈବଂ କପୀନାଂ ଗୁଣାଃ
ଶ୍ରୀମଦ୍ଦାଶରଥେରୟଂ ହି ସହଜା ଶକ୍ତିଃ ସମୁନ୍ମୀଲତି । ୧୦୦ ।

ବିଭୀଷଣ ବୋଲେ ଶୁଣ ପ୍ରଭୁ ରଘୁନାଥ । ଆଶ୍ଚର୍ଯ୍ୟ ହୋଇଲି ଦେଖି ତୁମ୍ଭର ଚରଣ । ସାମାନ୍ୟ ପାଷାଣ ହେଲେ ବୁଡ଼ଇ ସଲିଳେ । ଏତେ ବଡ଼ବଡ଼ ଗିରି ଭାସୁଅଛୁ ଜଳେ । ରାକ୍ଷସଙ୍କ ମନେ ଭୟ ହୁଏ ତାହା ଦେଖି । ଏବେଠେବେଣି ଭ୍ରମୁଛନ୍ତି ପାଷାଣ ନିରେଖି । ଏ ନୁହଇ ପ୍ରଭୁ କିଛି ପାଷାଣର ଗୁଣ । କିବା ସମୁଦ୍ରର ଦ୍ୱାରୁ ନୁହଇ ଏମାନ । କପିଙ୍କର ଗୁଣ କିବା ନୁହଇ ଏମନ୍ତ । ଜାଣିଲି ଏ ତୁମ୍ଭ ଶକ୍ତି ଅଟେ ରଘୁନାଥ । ୧୦୯ ।

ସୁଗ୍ରୀବଃ ।

ଦୁର୍ବୃତ୍ତସଙ୍ଗତରନର୍ଥପରମ୍ପରାୟା
ହେତୁଃ ସତାଂ ଭବତି କିଂ ବଚନୀୟମତ୍ର ॥
ଲଙ୍କେଶ୍ୱରୋ ହରତି ଦାଶରଥେଃ କଲତ୍ରଂ
ପ୍ରାପ୍ନୋତି ବନ୍ଧନମସୌ କିଲ ସିନ୍ଧୁନାଥଃ । ୧୦୧ ।

ସୁଗ୍ରୀ ବୋଲେ ଦେବ ପାଇ ଦୁର୍ବୃତ୍ତ ସଙ୍ଗତି । ସାଧୁଜନମାନଙ୍କର ନାଶଯାଏ କୀର୍ତ୍ତି ॥ ଦେଖ ହରିଲା ରାବଣ ଶ୍ରୀରାମଙ୍କ ନାରୀ । ସମୁଦ୍ର ବନ୍ଧନ ହେଲା ଖଳସଙ୍ଗ କରି । ୧୦୧ ।

ସମୁଦ୍ରଂ ପ୍ରତି ବାନରାଃ ।

ଖଳଃ କରୋତି ଦୁର୍ବୃତ୍ତଂ ନୂନଂ ଫଳତି ସାଧୁଷୁ ।
ଦଶାନନୋ ହରେତ୍ସୀତାଂ ବନ୍ଧନଂ ସ୍ୟାନ୍ମହୋଦଧେଃ ୧୦୨ ।

ଏହା ଦେଖିଣ ବାନରେ କ୍ରୁଦ୍ଧାକ୍ରୁଦ୍ଧ ହେଲେ । ଖଳସଙ୍ଗ କରି ସାଧୁ ବନ୍ଧନ ଲଭିଲେ । ଯଦ୍ୟପି କରଇ ସାଧୁ ଖଳ ସଙ୍ଗେ ବାସ । ନଷ୍ଟେ ହୁଅଇ ତାଙ୍କର ସୁକୃତ ଯେ ନାଶ ॥ ସିନ୍ଧୁପାରି ହେଲା ଚୋରି କରି ଦଶାନନ । ସେହୁ ଅପରାଧେ ସିନ୍ଧୁ ଲଭିଲା ବନ୍ଧନ । ୧୦୨ ।

ଜମ୍ବୁବାନାହ ।

ଉତ୍ତୁଙ୍ଗଂ ନଗପାନପାଦପି ଦୃଢଂ ସୁଗ୍ରୀବସଖ୍ୟାଦପି
କ୍ଲିଷ୍ଟଂ ଲକ୍ଷ୍ମଣଭକ୍ତିତୋଽପ୍ୟବଚଳଂ ସୀତାଚରିତ୍ରାଦପି ।

ସ୍ୱାର୍ଦ୍ଧଂ ରାବଣମୋହଭୋଃପି ଗିରିଭିସ୍ତୈସ୍ତୈରହୋ ବାନରୈଃ
ସେତୁଂ କୌଣପଧୂମକେତୁମକରୋଦ୍ରାଜ୍ଞରେ ରାଘବଃ ।୧୦୩।

କହେ ମନ୍ତ୍ରୀ ଜାମ୍ବବାନ ସୈନ୍ୟଙ୍କୁ ଅନାଇ । ବାନ୍ଧିଲେ ସମୁଦ୍ରେ ବନ୍ଧ ପ୍ରଭୁ ରଘୁସାଇଁ ॥ ସେ ବନ୍ଧ ଉଚ୍ଚ ହୋଇଛି ମନଠାରୁ ବେଶି । ଦୃଢ଼ତା ହୋଇଛି ସୁଗ୍ରୀବିସପଣ ଅଧି ॥ ଲକ୍ଷ୍ମଣଙ୍କ ଉକତରୁ ପାଷାଣ ଲଗିଲ ସୀତାଙ୍କଠାରେ ଚରେନ ଅଚଳ ହୋଇଲା । ଦୀର୍ଘ ହୋଇଛି ଯେମନ୍ତ ରାବଣର ମନ । କରିବ ଏ ସେତୁ ଦୈତ୍ୟ କୁଳକୁ ନିଧନ ॥ ରାକ୍ଷସ ନାଶନେ ଧୂମକେତୁ ଏ ଅଟଇ । ସମୁଦ୍ର ମଧ୍ୟରେ ବନ୍ଧି ସିନା ଅଛି ହୋଇ । ୧୦୩ ।

ପ୍ରହସ୍ତୋ ରାବଣଂ ପ୍ରତି ।
ବଦ୍ଧମକଲାମ୍ବିମଧ୍ୟେ ସେତୁବନ୍ଧଂ ବିଧାୟ
ନିଶିତଶର ନିପାତୈ ରାକ୍ଷସେନ୍ଦ୍ରଂ ନିହତ୍ୟ
ଯଦି ନୟତି ସ ସୀତାଂ ବାମନାମା ତପସ୍ୱୀ
ମଶକଗଲକରନ୍ଧ୍ରେ ହସ୍ତିଯୂଥଂ ପ୍ରବିଷ୍ଟଂ । ୧୦୪ ।

ବୋଲଇ ପ୍ରହସ୍ତ ମନ୍ତ୍ରୀ ରାବଣର ଆଗେ । ସମୁଦ୍ରେ ସେତୁ ପକାନ୍ତି ବାନର ସବୁଗେ ॥ ତୀକ୍ଷ୍ଣଶରେ କରିବେ ଯେ ଅସୁରଙ୍କୁ ହତ । ରାମନାମଧାରୀ ତପସ୍ୱୀ ଏ ବଳବନ୍ତ । ସୀତାକୁ ଘେନିଣ ଯିବେ ନାଶି ଦୈତ୍ୟକୁଳ ମଶକରନ୍ଧ୍ରେ ପଶିଲେ ଅଧି ହସ୍ତୀଦଳ । ୧୦୪ ।

ଇତ୍ୟବସରେ ରାବଣସ୍ୟ ଚେଷ୍ଟା ।
ଅଦୌ ଜହାସ ବହୁବସ୍ତ୍ରମାପ ମଧ୍ୟେ
ସେତୋଃସମାପ୍ତି ସମୟେ ସ ନିଶାଚରେନ୍ଦ୍ରଃ ।
ଉଦ୍ଧତଘର୍ମଘନନିର୍ଝରସିଚ୍ୟମାନ-
ଜପ୍ରାତଦାହହତପର୍ବତବଦ୍ଧକମ୍ପେ । ୧୦୫ ।

ସେତୁବନ୍ଧ କଥା ଶୁଣି ପ୍ରହସ୍ତ ମୁଖରୁ । ରାବଣ ବ୍ୟସ୍ତ ହେଲା ମନେ ପାଇ ଗରୁ । ମନେ ମନେ ମହାଚିନ୍ତା ହୋଇଲା ପ୍ରବେଶ । ଶୁଣିଲା କପିଏ

କଲେ ସେତୁବନ୍ଧ ଶେଷ ॥ ରାବଣର ଅଙ୍ଗରୁ ବହିଲା ଶ୍ରମଝାଳ । ଭୟରେ କମ୍ପଇ ତାର ଅଷ୍ଟାଙ୍ଗଶରୀର ॥ ପ୍ରଳୟ ଅନଳେ ଯେଉଁନ୍ତେ କମ୍ପେ ବସୁମତୀ । ସେହିପରି ଦଶମୁଣ୍ଡ କମ୍ପେ ପାଇ ଭୀତି । ୧୦୫ ।

ମାଧ୍ୱୀକେ ବଧୂମଣ୍ଡଲେ ବରବଧୂବକ୍ତ୍ରେ ଚ ଗୀତାନ୍ତରେ
ସକ୍ତେ ବକ୍ତ୍ରଚତୁଷ୍ଟୟେ ଦଶମୁଖୋବାଞ୍ଛାପିତସ୍ତଚ୍ଛ୍ରେଃ ।
ବଦ୍ଧୋଽୟା ଇତି ଚେତରୈବଂସୃବଶାଦୂଚେ ବଚଃ ସଂଭ୍ରମା-
ଦମ୍ଭୋଧିର୍ଜଲଧିଃ ପୟୋଧିରୁଦଧିର୍ବାରାଂନିଧିର୍ବାରିଧିଃ । ୧୦୬ ।

ହୋଇମଦ୍ୟପାନେ ରତଥିଲା ଦଶାନନ ॥ ଏକ ମୁଖେ ଚନ୍ଦ୍ରମାଙ୍କୁ କରେ ନିରୀକ୍ଷଣ ॥ ଏକମୁଖଯୁବତୀଙ୍କ ମୁଖ ଚୁମ୍ବନରେ । ଆବର ସଙ୍ଗୀତ ଗାଏ ଏକଇ ମୁଖରେ ॥ ଏହି ସମୟରେ ଚର ଜଣାଇଲା ଯାଇଁ । ସାଗର ବାନ୍ଧିଲେ କପିଅଛେ ଲଙ୍କାଯାଇଁ ॥ ଶୁଣି ଚମକି ହୋଇ ବୋଲଇ ରାବଣ । ଅମ୍ଭୋଧି ଜଲଧି ବାନ୍ଧି ଦେଲେ କପିଗଣ ॥ ଉଦଧି ଯେ ବାରାନିଧି ପୟୋଧି ବାରିଧି । ନର ବାନରଙ୍କ ଦ୍ୱାରା ହୋଇଲା କି ବାନ୍ଧି । ୧୦୬ ।

ଶ୍ରୁତ୍ୱା ସାଗରବନ୍ଧନଂ ଦଶଶିରାଃ ସର୍ବୈର୍ମୁଖୈରେକଦା
ତୂର୍ଣ୍ଣଂ ପୃଚ୍ଛତି କାର୍ତ୍ତିକଂ ସଚକିତୋ ଭୀତ୍ୟାକୁଳଃ ସଂଭ୍ରମାତ୍ ।
ବଦ୍ଧଃ ସତ୍ୟମପାଂନିଧିର୍ଜଲନିଧିଃ କୀଲାଲଧିସ୍ତୋୟଧିଃ
ପାଥୋଧିର୍ଜଲଧିଃ ପୟୋଧିରୁଦଧିର୍ବାରାଂନିଧିର୍ବାରିଧିଃ । ୧୦୭ ।

କ କିହୁରେ ଦୂତ ସେତୁ ବନ୍ଧନ ବାରତା । ଶୁଣିତୋର ମୁଖୁଁ ମୋର ହୁଏ ମନେ ଚିନ୍ତା ॥ ଯେ ଜଲଧି ଜଲନିଧି ପୟୋଧି ଉଦଧି । ବାରିନିଧି ଅପାଂନିଧି ତୋୟଧି ପୟୋଧି ॥ ତାକୁ ବାନ୍ଧିଲେ ଶୁଣିମୁଁ ଅଶ୍ଚର୍ଯ୍ୟ ମଣଇ ଦଶମୁଖେ ଏକାବେଳେ ବ୍ୟାକୁଳେ ବୋଲଇ । ୧୦୭ ।

ପାଷାଣାଃ ପୟସି ପ୍ରସନ୍ନବ ପୁଷ୍ପସ୍ତିଷ୍ଠନ୍ତି ସେତୁଂ ଗତଃ
ଶ୍ରୁତ୍ୱୈବଂ ବଦତାଂ ଦଶାନନଧରଃ କ୍ରୁଦ୍ଧଃ ସମୁଦ୍ରଂ ପ୍ରତି ।

ଧିକ୍କାଂ ନାମ ତବାମ୍ବୁଧିଃ ସଲିଲଧିଃ ପାଗାମ୍ବୁଧିସ୍ତୋୟଧିଃ
ଘାଥୋ ଧିର୍ଜଲଧିଃ ପୟୋଧିରୁଦଧିର୍ବାରାଂନିଧିର୍ବାରିଧିଃ ।୧୦୮।

ପାଷାଣେ ବାନ୍ଧିଲେ ବନ୍ଧ ପାଣିରେ ଭସାଇ । ବୋଲେ ସମୁଦ୍ରଙ୍କୁ । ଦଶାନନ କ୍ରୋଧ ହୋଇ ॥ ବୋଲଉ ତୁ ଅମ୍ଭୋନିଧି ଅମ୍ବୁଧି ବାରିଧି । ପୟୋଧି ତୋୟଧି ଜଳଧିଯେ ଜଳନିଧି ॥ ବାରାନିଧି କମ୍ପାଇ ତୁ ଉଦଧି ବୋଲଉ । ଧିକ୍ ଧିକ୍ ତୋତେ ବୃଥା ଏତେ ନାମ ବହୁ । ୧୦୮।

ପୀତସ୍ତ୍ୱଂ କଲଶୋଦ୍ଭବେନ ମୁନିନା ଧୃସ୍ତୋଽସି ଦେବାସୁରୈ
ରାବଣ୍ଡୋଽସି ଚ ରାଘବେଣ ହରଣା ଶାଖାମୃଗୈର୍ଲଙ୍ଘିତଃ
ନାମ୍ନାମାରଭଠା ତଥୈବ ଭବତୋ ଲୋକୈରୟଂ ଘୁଷ୍ୟତେ
ପାଥୋଧିର୍ଜଲଧିଃ ପୟୋଧିରୁଦଧିର୍ବାରାଂନିଧିର୍ବାରିଧିଃ । ୧୦୯ ।

କରିଥିଲେ ଚଳୁ ତେତେ ଅଗସ୍ତି ଯେ ମୁନି ! ଦେବାସୁରେମନ୍ଥି-ଗଲେ ରତ୍ନଯତ୍ନ ଘେନି ॥ ଏବେ ଯେ ବାନ୍ଧିଲେ ରାମ ଘେନି କପି-ବଳ । ସ୍ଥିର ନର ବାନର ଲଙ୍ଘିଲେ ତୋର ଜଳ ॥ ଜଳୋଧି ପାଥୋଧି ପୁଣି ବାରିଧି ଉଦଧି । ବାରାନିଧି ଆଦି ନାମମାନ ତୋ ପ୍ରସିଦ୍ଧି ॥ ଏତେ ଏତେ ନାମ ଲୋକେ କରନ୍ତି ପ୍ରଚୁର । ଜଣାଯାଏ କୁତ୍ସିତ ଅଟଇ ସବୁ ତୋର । ୧୦୯ ।

ରାବଣଃ ସ୍ୱଗତଂ ।

ଜାତୋ ବ୍ରହ୍ମକୁଲେଽଗ୍ରଜୋ ଧନପତିର୍ଯସ୍ୟ କୁମ୍ଭକର୍ଣ୍ଣୋଽନୁଜଃ
ପୁତ୍ରଃ ଶକ୍ରଜୟୀ ସ୍ୱୟଂ ଦଶଶିରା ଦୋର୍ଦଣ୍ଡକାଣ୍ଡଂଶତଃ ।
ଅସ୍ତ୍ରଂ କାଲୟମଂ ବିମାନମଭୟଂ ମଧ୍ୟେ ସମୁଦ୍ରଂ ପୁରୀ
ସର୍ବଂ ନିଷ୍ଫଳମେବ ଦୈବନିହତଂ ଦୈବଂ ପରଂ ଦୁର୍ଜୟଃ ।୧୧୦।

ଏତେକହି ସମୁଦ୍ରକୁ ଭାବେ ଦଶାନନ । ଜାତ ବ୍ରହ୍ମକୁଳେ ମୁହିଁ ବ୍ରହ୍ମାବଂଶେ ଜନ୍ମ ॥ ଧନପତି କୁବେର ମୋହର ଜ୍ୟେଷ୍ଠଭାଇ । କନିଷ୍ଠ ଭାଇ ଯେ କୁମ୍ଭକର୍ଣ୍ଣ ନାମ ବହି ॥ ମେଘନାଦ ପୁତ୍ର ଇନ୍ଦ୍ରଜିଣି ଇନ୍ଦ୍ରଜିତ । ମୁହିଁ ନିପୁ ବିଜୟୀ ସଂସାରେ ବିଖ୍ୟାତ । ଏ ମୋହର

ଅସ୍ତ୍ରକୁ ଯେ ଯମ ଭୟଙ୍କରେ । ତିନି ଭୁବନକୁ ମୋର ରଥ ଗତି କରେ ॥ ସମୁଦ୍ର ମଧ୍ୟରେ ଅଛି ନଗର ମୋହର । କେବଳ ପ୍ରଧାନ ବଳ ଅଟେ ଦଇବର । ୧୧୦ ।

( ସିନ୍ଧୁବନ୍ଧନେ ଲଙ୍କାବାସିନାଂ ଚେଷ୍ଟା । )

ମରୁତ୍ପ୍ରବୃଦ୍ଧସ୍ତେନ କପିକଟକରଷାମଣିରସୌ
ସମୁଦ୍ୟଲ୍ଲାଙ୍ଗୁଲୋ ଧ୍ୱଜଇବ ସମାଶ୍ଳିଷ୍ଟଗଗନଃ ।
ପୁନଃ ପ୍ରତ୍ୟାୟାତ୍ୟଦ୍ୟ କପିନାଥେ ପ୍ରଚଳିତେ
ବତଃ ପ୍ରୋତ୍ତୁଙ୍ଗୈର୍ବିଘୂର୍ଣ୍ଣିତଲଙ୍କାପୁରଜନାଃ । ୧୧୧ ।

ସିନ୍ଧୁବନ୍ଧନ ବାରତା ଶୁଣିଲେ ଅସୁରେ । ଭୟେ ଜଳାକୁଳ ହୋନ୍ତି ଆପଣା ମଧ୍ୟରେ ॥ ଆସିଥିଲା ଯେଉଁ କପି ଲଙ୍କାପୋଡ଼ିଲେ । ସେ ପୁଣି ଆସଇ କପିଆଟେ କର ଖେଳା ॥ ଧ୍ୱଜାପରି ଏ ଲଙ୍ଗୁଳ ଆକାଶେ ଉଡ଼ାଇ । ବଡ଼ ବଡ଼ କପିମଧ୍ୟେ ସେନାପତି ହୋଇ ॥ ଅଇଲା ଅଇଲା ବୋଲି ପଡ଼ିଲା ଚହଳ । ଏହିପରି ଅସୁରଙ୍କ ମଧ୍ୟେ ଶୁଭେ ଗୋଳ । ୧୧୧ ।

ଅତ୍ରାନ୍ତରେ ବାନରସେନା ।

ଅଷ୍ଟାଦଶମହାପଦ୍ମସେନାଧ୍ୟକ୍ଷ ଧୃପାଳିତା ।
ସା ବାନରଚମୂସ୍ତେନ ସେତୁନା ଗନ୍ତୁମୁଦ୍ୟତୌ । ୧୧୨ ।

ଅଷ୍ଟାଦଶ ମହାପଦ୍ମ କପିସେନାପତି । ଗୋଟେ ଗୋଟେ କେତେ ଅକଳିତ ଯେ ଅଟନ୍ତି ॥ ସଜ ହୁଅନ୍ତି ଆସିବା ପାଇଁ ସେତୁପଥେ । ଆନନ୍ଦେ ଉନ୍ମତ୍ତ ହୋଇଅଛନ୍ତି ବାନରେ । ୧୧୨ ।

କୃତକଳକଳଶବ୍ଦଂ ବାସିତା ଶେଷଲୋକଂ
ପ୍ଲବଗନୃପତିଂସୈନ୍ୟ ସେତୁନା ତେନ ଗତ୍ୱା ।
ମୁଦିତବିପିନଦୁର୍ଗେ ପର୍ବତେଽସୌ ସୁବେଲେ
ଶିବିରମକୃତ ଲଙ୍କାନାଟନାଶାୟ ସଦ୍ୟଃ । ୧୧୩ ।

ସୁଗ୍ରୀବ ନୃପତିଙ୍କର ଆଜ୍ଞା ପରମାଣେ । କିଳିକିଳା ନାଦକରି ବାନ୍ଧାରିଲେ ସୈନ୍ୟେ । ସେ ଶବଦ ଶୁଣି ସାଧୁକଲେ ସବଲୋକେ । ସୁବଳ ପର୍ବତେ ଯାଇ ପ୍ରବେଶିଲେ ଥୋକେ । ଗଡ଼ବାନ୍ଧି ତହିଁ ସୈନ୍ୟ ରହିଲେ ସକଳ । ରାବଣ ମାରିବା ପାଇଁ କରନ୍ତି ବିଗ୍ରହ । ୧୧୩ ।

ରାମଶିବିରାନ୍ୱେଷଣେ ରାବଣେନ ପ୍ରହିତୌ
ଶୁକସାରଣୌ

ଅଥ ପ୍ରାପ୍ତୌ ଶୁକସାରଣୌ ଦଶମୁଖପ୍ରସ୍ଥାପିତୌ ଦ୍ୱୌ ଚରୌ
ଦେହଂ ବାନରମାଶ୍ରିତୌ ଚ କଟକଂ ସଂଖ୍ୟାତୁମଭ୍ୟେତ୍ୟ ତୌ ।
ଜ୍ଞାତ୍ୱାଥ ବିଭୀଷଣେନ ଯମତୌ ରାମାୟ ଦତ୍ତୌ ଚ ତୌ
ମୁକ୍ତୌ ତୌ ପ୍ରଭୁଣା ବିଲୋକ୍ୟ କଟକଂ ରାମାଜ୍ଞୟା ତୌ ଗତୌ ॥

ଶୁକ ସାରଣଙ୍କୁ ଡାକି ବୋଲେ ଦଶାନନ । ଗଣିଆସ ରାମସଙ୍ଗେ ଅଛନ୍ତି କେତେ ସୈନ୍ୟ । ଶୁଣି ତା ଶୁକ ସାରଣ ବେଗେ ଚଳିଗଲେ । ମାୟା କରି ବାନର ରୂପକୁ ଧଇଲେ । ଆଡେ ପ୍ରବେଶନ୍ତେ ଜାଣିଲା ତା ବିଭୀଷଣ । ଶ୍ରୀରାମଙ୍କ ଆଗେ କଲା ତାହାଙ୍କୁ ଧରଣ । ଦୟାକର ରାମଚନ୍ଦ୍ର ତାଙ୍କୁ ଛାଡ଼ିଦେଲେ । କପିକଟକେ ବୁଲାଇ ଦେଖଅ ବୋଇଲେ । ଆଜ୍ଞାପାଇ ବେନିମନ୍ତ୍ରୀ ବୁଲିଗଲେ ଥାଟ । ଫେରି ଲଙ୍କାରେ ପ୍ରବେଶ ହେଲେ ମନ୍ତ୍ରୀଗୃହ । ୧୧୪ ।

ତୟୋଃ ସମାଗତୟୋ ରାବଣେ ନିବେଦନଂ ।

ଆକାଶେ ଧରଣି କାନନେ ଜଲନିଧୌ ଶୈଳେ-ତଟେ ଗହ୍ୱରେ
ନ ସ୍ଥାନଂ ଛଲଧାରିଣୋ ଭ କଳିତଂ ସଂଖ୍ୟା କଥଂ କଥ୍ୟତାଂ ।
ଭ୍ରାନ୍ତା ତେ ଯମିତୌ କପୀନ୍ଦ୍ର କଟକଂ ଦୃଷ୍ଟ୍ୱୈବ ମୁକ୍ତୌ ତୌ
ଶ୍ରୀରାମେଣ ମହାତ୍ମନା କୁରୁ ଯଥାଯୋଗ୍ୟଂ ପ୍ରଭୋ ରାବଣ ।୧୧୫।

ରାବଣ ସମ୍ମୁଖରେ ଯାଇ ସେ ଶୁକସାରଣ । ଶ୍ରୀରାମଙ୍କ କଥାସବୁ କଲେ ନିବେଦନ । ଭୋ ଦେବ ଅକାଶ ଅବନୀ କାନନ ସାଗର । ପର୍ବତ ଗହ୍ୱର ନଦୀ ବୃକ୍ଷାଦିଅବର । ତିଳ ପରମାଣେ କାହିଁ ନାହିଁ ବାକିସ୍ଥାନ ।

କେମନ୍ତେ କଳିବୁଁ ପ୍ରଭୁ ଅକଳିତ ସୈନ୍ୟ । କପିବେଶ ଧରି ଆ ମୃଗଣୁଥିଲୁଁ ଯହିଁ । ବିଭୀଷଣ ବାନ୍ଧିଦେଲେ ଦେଖିଲେ ତାହାଙ୍କୁ । ଦେଖିଣ ଶ୍ରୀରାମ ଦୟାବହି ଅମୃତ । ବନ୍ଧନରୁ ଯେହୁଁ ଆମ୍ଭ କରିଲେ ମୁକତ । ଆଜ୍ଞାଦେଲେ ପ୍ରକାଶରେ ଗଣିଯାଇଁ ଥାଟ । କି ଥାଟ ଗଣିବୁ ପ୍ରଭୁ ଦିଶୁନାହିଁ ବାଟ ॥ ସତ୍ୟକହୁଅଛୁଁ ଦେବ ତବ ଶ୍ରୀଙ୍ଗମୁରେ । ଯାହା ଇଚ୍ଛାହୁଏ କର ବିଚାରି ଚିତ୍ତରେ । ୧୧ ।

ପ୍ରାସାଦମଧିରୁହ୍ୟ ରାବଣେନ ପୃଷ୍ଟୟୋଃ
ଶୁକସାରଣୟୋର୍ବଚନଂ ।

ଅଙ୍କେ କୃତ୍ୱୋତ୍ତମାଙ୍ଗଂ ପ୍ଲବଗକୁଲପତେଃ ପାଦମକ୍ଷସ୍ୟହନ୍ତୁ
ର୍ଭୂମୌ ବିସ୍ତାରିତାସ୍ୟାଂ କ୍ୱଚ କନକମୃଗସ୍ୟାଙ୍ଗଶେଷଂ ନିଧାୟ ।
ବାଣଂ ରକ୍ଷଃକୁଲଘ୍ନଂ ପ୍ରଗୁଣିତମନୁଜେନାର୍ପିତଂ ତୀକ୍ଷ୍ଣମକ୍ଷ୍ଣୋଃ
କୋଣେନୋଦ୍ୱୀକ୍ଷମାଣସ୍ତ୍ୱଦନୁଜବଚନେ ଦତ୍ତକର୍ଣ୍ଣୋଽୟମାସ୍ତେ ।୧୨।

ଶୁକ ସାରଣ ମୁଖରୁ ଶୁଣିଣ ରାବଣ । ଅଟ୍ଟାଳିରେ ଚଢ଼ିଲା ଯାଇଁ ଉଚ୍ଚପ୍ରାସାଦେ ବହନ । ଦିଅ ମନ୍ତ୍ରୀ ଚିହ୍ନାଇଣ କେଉଁ ରାମ ଲକ୍ଷ୍ମଣ । ଶୁଣି ଶୁକ ସାରଣ ଯେ ଦେଖାନ୍ତି ବହନ । ମସ୍ତକକୁ ରଖିଛନ୍ତି ସୁଗ୍ରୀବଙ୍କ କୋଳେ । ବେନି ପାଦ ଦେଇଛନ୍ତି ହନୁମନ୍ତ ଉରେ । କନକ ମୃଗଚର୍ମକୁ ଭୂମିରେ ବିଛାଇ । ଅଙ୍ଗଦଅପରେ ଦେଇ ପଡ଼ିଛନ୍ତି ଶୋଇ । ଲକ୍ଷ୍ମଣ ଯଜାଡୁଛନ୍ତି ତୀକ୍ଷ୍ଣ ବାଣମାନ । କରିବେ ଅସୁରକୁଳ ଯେଥିରେ ନିଧନ । ବିଭୀଷଣ ପାଶେ ବସି ଏଣେତେଣେ ଚାହିଁ । କଥା ସବୁ ଶୁଣୁଛନ୍ତି ଏକମନ ହୋଇ ॥

ଇତ୍ୟବସରେ ରାବଣମାତା ନିକଷା
ମାନବେନାହତା ଦୈତ୍ୟା ଋକ୍ଷୈର୍ବନେଚରୈରପି ସଂଗରେ ।
ବାନରୈର୍ବେଷ୍ଟିତା ଲଙ୍କା ଜୀବଦ୍ଭିଃ କିଂ ନ ଦୃଶ୍ୟତେ ।୧୩

ଏମନ୍ତ ସମୟେ ମିଳେ ରାବଣର ମାତା । ନିକଷା ନାମେ ରାକ୍ଷସୀ ମନେ ପାଇ ବ୍ୟଥା । ବୋଇଲାରେ ସୁତେ କାହିଁ ଦେଖାନ୍ତରେ ମୋତେ । ଅସୁରଙ୍କ ନାଶ ହୁଏ ମନୁଷ୍ୟଙ୍କ ହାତେ । ଭଲ୍ଲୁକ ବାନର ମିଳି ସାଗର

ବାନ୍ଧିଲେ । ଲଙ୍କାଗଡ଼କୁ ଆସିଣ ସମସ୍ତ ବେଢ଼ିଲେ । ଦେଖି ମୁଁ ଅଇଲି ବାର୍ତ୍ତାଥିବାରୁ ଜାବନେ । ସଙ୍କଟେ ପଡ଼ିଲି ପୁନ ଆସି ଏତେଦିନେ ।୧୧୭।

ରାବଣଃ ସାଶ୍ରୁଧଂ ।

ଅଶ୍ରୁସଂ ତାପସୋଽସୌ ଗିରିକୁହରଗତାନ୍ ବାନରାନ୍‌ମେଲୟିତ୍ୱା
ବାଞ୍ଛିତ୍ୟାଗତା ନେତୁଂ କିଲ ଜନକସୁତାଂ ମଦ୍ଗୃହୀତାଂ ଦୁରାତ୍ମା ।
ଦନ୍ତାସକ୍ତଂ ହରେଃ କଃ ଖରନଖରମୁଖୋତ୍‌ଖାତମତ୍ତେଭକୁମ୍ଭା
ଦ୍ଭ୍ରଶ୍ୟଦ୍ରକ୍ତାକ୍ତମୁକ୍ତାଫଳକଣକରମବାପ୍ତୁଂ ଦଶକ୍ତସ୍ୟ ଶକ୍ତଃ ୧୧୮।

ଅଶ୍ରୁସି ହୋଇ ରାବଣ ବୋଇଲେ ମନରେ । କେଡ଼େ ସାହସ କରୁଛି ତପସ୍ୱୀ ଏଠାରେ । ଗିରିଗୁହାବାସୀ କପିମାନଙ୍କ ଅଣାଇ । ଭାବୁଛି ମୋଠାରୁ ନେବ ସୀତାଙ୍କୁ ଛଡ଼ାଇ । ଦନ୍ତ ନଖ ଘାତେ କ ସିଂହକୁ ମାରେ ଶଶା । ମୁକ୍ତା ଆହାର କରେ କି ତୀକ୍ଷଣ ଦାନ୍ତେ ମୂଷା । ଏମନ୍ତ ବିଚାର ଅଛି ଦୁରାଚାର ମନେ । ଆଶା କରୁଛି ପାପିଷ୍ଠ ଅସୁର ନାଶନେ । ୧୧୮ ।

ମଚ୍ଛିଦନ୍ଦ୍ରାଦିତ୍ୟ ଶତମଖମୁଖାସ୍ତେ ସୁଭୁଜଃ
ପୁରଦ୍ୱାରଂ ଯସ୍ୟାଃ ସଭୟମୁପସର୍ପନ୍ତ୍ୟନୁଦିନଂ ।
ପ୍ରକୋପବ୍ୟାକମ୍ପାଧରତଟପୁ ଟେବାନରଭଟୈଃ
ସମାକ୍ରାନ୍ତାସେୟଂ ଶିବ ଶିବ ଦଶଗ୍ରୀବ ନଗରୀ ।୧୧୯।

ଭୟରେ ଖଟନ୍ତି ମୋତେ ଦେବତା ଏ ଆସି । ଇନ୍ଦ୍ର ଚନ୍ଦ୍ର ବରୁଣାଦି ହୋଇ ଦାସ ଦାସୀ । ଅଧର ଚାପନ୍ତେ ନର ବାନର ପଳାନ୍ତି । ଡରେ ସମ୍ମୁଖେ ମୋହର କେହ ନ ରହନ୍ତି । ଛାର ନର ବାନର ଯେ ଆହାର ମୋହର । କାହାକୁ କହିବ ଏହି ଅଦ୍ଭୁତ ବିଚାର ।

ଇତ୍ୟୁକ୍ତ୍ୱା ଶୁକସାରଣୌ ତିରସ୍କୃତ୍ୟ ନାଃଥା ସିତ

ରାମ ପ୍ରତି ପତ୍ରଲିଖନଂ

ସ୍ୱସ୍ତି ଶ୍ରୀ ଦଶକନ୍ଧରସ୍ତ୍ରୀ ଭୁବନବ୍ୟାପୀ ପ୍ରତାପାନଳୋ
ବ୍ୟାମୁଗ୍ଧଂ ଲିଖତୀନ୍ଦ୍ର ବଜ୍ରଭିଦୁରୋ ରାମଂବନେବାସିନଂ

ଅନୀତା ଜନକାତ୍ମଜା କଲମତ୍ୱା ସୁଗ୍ରୀବହେନାନ୍ତତୋ
ନେତୁଂ ବାଞ୍ଛସି ମୂଢ଼ ତାପସ କଥଂ ପ୍ରାଣୈଃ ପରିକ୍ରୀଡ଼ସେ

ଏହାପରେ କୋପେଗାଳି ଧଅଇ ରାବଣ । କରେବଦ୍ଧ ଡାକି ଦୂତକୁ ଡାକଣ । ପତ୍ରଖଣ୍ଡେ ଲେଖି ଦୂତ ହସ୍ତେ ପଠାଇଲା । ସ୍ୱସ୍ତି ଶ୍ରୀ ବୋଲିଣ ପତ୍ର ନାମ ଲେଖିଲା । ନାମ ମୋହର ରାବଣ ବିପ୍ର ବିଜୟୀ । ତିନି ଭୁବନରେ ବ୍ୟାପୀ ପ୍ରତାପ ଅଛଇ । ବଜ୍ରହୁଁ କଠିଣ ଅଟେ ଶରୀର ମୋହର । ବଳାତ୍କାରେ ଆଣିଅଛୁ ଜାନକୀଙ୍କ ତୋର । ବନବାସୀ ଅଟ ତୁହି କି କରିବୁ ନାଶ । ତେଣୁ ଆଣିଲି ଯୁବତୀ ତୋର ନେହକର । କପିବଳ ସଙ୍ଗେ ଘେନି ଆସିଅଛୁ ତୁହି । ମନେ ପାଇଁକୁ ସୀତାକୁ ନେବୁ ତୁ ଛଡ଼ାଇ । ଯା ଯା ତୁ ପାନର ମୂଢ଼ ନଜାଣୁ ମୋ ବଳ । ଅକାରଣେ ନ ହରାଅ ଜୀବନକୁ ତୋର । ୧୨୦ ॥

ନିକୁମ୍ଭସନ୍ନିକଟମାକାର୍ଯ୍ୟ
ମୌଖିକୋକ୍ତଃ ।

ଇନ୍ଦ୍ରାଦ୍ୟାସ୍ତ୍ରିଦଶା ବିଲୋକ୍ୟ ସମରେ ଯଂ ବିଦ୍ରବନ୍ତି ଦ୍ରୁତଂ
ତଂ ତ୍ୱଂ ତାପସ ରାବଣଂ କଥମଲଂ ଯୋଦ୍ଧୁଂ କମୁତ୍ତିଷ୍ଠସେ ।
ଅଙ୍କସ୍ଥଂ ପ୍ରତିପକ୍ଷରାକ୍ଷସମୁଖେ ମୋ ହାନୂଦଂ ମା କୃଥାଃ
ସୀତାଂ ତ୍ୟଜ ବନଂ ବ୍ରଜ ଯାହି ଭବନଂ ଗଚ୍ଛେତ ଶୀଘ୍ରଂ ବଦ ।୧୨୧।

ନିକୁମ୍ଭକୁ ରାବଣ ବୋଲଇ ଡାକି ପାଶେ । ମୌଖିକ ଖବର ଯାଇଁ ଜଣାଅ ତା ପାଶେ । ଇନ୍ଦ୍ରାଦି ତ୍ରିଦଶ ମୋତେ ଡରନ୍ତି ସମରେ । ଛାର ତପସ୍ୱୀ କି ଯୁଦ୍ଧ କରିବ ମୋ ଠାରେ । ବୃଥା ଗର୍ବ କରେ ମନେ ସେ ବଡ଼ ଅଜ୍ଞାନ । ଅକାରଣେ ଅଛିଅଛି ଦେବାକୁ ଜୀବନ । ସୀତା ଆଶା ଛାଡ଼ି ନିଜ ଘରକୁ ପଳାନ୍ତୁ । ଏ ବୃତ୍ତାନ୍ତମାନ ତାଙ୍କ ପାଇଁ ଜଣାଅ ତୁ । ୧୨୧ ।

ପୁନର୍ଲେଖା ଲେଖ୍ୟଃ ।

ରେ ରେ ତାପସ ମୂଢ଼ ବିବେକ୍ଷିତାମୁଦ୍ଧତି କାମ ପ୍ରିୟାଂ

କାଂ ଲଙ୍କାଭିମୁଖଂ ପ୍ରସ୍ଥିତାସି କପିଭିଃ ପ୍ରୋତ୍ସାହିତଃ କାତରୈଃ ।
କୋ ଯତ୍ନଂ କୁରୁତେ ଚ ପନ୍ନଗପତେ ରତ୍ନଂ ଫଣାମଣ୍ଡଳା-
ଦାକ୍ରଷ୍ଟୁଂ କଲଚେତନାଂ ପରଗତଃ ସ୍ୱଶ୍ରେୟସେ ଚନ୍ଦ୍ରସୂନ୍ ।୧୨୨।

ପୁଣି ଲେଖିଲ କୋପରେ ରାବଣ ଦୁର୍ଜୟ । ଅରେ ଜଟାଧାର ଚୋର ମନେ ନାହିଁ ଭୟ । ଅଣିଛୁ ତୋ ଭାରଯାକୁ ବଳେ ମୁହିଁ ହର । ତୁହି ଆସିଛୁ ନେବାକୁ ମନେ ଅଣ୍ଟିକର ॥ କପି ଗୁଡ଼ାଏ ଘେନି ଶ ଲଙ୍କାରେ ପଶିଛୁ । ବାସୁକି ଫଣାରୁ ରତ୍ନ ନେବାକୁ ଇଚ୍ଛୁଛୁ । ପାପିଷ୍ଠ ବାନରଙ୍କର କଥାରେ ନ ମତ । ଆପଣାର ମଙ୍ଗଳ କ ।କୁ ଏବେ ଚିନ୍ତ । ୧୨୨ ।

ଯସ୍ମିନ୍ ହ୍ମ ମୁଦିତଃ ଶିରାଂସି କୃତବାନର୍ଗାଂ ଭବାନୀପତେ
ଯଂ ସ୍ୟାବଜ୍ଞାଗବର୍ତ୍ତିନୋଽମରଗଣା ଯଃ ସବମାପୂଜିତଃ ।
ଯଃ କୈଳାସଗିରିଂ ଭୁଜୈରୁତ୍ତୂଳିତବାନ୍ ଯଃ କାଳଦର୍ପ ପହ
ସ୍ତଂ ତ୍ୱଂ ତାପସ ଦୋର୍ବଳୈର୍ଜାଳସ୍ଥଂ ବୋଦ୍ଧୁକଥଂ ନେଷ୍ୟସି ॥

ଯେ ଶିର ଛିଣ୍ଡି ଇ ପୂଜା କଲେ ପଶୁପତି । ଇନ୍ଦ୍ରାଦି ଦେବତା ଯାକୁ ସେବାରେ ଖଟନ୍ତି । ସକଳ ଗୁଣେ ନିପୁଣ ଲଙ୍କା ଅଧିବାସୀ । ବାହୁବଳେ ଉପାଡ଼ିଛୁ କଇଳାସ ଗିରି । କି ସାହସେ ତାକୁ ତୁହି ଜିଣିବାକୁ କହୁ । ସିନ୍ଧୁ ବାନ୍ଧିବାରୁ ପରା ଗର୍ବ ମନେ ବହୁ । ୧୨୩ ।

ଯାବନ୍ନାୟାତି ରୁଷ୍ଟଃ ପ୍ରଳୟଘନଘଟାଘୋରନାଦୈର୍ବିନାଦିଃ
ସଂଗ୍ରାମଂ କୁମ୍ଭକର୍ଣ୍ଣସ୍ତ୍ୟଜ ସମରରସଂ ରାମ ତାବତ୍ ସବୀରଃ ।
ଅଗ୍ରେତେ କୁମ୍ଭକର୍ଣ୍ଣେ କପିବଲସହିତଃ ସ୍ଥାସ୍ୟସି ତ୍ୱଂ ସୁଦୂରଂ
ସ୍ଥାସ୍ୟନ୍ତ୍ୟେତେଽପ୍ୟପିକ୍ଷଣମପିଚପଲଶ୍ୱାସବାତାବଧୂତାଃ ୧୨୪।

ଶୁଣିନାହୁଁ ଯେଣୁ ପ୍ରଳୟର ଘଡ଼ଘଡ଼ି । କ୍ରୋଧ ହେଲେ କୁମ୍ଭକର୍ଣ୍ଣ ଛାଡ଼େ ଘୋର ରଡ଼ି । ତେତେବେଳେ ଦମ୍ଭ ଧରି କେମନ୍ତ ରହିବ । ସଂଗ୍ରାମ ଭୂମିରେ ତାହା ଦେଖାଦେଖି ହେବ । ଅରେ ରାମ ଯୁଦ୍ଧକୁ ତୁ ନ ବଳାଅ ମନ । ଜାନକୀର ଆଶା ଛାଡ଼ି କର ତୁ ଗମନ ।

ନୋହିଲେ ଯେବେ ଅଇବ କୁମ୍ଭକର୍ଣ୍ଣ ଗଣେ। ନ ରହିବ ବାନର ଭଲ୍ଲୁକ ବୋଲି ଜଣେ। ଅଣି ପକାଇଛ ଯେତୁବନ୍ଧେ ଯେତେ ଗିରି। ନିଶ୍ୱାସ ଘାତେ ତାହାର ସବୁ ଯିବ ଉଡ଼ି। ୧୨୪।

ଲିପିଂ ଗୃହୀତ୍ୱା ନିକୁମ୍ଭଃ।

ଆଦାୟ ଲେଖାଂ ଦଶକନ୍ଧରସ୍ୟ
ଗତ୍ୱା ନିକୁମ୍ଭୋ ଗଜରୂପଧାରୀ।
ଦଦୌ ରଘୂଣାଂ ପତୟେ ପୁରସ୍ତା-
ଦୁପେତ୍ୟ ଗତ୍ୱାରବନ୍ଧୋବନ୍ଧୀଯୂନ୍। ୧୨୫।

ଏହାପରେ ପତ୍ର ଖଣ୍ଡେ ଲେଖି ଦଶଶିର। ନିକୁମ୍ଭକୁ ଦେଇ ବୋଲେ ଯାଅରେ ସତ୍ୱର। ରାଜାଅଜ୍ଞା ପାଇ ଗଲା ନିକୁମ୍ଭ ଅସୁର। ହସ୍ତୀ ରୂପ ଧରି ତହିଁ ହୋଇଲା ବାହାର। ବାନର କଟକେ ଯାଇ ପ୍ରବେଶ ହୋଇଣ। ଶ୍ରୀରାମଙ୍କ ହସ୍ତେ ଲେଖା ଦେଲା ଯେ ବହନ।୧୨୬।

ଲେଖାଂ ପ୍ରାପ୍ୟ ରାମଃ ସୁଗ୍ରୀବଂ ପ୍ରତି।

ଲଙ୍କାପ୍ରସ୍ଥାପନାଯୋଗ୍ୟଃ କୋଽସ୍ତି ବୀରୋ ମହାବଳଃ।
ରାଜବଂଶେ ଭବୋ ବିଦ୍ୱାନ୍ ସମାନେଯଃ କପୀଶ୍ୱର। ୧୨୭।

ଦେଖି ରାବଣ ଲେଖା ପ୍ରଭୁ ରଘୁନାଥ। ସୁଗ୍ରୀବଙ୍କୁ ଚାହିଁ ଅଜ୍ଞା ଦିଅନ୍ତି ଏମନ୍ତ। ଅମ୍ଭ ସେନାମଧ୍ୟେ ଏକ ସାମରଥ କାହିଁ। ଅଣ କପିରାଜ ଦେବା ଦୂତପଣେ ଦେଖି। ହୋଇଥିବ ପଣ୍ଡିତ ସେ ରାଜବଂଶେ ଜାତ। ବଳବନ୍ତ ବୀର କପିମଧ୍ୟେ ସାମରଥ। ୧୨୭।

ସୁଗ୍ରୀବଃ।

ରାଜବଂଶ୍ୟୋ ନ ଶୂରୋଽସ୍ତି କଶ୍ଚିଛୂରୋ ନ ଭୂମିଭୃତ୍।
ରାଜପୁତ୍ରୋଙ୍ଗଦୋ ଯୁକ୍ତଃ ଶକ୍ତୌ ଭ୍ରାତୃସୁତସ୍ତ ମେ। ୧୨୭।

ଶୁଣି ସୁଗ୍ରୀବ ବୋଲଇ ଶୁଣ ରଘୁବୀର। ଅଛି ଏକଜଣ କପିରାଜାଙ୍କ କୁମର। ବୀରପଣକୁ ଯେ ଅଶ୍ୱର୍ଜନ ସେ ନୁହଇ। ଆଉ ସବୁ ଗୁଣରେ ସେ ନିପୁଣ ଅଟଇ। ମୋର ଭ୍ରାତୃସୁତ ସେହି ରାଜବଂଶେ ଜନ୍ମ। ସମର୍ଥ ଅଟଇ ବିଦ୍ୟାରେ ସେ ପାରଙ୍ଗମ। ୧୨୭।

ଏତଚ୍ଛ୍ରୀଲହନୂମତା ବିରଚିତେ ଶ୍ରୀମନ୍ମହାନାଟକେ ,
ବୀରଶ୍ରୀଯୁତ ରାମଚନ୍ଦ୍ର ଚରିତେ ପ୍ରତ୍ୟୁଦ୍ଧୃତେଽନୂନ୍ମଦୈଃ ।
ମିଶ୍ରଶ୍ରୀମଧୁସୂଦନେନ କବିନା ସନ୍ଦର୍ଭ୍ୟ ସଜ୍ଜୀକୃତେ
ଷଷ୍ଠଃସାଗରବନ୍ଧନୋଽଙ୍କ ଗତବାନଙ୍କୋମହାନୁତ୍କଳଃ ।୦।

ଏ ମହାନାଟକ ହନୁମନ୍ତଙ୍କ ରଚିତ । ଶ୍ରୀଯୁତ ଶ୍ରୀରାମଚନ୍ଦ୍ର ବୀରଙ୍କ ଚରିତ୍ର । ଶ୍ରୀ ମଧୁସୂଦନ କବି ସଜ୍ଜୀକୃତ ଏହି । ଷଷ୍ଠଅଙ୍କେ ସାଗର ବନ୍ଧନ ଶେଷହୋଇ ॥ ସରଳ ଭାଷାରେ ଯାକୁ ଚିନ୍ତାମଣିଦାସ ।· ଦେଲେ ଦୋଷ ଥିଲେ କ୍ଷମ ହେ ସାଧୁ ବିଦୁଷ ॥

ଇତି ଶ୍ରୀହନମତ୍କୃତେ ମହାନାଟକେ
ଷଷ୍ଠୋଽଙ୍କଃ ।

---

## ସପ୍ତମ ଅଙ୍କ

ରାମଃ ସୁବେଲାଦ୍ରିତଟେ କ୍ଷଣଃ ସମୁଦ୍ରମୁଲ୍ଲଙ୍ଘ୍ୟ ବିକୀର୍ଣ୍ଣସୈନ୍ୟଃ ।
ଲଙ୍କାଧିନାଥସ୍ୟ ଗୃହାୟ ଦୂତଂ ସୁରେନ୍ଦ୍ରନପ୍ତାରମଥାଦିଦେଶ ।୧।

ସାଗର ଲଙ୍ଘି ଶ୍ରୀରାମ ସୁବଳସ୍ଥ ତଟେ । ବିଶ୍ରାମ କରନ୍ତି ବେଢ଼ିଛନ୍ତି ସବୁଅ ଠେ । ଏମନ୍ତ ସମୟେ ଅଙ୍ଗଦକୁ ଅଜ୍ଞାଦେଲେ । ଦୂତପଣେ ଯିବ ତୁମ୍ଭେ ଲଙ୍କାକୁ କହିଲେ । ୧ ।

ଭୋ ମହାବୀରାଙ୍ଗଦ ।

ଅଜ୍ଞାନାଦଥବାଧିପତ୍ୟରଭସଦ୍ୱାସ୍ମତ୍ପରୋକ୍ଷେ ହୃତା
ସୀତେୟଂ ପ୍ରବିମୁଚ୍ୟତାମିତି ବଚୋ ଗତ୍ୱା ଦଶାସ୍ୟଂ ବଦ ।
ନୋଚେଲ୍ଲକ୍ଷ୍ମଣମୁକ୍ତ ମାର୍ଗଣଗଣଚ୍ଛେଦେ ଚ୍ଛଳଚ୍ଛୋଣିତ
ଚ୍ଛତ୍ରଚ୍ଛନ୍ନଦିଗନ୍ତମନ୍ତକପୁରଂ ପୁତ୍ରୈର୍ବୃତୋ ଯାସ୍ୟତି । ୨ ।

ହେ ଅଙ୍ଗଦ ବୀର ଏଥୁ ଯିବ ତୁମ୍ଭେ ଏକ । ରାବଣ ଅଗରେ ନେଇ ଦିଅ ମୋର ଲେଖା । ଏହାପର ବୁଝାଇ କହିବ ରାବଣକୁ । ରାଜମଦେ ମତ୍ତ ହୋଇ ଆଣିଲୁ ସୀତାଙ୍କୁ । ପ୍ରଭୁଙ୍କ ନଥିବା କାଳ ଆଣିଛୁ ଚୋରାଇ । ନିତାନ୍ତ ଅଜ୍ଞାନ ତୋର ବୁଦ୍ଧି ଜ୍ଞାନ ନାହିଁ । ଏବେ ସୀତାଙ୍କୁ ନେଇଣ କରୁ ସମର୍ପଣ । ନୋହିଲେ ଲକ୍ଷ୍ମଣ ହସ୍ତୁ ବାହାରିବ ବାଣଧି ॥ ଦଶମୁଣ୍ଡକୁ ଛେଦନ କରିବ ଅବଶ୍ୟ । ରୁଧିରେ କରିବ ଛାଇ ଏକଣି ଆକାଶ । ପୁତ୍ରନାତି ସହିତେ ନ ଯାଇ ଯମପୁର । ସୀତାଙ୍କୁ ସମର୍ପି କ୍ଷମା ଦେବେ ରଘୁପଧର । ୨ ।

ଅଙ୍ଗଦଃ । ଯଥାଜ୍ଞାପୟତି ଦେବଃ ।

ତତ୍ତ୍ୱା ତାବତ୍କ୍ରମରଃ ପ୍ରଥମମଭିନବଂ ସୌଧମୁଲ୍ଲଙ୍ଘିତାତ୍ମଂ
ପାଦାଘାତାଦଭଞ୍ଜି ପ୍ରଲୟଜଲଧରଧ୍ୱାନଗମ୍ଭୀରଘୋରଃ ।
ଏତତ୍ କସ୍ୟାଦକସ୍ମାଦିତି ଚକିତଦଶଗ୍ରୀବମୁଦ୍ଗ୍ରୀବଯୁକ୍ତଂ
କୁର୍ବନ୍ଦୂତାନ୍ପୂର୍ବି ବନ୍ଧୁରଭବଦଥ ଦ୍ୱାରତଃ କାହୁଦୂତେ ।୩।

ଶିରଧାର୍ଯ୍ୟ କରି ଆଜ୍ଞା ବାହାର ଅଙ୍ଗଦ । ଲଙ୍କାଦ୍ୱାରେ ପ୍ରବେଶିଲ ଛନ୍ତ୍ର ରାମପାଦ ॥ ଦେଖିଲ ରାଜପ୍ରାସାଦ ବିଶୁଅଛି ଉଚ୍ଚ । ପାଦ ପ୍ରହାର ଭାଙ୍ଗିଣ କଲୁ ତାକୁ ନୀଚ । ଘୋର ଶବଦ କଲା ପାତେସି ଭାଙ୍ଗି ପଡ଼ି । ଅଥବା ପ୍ରଳୟ କାଳ ମେଘ ଘଡ଼ଘଡ଼ି ॥ କି ଅଭୁତ ବୋଲିଣ ଯେ ଚକିତ ରାବଣ । ଚଉଦିଗକୁ ଅନାଇ କରେ ନିରୀକ୍ଷଣ । ଦ୍ୱାରକୁ ପୁଛିଲା ଦ୍ୱାରେ ହୋଇଲା କି ନାଦ । ଅକସ୍ମାତେ କାହୁଁ ଏକ ଶୁଭିଲା ଶବଦ ।୩।

ଅଥ ଲଙ୍କାଂ ପ୍ରବିଶ୍ୟ ରାମପ୍ରସ୍ଥାପିତୋଽଙ୍ଗଦଃ ।
ରେ ରାକ୍ଷସାଃ କୋଽୟମତ କ୍ୱାସି ରାବଣାଖ୍ୟୋ
ରକ୍ଷଂ ରଘୋର୍କୁଲଯୋରପହୃତ୍ୟ ନଷ୍ଟଃ ।
ତ୍ରୈଲୋକ୍ୟଦୀପନକରଶିଖାକରାଳେ
ଯୋ ରାମନାମଦହନେ ଭବିତା ପତଙ୍ଗଃ । ୪ ।

ଅଙ୍ଗଦ ବୋଲଇ ଅରେ ରାକ୍ଷସ ଅଧମ । କାହିଁ ଲଚଅଛୁ ସେହି ପାପିଷ୍ଠ ରାବଣ । ସୂର୍ଯ୍ୟବଂଶ କୁଳବଧୂ ଚୋରାଇ ଆଣିଲା । ଆପଣେ ସେ ମଲ୍ଲପୁଣି ବଂଶ ନାଶକଲା । ତ୍ରୈଲୋକ୍ୟ ନାଥଙ୍କ ଦୀପ-ଶିଖା ନଲେ ପଡ଼ି ପତଙ୍ଗ ପରାୟେ ନାଶ ହେବ ଯିବ ପୋଡ଼ି । ୪ ।

ରାକ୍ଷସାଃ ।

କସ୍ତ୍ୱଂ ବାଲିତନୁଭବଃ କଥମହ ଶ୍ରୀରାମଦେଶଂ ଗତୋ
ବନ୍ଧୁଂ ବ୍ରୂହି ହନୂମତଃ ସ ଚ କଥଂ ରାଜ୍ଞୋଙ୍ଗଯୁଗ୍ମୋ ଗତଃ ।
ଛିନ୍ନୀତେ ବନ୍ଦ କାରଣଂ ଦଶମୁଖଂ ସାଙ୍ଗଂ ସପୁତ୍ରାନୁଜଂ
ହତ୍ୱା ଯନ୍ନଗତୋ ମଣମ୍ୟ ବଚନଂ ଶଙ୍କାପିତା ରାକ୍ଷସାଃ । ୫ ।

ବୋଲନ୍ତି ରାକ୍ଷସଗଣ ଅଙ୍ଗଦକୁ ତୁହି । କାହୁଁ ଆସିଅଛ ଦୂଅ-ପଣ ଚୟ୍ୟ କହ । ଅଙ୍ଗଦ ବୋଲଇ ମୁହିଁ ବାଳିର କୁମର । ଦୂତପଣେ ପେଷିଛନ୍ତି ମୋତେ ରଘୁବୀର । ଅସୁର ବୋଲଇଲେ କାହିଁ ଅଛୁ ହନୁ-ମନ୍ତ । ଅଙ୍ଗଦ ବୋଲେ ଲଚଅଛୁ ରାମଭୟେ ସେତ । ଭଯ୍ୟର କାରଣ କାଏ ପୁଚ୍ଛନ୍ତି ଅସୁରେ । ବୃଥା ଆସି ଫେରଗଲା ପଶିଣ ଲଙ୍କାରେ । ରାବଣର ମୁଣ୍ଡ ଯେଣୁ ନ ନେଲା ଛିଣ୍ଡାଇ । ସୁଗ୍ରୀବ ନୃପତି ଡରେ ଲଚଅଛିସେହି ॥ ଶୁଣି ଏ ବଚନ ତ୍ରାସ ପାଇଲେ ଅସୁରେ । ଚକିତ ଚତ୍ତେ ବରୁର ପୁଣି ପୁଚ୍ଛାକଲେ । ୫ ।

ଅଙ୍ଗଦରାବଣ ପ୍ରୋକ୍ତୁକ୍ତି ପ୍ରତ୍ୟୁକ୍ତି

କସ୍ତ୍ୱଂ ବାଳିସମୁଦ୍ଭବୋ ରଘୁପତେର୍ଦୂତଃ ସ ବାଳୀତି କଃ ।
କୋଽସୌ ବାନର ରାଘବଃ ସମୁଚିତା ଦେ ବାଳିନେ ବସ୍ତୁତଃ ।
ଯଦ୍‌ବାହ୍ୱନ୍ତରନିଗୂଢ଼ବନ୍ଧବପୁଷଃ ସଂମୂର୍ଚ୍ଛିତସ୍ୟ ଧ୍ରୁବଂ
ଦୋଃଣ ଦର୍ପନିବାରଣଃ ସ୍ମୃତୁରପୌ ରାମଃ କଥଂ ବସ୍ତୁତଃ । ୬ ।

କେଉଁ ବାଳିର ତନୟ ଅଟୁରେ ବାନର । କେଉଁ ରାମ ଦୂତ-ପଣେ ପେଷିଛୁ ମୋ ପୁର । କହ ପରିଚୟ ମୋତେ ସକଳ ବୁଝାଇ । ଶୁଣି ଏମନ୍ତ ବଚନ ଅଙ୍ଗଦ ବୋଲଇ । ଯେଉଁ ବାଳି କାଖତଳେ

ରକ୍ଷିଣ ସ୍ଥାପଟେତ । ଗୁରୁ ସମୁଦ୍ରେ ତର୍ପଣସାରିବା ପର୍ଯ୍ୟନ୍ତେ ॥ ତର୍ପଣ-
ସାରି ଗୃହରେ ପ୍ରବେଶିବା କାଳେ । ଛିଣ୍ଡିଦଂଷ୍ଟ୍ରେ ମୂର୍ଚ୍ଛା ହୋଇ ପଡ଼-
ଥିଲୁ ତଳେ । ଯେଉଁ ରାମ ତୋ ଭଗ୍ନୀର ନାସା କର୍ଣ୍ଣ ଛେଦେ । ତାଙ୍କୁ
ଭୁଲିଯାଉ ତୁହି ହରାଇଣ ବୁଦ୍ଧି । ୬ ।

ଶ୍ରୁତମପ୍ୟର୍ଥଂ କ୍ରୋଧାନ୍ଧ ଶଠତ୍ୱେନ ବିସ୍ମୃତା
ପୁନରପ୍ୟଙ୍ଗଦଂ ପୃଚ୍ଛତି ରାବଣଃ ।

ରେ ରେ କସ୍ୟାସି କୋଽସି କ୍ୱ ପୁନରିହ ଗତଃ କସ୍ୟ ଦୂତଃ କିମର୍ଥଂ
ବସ୍ପଷ୍ଟଂ ପିଷ୍ଟପାନାଂ ବଜସ୍ୱିନମପି ମାଂ ମନ୍ୟସେ ତ୍ୱଂ ତୃଣାୟ ।
ହଂହୋ ପୌଲସ୍ତ୍ୟସୂତୋ ତବ ବଲମଥନସ୍ୟାତ୍ମଜୋଽହଂ ସୁବେଲାତ୍
ସମ୍ପ୍ରାପ୍ତୋ ରାମଦୂତୋ ବିସୃଜ ଜଡ଼ମତେ ଜାନକୀଂ ବା ଶିରୋ ବା ।୭

ଅଙ୍ଗଦ କହିବା କଥା ଭୁଲି ଦଶଶିର । ପୁଣି ପଚାରେ କାହାର ଦୂତ
ତୁ ବାନର । କାହା ପୁତ୍ର କେମନ୍ତ ଆସିଲୁ ଲଙ୍କାପୁର । ତିନି ଭୁବନକୁ
ମୁହିଁ ଅଟଇ ଜୟକର । ଶୁଣି ବୋଲଇ ଅଙ୍ଗଦ ଅରେ ବିଂଶପାଣି । ଯେଉଁ
ବାଳି କାଖେ ଯାଇଥିଲୁ ତୋତେ ପୁଣି । ତାହାର ନନ୍ଦନ ନାମ ଅଙ୍ଗଦ-
ମନୋହର । ଦୂତପଣେ ପେଶିଛନ୍ତି ଶ୍ରୀରାମ ଠାକୁର । ସୁବେଳାଦ୍ରି ପର୍ବ-
ତରେ ଅଛନ୍ତି ଶ୍ରୀରାମ । ମୋତେ ପେଶିଲେ ତୋ ପାଶେ ସୁଦୟା
ବହିଣ । ଅରେ ପାପିଷ୍ଠ ସୀତାଙ୍କୁ କର ସମର୍ପଣ । ନୋହିଲେ ସମରେ
ନିଶ୍ଚେ ହରାଇବୁ ପ୍ରାଣ । ୭ ।

ଅଙ୍ଗଦଃ ।

ଯେନୈକେନ ଶରେଣ ସପ୍ତ ନିହତାସ୍ତାଲା ଧନୁସ୍ତୁଟିତଂ
ବଦ୍ଧୋ ବାମ୍ବୁଧିରେଷ ତାତମପି ମେ ଯଃ ପ୍ରାପୟତ୍ ପଞ୍ଚତାଂ ।
ତଦ୍ଭୃତ୍ୟଂ ଖଳୁ ବିଦ୍ଧି ରାକ୍ଷସପତେ ତତ୍ପାଦପଦ୍ମସ୍ଖଲ-
ଦ୍ଧୂଲୀପାଳିତରାଗପୁଞ୍ଜକଣିକାଜାତାଙ୍ଗଦଂ ଗୃଙ୍ଗଦଂ । ୮ ।

ବୋଲଇ ଅଙ୍ଗଦ ନ ଜାଣୁରେ ତାଙ୍କ ଗୁଣ । ସପ୍ତତାଳ ଛେଦିଲେ-
ଯେ ମାରି ଏକବାଣ ॥ ବାନରବଳ ଘେନିଣ ସମୁଦ୍ର ବାନ୍ଧିଲେ ।

ଏକବାଣେ ମୋହର ପିତାଙ୍କୁ ନାଶକଲେ । ସେ ରାମଙ୍କ ପାଦରଜ ଅଙ୍ଗେ ମୁହିଁ ବୋଳି । ଅଙ୍ଗଦ ନାମ ମୋହର ରେ ଦଶମଉଳି ।୮।

ରାବଣଃ ।

କୁଦ୍ଧାସ୍ତ୍ରେ ସମରେ ଯମାଳଯୂସମେ ରେ ଦୂତ ରାମ ସ୍ଥନ
ଧିଁ ଗୋଭ୍ୟାରଣ୍ୟଚାରଣେନ ମରଣଂ ବାଞ୍ଛତ୍ୟସୌ ଦୁର୍ଗତିଃ ।
ସ୍ତ୍ରୀରକ୍ତୋ ନିୟୃତଂ ମମୈବ ବିଶିଖୈ ବହ୍ନିପ୍ରଭେ ତ.ପସୋ
ଦେବେଷୋଦ୍ଧ ତଦର୍ପସର୍ପଗରୁଡ଼େ ସୁଗ୍ରୀବମିତ୍ରଷ୍ଟିରଂ । ୯ ।

ଶୁଣି ରାବଣ ଅଙ୍ଗଦ ମୁଖୁ ଏ ବଚନ । ବୋଲଇ କେବଣଠାରେ ଅଛଇ ତୋ ରାମ ॥ ଯମ ଅଟଇ ଯୁଦ୍ଧରେ ଜାଣେ ନାହିଁ ମୋତେ । ନାରୀ ନିମନ୍ତେ ମରିବ ଆସିଅଛୁ ଏଥେଁ । ଜାଣୁଛୁ ସୁବୀରଙ୍କ ଅଟଇ ଅଜ୍ଞାନ । ମୋର ବିଶିଖରେ ନିଷ୍ଟେ ହରାଇବ ପ୍ରାଣ ॥ ଗରୁଡ଼କୁ ଦେଖି ସର୍ପ ସଦା ଭୟ କରେ । ଦର୍ପବହେ ସର୍ପ ରହି ଶିବଙ୍କ ଅଙ୍ଗରେ ॥ ସେହି ବାଣେ ସୁଗ୍ରୀବର ମିତ୍ର ହେବ ନାଶ । ଗରୁଡ଼ ତୁଲ୍ୟ ମୋ ବାଣ ସର୍ପ ହେବ ଧ୍ୱଂସ । ୯ ।

ରାବଣାଙ୍ଗଦୟୋରୁକ୍ତିପ୍ରତ୍ୟୁକ୍ତୀ ।

ରାମଃ କୋ ନାମ ଜେତା ଜୟତି ଭୃଗୁପତେଃ କଣ୍ଠତାଦୃଗ୍ ଭୃଗୁଣଂ
ଯଚ୍ଛେଦ୍ଧିଂ ସଖ୍ୟ.ତପଦଂ ଜଗତି ନ ବାଦିତସ୍ତସ୍ୟ ଯାଦୃକ୍ପ୍ରଭାବଃ ।
ହନ୍ତାସୌ ହୈହୟେନ୍ଦ୍ର ପ୍ରଭୃତିନରପତେଃ କସ୍ତଥା ହୈହୟୋ ବା
ବ୍ୟକ୍ତଂ ଜାନାହି ଯସ୍ତ୍ୱାଂ ସୁଚିରମଗମୟତ୍ କୂରକାରାନ୍ତକାୟଂ ।୧୦।

ରାମ କିଏ ଅଟଇ ମୋ ବାଣେ ସାକ୍ଷାତରେ । ତା ଶୁଣି ଅଙ୍ଗଦ ପୁଣି ବଚନ ଉଚ୍ଚାରେ ॥ ଯେଉଁ ରାମ ଭୃଗୁପତି ଦର୍ପ ଚୂର୍ଣ୍ଣ କଲେ । କେଉଁ ଭୃଗୁପତି ବୋଲି ଦଶାନନ ବୋଲେ । ଅଙ୍ଗଦ ବୋଲଇ ଯେଉଁ ଯାଙ୍କ ରାମ ଯଶ । ଖ୍ୟାତ ହୋଇଛି ଜଗତେ ସୁକୀର୍ତ୍ତି ପ୍ରକାଶ ॥ କାର୍ତ୍ତବୀର୍ଯ୍ୟ ଅର୍ଜୁନକୁ ଯୁଦ୍ଧେ ଅଛି ଜିଣି । ତାହାଙ୍କର ପ୍ରଭାବ କ ନାହିଁ ତୁହି ଶୁଣି । କେଉଁ କାର୍ତ୍ତବୀର୍ଯ୍ୟ ବୋଲି ପୁଛଇ ରାବଣ । ଅଙ୍ଗଦ ବୋଲେ ଯେ ତୋତେ କରିଛି ବନ୍ଧନ । ୧୦ ।

ରାବଣଃ ।

କସ୍ତ୍ୱଂ ବାନ୍ୟପତେଃ ସୂତୋ ବଦ ଘଢଃ କେ ବା ମମାଗ୍ରେ ବଦେତ୍
ଦେବାଃ ଶକ୍ରପୁରୋଗମ ମମ ଗୃହେ ନିତ୍ୟଂ ସ୍ୱଦାସେ୍ୟ ସ୍ଥିତଃ ।
ରାମଃ କିଂ କୁରୁତେ କପୀନ୍ଦ୍ରପୃଥୁକୈଃ ସଂଲଙ୍ଘ୍ୟ ରତ୍ନାକରଂ
ଚେଦାୟାତି ଯଦି ସ୍ୱଦର୍ପଦହନେ ସ ସ୍ୟାତ୍ ପତଙ୍ଗୋପମଃ । ୧୧ ।

ଶୁଣି ଅଙ୍ଗଦ ବଚନ କୋପେ ଦଶାନନ । ବୋଲଇରେ ମୂଢ଼ ତୁହି ବାନର ଅଜ୍ଞାନ ॥ ସିଂହ ଅଗେ ଗର୍ବ କରୁ ବଣପଶୁ ହୋଇ । ଇନ୍ଦ୍ରାଦି ଦେବତା ଯାର ସେବାରେ ଖଟଇ ॥ ମାଙ୍କଡ଼ ଗୁଡ଼ାଏ ଘେନି ଆସିଅଛି ରାମ । ଲଙ୍କାରେ ପଶିଛି ମୋର ସମୁଦ୍ର ଲଙ୍ଘଣ ॥ ମୋହର କ୍ରୋଧ ଅଗ୍ନିର ମଧ୍ୟରେ ପଡ଼ିବ । ପତଙ୍ଗ ପରାୟେ ନାଶେ ନାଶକୁ ଭଜିବ । ୧୧ ।

ଅଙ୍ଗଦଃ ।

ରେ ରେ ରାବଣ ରାବଣାଃ କତି ବହୁନେତାନ୍ ବୟଂ ଶୁଶ୍ରୁମଃ
ତତ୍ରୈକଃ କିଲ କାର୍ତ୍ତିବୀର୍ଯ୍ୟନୃପତେ ଦୋର୍ଦଣ୍ଡପିଣ୍ଡୀକୃତଃ ।
ଏକୋ ନର୍ତ୍ତିନଲବ୍ଧଭକ୍ତ କବଲୋ ଦୈତ୍ୟେନ୍ଦ୍ର ଦାସୀଗଣୈ
ବନ୍ୟୋ ମତ୍ପିତୃବାହୁମୂଳଗଳିତସ୍ତ୍ୱଂ ତେଷୁ କୋଽନ୍ୟୋଽଥବା ।୧୨।

ଶୁଣି ଅଙ୍ଗଦ ବୋଲଇ ତୁ କେଉଁ ରାବଣ ! କେତେ ରାବଣର କଥା କରଛି ଶ୍ରବଣ । ଥିଲା ଏକ ରାବଣ ଯେ କାର୍ତ୍ତିବୀର୍ଯ୍ୟ ପୁରେ । ବାନ୍ଧି ରଖିଥିଲା ତାକୁ ସେହି ବାହୁବଳେ । ଅନ୍ୟର ଗୋଟାଏ ବାଳିରାଜ ପୁରେ ରହି । ନଚୁଥିଲେ ଦାସୀଏ ଭାତ ପାଣି ଦେଇ । ଗୋଟାଏ ରାବଣ ଥିଲା ମୋ ପିତା କାଖରେ । ଖସିପଡ଼ି ଅଜ୍ଞାନେ ପଡ଼ିଲା ଭୂମିପରେ ॥ ଏଥିମଧ୍ୟରୁ ତୁ ଅଟୁ କେଉଁ ରାବଣ । କିବା ଏହା ଭିନ୍ନ ଆନ ଅଟୁ ତୁହି ପୁଣ । ୧୨ ।

ରାବଣଃ ।

ରେ ରେ କ୍ଷୀଣଶିଖୋ ମଟମେବ ପୁରତୋ ହୃଷ୍ଟଃ ପୃଷ୍ଟଃ କଥଂ
ମ୍ଲେମାଲୀକଳୁଷୀକୃତେ କିଲ ପୁରା କର୍ଣ୍ଣେଽପି ନ ଶ୍ରାବିତଂ ।

ସ୍ନୁଦ୍ଧେ ତୁଲ୍ୟବଳଃ ସୁରେଷ୍ୱପି ନ ମେ କଶ୍ଚିଦ୍ ପୂନ୍ ବାଣସ୍ତୃଂ
ସ୍ତ୍ରୀନାହଂ ସବଳୋ ଯତଃ ପରବଲଂ ହତ୍ୱା ତତୋରାବର୍ଦ୍ଧଂ ।୧୩।

ବୋଲଇ ରାବଣ ଅରେ କପି ହୀନଜାତ । ମୋର ଆଗେ ଠିଆ ହେଇ କହୁ ତୁ ଭାରତୀ । ପ୍ରତିଜ୍ଞା ମୋହର କରେ ଶୁଣିନାହୁଁ କର୍ଣ୍ଣେ । ତୁମ ବେଣୀ ବଡ଼ି ତାଙ୍କି ରହିବାରୁ ଜାଣେ ॥ ତିନିଭୁବନରେ ମୋ ସମାନ ନାହିଁ କେହି । ଦେବତାଏ ଯୁଦ୍ଧେ ଅଗ୍ରେ ନ ପାରନ୍ତି ରହି । ତେଣୁ ମୋ ସଙ୍ଗେ କେ ନ କରନ୍ତି ଶତ୍ରୁପଣ । ଶତ୍ରୁ ମର୍ଦ୍ଦନ କରଣେ ମୋ ନାମ ରାବଣ । ୧୩ ।

ଅଙ୍ଗଦଃ ସାଟୋପଂ ସ୍ୱାମିଭକ୍ତ୍ୟଂ ଅଭିନୟତି ।

କୃତ୍ୱା କକ୍ଷାଗତଂ ତ୍ୱାଂ କପିକୁଳତିଲକୋ ବାଳିନାମା ବଲୀୟାନ୍
ଭ୍ରାନ୍ତଃ ସପ୍ତବ୍ଧିତୀରେ ତଦପି ଚରିତବାନ୍ ସ୍ନାନସନ୍ଧ୍ୟାର୍ଚ୍ଚନଂ ଚ ।
ବାଣେନୈକେନ ଯେନାହତ ଇହ ପତିତୋ ବାନରଃ କୀର୍ତ୍ତିଶେଷୋ
ତ୍ୟକ୍ତ୍ୱାସୂଂ ତଂ ସ୍ୱକାୟଂ ଭୁବନମଗମଯ୍ନନ୍ ମୂଞ୍ଚଲଙ୍କେଶ ଗର୍ବଂ ।୧୪।

ଶୁଣି ଅଙ୍ଗଦ ବୋଲଇ ଅରେ ଦଶଶିର । ଯାକଥିଲେ କାଖେ ତୋତେ ଯେଉଁ ବାଲୀବୀର । କାଖରେ ରଖିଣ ତୋତେ ସପତ ସାଗରେ । ସନ୍ଧ୍ୟା ତର୍ପଣ କରଣ ବାହୁଡ଼ିଲେ ଘରେ ॥ ସେହି ବାଲୀବୀର ଏକବାଣେ ହେଲେ ନାଶ । ଦେଲେ ତାହାଙ୍କୁ ନେଇଣ ବଇକୁଣ୍ଠେ ବାସ ॥ ସେ ରାମଙ୍କ ଅଗେ ଗର୍ବ କରୁରେ ପାମର । ଗରବଗଞ୍ଜନ ବାନା ଅଟେ ତାହାଙ୍କର । ୧୪ ।

ରାବଣଃ ।

ଦୋର୍ଦ୍ଦଣ୍ଡାସ୍ତରମେ ହି କୈଳାସନଗିରେରୁତ୍ତମ୍ଭସମ୍ଭାବନା
ସ୍ତାନ୍ୟେତାନି ଦଶ ନନାନି ଦଶଭିଦଗ୍ଧଭିସ୍ତଥା ବଶ୍ରୁତଃ ।
ପଶ୍ୟ ହ୍ୟଙ୍ଗଦ ସର୍ବବୀର୍ଯ୍ୟମହିମା ତନ୍ମେ ନ ପୂନସ୍ତ୍ରୀ ପଦଃ
ସଂଶୋଚ୍ୟଃ ସ ରଘୂଃ ସଗୃପିକୁପି ତସ୍ତସ୍ୟାପି ଦୂତଃ କପିଃ।୧୫।

ଏରେ ମର୍କଟ କହୁଛୁ କେତେ ତାର ଠାଣ । ଏହି ଭୁଜେ ଉପାଡ଼ିଛୁ କୈଳାସ ମୁଁ ଜାଣ ॥ ବିରାଜୁଛି ଦଶଭୁବନରେ ମୋର ଯଶ । ତୁ ମୋତେ ସାମାନ୍ୟପରି ମଣୁ ଅରେ କପି । ଅରେ ଅଙ୍ଗଦ ତୋ ବଳ ବୀର୍ଯ୍ୟର ମହିମା । ବିଶେଷ କହିବି କେତେ ତୋ ଅଟେ ଗାରିମା ॥ ତପସ୍ୱୀ ଯେ ହିଏ ମୋର ହୋଇଛୁ ବଇରୀ । ତୁ ଦୂତ ଦୂତପଣରେ ଅଛୁ ତାହାରି । ୧୫ ।

ଅଙ୍ଗଦଃ ।

ଦ୍ୱିଦୋର୍ଦ୍ଦଣ୍ଡପ୍ରଚଣ୍ଡପ୍ରଖଣ୍ଡନନବଧୌ ପ୍ରୌଢ଼ଦୋଷ୍ଣାଂ ସହସ୍ର
ଚ୍ଛେଦକ୍ରୀଡ଼ାପ୍ରବୀଣସ୍ତ୍ରିରପରଶୁମହାଗର୍ବନିର୍ବାପକସ୍ୟ ।
ଦୂତୋଽହଂ ରାଘବସ୍ୟ ତ୍ରିଦଶପଦନଟରାଜ୍ଞି ସ୍ତ୍ରକଣ୍ଠସ୍ଥଲେନ୍ଦ୍ରଃ
ପୁନଃ ସୁନାମୁସୂନୋଃ ପ୍ଲୁତିଗତିଲପତେର୍ନାମତଶ୍ଚାଙ୍ଗଦୋଽହଂ ।୧୬।

ଅଙ୍ଗଦ ବୋଲଇ ଶୁଣ ଅରେ ଦଶଶିର । ଜଣାଅଛୁ ତୋହର ଯେମନ୍ତ ବାହୁବଳ ॥ ବାନ୍ଧିଥିଲା ତୋତେ ଯେଉଁ ସହସ୍ରାର୍ଜ୍ଜୁନ । ତା ବାହୁକୁ ଯେହୁ କରି ଅଛନ୍ତି ଛେଦନ ॥ ଭୃଗୁସୁତ ପଶୁରାମ ଦର୍ପ ଚୂର୍ଣ୍ଣକରି । ଥିଲେ ଯେଉଁ ରାମ ଅଯୋଧ୍ୟାର ଦଣ୍ଡଧାରୀ ॥ ତାହାଙ୍କର ଦୂତ ମୁହିଁ ଅଙ୍ଗଦ ମୋ ନାମ । ଯେଉଁ ବାଳୀ କାଖେ ଯାକିଥିଲା ତା ନନ୍ଦନ ॥ ଇନ୍ଦ୍ର ସୁତଙ୍କର ସୁତ ଚିହ୍ନିଥାଅ ମୋତେ । ଅରେ ରାକ୍ଷସ ଅଧମ କହୁଅଛୁ ତୋତେ । ୧୬ ।

ରାବଣଂ ସକ୍ରୋଧଂ । .

ଭ୍ରାତା ମେ କୁମ୍ଭକର୍ଣ୍ଣଃ ସକଳରିପୁବଳଧ୍ୱଂସକାରୀ ବଲୀୟାନ୍ ।
ପୁତ୍ରୋ ମେ ମେଘନାଦଃ ପ୍ରହସିତବଦନୋ ଯେନ ବଦ୍ଧଃ ସୁରେନ୍ଦ୍ରଃ ॥
ଖଡ୍‌ଗୋ ମେ ଚନ୍ଦ୍ରହାସୋ ରଣମୁଖଚପଲୋ ରାକ୍ଷସା ମେ ସହାୟାଃ
ସୋଽହଂ ଗୀର୍ବାଣଶତ୍ରୁସ୍ତ୍ରିଭୁବନବିଜୟୀ ରାବଣୋ ନାମ ରାଜା ।୧୭।

ବୋଲଇ ରାବଣ ମନେ ବହି ଅତି କ୍ରୋଧ । ନ ଜାଣୁ ବଳ ବିକ୍ରମ ମୋହର ଅବୋଧ । ଭ୍ରାତ ମୋହର ଅଟଇ କୁମ୍ଭକର୍ଣ୍ଣ ବୀର ।

ପୁତ୍ର ମେଘନାଦ ସେ ଯେ ଶତ୍ରୁଙ୍କର କାଳ । ବାହୁବଳେ ଇନ୍ଦ୍ର ଜିଣି ନାମ ଇନ୍ଦ୍ରଜିତ । ଦେଖ ଚନ୍ଦ୍ରହାସ ଖଡ୍ଗ ଥିଲେ ମୋର ହସ୍ତ । ଜିଣି ପାରଇ ମୁଁ ହେଲେ ତିନି ଭୁବନକୁ । ଲଙ୍କାରେ ଭର୍ଜନ ମୁହିଁ ନୃପତିପଣକୁ । ୧୭ ।

ଅଙ୍ଗଦଃ

ରେ ରେ ରାବଣ କାର୍ତ୍ତବୀର୍ଯ୍ୟଦଳିତାହଂକାର ଗର୍ବ୍ବା ସ୍ୱୟଂ
ସୀତାମର୍ପୟ ପାଳୟସ୍ୱଭବନଯ୍ୟାନ୍ ଯାବନ୍ନ ରାମଃ ଶରାନ୍ ।
କୋପାନ୍ମୁଞ୍ଚ ହୈହୟାଧିପଭୁଜଶ୍ରେଣୀମହାକାନନ—
ଚ୍ଛେତ୍ତୃଣ୍ଟ କୁଠାରଧାରଣପଟୋ ରାମସ୍ୟ ନେତା ରଣେ । ୧୮ ।

ଅଙ୍ଗଦ ବୋଲଇ ଅରେ ପାପୀ ଲଙ୍କପତି । କାର୍ତ୍ତବୀର୍ଯ୍ୟ ସଙ୍ଗେ ପାଇଥିଲୁ ଯେଉଁ ଶାସ୍ତି ॥ ସେହି କାର୍ତ୍ତବୀର୍ଯ୍ୟକୁ ଯେ କଲେଟି ଛେଦନ । ତାଙ୍କୁ ଜିଣିଛନ୍ତି ଅମ୍ଭ ପ୍ରଭୁ ରଘୁନାଥ ॥ କେବଳ ସୁଯୋଗ ଏହି ସମୟରେ ତୋତେ । ସୀତା ସମର୍ପିଣ ପଣ ଶରଣ ତୁରିତେ ॥ ନୋହିଲେ କୋପେ ଯଦ୍ୟପି କୋଦଣ୍ଡ ଟେକିବେ । ପୁତ୍ରନାତି ସହିତରେ ସବଂଶେ ମରିବେ । ୧୮ ।

ରାବଣାଙ୍ଗଦୟୋରୁକ୍ତି ପ୍ରତ୍ୟୁକ୍ତି ।

ରାମଃ କିଂ କୁରୁତେ ପ୍ରତାପବିଜୟଂ କୋଽସୌ ପ୍ରତାପେ ଜିତୋ
ବାଲୀ ସୋଽପି ଚ କୋ ନ ବେତ୍ସି ତମିମଂ କୋବେତ୍ତି ଶାଖାମୃଗଂ ।
ହା ହା ତତ୍ର ତବାପି ବାସ୍ତୁ ତରହୋ ମୋହୋ ମହାନ୍ନାଭୃଶଃ
ପର୍ଯ୍ୟଙ୍କେ ନିଜବାଲକେଳିକୃତୟେ ବଦ୍ଧୋଽସି ଯେନୋପରି । ୧୯ ।

ଅରେ ରେ ବାନର ବଡ଼ି କହୁ ମୋ ଆଗର । କହ କି କରୁଛି ତୋର ରାମ ଗୁଣାକର ॥ ଅଙ୍ଗଦ ବୋଲଇ ଶତ୍ରୁ ଦଳିଛନ୍ତି ସେହି । ରାବଣ ବୋଇଲ କେ ବଳବନ୍ତ ଶତ୍ରୁ ରହି ॥ ଅଙ୍ଗଦ ବୋଲଇ ବଳବନ୍ତ ଅଟେ ବାଳୀ । ଭଲେ ଜାଣୁ ବାଳୀ କିଏ ନ ପାରୁ ପଚାରି ରାବଣ ବୋଲଇ କେତେ ବନଚର ଛନ୍ତି । ହୋଇଥିବ କେହି

ବାଳୀ ବାନର ନୃପତ । କେହୁ ବାଳୀ ବୋଲି ପୁଣି କହୁଅଛୁ ତୁହ । ବାନ୍ଧିଥିଲି ପଲଙ୍କ ପାଦରେ ତୋତେ ନେଇ । ତାହାକୁ କରିଲେ କେଉଁ ପର ବସ୍ତୁରଣ । ଆଶ୍ଚର୍ଯ୍ୟ ହେଉଛୁ ମନେ ଭାବ ତୋର ଗୁଣ । ୧୯ ।

ରାବଣଃ ।

କଂ କାର୍ଯ୍ୟଂ ବଦ ରାଘବସ୍ୟ ତଥା ବଦ୍ଧୋଽଧୁନାମ୍ଭୋନଧିଃ
କ୍ରୀଡ଼ାର୍ଥଂ କପିପୋତକୈରହ ଗତୈର୍ଜ୍ଞାନାତ୍ୟପୂର୍ବଂ ମାଂ ନହି ।
ଇଙ୍ଗାଲେକନକସ୍ୟ ନାଥ ବଚସା ବେଦେତ୍ୟେବ କଂ କଂ ଜପେ
କୋ ଲଙ୍କାଧିପତିର୍ବିଭୀଷଣ ଇତି ପ୍ରଖ୍ୟାତକୀର୍ତ୍ତିର୍ଭବ । ୨୦ ।

କହନ୍ତେ ଅଙ୍ଗଦ କି କି କର୍ମ କରେ ରାମ । ମୋହର ସମାନେ କଲା କେଉଁ ପରାକ୍ରମ ॥ ଖେଳିବାର ବାନର ଗୁଡ଼ାଏ ସଙ୍ଗେ ଅଣି । ଠେଲା ବୃକ୍ଷ ଫୋପଡ଼ାଇ ବାନ୍ଧିଅଛୁ ପାଣି ॥ ଆଉ କି କଠିଣ କାର୍ଯ୍ୟ କରିଛୁ ରାଘବ । ମୋର ବଳ କାହାକୁ କହେ ନ ଜାଣିଥିବ ॥ ଅଙ୍ଗଦ ବୋଲେ ଜାଣନ୍ତି ତୋର ସବୁ କଥା । ବଡ଼ି କହୁଅଛୁ ଆଉ କେତେ ଦଶମଥା ॥ ଲଙ୍କାଗଡ଼େ ହୋଇଲଣି ବଭୀଷଣ ରାଜା । ବିକ୍ରମ ଦେଖିକି କହୁଅଛ ତୁ ରହିଯା । ୨୦ ।

ରାବଣଃ ।

ପ୍ରବୀରଗଣନାସୁ ବା ତବ ପିତୈବ କୈର୍ମନ୍ୟତେ
ପତିଃ ସହ ବନୌକସାଂ ତ୍ୱମସି କୋ ବରାକୋଽର୍ଭକଂ ।
ଚକାର କିଳ ରାଘବଃ କିମପି କର୍ମ ଲୋକୋତ୍ତରଂ
ତରଙ୍ଗୟସି ଯନ୍ନୁ ଦୁର୍ମମ ପୁର ସ୍ତ୍ରଦୀୟଂ ଯଶଃ । ୨୧ ।

କୋପେ ରାବଣ ବୋଲଇ ଅରେ ରେ ବାନର । ତୋ ପିତା କେଉଁ ଧନରୁ ବୋଲାଇଲା ବୀର ॥ ହୋଇଅଛି କେତେ କପିମାନଙ୍କ ରକ୍ଷକ । ତୁହ ମୂଢ ଅଟୁ ପୁଣି ତାହାର ବାଳକ ॥ କେଉଁ ବଡ଼ କାର୍ଯ୍ୟ ରାମ କରିଛନ୍ତି ତୋର । ବାରମ୍ବାର କହୁଅଛୁ ଆସି ମୋ ଅଗର । ୨୧ ।

ଅଙ୍ଗଦଃ ।

ରମୋ ନାମ ସ ଏବ ଯେନ ଭଗିନୀନାମାବସାଦଙ୍କିଳଃ
ଖଡ୍ଗସ୍ତେ ଖରଦୂଷଣବି ଶିରସାଂ ଧୌତଃ ଶିରଃଶୋଣିତୈଃ ।
ତ୍ୱାଂ ବଦ୍ଧ୍ୱା ଚତୁରମ୍ବୁରାଶିଷୁ ପରିଭ୍ରମ୍ୟନ୍ ମୁହୂର୍ତ୍ତେନ ଯଃ
ସନ୍ଧ୍ୟାମଚ ଯିତବ୍ୟ ନାସ୍ୱପକଥଂ ତାତସ୍ତ୍ୱୟା ବିସ୍ମୃତଃ ।୨୨।

ରାମ ନାମର ମହିମା ଶୁଣରେ ରାବଣ । ଛେଦିଲେ ତାଙ୍କ ଖଡ୍ଗେ ତୋ ଭଗ୍ନୀ ନାସାକର୍ଣ୍ଣ । ସେହି ଖଡ୍ଗମାଂସ ହକେ ଲଗି ରହିଥିଲା । ଖର ଦୂଷଣଙ୍କର ଶୋଣିତେ ଧୋଇଲେ ॥ ଅଳପ ଦିନର କଥା ଭୁଲିଗଲୁ ତହିଁ । ନିର୍ଲଜ ପଣିଆ ଧରୁଅଛୁ କାହିଁପାଇଁ । ମୋର ପିତାଙ୍କର । କଥା ଭୁଲିଲୁ କେମନ୍ତେ । ଚତୁରସମୁଦ୍ରେ ତର୍ପଣ କଲେ ଧରି ତୋତେ । ସନ୍ଧ୍ୟା ତର୍ପଣ ସାରି ଗୃହକୁ ବାହୁଡ଼ିଲେ । ତୋତେ ଦେଖି ଦୟାକରି ଛାଡ଼ି ଦେଇଥିଲେ । ୨୨ ।

ରାବଣଃ ।

ଯସ୍ତାତଂ ତବ ନିର୍ଦ୍ଦୟଂଲଙ୍କମବଧୀତ୍ ନାପି ନିର୍ମ୍ମସ୍ତର-
ସ୍ତସ୍ୟ ପ୍ରେଷ୍ୟତୟା ଭ୍ରମନ୍ କପିଶିଶୋ ନିର୍ଲଜ୍ଜ କିଂ ଗର୍ଜସି ।
ତ୍ୱତ୍ପିତା ପୁନରେକଦା କିଲ ମୟା ମୈନପ୍ରସାଦଃ କୃତ-
ସ୍ତତ୍ପୁତ୍ରେ ତ୍ୱୟି ତାବଦେବ ମୁଚିତୋ ଦଣ୍ଡଃ କଥଂ ଧୀୟତାଂ ॥

ଆରେ ରେ ନିର୍ଲଜ କପି ଲାଜ ତୋତେ ନାହିଁ । ନିର୍ଦ୍ଦୋଷୀ ପିତାକୁ ତୋର ଅସିକୁ ମରାଇ । ପିତା ଶତ୍ରୁର ମହିମା କହୁ ମୋ ଆଗର । ଦାସହୋଇ କାର୍ଯ୍ୟ ପୁଣି କରୁଛୁ ତାହାର ଯେଣୁ ତୋର ପିତାସଙ୍ଗେ ମିତ୍ରତା ମୋ ଥିଲା । ତେଣୁ ତୋ କଥା ଶ୍ରବଣେ ମୋର କ୍ରୋଧ ହେଲା । ତାହାର ସନ୍ତାନ ତୋତେ କି ଦଣ୍ଡ ମୁଁ ଦେବି ॥ ଉଚିତ ଶାସ୍ତି ଦିଅନ୍ତି କିଛି ନ କହିବି । ୨୩ ।

ଅଙ୍ଗଦଃ ।

ପ୍ରପନ୍ନଃ ପନ୍ଥାନଂ ଯଦି ନମୃ ମମିନୈଽପି ନିୟତଂ
ନିକ୍ଷେପବ୍ୟଃ ସାଧନାଂ ନ ପୁନରପନୀତଃ ସୁହୃଦପି ।

ତଥା ହି ତ୍ୱଂ ହିତ୍ୱା ସହଜମପି ନକ୍ତଞ୍ଚରଚମୂଂ
ବରାମଂ ଶ୍ରୀରାମଂ ଭବଦନୁଜ ଏବୈଷ ଭଜତେ । ୨୪ ।

ଅଙ୍ଗଦ ବୋଲଇ ଶତ୍ରୁହେଲେ ପଛେ ହେଉ । ନ୍ୟାୟରେ ଯେ ରହେ ଧର୍ମବନ୍ତ ଅଟେ ସେହୁ ॥ ସାଧଜନ ମେଳରେ ସେ ପୂଜାପାଏ ନିତ । ଅନ୍ୟାୟୀ ମିତ୍ରକୁ ସୁଦ୍ଧା କେହି ନ ପୁଛନ୍ତି ॥ ଦେଖ ତୋହର କନିଷ୍ଠଭ୍ରାତ ବିଭୀଷଣ । ନିଜବଂଶକୁ କେମନ୍ତେ ଅଇଲା ତେଜିଣ ॥ ଦସ୍ୟାତ୍ମ ପୁରୁଷ ଦେଖି ଅଗ୍ରଯୁ ଯେ ନେଲା । ଭକ୍ତିଭରେ ଶ୍ରୀଚରଣେ ଶରଣ ପଶିଲା ।୨୪।

ରାବଣଃ ।

ଶ୍ରୁତମସ୍ତି ବିଭୀଷଣଶ୍ଚ ନଃ ସହଜୋ ରାମମତଃ ସମାଶ୍ରିତଃ ।
କତି ସନ୍ତି ନ ରାମନାମକାଃ କତମସ୍ତେଷୁ ନଯୁସ୍ୱ ସ୍ୟୋଚ୍ୟତେ ।୨୫।

ରାବଣ ବୋଲଇ ମୋର ଭାଇ ବିଭୀଷଣ । ଶ୍ରୀରାମ ପାଦରେ ଯାଇଁ ପଶିଛୁ ଶରଣ ॥ କେତେ ନାହିଁ ପରାୟଣ ରାମନାମ ଧରି । ଅଛନ୍ତି ଜଗତେ କହ ମନରେ ବିଚାରି । ୨୫ ।

ଅଙ୍ଗଦଃ ।

ଜଘାନ ଯୁଧି ତାଡ଼କା ନିମମସୌ ଚ ରକ୍ଷଃକୁଳଂ
ବଭଞ୍ଜ ଧନୁରୈଶ୍ୱରଂ ପଟବଭୂବତଂ ଭାର୍ଗବଂ
ସ୍ୱତାଳତରୁସପ୍ତକଂ ସପଦ୍ୟକୃତବାନମ୍ବୁଧିଂ
ବଚନ୍ତି ନ ତଥାପି ତେ ଦଶରଥୋ ରଘୁଣାଂ ପତିଃ । ୨୬ ।

ଯେଉଁ ରାମ ଅସୁରଙ୍କ ବଂଶ ନାଶିବାକୁ । ଜନ୍ମି ଅଛନ୍ତି ଜଗତେ ସନ୍ତ ପାଳିବାକୁ ॥ ତାଡ଼କା ଆଦି ଅସୁରୀ ସମରେ ନାଶିଲେ । ମିଥିଳା ନଗରେ ଯାଇ ଧନୁଭଗ୍ନ କଲେ ॥ ଭୃଗୁପତି ପର୍ଶୁରାମ ଦର୍ପଚୂର୍ଣ୍ଣ କରି । ସପ୍ତତାଳ ଛେଦିଣ ଅଛନ୍ତି ବାଳୀ ମାରି ॥ ସମୁଦ୍ର ବାନ୍ଧି ଲଙ୍କାରେ ହେଲେଣି ପ୍ରବେଶ । ତେବେ ଚିହ୍ନି ନ ପାରିଲୁ ତାଙ୍କୁ ଲଙ୍କେଶ ।୨୬।

ରାବଣଃ

ଭଗ୍ନଂ ଭଗ୍ନମୁମାପତେଃ ଜଗବଂ ବାଲୀ ହତସ୍ତ ହତ
ସ୍ତାଳାଃ ସପ୍ତ ହତା ହତାସ୍ତ ଜଳଧିର୍ବଦ୍ଧସ୍ତ ବଦ୍ଧସ୍ତ ସଃ ।
ଆଃ କିଂ ତେନ ସତୈଳ ସାଗରଧରାଧାରେ ରଗେନ୍ଦ୍ରାଙ୍ଗଦଂ
ସଂଦ୍ରଂ ରୁଦ୍ରମୁଦସ୍ୟତୋ ନିଜଭୁଜାନ୍ ଜାନାତ୍ୟସୌ ରାବଣଃ ।୨୭

ବୋଲଇ ରାବଣ ଭାଙ୍ଗି ପୁରୁଣା ଧନୁକୁ । କେତେ ଗର୍ବ କରୁଅଛୁ ଅପଣା ମନକୁ ॥ ବୃଦ୍ଧ ହୋଇଥିଲା ବାଳୀ ଯୁଦ୍ଧ କର କର । ନିର୍ବଳ ଦେଖିଣ ତାକୁ ପକାଇଛୁ ମାର ॥ ସପ୍ତତାଳ ପାଞ୍ଚୁଥିଲା ବାଳୀର ମରଣ । ତେଣୁକର କଲା ରାମ ତାହାକୁ ଛେଦନ ॥ ସୂର୍ଯ୍ୟ ବରୁଣଙ୍କ ଯୋଗେ ସିନ୍ଧୁ ବନ୍ଧାଇଲା । ଏହା କରିବାକୁ ରାମ ବଡ଼ବୀର ହେଲା ॥ ଦେଖ ମୋହର ଯେ ଏହୁ ବାହୁର ବିକ୍ରମ ଶିବସହ ଉପାଡ଼ିଛୁ କୈଳାସ ଭୁବନ । ୨୭ ।

ଅଙ୍ଗଦଃ ।

ଏକସ୍ତ୍ୱୟା ହରଗିରିଃ ସ୍ୱଭୁଜୈରୁଦସ୍ତଃ
ଶମ୍ଭୋଃ ପ୍ରସାଦନବିଧୌ ଦଶକନ୍ଧରେଣ ।
ପୃଥ୍ୱୀଂ ବରାହବପୁଷ ମୃଧ୍ୱଂ ମଧମନ୍ତ୍ରୀ
ତେନୋଦ୍ଧୃତା ଗିରି ସହସ୍ରଧରା ଧରିତ୍ରୀ । ୨୮ ।

ଶୁଣରେ ରାବଣ ତୁଯେ ଉପାଡ଼ିଲୁ ଗିରି ॥ ବର ପାଇଥିଲୁ ଶିବଙ୍କୁ ସନ୍ତୋଷ କରି ॥ ଆପଣାର ପରାକ୍ରମ କି ଅଛି ତୋହର । ତୋଳିଛନ୍ତି କେତେ ଗିରି ଆମ୍ଭର ବାନର । ସହସ୍ର ସହସ୍ର ଗିରି ସମୁଦ୍ରେ ପଡ଼ିଛି । ଏକ ଗିରି ତୋଳି ବଡ଼ ବୀର କେ ହୋଇଛି ॥ ଦେଖ ଦନ୍ତଅଗ୍ରେ ଥିଲେ ପୃଥିବୀକୁ ଧରି । ରାମ କେମନ୍ତ ବରାହରୂପ ହୋଇକରି । ୨୮ ।

ରାବଣଃ ।

ସର୍ବୈର୍ଯସ୍ୟ ସମଂ ସମେତ୍ୟ କଠିନାଂ ବକ୍ଷସ୍ଥଳୀଂ ସଂଯୁଗେ
ନିର୍ଭଗ୍ନଂ ମୁଖମେବ ଦନ୍ତମୂଷଳୈରୈରାବତସ୍ୟୋଦ୍ଗତୈଃ ।

ହେଲୋତ୍‌କ୍ଷିପ୍ତ ମହୀଧ୍ରକମ୍ପଜନିତବାମାଙ୍ଗନାଲିଙ୍ଗନ-
ପ୍ରାପ୍ତା ନନ୍ଦହରପ୍ରସାଦମହିତଶ୍ଚିନ୍ତ୍ୟଃ ସ ମେଽନ୍ୟୋ ନ ପ୍ରଃ । ୨୯ ।

ରାବଣ ବୋଲଇ ଅଟରେ ଅଜ୍ଞାନ ବାନର । ଯୁଦ୍ଧ କଲା ଇନ୍ଦ୍ର ସଙ୍ଗେ ଯେବେରେ ପାମର । ସେ ଇନ୍ଦ୍ର କ୍ରୋଧରେ ମୋତେ ବଜ୍ର ପ୍ରହାରିଲା । ଐରାବତ ଦନ୍ତ ଅବା ଯେତେକ ମାରିଲା ॥ ସେ ବଜ୍ରଦନ୍ତ ମୋହର ହୃଦୟରେ ବାଜି । ନ ଭେଦଣି ଦନ୍ତମୂନ ତାର ଗଲା ଭାଜି । ଯେତେବେଳେ କଇଳାସ ଉପାଡ଼ିଲି ମୁହିଁ । ଭୟେ ପାର୍ବତୀ ଶିବଙ୍କୁ ଆଲିଙ୍ଗିଲେ ଯାଇଁ । ତେଣୁ ପ୍ରସନ୍ନ ହୋଇଣ ଶିବ ମୋତେ ବର ଦେଲେ । କେହି ନ ହୁଅନ୍ତି ଶତ୍ରୁ ମୋର ସେହି ଡରେ । ୨୯ ।

ଅଙ୍ଗଦଃ ।

ଅପ୍ରବହ ମାଂ ରାବଣ ରାମଦୂତଂ ବାଣାସ୍ତଦୀୟାଃ ଖରଦୂଷଣାଦୀନ୍ ।
ଭୁକ୍ତ୍ୱା ତୃଷାର୍ତ୍ତା ଇବ ଶୋଣିତାମ୍ବୁଃ ପାସ୍ୟନ୍ତି ତେ କଣ୍ଠଘଟୈଃ ସଫେନୈଃ

ଅଙ୍ଗଦ ବୋଲଇ ଚିହ୍ନିନାହୁଁ ରାମବାଣ । ଯେଉଁ ବାଣେ ପ୍ରାଣ ଦେଲେ ଖର ଯେ ଦୂଷଣ । ସେ ବାଣ ରକ୍ତପିପାସୁ ହୋଇଅଛୁ ଏବେ । ତୋହର ରକ୍ତ ପିଇଲେ ଶାନ୍ତ ସେ ହୋଇବେ । ୩୦ ।

ରାବଣଃ । ଅରେ କଟୁପ୍ରଲାପନ୍ ପଶ୍ୟ ।

ମୃତ୍ୟୁଃ ପାଦ ନୃତ୍ୟତ୍ୟସ୍ତପତି ଧନକରସ୍ତ୍ରାତମନ୍ଦଂ ମମାଗ୍ରେ
ପର୍ଯ୍ୟଙ୍କୌ ତେ ଲୋକପାଲା ମମ ଭ୍ରୂଚକିତାଃ ପାଦରେଣୁଂ ଭଜନ୍ତେ ।
ଦୃଷ୍ଟ୍ୱା ମେ ଚନ୍ଦ୍ରହାସଂ ପତତି ସୁରବଧୂ ପନ୍ନଗାନାଂ ଚ ଗର୍ଭୋ
ନାଲଙ୍କ୍ତୌ ତାପସୌ ତୌ ମଥମିହ ସମିତୌ ବାନରାନ୍ ମେଲୟିତ୍ୱା ॥

ରାବଣ ବୋଲଇ ଅରେ ପାପିଷ୍ଠ ବାନର । ନ କର ଭୟ କାହୁଁକି କହୁ ମୋ ଆଗର । କିଙ୍କର ମୋହର ଅଟଇ ସେ କାଳଯମ । ପ୍ରଖର ନୁହଇ ମୋତେ ସୂର୍ଯ୍ୟର କିରଣ ॥ ଦିଗପାଳମାନେ ଖଟି ଅଛନ୍ତି ସେବାରେ । ଚନ୍ଦ୍ରହାସ ଖଡ଼ଗକୁ ଦେଖିଣ ଭୟରେ । ଗର୍ଭ ମାନବତୋ ରାମ ଭୟ କରୁନାହିଁ । ଆଣିଛୁ ସଙ୍ଗତେ କପି ଗୁଡ଼ାଏ ଭେଳାଇ ।୩୧।

ଅଙ୍ଗଦଃ ।

ରେ ରେ ରାକ୍ଷସବଂଶଘାତ ସମରେ ନାରାଚଚକ୍ରାହତଂ
ରାମୋତ୍ତୁଙ୍ଗପତଙ୍ଗଗୃପଯୁଗଲେ ତେଜୋଭିରାଡ଼ମ୍ବରେ ।
ମନ୍ୟେ କୌର୍ଣ୍ଣ ମିଦଂ ତ୍ୱଦୀୟମଖିଳଂ ଭୂମଣ୍ଡଳେ ପାତିତଂ
ଗୃଧ୍ରୈରାଲୁଠିତଂ ଶିବ କବଳିତଂ କାକୈଃ କ୍ଷତଂ ଯାସ୍ୟତି ।

ବୋଲଇ ଅଙ୍ଗଦ ଅରେ ଅଧମ ରାକ୍ଷସ । ଶ୍ରୀରାମଙ୍କ ବାଣେ ତୋର ବଂଶ ହେବ ନାଶ । ତୁ ପୁଣ ମରିବୁ ନିଶ୍ଚେ ସେହି ବାଣଘାତେ । ଦଶମୁଣ୍ଡ ଲୋଟିବ ତୋହର ଭୂମି ଗତେ । ଗୃଧ୍ର ଶୃଗାଳ ଭକ୍ଷିବେ ମାଉଁସ ବେଢ଼ିଣ । କାକ ଶ୍ୱାନ ଖଣ୍ଡ ଖଣ୍ଡ କରିବେ ଖାଇଣ । ୩୨ ।

ରାବଣଃ ।

ଅରେ ତ୍ୱ ମହଂ ଧର୍ମଶୀଳତୟା କଟୂପ୍ରଳାପିନମପି ନ ହନ୍ମି ।
ଯତଃ ଆତ୍ତବାଦୀ ଦୂତଃ ସ୍ୟାନ୍ନ ସ ବଧୋ ମହୀଭୂଜାଂ ।
କ୍ରୂରସ୍ତଦୀୟଂ କୋପେନ କୃତଦୋଷୈରୁପ୍ୟମର୍ହତି । ୩୩ ।

ରାବଣ ବୋଲଇ ଅରେ ଦୂତ ଶୁଣ ତୁହି । ଧର୍ମ ନାଶ ହେବା ହେତୁ କିଛି ନ ବୋଲଇ । ଦୂତର ବଧ ନୁହଇ ରାଜାର ଉଚିତ । ନୋହିଲେ ତୁ କଟୁ ଉକ୍ତି କରନ୍ତୁ ଏମନ୍ତ । କ୍ରୂରଜନ ହୁଏ ଯେବେ ଦୂତର ବଚନେ । କୁରୂପ କରନ୍ତି ତାକୁ ନ ମାରି ଜୀବନେ । ୩୩ ।

ଅଙ୍ଗଦଃ ସହାସ୍ୟଂ ।

ପରଦାରାପହରଣେ ନ ଶ୍ରୁତା ବା ଦଶାନନେ ।
ଦୃଷ୍ଟା ଦୂତପରିତ୍ରାଣେ ସଦ୍ୟୋସ୍ତେ ଧର୍ମଶୀଳତା । ୩୪ ।

ଅଙ୍ଗଦ ବୋଲଇ ଶୁଣି ରାବଣ ବଚନ । ହସି କହେ ଜାଣେ ତୋର ମୁଁ ଧାର୍ମିକ ପଣ । ଏଡ଼େବଡ଼ ଧାର୍ମିକ ପୁରୁଷ ହୋଇ ତୁହି । ନାରୀ ଚୋରି କରି ଯାହା ଧରିଅଛୁ ଦେହି । ଦୟା କରି ନ ମାରି ଦୂତ ଛାଡ଼ିଦିଅ । ତେଣୁ ଧର୍ମଶୀଳ ରାଜା ଜଗତେ ବୋଲାଅ । ୩୪ ।

ରାବଣଃ ।

ବଦ୍ଧଃ ସେତୁର୍ଯଦି ଜଲନିଧୌ ବାନରୈସ୍ତାବତ୍ କିଂ
ନୋ ବଲ୍ମୀକୈଃ ଛିଦ୍ରଧରନିଭୈଃ କିଂ କିୟନ୍ତେ ପିପୀଲୈଃ ।
ଦଗ୍ଧା ଲଙ୍କା ଯଦପି କପିନା ସ ସ୍ୱଭାବଃ କୃଶାନୋଃ ।
ଶୌର୍ଯ୍ୟାଶ୍ଚର୍ଯ୍ୟଂ ନିଜଭୁଜଜୟେ କିଂ କୃତଂ ରାମନାମ୍ନା ।୩୫।

ବୋଲଇ ରାବଣ କେତେ କହୁ କର ଝାଣ । ସେତୁବନ୍ଧ ବାନ୍ଧି ଖଟଣ୍ଡ ଗର୍ବକର ମନ । ଏଥିରେ ଅଦ୍ଭୁତ କର୍ମ କିସ ଅବା ଅଛି । ଉଇଙ୍କ ପରାଏ ହୁଙ୍କା ନିର୍ମାଣ ହୋଇଛି ॥ ବାନର ଗୋଟାଏ ଅଗ୍ନି ଲଙ୍କା ପୋଡ଼ି ଗଲା । କି ଆଶ୍ଚର୍ଯ୍ୟ କଥା ଏଥି ରାମ ଦେଖାଇଲା ।୩୫।

ଅପିଚ ।

ପରିମିତମହିମାନଂ କ୍ଷୁଦ୍ରମେନଂ ସମୁଦ୍ରଂ
ଛିଦ୍ରଧରରଚନାଭିଃ କୋଽପ୍ୟମୁତ୍ତୀର୍ଯ୍ୟ ଗର୍ବଃ
ଅକଳିତମହିମାନଃ ସନ୍ତି ଦୁଷ୍ପାପପାରା
ଦଶବଦନଭୁଜାଖ୍ୟା ବଂଶଜାଃ ସିନ୍ଧୁନାଥାଃ ।୩୬।

ଅଟଇ ବହୁତ କ୍ଷୁଦ୍ର ଏହି ପାରବାର । ତେଣୁକରି ବାନ୍ଧଦେଲେ ଏହାକୁ ବାନର । ଏଥିରେ ରାମର ଅବା କି ବଳ ଲାଗିଛି । ଅକାରଣେ ମନରେ ସେ ଗର୍ବ ବହିଅଛି । ମୁଁ ଦଶବଦନ ବଂଶଭୁଜ ଅଛି ମୋର । ସେମା ବଳ ସମୁଦ୍ର ନ ତରିଣ ଗର୍ବ କର । ୩୬ ।

ଅଙ୍ଗଦଃ ।

ରେ ରେ ରାବଣ ଶମ୍ଭୁ ଶୈଳମଥନପ୍ରଖ୍ୟାତବୀର୍ଯ୍ୟଃ କଥଂ
ରାମଂ ଯୋଦ୍ଧୁମିହେଚ୍ଛସୀଦମଖିଳଂ ତେନୈବ ଯୁକ୍ତଂ ତଥା ।
ରାମସ୍ତିଷ୍ଠତୁ ଲକ୍ଷ୍ମଣେନ ଧନୁଷୋ ରେଖାପି ନୋଲ୍ଲଂଘିତା
ତଚ୍ଚରେଣ ଚ ଲଂଘିତୋ ଜଲନିଧିର୍ଦଗ୍ଧା ହତେ କ୍ଷଃ ପୁରୀ ।୩୭।

ଅରେ ରେ ରାବଣ ବୋଲେ ବାଳୀର କୁମର । ଶମ୍ଭୁଶୈଳ ମନ୍ଥନରୁ ଏଡ଼େ ଗର୍ବ ତୋର । ସେହି ହେତୁ ବୀର୍ଯ୍ୟବନ୍ତ ବୋଲଉଛୁ ତୁହି ।

ଶ୍ରୀରାମଙ୍କ ସଙ୍ଗେ ସମ ଯୋଦ୍ଧା ହେବୁ କାହିଁ । ଯେତେ ବୀର ଛନ୍ତିଏହି ଜଗତ ମଧ୍ୟରେ । ସବେ ମିଳି ଯୁଦ୍ଧକଲେ ରାମଙ୍କ ସଙ୍ଗରେ । କଷ୍ଟସୃହି ଲବେ କହୁଅଛି ମୁହିଁ ସତ୍ୟ । ଗର୍ବ କରୁଛୁ କାହିଁ ଇ ମନେ ଅରେ ଦୈତ୍ୟ । ଧନୁ ହୁଳେ ଗାର କାଟି ଥିଲେ ଯେ ଲକ୍ଷ୍ମଣ । ସେ ଗାରକୁ ଲଂଘି ନ ପାରିଲୁ କଦାଚନ । ଦୂତ ଜଣେ ଆସି ତୋର ଲଙ୍କାପୋଡ଼ି ଗଲା । ଅକ୍ଷୟକୁମାର ସିନ୍ଧୁ ଲଂଘି ବାହୁଡ଼ିଲା । ୩୭ ।

ରାବଣଃ ।

ଦୋର୍ଭିନ୍ନଃ କିଲ ବାଲତାଳତରବୋ ରାମେଣ ସାର୍ଦ୍ଧଂ ହରେ
ର୍ଭଗ୍ନଂଯଚ୍ଚ ପୁରାତନଂ ହରଧନୁ ସ୍ତତ୍କୀର୍ତ୍ତିମୁଦ୍‌ଗୀୟତେ ।
ନାସ୍ମୀଦେତଦନାଗତଂ ଶ୍ରୁତଦଦଥେ ସ୍ୱଲେ କଥୂନ୍ମଥ୍ନଃ
ପୌଲସ୍ତ୍ୟଃ କରକନ୍ଦୁ କୀକୃତହରକ୍ରୀଡ଼ାଚଳୋ ରାବଣଃ ।୩୮।

ରାବଣ ବୋଲଇ ଅରେ ବାନର ଅଧମ । କେତେ କହୁଅଛୁ କର ଶ୍ରୀରାମଙ୍କ ଠାଣ । କେବଳ ସାମାନ୍ୟ ତାଳଗଛ ଖଣ୍ଡେ ହାଣି । ପୁରୁଣା ଧନୁ ଗୋଟିଏ ଭାଙ୍ଗିଅଛି ପୁଣି । ଏହି ବୀରପଣିକୁ ହିଁ ବଖାଣୁଛୁ କେତେ ଶୁଣ ମୋହର ଅଦ୍ଭୁତ ଗୁଣ ଅଛି ଯେତେ । ଗଗନେ ଉଡ଼ଇ ଧ୍ୱଜ କେତୁ ପର ଧ୍ୱଜା । କନ୍ଦୁକପରି ତୋଳିଲି ଶଙ୍କର ଗିରିଜା । ଗିରି ସହିତେ ତହିଁରେ ଯେତେ ଜୀବ ଜନ୍ତୁ । ପୁଲସ୍ତ୍ୟଙ୍କ ନାତି ନାମ ବୀରକୁଳ କେତୁ । ୩୮ ।

ଅଲମପ୍ରସୂତାଳାପୈଃ ଶ୍ରୁତ୍ୱାପି ମମ ବଚନଂ ।
ଇଦାନୀଂ ରଘୁଜନ୍ମେନ ବଦ କିଂ କରିଷ୍ୟତେ ।୩୯।

ଆଉ ଅଡମ୍ବରେ କିଛି ପ୍ରୟୋଜନ ନାହିଁ । ମୋହର ବଚନ ଯାହା ଶୁଣୁଅଛୁ ତୁହି । ତୋ ରଘୁଜନ୍ମର ଇଚ୍ଛା ଯାହା କରେ କରୁ । କହ ଜାଇ ବେଗେ ଏବେ ଯାଅ ମୋ ଅଗରୁ । ୩୯

ଅଙ୍ଗଦଃ ।

ସ୍ୱସୂର୍ନ ସାବଧାପଙ୍କିଲାମସିବଲ୍କଶ୍ଚଃ ।
ଭଦସ୍ତୈସ୍ତ ଛିରୋରକ୍ତୈ ରାମଃ ଧଂକ୍ତୁମିଛତି

ଶୁଣି ବୋଲଇ ଅଙ୍ଗଦ ଶୁଣ ଦଶ ଶିର । ଯେହୁପର ଇଚ୍ଛା କରୁଛନ୍ତି ରଘୁବୀର । ଯେଉଁ ଅସ୍ତ୍ରେ କାଟିଲେ ସୂର୍ପର ନାସା କର୍ଣ୍ଣ । ଲାଗି ସେ ମାଉଁସ ଅସ୍ତ୍ର ହୋଇ ମଳିଣ । ତୋର ଶିର କାଟି ଧୌତ କରିବେ ରକତେ । ରଖା ହୋଇଅଛି ତାହା ତୋହର ନିମନ୍ତେ । ୦୦ ।

ରାବଣଃ ।

ଶାବଃ କଣ୍ଠୋରସ୍ଥଂ ତ୍ୱମସି ନ ବଦାତସ୍ତେଽପି କାର୍ଯ୍ୟୈକପ୍ରଭବା
ତ୍ରୈ କ୍ୟଂ ମାଂ ନୋ ବଦନ୍ତି ତ୍ରିଭୁବନଜୟିନଂ ରାମ ସୁଗ୍ରୀବମୁଖ୍ୟାଃ
ତେଷାଂ କିଂ ମେନ ତାବତ୍ ପରନିଜ ବଲୟୋସ୍ତାରତମ୍ୟଂ ବଦାତ୍ୱା
ସନ୍ଦୃଷ୍ଟଂ ଦୁଷ୍ଟଦୂତ ତ୍ୱରିତମବିତଥଂ ତତ୍ତ୍ୱଦାବେଦୟସ୍ୱ । ୪୧ ।

ରାବଣ ବୋଲଇ ଆରେ ତୁ ପଶୁ ବାନର । ଦୂତକାର୍ଯ୍ୟ କରିବାକୁ ଆସିଛୁ ରାମର । ତୁ କାହିଁ ଜାଣିବୁ ମୁହିଁ ତ୍ରିଭୁବନେ ଜୟୀ । ରାମ ସୁଗ୍ରୀବ ନୃପତି କଥା ନ ଜାଣଇ । କିସ ତାରତମ୍ୟ ଅଛି କହ ମୋ ଆଗର । ସତ୍ୟ କହ ଯେବେ ତୋର ମନେ ଅଛି ଡର ।୦୧।

ପ୍ରଥମନ୍ତ୍ୱ ଶ୍ରୀରାମପାଦାସ୍ତୁ ମାହେଶନ୍ତି ।

ଅଜ୍ଞାନାଦଥ ବଧୂପତ୍ୟୁରଭସାଦସ୍ମତ୍ପରୋକ୍ଷେ ହୃତା
ସୀତେୟଂ ପରିମୁଚ୍ୟ ତାମିତବତ୍ରେ ଗତ୍ୱା ଦଶାସ୍ୟଂ ବଦ ।
ନୋଚେଲ୍ଲକ୍ଷ୍ମଣମୁକ୍ତମାର୍ଗଣଗଣଚ୍ଛେଦେ ଚ୍ଛଲଚ୍ଛୋଣିତ-
ଚ୍ଛତ୍ରଚ୍ଛନ୍ନଦିଗନ୍ତମନ୍ତକପୁରଂ ପୁତ୍ରୈର୍ବୃତୋ ଯାସ୍ୟତି ।୪୨।

ଅଙ୍ଗଦ ବୋଲଇ ଆରେ ପାପୀ ଲଙ୍କପତି । ଏହୁପର ପ୍ରଭୁ ମୋତେ ଆଜ୍ଞା ଦେଇଛନ୍ତି । ଅଜ୍ଞାନ ପଣରେ ଯେବେ କଲୁ ସୀତା ଚୋରି । ଛାଡିଦେବ ଏହୁକ୍ଷଣି ତାଙ୍କୁ କ୍ଷମା କରି । ଯଦ୍ୟପି ସୀତାଙ୍କୁ ଦେଇ ଶରଣ ପଶିବ । ତେବେ ତାହାର ନିଶ୍ଚୟ ମଙ୍ଗଳ ହୋଇବ ॥ ନୋହିଲେ ଲକ୍ଷ୍ମଣଙ୍କର ତୀକ୍ଷ୍ଣଶର ଘାତେ । ପୁତ୍ର ମିତ୍ର ସହିତରେ ମରିବେ ସମସ୍ତେ । ୪୨ ।

କୁମାରୋ ଲକ୍ଷ୍ମଣସ୍ତ୍ୱାମାହ ।

ସୀତାଂ ମୁଞ୍ଚ ଭଜସ୍ୱ ରାମଚରଣୌ ରାଜ୍ୟଂ ଚିରଂ ଭୁଜ୍ୟତାଂ
ଦେବାଃ ସନ୍ତୁ ହବିର୍ଭୁଜଃ ପରିଭବଂ ମା ଯାତୁ ଲଙ୍କାପୁରୀ ।
ନୋଚେଦ୍ୱାନରବାହିନୀପତିମହାଚଞ୍ଚଚପେଟାନ୍ତରେ
ସନ୍ତ୍ରୁଟ୍ୟଦ୍ଭବତଃ ସରାଗଗଣ୍ଡସ୍ଥଳଂ ପ୍ରାପ୍ସ୍ୟସି ।୪୩।

ଏହି ଉପଦେଶ ଦେଇଅଛନ୍ତି ଲକ୍ଷ୍ମଣ । ସୀତା ଦେଇ ପଶୁ ରାମ ପାଦରେ ଶରଣ । ଚିରକାଳ ଭୁଞ୍ଜ ତେବେ ଏ ରାଜ୍ୟ ବିଭବ । ସ୍ୱର୍ଣ୍ଣ-ମୟ ଲଙ୍କାପୁରୀ ହୋଇ ଥିବ ସବ । ଦେବେ ହବିର୍ଭାଗ ପାଇ ସନ୍ତୋଷେ ରହିବେ । ନୋହିଲେ ଲକ୍ଷ୍ମଣ ହସ୍ତେ ଅଲକ୍ଷଣ ହେବେ ॥ ବାନ-ରଙ୍କ ଗୃଯୋଦ୍ଧା ଘାତରେ ହେବେ ନାଶ । କହିଛନ୍ତି ମୋତେ ଏହି ତାଙ୍କ ଉପଦେଶ । ୪୩ ।

ସୁଗ୍ରୀବ ସ୍ତ୍ୱ ମାହ ।

ଦୃଷ୍ଟଃ କିଂ ରଘୁନନ୍ଦନୋ ବହୁବଳୈ ର୍ବାର୍ଯ୍ୟେର୍ମହାଦପତ
ସ୍ତୁଲ୍ଲଙ୍କେଶ ବିମୁଞ୍ଚ ମାନମଖିଳଂ ଶ୍ରୁତ୍ୱା ବଧଂ ବାଲିନଃ ।
ସୀତାମର୍ପୟ ରକ୍ଷ ରାକ୍ଷସଗଣାନ୍ନିନ୍ଦ୍ୟ ଧିକାଂ ସମ୍ପଦଂ
ତସ୍ମାଦ୍ଗଚ୍ଛ ଦଶାସ୍ୟ ରାମଚରଣେ ଦାସତ୍ୱମଙ୍ଗୀକୁରୁ ।୪୪।

ଆହୁର ଶୁଣ ଲଙ୍କେଶ କହଇ ମୁଁ ତୋତେ । ସୁଗ୍ରୀବ ନୃପତିଯାହା କହିଛନ୍ତି ମୋତେ । ଏତେ ବଳବାର୍ଯ୍ୟ ବହିଛନ୍ତି ରଘୁନାଥ । ତୋର ପର ଅହଙ୍କାର ନୁହେ ତାଙ୍କ ଠାରେ । ଶୁଣି ନାହୁଁ କରେ ବାଲୀନାଶର ବାରତା । ମରିବା ପାଇଁ ଆଣି ରଖିଅଛୁ ସୀତା ॥ ପରମା ଲକ୍ଷ୍ମୀଅଟନ୍ତି ସୀତା ଠାକୁରାଣୀ । ତାଙ୍କୁ ଆଣି ବନ୍ଧନରେ ରଖିଅଛୁ ପୁଣି । ଇନ୍ଦ୍ର ଭୁବନରୁ ବଳି ସମ୍ପଦ ତୋହର । ଦାସ ହୋଇ ତାଙ୍କ ପାଦେ ସୁଖେ ଉଭୋଗ କର । ୪୪ ।

ପ୍ରଧାନସେନାପତୟସ୍ତ୍ୱାମାହୁଃ ।

ରେ ରେ ରାବଣ ରାକ୍ଷସାଧମ ପଶେ ମଜ୍ଜୋସି ଶୋକାର୍ଣ୍ଣବେ
ଶନ୍ତ୍ରସ୍ତେ ସମୁପାଗତସ୍ତମିହ କିଂ ନୋ ବୁଧ୍ୟସେ କେବଳଂ ।

ରାମସ୍ତାପି କରାବଲମ୍ବିତଧନୁ ସ୍ତୀକ୍ଷ୍ଣେକ୍ଷୁଳସ୍ତ୍ର ସୃକଃ
ସାକ୍ଷାତ୍ କାଲଇବାପରସ୍ତବ ପୁରଦ୍ୱାର ସ୍ଥିତଃ ସାନୁଜଃ । ୪୫ ।

ଅରେ ରାବଣ ରାକ୍ଷସାଧମ ପଶୁ ତୁହି । କହୁଅଛୁ ଯାହା ଏବେ ଶୁଣ ମନଦେଇ । ଶୋକ ସମୁଦ୍ରେ କପାଇଁ ତୁହି ବୁଡ଼ିମରୁ । ଶତ୍ରୁ ଉପଗତ କଥା ଜାଣି କି ନ ପାରୁ ॥ ଉଜ୍ଜ୍ୱଳ ସୁତୀକ୍ଷ୍ଣ ଦେଖି ଅଗ୍ନି ତୁଲ୍ୟ ବାଣ । ଶ୍ରୀରାମ ଶ୍ରୀକରେ ଧରିଅଛନ୍ତି କୋଦଣ୍ଡ । ଲକ୍ଷ୍ମଣ ସଙ୍ଗତେ ଦେଖି ପୁରଦ୍ୱାରେ ତୋର । ସାକ୍ଷାତ କାଳ ଯମ ପରାୟେ ତାଙ୍କର ।୪୫।

ସପ୍ରତି ଅଙ୍ଗଦଃ ।

ରେ ରେ ରାବଣ ସର୍ବଲୋକବାଦିତଃ ଶ୍ରୀରାମନାମା ନୃପ
ସ୍ତାଂ ହନ୍ତୁଂ ସମୁପେତି ବାନର ଚମୂମାଦାୟ ବଦ୍ଧ୍ୱା ଦଧିଂ ।
ତେନାହଂ ପ୍ରହିତସ୍ତବୈବ ନିକଟଂ ମଦ୍‌ବାକ୍ୟମାକର୍ଣ୍ୟତାଂ
ସୀତାଂ ଦେହି ଭଜସ୍ୱ ରାମଚରଣୌ ରାଜ୍ୟଂ ଚିରଂ ଭୁଜ୍ୟତାଂ

ପୁଣ ବୋଲଇ ଅଙ୍ଗଦ ଆରେ ରେ ରାବଣ । ଶୁଣିନାହୁଁ କାହାଠାରୁ ଶ୍ରୀରାମଙ୍କ ଗୁଣ । ସର୍ବନୃପ ମଧ୍ୟେ ଶ୍ରେଷ୍ଠ ରାମ ନୃପବର । ଲଙ୍କାରେ ଅଛନ୍ତି ତୋର ଧ୍ୱଂସ କରିବାର । ସିନ୍ଧୁ ଲଙ୍ଘିଣ ତୋହର ପୁରେ ରହିଛନ୍ତି । ସୀତା ଦେଇ ଶରଣ ତୁ ପଶ ଯା ତୁଟେତି । ୪୬ ।

ରାବଣଃ ।

ଅସ୍ମାଦପି କଣ୍ଠକାଣ୍ଡବିପିନେ ଦ୍ରାକ୍ ଚନ୍ଦ୍ରହାସାସିନା
ଛେତ୍ତୁଂ ପ୍ରକ୍ରମିତେ ମୟୈବ ଝଟିତି ନୃତ୍ୟଂ ଛିନ୍ନଃ ସନ୍ତତୌ ।
ଅପ୍ୟେକଂ ଗଳିତାଶ୍ରୁ ଗଦ୍‌ଗଦବଚୋ ଭଗ୍ନଭ୍ରୂ ବା ଯଦ୍ୟଙ୍କ-
ତ୍ତ୍ୱକ୍ତ୍ରେ ଷ୍ୱେକମପି ସ୍ୱୟଂ ସ ଭଗବାଂ ସ୍ତନ୍ନେ ପ୍ରମାଣଂ ଶିବଃ ।୪୭।

ଅଙ୍ଗଦଙ୍କୁ କହିଁ ଶ ବୋଲଇ ଦଶଶିର । ମୋହର ବଳ ତୁ ଜାଣିନାହୁଁ ରେ ବାନର । ଯେତେବେଳେ ତପକରି ପାଇଲି ମୁଁ ବର । ବୃକ୍ଷ ଛେଦନ୍ତ ପରାଏ ଛିଣ୍ଡାଇଣ ଶିର । ଖଡ଼ଗରେ କାଟି ପକାଇଲି ନବମୁଣ୍ଡ । ଆନନ୍ଦରେ ନୃତ୍ୟକଲି ଦେଖି ଏକ ମୁଣ୍ଡ । ଯେବେ ଏ କଥା

ଅପ୍ରାନ୍ତେ କରୁଅଛୁରେ ତୁହି । ସାକ୍ଷାତେ ଶଙ୍କର ସାକ୍ଷୀ ଅଛନ୍ତିରେ ତହିଁ । ୪୭ ।

ଅଙ୍ଗଦଃ ।

ଶିରୋଭିର୍ମୀ ଦେବାଃ ଶିବ ଇବ ନ ତେ ଦାସ୍ୟତ ପୁନଃ
ପ୍ରବନ୍ଧଂ ଦଶ୍ୟାବେଧଃ ସରସ ଇବ କୈଳାସମୁଭଃ ।
ହତସ୍ତା° ବ୍ରୂମସ୍ତ୍ରଂମମ ଜନକଦୋର୍ଦଣ୍ଡବଳସ୍ଥ-
ସ୍ଥୁଳଚ୍ଛିକୀର୍ଷୁ ସ୍ତ୍ୟଜ କମଳବନ୍ଧୋଃ କୁଳବଧୂଂ । ୪୮ ।

ବୋଲଇ ଶୁଣି ଅଙ୍ଗଦ ତୁ ପାପୀ ଅଧମ । ଛେଦ୍ଦାବେ ତୋ ମୁଣ୍ଡ ନିଶ୍ଚେ ଜାଣିଥା ଶ୍ରୀରାମ । ନିଜହସ୍ତେ କାଟି ଶିର ଅଗ୍ନିରେ ପକାଇ । ତପ କରିବାରୁ ଶିବ ଥିଲେ ଯୋଡ଼ିଦେଇ । ଅଛିଛନ୍ତି ରାମ ସେ ମୁଣ୍ଡକୁ କାଟିବାକୁ । ଦେଖ ଯା କେମନ୍ତେ ବାନ୍ଧିଛନ୍ତି ସାଗରକୁ । ତୁ କହୁଛୁ ଟାଣ କଇଲାସକୁ ଉପାଡ଼ି । ବାପର ମନରେ ସେ ଦମ୍ଭକୁ ଦଅ ଛାଡ଼ି । ସୂର୍ଯ୍ୟଙ୍କର କୁଳବଧୂ ଅଣିଛୁ ଗୃହକୁ । ସମର୍ପଣ କର ବେଗେ ରାମପାଶେ ନେଇ । ୪୮ ।

ରାବଣଃ ।

ମଥ୍ୟୋକ୍ତି ମିଛଭାଷାବାକିମକଥା ବସ୍ତାରଜାସ୍ତାରଣଂ
ତସ୍ୟ କ୍ଷତ୍ରିୟସ୍ୟତସ୍କଦସ୍ୟ ଚରିତଂ ବକ୍ରୀସ୍ୟତେ ବ୍ଦୃଶଃ ।
ଯଦ୍ଧା ତସ୍ୟ ମୁଦ୍ଦୁର୍ମହେଶ୍ୱରଧନୁର୍ଭଙ୍ଗାଦିକଂ ଗାୟସି ।
ପ୍ରାୟସ୍ତତ୍ତ୍ୱ ବପୁରତୋ ନ ମହିମା ପ୍ରାଗ୍ଭାବମା ରୋହତି । ୪୯ ।

ବୋଇଲେ ଲଙ୍କପତି ଶୁଣ ଅରେ ରେ ବାନର । ତୋ ପିତା ବିକ୍ରମ କହୁଅଛୁ ମୋ ଅଗର । ସେ ନାଶ ଗଲଣି ନାସିବ ରାମ ତୋର । କ୍ଷତ୍ରିୟଙ୍କ ତମ୍ଭ ଅଟଇ ସେ ମୋ ଅଗର । ତୋ ପିଲ କଥାକୁ ମୁହିଁ କି ଶୁଣାଇ କର୍ଣ୍ଣେ । ଯେଣୁ ଅନେକ କହୁଛୁ ତୁହି ମୁହିଁ ଠାରେ । ତୁ କ୍ଷୁଦ୍ର ବୋଲଣ ତୋତେ ହୋଇଅଛୁ ବଡ଼ ଶିବଧନୁ ଭଙ୍ଗିବାରୁ ମନେକରୁ ଗାଢ଼ । ବାରମ୍ବାର ସେ କଥାକୁ ମୋ ଅଗରେ ତୁ । କ୍ଷୁଦ୍ର ଲୋକ ଉଚ୍ଚକଥା ଜାଣିବରେ କାହୁଁ । ୪୯ ।

ରାବଣାଙ୍ଗଦୟୋରୁକ୍ତ ପ୍ରତ୍ୟୁକ୍ତୀ ।

ଭଗ୍ନଂ ଶମ୍ଭୁ ଧନୁର୍ନ୍ନ ତୈରୁପହତଂ ସଂତାଡ଼ିତା ତାଡ଼କା
ସାପି ସ୍ତ୍ରୀ ଜରଠା ଖରପ୍ରଭୃତୟୋ ବ୍ୟାପାଦିତାସ୍ତେଽର୍ଭକାଃ ।
ତାଲାଃ ସପ୍ତହତ ସ୍ତୃଣାନି କଲ ତେ ବାଲୀ ହତୋଽସୌ କପି
ର୍ବଦ୍ଧୋ ବାରିନିଧିର୍ନିରନ୍ତରମିତ ଶ୍ରୁତ୍ୱାଭବଦ୍ରାବଣଃ । ୫୦ ।

ଅଙ୍ଗଦ ବୋଲଇ ଅରେ ଶୁଣ ମନ୍ଦମତି । ମିଥିଳରେ ତ୍ରିଭୁଜ ଯୋଗ୍ୟ ଧନୁ ଭଙ୍ଗି ଛନ୍ତି । ବୋଲେ ରାବଣ ସେ ଧନୁ ପୁରୁଣା ତା ଥିଲା । ଅଙ୍ଗଦ ବୋଲେ ତାଡ଼କା ତାଙ୍କ ହସ୍ତେ ମଲା । ବୋଲେ ରାବଣ ସେ ଦରୋ-ହୋଇଥିଲା ବୃଢ଼ୀ । ସାମାନ୍ୟ ଅଘାତ ପାଇ ପ୍ରାଣଗଲା ଛାଡ଼ି । ଅଙ୍ଗଦ କହେ ଯେ ଖର ବିଶିରା ଦୂଷଣ । ଶ୍ରୀରାମଙ୍କ ବାଣେ ବେଗ ହୋଇଲେ ନିଧନ ॥ ରାବଣ ବୋଲଇ ସେଯେ ବାଳକ ଅଟନ୍ତି । ନ ଜାଣନ୍ତି ଯୁଦ୍ଧ କରିବାର ରୀତିଗତି । ଅଙ୍ଗଦ କହଇ ସପ୍ତତାଳ ସଙ୍ଗେ ବାଳୀ । ଛେଦିଣ ଅଛନ୍ତି ରାମ କଟର ଧନୁର୍ଦ୍ଧର । ରାବଣ ବୋଇଲା ପଶୁବୁଦ୍ଧି ସେ ବାନର ତାକୁ ମାରିବାରେ କିସ ହୋଇବ ବଡ଼ିମାର ॥ ସମୁଦ୍ର ବାନ୍ଧିବା କଥା ଅଙ୍ଗଦ ବୋଲଇ । ଶୁଣି ତା ରାବଣ ରହିଲା ମଉନ ହୋଇ । ୫୦ ।

ନିରୁତ୍ତରଂ ରାବଣଂ ଦୃଷ୍ଟ୍ବା । ତଦାକ୍ଷୋଦନାୟ ତଦାଶ୍ୟ-
ମହମାନଂ ସୂଚୟନ୍ ପ୍ରହସ୍ତ ଆହ ।

ବ୍ରହ୍ମନ୍ନଧ୍ୟୟନସ୍ୟ ନୈଷ ସମୟସ୍ତୁଷ୍ଣୀଂ ବହିଃ ସ୍ଥୀୟତାଂ
ସ୍ୱଳ୍ପଂ ଜଳ୍ପ ବୃହସ୍ପତେ ଜଡ଼ମତେ ନୈଷା ସଭା ବଜ୍ରିଣଃ ।
ବୀଣାଂ ସଂହର ନାରଦ ସ୍ତୁତିକଥାଲାପୈରଲଂ ତୁମ୍ବୁରୋ
ସୀତାରଲ୍ଲକଭଲ୍ଲଭଗ୍ନହୃଦୟଃ ସ୍ୱସ୍ଥୋ ନ ଲଙ୍କେଶ୍ୱରଃ । ୫୧ ।

ରାବଣ ମଉନ ଦେଖି ପ୍ରହସ୍ତ ଯେ ମନ୍ତ୍ରୀ । ସଭା ମଧ୍ୟରେ ଦେବତା-ମାନଙ୍କୁ ବୋଲନ୍ତି । ବ୍ରହ୍ମାଙ୍କୁ ବୋଲଇ ତୁମ୍ଭେ ବୋଲଅ ବିଧାତା । ସଦା ସର୍ବଦା କେବଳ ବେଦପଢ଼ା ଚିନ୍ତା । ବୃହସ୍ପତିଙ୍କି ବୋଲଇ ବଡ଼ ପାଟି କରୁ । ଇନ୍ଦ୍ର ସଭା ପରାୟ କି ମନରେ ବିଚାରୁ । ନାରଦଙ୍କୁ ବୋଲେ

ବାଣୀ ନ ବଞ୍ଚାଅ ଅଛି । ଗନ୍ଧର୍ବେ ତୁମ୍ଭକୁ ବାଦ୍ୟ କାହିଁ ବଜାଉ ॥ ମାଜାଙ୍କର ମନ ଯୋଗାଗାଠେ ରହୁଛନ୍ତି । ତେଣୁ ତାର ସୁଖ ଗାଙ୍କୁ ନ ଲାଗଇ କେଉଁ । ୫୧ ।

ପୁନର ସ ପ୍ରହସ୍ତୋଽଙ୍ଗଦଂ ପ୍ରତି ।

ମରୁଦ୍ଭାନ୍ତମ୍ଲାନକ୍ଷଣଦହିତଘୋରଶ୍ୱୟଥୁନା
ନାୟର୍ଗେ ଦତ୍ତେଣ ପ୍ରସଭମୁରସା ପୀଡିତଗନଃ ।
ଶ୍ରଯୂଂ ଦେବଦାର୍ଟାଂ ନଜଭୂଜବନୋଦା ମକରଣୀ-
ମଯୂଂ କୁର୍ବନ୍ ବୀରଃ ସୁରର୍ଦ କଥମାର୍ଯ୍ୟୋଧଶମୁଖଃ । ୫୨ ।

ପୁଣି ପ୍ରହସ୍ତ ରାକ୍ଷସ ଅଙ୍ଗଦକୁ କହେ । ବୀର କାହିଁ ଦେଖିଅଛୁ ରାବଣ ପରାକ୍ରମେ । ଇନ୍ଦ୍ର ପ୍ରହାରିଲା ବଜ୍ର ହୃଦୟକୁ ତାର । ନୋହିଲା ଅଘାତ କିଛି ତାହାଙ୍କ ଶରୀର । ଉଚ୍ଚରେ ଗଗନମାର୍ଗେ ଯାଃ ଶିର ଲାଗଇ । ମତ୍ତ ମାତଙ୍ଗୀ ଯାକୁ ଦେଖିଲେ ଡରଇ । । ଏମନ୍ତ ଅଟେ ପ୍ରତାପୀ ରାଜା ଦଶାନନ । ସ୍ୱର୍ଗେ ଦେବଙ୍କ ସମ୍ପତ୍ତି ରକ୍ଷାକରେ ପୁଣ ॥ ଆଉରେ କପି ମଣୁତାକୁ ସାମାନ୍ୟ ପରାୟେ । ସୁରଣ କର ମନରେ ଗ୍ଲାଉ-ଯିବ ଭୟ । ୫୨ ।

ଅଙ୍ଗଦଃ ।

ଅସ୍ତିମତ୍ସ୍ୟସ୍ତିମିର୍ନାମ ଶତଯୋଜନବିସ୍ତୃତଃ ।
ତମିଙ୍ଗିଲୋଽପ୍ୟସ୍ତି ତଦ୍ଗିଲୋଽପ୍ୟସ୍ତି ରାଘବଃ । ୫୩ ।

ପ୍ରହସ୍ତ ବଚନ ଶୁଣି ଅଙ୍ଗଦ ବୋଲଇ । ସମୁଦ୍ରରେ ଅଛି ଏକ ମତ୍ସ୍ୟ ମୁଁ ଜାଣଇ । ତିମି ନାମ ଅଟେ ତାର ବହୁବଡ଼ ମତ୍ସ୍ୟ । ଶତଯୁଣ ଓସାର ଯେ ଅଟଇ ପ୍ରତ୍ୟକ୍ଷ । ଆଉ ଏକ ମାଛ ଅଛି ତାକୁ ସେ ଗିଳି । ବୋଲନ୍ତି ତାହାକୁ ସର୍ବେ ତିମିଙ୍ଗିଳ ବୋଲି । ଆଉ ଏକମାତ୍ର ଅଛି ଗିଳଇ ତାହାକୁ । ରାଘବ ବୋଲିଣ ଖ୍ୟାତ ସେହ୍ୱ ଜଗତକୁ । ୫୩ ।

ପ୍ରହସ୍ତଃ ।

ବୀଟରେଽଯୂଂ କମ୍ବୁ ବର୍ଣ୍ଣୀତାଂ ଦଶମୁଖଶ୍ଚୋର୍ନୈଃ ଶୈବୋଭିଃ ସ୍ୱର୍ଯ୍ୟଂ
ଯଃ ପାଦବ୍ରଜସ୍ୱୟ୍ଟକୋ ଘଟୟ୍ତି୍ଂ ଦେବସ୍ୟ ଖଟ୍ୱାଙ୍ଗିନଃ ।

ସୂତ୍ରାର୍ଥଂ ହରକଣ୍ଠସୂତ୍ରଭୁଜଗବ୍ୟାକର୍ଷଣୋଦ୍ୟୋଦ୍ୟତଃ
ସାଟୋପଂ ପ୍ରମଥୈଃ କୃତଂ ଭ୍ରୂକୁଟିଭିଃସ୍ଥିତ୍ୱାନ୍ତରେ ବାରିତଃ ।୫୪।

ଅଙ୍ଗଦକୁ ଗୃହିଁ ପୁଣି ପ୍ରହସ୍ତ କହିଲା । ଶୁଣରେ ବାନର ଏ ରାବଣ ଯାହାକଲା । ପାରିବ ବର୍ଣ୍ଣି କେ ଗୁଣମାନ ଏହାଙ୍କର । ଆପଣାର ମୁଣ୍ଡ କାଟି ତୋଷିଲା ଶଙ୍କର । ମାଳ ଗୁନ୍ଥିବ ରତ୍ନର ଆପଣାର ମନେ । ଶିବଙ୍କ ଗଳାରୁ ସର୍ପ ଆଣିବ କେସନେ । ଉଦ୍ଧୃ କରିବ ମାଳର କରନ୍ତେ ଉଦ୍ୟମ । ଶିବଗଣ ଅସି ତାହା କଲେ ନିବାରଣ । ୫୪ ।

ଅଙ୍ଗଦଃ ।

କୈଲାସସ୍ୟା ନୂପୁରେ ଖଣ୍ଡନବଦ୍ଧମାନଂ
କାବୃତ୍ତହେ ଽପି ଚରମାର୍ଜିତମର୍ଜୁନେନ ।
ତଂ ବାଲିବାଲଧିଲତାଙ୍କିତମୌଳିଦେଶଂ
ଜାନାମି ରାକ୍ଷସ ଜଗତ୍ରୟ ଧୂମକେତୁଂ । ୫୫ ।

ଅଙ୍ଗଦ ବୋଲଇ ମୁହିଁ ଜାଣଇରେ ତାହା । କଇଲାସ ଆଘାତରେ ଭୋଗି ଅଛି ଯାହା । ଦୟା କରି ସଦାସିବ ଯହୁଁ ଛାଡ଼ିଦେଲେ ସହସ୍ରଅର୍ଜୁନ ପାଶେ ବନ୍ଦରେ ରହିଲେ । ବହୁତ ଦିନରେ ତହୁଁ ହୋଇଣ ମୁକତ । ଆମ୍ଭ ପିତାଙ୍କର ପାଶେ ହୋଇ ଉଗତ । ଲାଞ୍ଜେ ବାନ୍ଧି ତାତ ସିନ୍ଧୁ ମଧ୍ୟରେ ବୁଡ଼ାଇ । ସେ ଲାଞ୍ଜଚିହ୍ନ ଦେଖ ତା ଅଙ୍ଗେ ଅଛି ରହି । ୫୫ ।

ପ୍ରହସ୍ତଃ ।

ସ୍ୟାତାଂ ନାମ କପୀନ୍ଦ୍ର ହୈହୟପତି ତସ୍ୟାବଗାଢ଼ାନ୍ତର-
ସ୍ଥେମାନୌ ଦଶକନ୍ଧରସ୍ୟ ମହତୀ ସ୍କନ୍ଧ ପ୍ରତିଷ୍ଠା ପୁନଃ ।
ସଦ୍ୟଃ ପାଟିତକଣ୍ଠକା କସକଣା କାର୍ଣ୍ଣଂ ଯଦଂ ସସ୍ଥଲାଂ
ସ୍ତ୍ରେନେଭାଜନପଙ୍କ୍ତିବେନ ଝଟିତି ପ୍ରସ୍ଥୋଟେଯୃଦ୍ଧୂର୍ଜଟିଃ । ୫୬ ।

ପ୍ରହସ୍ତ ବୋଲଇ ପୁଣି ଅଙ୍ଗଦକୁ ଚାହିଁ । ବାଳୀ କାଉଁବାଘ ବୋଲି ଥିଲେ ବୀର ଦୁଇ ॥ ତାହାଙ୍କଠାରୁ ଯେ ବଳବନ୍ତ ଲଙ୍କପତି । ତିନି ଭୁବନରେ ବଖାଣୁଛି ତାଙ୍କ କୀର୍ତ୍ତି । ନିଜକରେ ମୁଣ୍ଡ କାଟି ଶିବଙ୍କୁ ତୋଷିଲା । ତୋଷହୋଇ ହର ବର ତାହୁଁ ଯାଚି ଦେଲା । ସେହିଦିନୁ ମହାବୀର ବୋଲାଏ ରାବଣ । ନିଜକରେ ଶିବ ତାଙ୍କୁ କଲେ ଆଲିଙ୍ଗନ । ୫୬ ।

ଅଙ୍ଗଦଃ ।

ଆସ୍ତାଂ ମସ୍ତକଚ୍ଛେଦନବାର୍ତ୍ତଯାପି ପୌଲସ୍ତ୍ୟ ବସ୍ତାରଣୀ
ଦେହଂ କାନ୍ତ ନିପାତଯନ୍ତି ଦହନେ ବୈଧବ୍ୟଭୀତାଃ ସ୍ତ୍ରିୟଃ ।
କୈଲାସୋଦ୍ଧରଣେନ ଭାରବହନ ପ୍ରୌଢ଼ିତ୍ୱୟା ବନ୍ଧୁତା
ନୂନଂ ବର୍ଣ୍ଣ୍ୟତେ କିଂ ଚ କିଂଚିଦପରଂ ଯତ୍ପୌରୁଷସ୍ୟ ସ୍ମୃତଂ । ୫୭।

ବୋଲଇ ଅଙ୍ଗଦ କାଟ ଲାଗିଲା ବୀର ପଣ । ନିଜ ହସ୍ତରେ କାଟିଲା ନିଜର ଆନନ । ଅଗ୍ନିରେ ପକାଇ ମୁଣ୍ଡ ତୋଷିଲା ଶିବଙ୍କ । ବିଧବ ହୋଇବା ଭୟେ ଯୁବତୀମାନଙ୍କ । ଯେଉଁ ନାରୀ ଆପଣାର ଦେହକୁ ପୋଡ଼ଇ । ଦଶାନନଠାରୁ ବଳି ବଡ଼ବୀର ସେହି । ଯେଣୁ ସ୍ୱଇଚ୍ଛାରେ ନିଜ ଦେହକୁ ପୋଡ଼ିଲା । ତେଣୁ କରି ରାବଣଠାରୁ ସେ ବଡ ହେଲା । ଏହିପରି ଦେଖାଉଛୁ ଯେତେ ପଉରୁଷ । ଆଉ କିଛି ଥିଲେ କର ମୋ ଆଗେ ପ୍ରକାଶ । ୫୭ ।

ପ୍ରହସ୍ତଃ ସକ୍ରୋଧଂ ।

ଲଙ୍କେଶଃ ସମଧୀର ବୀରପଦବୀରମ୍ୟୋ ନଗମ୍ୟୋଗିରାଂ
ତତ୍କିନ୍ନାମ ହୃତ ଚନ୍ଦ୍ରହାସକଲାନ୍ ମୌଳୀନ୍ ପୁରାରେ ପୁରଃ ।
ଭୀତ୍ୟା ମଦଶିଖେ ଦଧ୍ୟୋଽପି ଦହନସ୍ତୈରେବ ତତକ୍ଷଣଂ
ପ୍ରାଣୋଦ୍ୟୈଷ୍ଟ ଦାଦୃକ୍ଷୟା ତନୁଚ୍ଛନୁଶ୍ଚାଯୋନିଲୈର୍ଦୀପିତଃ । ୫୮ ।

ଅଙ୍ଗଦ ବଚନେ କୋପେ ବୋଲଇ ପ୍ରହସ୍ତ । କହି ନ ହୋଇ ମୁଖେ ଯାହା ରାବଣର କୃତ୍ୟ ॥ ପୃଥିବୀରେ ବଡ଼ବଡ଼ ବୀର ଛନ୍ତି

ଯେତେ । ତା ସଙ୍ଗେ ସ୍ନେହ କରନ୍ତି ଭଯ୍ୟରେ ସମସ୍ତେ । ଶିବଙ୍କୁ
ତୋଷିଲ କ୍ରୋମେ ସ୍ତୁପ ପଙ୍କଜ ରୂଣ୍ଡ । ଚନ୍ଦ୍ରହାସ ଖଡ଼୍ଗେ ନିଜ
ହାତେ କାଟି ମୁଣ୍ଡ ॥ ଭଯ୍ୟପାଇ ଅଗ୍ନିଶିଖା ନ କଲେ ପ୍ରକାଶ ।
ଜଳାଇଲ ଫୁଙ୍କି ଗୃହ ଆପଣା ନିଶ୍ୱାସ । ୬୮ ।

ଅଙ୍ଗଦଃ କ୍ରୋଧଂ ନାଟୟତି ।

ସ୍ଥୂଳ ଦ୍ଧିଦ୍ୟାସ୍ତ୍ରବାହୁଦ୍ୟଚ୍ଚକରବଗଲକ୍ଲଷ୍ଟରେବିତ୍ରୈଃ ଶିରୋଭି-
ର୍ଦେବୋ ଗ୍ରମଃକରତ୍ୟଶ୍ଚେତବଳିମସ୍ତୁଂ ଭୁତସଂଘାତଶାସ୍ତ୍ରା ।
ହନ୍ୟାତ୍ତ୍ୱଂ ନାଙ୍ଗଦଃ କିଂ ଧୃତପରୁଷଚୂଷସ୍ତ୍ରାତକଷାବଶିଷ୍ଟଃ
ପ୍ରୋଦ୍ଧୃତ୍ୟୋଦ୍ଧୃତ୍ୟପାଦପ୍ରହତବହୁଶିରଃକନ୍ଦୁକୈଃ କ୍ରୀଡ଼ତୋଽସ୍ମି ॥

ପୁଣି ଅଙ୍ଗଦ ବୋଇଲା କ୍ରୋଧଭର ହୋଇ । ଅରେ ରାକ୍ଷସ ତୋ
ବାକ୍ୟ ସବୁ ମୁଁ ଜାଣଇ ॥ ଦୟାକର ପିତା ତେଣୁ ଛାଡ଼ି ଦେଇଛନ୍ତି ।
ନୋହିଲେ ଏକ୍ଷଣି ତାକୁ ବିନାଶ କରନ୍ତି ॥ ବାଳକ କାଳେ ଧାଙ୍ଗଡା
ଦାଣ୍ଡେ ଖେଳୁଥିଲ । ମାରନ୍ତି ନିଷ୍ଠୁର ଲୋକ କାନ୍ଦାକୁ ଡରିଲ ॥
କବ ଅଛନ୍ତି ପ୍ରତିଜ୍ଞା ଶ୍ରୀରାମ ଠାକୁର । ସ୍ୱହସ୍ତେ କାଟିବେ ରାବଣର
ଦଶଶିର ॥ ଦଶଦିଗପାଳମାନଙ୍କୁ ସେ ବଳିଦେବେ । ତେଣୁ ଅଜ୍ଞା
ଲଙ୍ଘି ମାରିଲେ ଯେ କୋପ ହେବେ । ୬୯ ।

ଇତ୍ୟବସରେ ରାବଣଃ ।

ଯୋଽହଂ ପୂର୍ବଂ କିଳସ୍ଥୀ ଚ୍ଛହାରମଭଜନ୍ ଦାଂ ଛିନ୍ଧି ମାଂ ଛିନ୍ଧି ମାଂ
ଛିନ୍ଧୀତ୍ୟୁକ୍ତ୍ୱ ପରଃ ପୁରାରପୁରତୋ ଲଙ୍କାପ୍ରତେତୈ ର୍ମଳୟଃ ।
ତେ ଭୂମୌ ପତତଃ ପୁନର୍ନବଭବାନାଲୋକ୍ୟ ମୁଦ୍ଧେ ଽପରାନ୍
ଯାଚଷ୍ୟନ୍ତଇମେ ହିନୋ ବସ୍ମିତ ପ୍ରୀତ୍ୟାଛହାସଂ ବ୍ୟଧୁଃ ।୭୦।

ରାବଣ ବୋଇଲ ଆରେ ଶୁଣ ତୁ ବାନର । ଅହଙ୍କାର ବହି
କାଟି ନିଜ କରେ ଶିର ॥ ଶିବଙ୍କ ଆଗରେ ତାହା ପକାଇଲି ନେଇ ।
ତଳେ ପଡ଼ି ମୁଣ୍ଡମାନ ଆନନ୍ଦେ ହସଇ । ସେହି ନବମୁଣ୍ଡ ପୁଣି
କାଅଁଳ ଉଠିଲା । ତାହା ଦେଖି ହର ବର ଯାଚ ଯାଚ ଦେଲା ।୭୦।

ଅଙ୍ଗଦଃ ।

ରେ ରେ ରାକ୍ଷସକାକ ମୁଞ୍ଚ ସହସା ଦେବୀମିମାଂ ମୈଥିଲୀଂ
ମିଥ୍ୟା କିଂ ନ ନିଜପୌରୁଷସ୍ୟ ଘଟନାପ୍ରାଗଳ୍‌ଭ୍ୟମାରଭ୍ୟତେ ।
ଏନାଂ ପଶ୍ୟସି କିଂ କରାଳନଗଣୈରୁଦ୍‌ଗୀଢଦୋର୍ଦଣ୍ଡିମାଂ
ସେନାଂ ବାନରଭଲ୍ଲୁକଭଟଭ୍ରୁକୁଟୀଗ୍ରହାଗ୍ରାୟଜ୍ଞିନଂ ପୁରଃ ।୬୧।

ବାଲୀସୁତ ବୋଲେ ଅରେ ଶୁଣ ଦଶାନନ । ସୀତାଙ୍କୁ ଦେଇ ସରଣି ପଶ ତୁ ବହନ ॥ ବୃଥାରେ କପାଇଁ ନିଜ ବଡ଼ାଇ ଦେଖାଉ । ଲଢ଼ାଇ କରିବା ପାଇଁ ବଳ ନାହିଁ ଅଉ ॥ ଅନ୍ୟ ମର୍କଟଙ୍କ ପରି ନ ମଣ ମନରେ । ପ୍ରଶଂସା କରନ୍ତି ଯାଙ୍କୁ ଦେବାସୁର ନରେ ॥ ବାଲୀ କନିଷ୍ଠ ଭ୍ରାତାର ଅଜ୍ଞା ଘେନି ଶିରେ । ବଳ ବାନ୍ଧିଛନ୍ତି ଦେଖନ୍ତି ରାବଣ ଅଗ୍ରରେ ।୬୧।

ରେ ରେ ରାବଣ ହୀନଦୀନ କିମତେ ରାମୋଽପି କିଂ ମାନୁଷଃ
କିଂ ଗଙ୍ଗାପି ନଦୀ ଗଜଃ ସୁରଗଜୋଽପ୍ୟୁଚ୍ଚୈଃଶ୍ରବାଃ କିଂ ହୟଃ
କିଂ ରମ୍ଭାପ୍ୟବଳା କୃତଂ କିମୁ ଯୁଗଂ ରାମୋଽପି ଧନ୍ୱୀ ନ କିଂ
ତ୍ରୈଲୋକ୍ୟପ୍ରକଟପ୍ରଭାବଵିଭବଃ କିଂ ରେ ହନୂମାନ୍ କପିଃ ।୬୨।

ଦୁଷ୍ଟମତ କୁଳାଙ୍ଗାର ଅଟୁ ରେ ରାକ୍ଷସ । ସେହି ବସ୍ତୁ ଅବତାର ଶୁଣି ନାହୁଁ ଲେଶ ॥ ସାଗରକୁ ମଣୁ ତୁହି ପୁଷ୍କରଣୀ ପରି । ସିଂହ ତୁଲ୍ୟ ଶୃଗାଳକୁ ମଣୁ ଦଶଶିର ॥ ଐରାବତ ସଙ୍ଗେ ସମ କରୁ ଅନ୍ୟ ଗଜ । କୁଟଜ ସଙ୍ଗରେ ସମ କରୁଛୁ ପଙ୍କଜ ॥ ପଦ୍ମିନୀ ସଙ୍ଗରେ ସମ କରୁଛୁ ଶଙ୍ଖିନୀ । ନରଲୋକେ ସମ କରୁ ସ୍ୱର୍ଗର କାମିନୀ ॥ କଳିଯୁଗ ସମ ସତ୍ୟଯୁଗକୁ ତୁ ମଣୁ । ତ୍ରିଭୁବନରେ ବିରାଜୁଛନ୍ତି ରାଘବ ନ ଜାଣୁ । ଧନୁର୍ଦ୍ଧରରେ ବିଖ୍ୟାତ ସ୍ୱୟଂ ରଘୁନାଥ । ପବନସୁତ ହୋଇଛନ୍ତି ଯାହାଙ୍କର ଦୂତ ।୬୨।

ରାମୋଽପି କିଂ ସ ମନୁଜଃ ପୟୋଧିମଧ୍ୟେ ବବନ୍ଧ ଯଃ ସେତୁଂ ।
ତେଽପି ଚ କିଂ କପୟୋ ଯେ ଲଙ୍କାଦାହନ ଧିକଂ ଚକ୍ରୁଃ ।୬୩।

ମନୁଷ୍ୟ ପ୍ରାୟେ ମଣୁଛୁ ସ୍ୱଧବଙ୍କୁ ତୁହ । ସାଗରକୁ ବନ୍ଧାଇବା କେହୁ ପାରନାହିଁ । ହନୁମାନକୁ ସାମାନ୍ୟ ନ ମଣରେ ତୁହ । ଲଙ୍କାଗଡ଼ ପୋଡ଼ା ହନୁ ବୁଝି ପାରୁ ନାହୁଁ । ଜାଣୁ ଜାଣୁ ମରଣକୁ କରୁଛୁ ବରଣ । ବୁଝାଇ କହିଲି ତୋତେ ଏହି ବିବରଣ । ୬୩ ।

ତଚ୍ଛ୍ରୁତ୍ୱା ସ୍ମୃତହନୂମଚ୍ଚରିତୋ ରାବଣଃ ।

ଯେନାଦାହି ମମାଗ୍ରତଃ ପୁରମିଦଂ ଗୃଷ୍ଣୋ ବଲୀ ଲୀଲୟା
ଯେନାମାରି ଚ ପଙ୍କତ୍ୟସ୍ୟ କିଙ୍କରଂ ଗୃଖାରି ବୈରିବ୍ରଜୈଃ ।
ଯେନାଭାଜି ମହାବନଂ କପିବରେଣୋତାରି ବାରାଂନିଧି-
ସ୍ତସ୍ମିନ୍ନପ୍ୟ ବଦତେ ନୃପସ୍ୟ କଟକେ ବୀରୋଽସ୍ତି କିଂ ଗୃଙ୍ଗଦ ॥

ବାଲୀସୁତ ମୁଖୁ ଶୁଣି ଦଶଗ୍ରୀବ ବାଳ । ହନୂମାନ କଥା ହୃଦେ ଦହେ ଦାବାନଳ ॥ ଅଙ୍ଗଦକୁ ପଚାରଇ ଦଶଗ୍ରୀବା ତନୁଜା । ଲଙ୍କା ପୋଡ଼ା ନାମ କସ କହ ମୋ ଅଗ୍ରଜା ॥ ଅକ୍ଷୟକୁମର ମୋର ଯେଉଁ ହନ ମଲ । ଇନ୍ଦ୍ର ଆଦି ଦେବତାଙ୍କ ଆଶାପୂର୍ଣ୍ଣ ହେଲ । ମଧୁବନ ତୋଡ଼ା ମୋର ଛିନ୍ନ ଭିନ୍ନ କଲ । ମୋର ଦେଖୁ ଦେଖୁ ସାଗରକୁ ଡେଇଁ ଗଲ ॥ ରାମଥାଟେ ତା ସମାନେ ଅଛ ବା କେ ଅଛି । ସତକରି କହ ମୋତେ ବାଳୀବୀର ବତ୍ସ । ୬୪ ।

ଅଙ୍ଗଦଃ ।

ଯୋଽଯୁଷ୍ମାକମଦାଦହତ୍ ପୁରମିଦଂ ଯୋଽଚ୍ଛୀଦଲତ୍ କାନନଂ
ଯୋଽକ୍ଷଂ ବୀରମମୀମରଦ୍ଧିଶିରସ୍ତ୍ୱଂ ଯୋଽବ୍ଧୀଭରଦ୍ରାକ୍ଷସୈଃ ।
ସୋଽସ୍ମତ୍ କଂ କଟକେ ଭଦାଚିଦପି ନୋ ବୀରେଷୁ ସମ୍ଭାବ୍ୟତେ
ଦୌତ୍ୟେନାଯମିତସ୍ତତଃ ପ୍ରଭଦ୍ଦନଂ ସମ୍ପ୍ରେଷ୍ୟତେ ପ୍ରେଷ୍ୟବତ୍ ॥

ବାଳୀସୁତ ଗୃହିଁ ବୋଲେ ଶୁଣ ଦଶଶିର । ଭୟ କରିଥିଲ ଯେଉଁ କପି ଲଙ୍କାପୁର ॥ ମଧୁବନକୁ ଯେ ତୋର ଥଲ ଜର୍ଜ୍ଜର । ଅକ୍ଷୟକୁମରକୁ ତୋ ଯେହୁ ଥିଲ ମାର । ଅସୁରକୁ ମାରି ଗୃହା ପୂର୍ତ୍ତି କରିଥିଲ । ତୋର ଦେଖୁଁ ଦେଖୁଁ ସାଗରକୁ ପାରହେଲ ॥

ଯେଉଁ ବୀରମାନେ ଛନ୍ତି ଅସ୍ତ୍ର କଟକରେ । ଯୋଦ୍ଧା ବୋଲି କେହି ତାଙ୍କୁ ନ ଗଣନ୍ତି ବୀରେ । ତାହାର ଇଚ୍ଛାରେ ସେହି ଦୂତ କାର୍ଯ୍ୟ କରେ । ତାହାଠାରୁ ବଳି ବୀର ଛନ୍ତି ମୋ ପାଶରେ । ୬୫ ।

( ରାମକଟକେ ତ୍ୱଂ କୀଦୃକ୍ତ୍ୱପିରତ ପ୍ରଶ୍ନେ ଅଙ୍ଗଦଃ । )

ଦୂତୋଽହଂ ଖଲୁ ରାମଭଦ୍ରବଚନେ ଲେଖାର୍ଥସଂବାହକୋ
ଯାତସ୍ତତ୍ର ପୁରାଗତଃ ସ ହନୁମାନ୍ ନିର୍ଦଗ୍ଧ ଲଙ୍କାପୁରଃ ।
ବଦ୍ଧୋ ରାକ୍ଷସସୂନୁଭିର୍ବହୁବଧଂ ସଂତାଡ଼ିତସ୍ତତ୍ର ତଃ
ସବ୍ରୀଡ଼ସ୍ଟ ପଲାୟିତୋ ବନମୃଗଃ କ୍ୱାସାପି ନ ଜ୍ଞାୟତେ ।୬୬।

ବାଣ୍ଡବା ତନୁଜ ବୋଲେ ଇହ କର ସତ । କପିର ରାମଚନ୍ଦ୍ରର ହୋଇଛୁ ତୁ ଦୂତ ॥ ଦଶଗ୍ରୀବ ମୁଖ ଚାହିଁ ଅଙ୍ଗଦ କହଇ । ଅହର୍ନିଶି ପ୍ରଭୁଙ୍କର ଲେଖା ବହୁଥାଇ ॥ ଲେଖା ବହୁଥିଲା ସେହି ଲଙ୍କାପୋଡ଼ା ପୂର୍ବେ । ଖୋଜିବାପାଇଁ ଜାନକୀ ପଠାଇଲେ ଏବେ । ଶିଶୁ ରାକ୍ଷସ ମିଳିଣ ବାନ୍ଧି ପକାଇଲେ । ଅନେକ ପ୍ରକାରେ ତାଙ୍କୁ ଶାସ୍ତି ଯେ ବାହିଲେ ॥ ବହୁ କଷ୍ଟେ ଲଜ୍ଜା ପାଇ ପଳାଇଲା ସେହି । କେଉଁ ଠାରେ ରହିଲା ସେ ନ ଜାଣନ୍ତି କେହି । ୬୬ ।

ଅଥନ୍ତୁଦ୍ଧୋ ରାବଣଃ ।

ଛନ୍ତଂ ରାମସ୍ୟ ବୈଦଗ୍ଧ୍ୟଂ ଯେନ ଦୂତଃକୃତୋ ଭବାନ୍ ।
ତ୍ୱଦ୍ଧି ଦୂତଗୁଣଃ କୋବା ବଦ ମେ ତଂ ବନେଚର । ୬୭ ।

କ୍ରୋଧ ହୋଇ କହେ ପଣି ନିଶୂର ବଚନ୍ତି । ରାମର ଚାତୁରୀ ଭଲ କରି ଜାଣେ ମୁହିଁ ॥ ମର୍କଟକୁ ଦୂତ କରି ଆଣିଅଛି ରାମ । ଦୂତ କାର୍ଯ୍ୟ କି ଜାଣୁ ତୁ କହ ବିସ୍ତାରଣ । ବଣପଶୁ ଆଣି ଗର୍ବ ଦେଖାଉଛି ମୋତେ । ଏହା ଶୁଣି ଅଙ୍ଗଦ ଯେ କହଇ ତୁରିତେ । ୬୭ ।

ଅଙ୍ଗଦଃ ।

ସନ୍ଧୌ ବା ବିଗ୍ରହେ ବାପି ମୟି ଦୂତେ ଦଶାନନ ।
ଅକ୍ଷତୋ ବା କ୍ଷତୋବାପି କ୍ଷିତପୃଷ୍ଠେ ଲୁଠିଷ୍ୟସି । ୬୮ ।

ଯାହାଠାରୁ ଦୂତପଣେ ବନଗନ୍ତ ମୋତେ । ଯେ ଇଚ୍ଛା ବୋଲି ତାହାକୁ ମୁଁ ନ ମରାଇ ତତେ ॥ ଛଦାୟୁ ସନ୍ତାନ ଯେବେ ହୋଇ ଥିବ ସେହୁ । ଭୂମିରେ ଲୋଟିବ ଶିର ଏଥି ଭିନ୍ନ ନାହିଁ । ୬୮ ।

ରାବଣଃ—ଅଙ୍ଗଦଂପ୍ରତି ।

ରେ ରେ ପବନତନୟ ସୂରେଳ କଠୋରାଙ୍ଗ୍ରୀ ତାପରୌ ବାରୟ
ପ୍ରଭୌତା ବାନଯୋକପୁନଙ୍କ ଉତ୍ତର୍ଗ ଗଚ୍ଛେତ ଶୀଘ୍ରଂ ବଦ ।
ଉନ୍ନିଦ୍ରଃ ସମଦଃ ସମୁଦ୍ରନକଠେ ନିବେଶ୍ୟନ୍ତି କ୍ରୁଦ୍ଧଃ ସ୍ୱୟଂ
ଲଙ୍କାଲଂକୃତକଃ ସ୍ୱରେନ୍ଦ୍ରଭବନାକାଙ୍କ୍ଷୀକୃତୋ ରାବଣଃ ।୬୯

ଦଶଶିର କ୍ରୋଧହୋଇ ଅଙ୍ଗଦେ କହଇ । ପଳା ପଳା ମୋ ପାଶରୁ ବେଗହୋଇ ତୁହି । କଣାଇବୁ ଯାଇ ତୁଇ ପତିଙ୍କର ପାଶେ । ନିଜ ପ୍ରାଣ ପଛେଁ ରକ୍ଷା କରନ୍ତୁ ମାନସେ । ପଳାଇ ଯାନ୍ତୁ ସୁବଳ ପର୍ବତକୁ ଛାଡ଼ି । ଏକ ଘାର ଅଛୁ ତହିଁ ଦେବ ନିଶ୍ଚେ ଧାଡ଼ି । ଶୟନ କରନ୍ତୁ କୁମ୍ଭକର୍ଣ୍ଣ ନାମେ ମାରଣ ତା ତୁଲେ ଯୁଝିବା ପାଇଁ ନାହିଁ ଭିନ୍ନ ପୁର । ୬୯ ।

ଅପୂର୍ବତଶସ୍ତୁଦୁଷ୍ଟୋ ହନ୍ୟତାଂ ହନ୍ୟତାମି—
ତ୍ୟଭିହିତବତି କୋପାଦ୍ରାବଣେ ବାଳସୂନୁଃ ।
ଧୃତଭୁଜମଥ ରକ୍ଷୋବୃନ୍ଦମୁଦ୍ଧୃତ୍ୟ ସୌଧଂ
ଚରଣତଳନିପାତୈଶ୍ଚୂର୍ଣ୍ଣୟନ୍ନାଜଗାମ

ରାକ୍ଷସମାନଙ୍କୁ ଚାହିଁ କହଇ ରାବଣ । ମାର ମାର ବାନରକୁ ସମସ୍ତେ ବେଢ଼ିଣ । ଏହା ଶୁଣି କ୍ରୋଧହୋଇ ବାଳୀର ନନ୍ଦନ । ରାକ୍ଷସଙ୍କୁ ଦେଖିକରି ଧଇଲା ବଦନ । ଦଶଶିର ଆଜ୍ଞା ଘେନି ରାକ୍ଷସଙ୍କ ଦଳ । ପାଞ୍ଚୁଥିଲେ ଅଙ୍ଗଦକୁ କରିବେ କବଳ । ଅସୁରଙ୍କୁ ଧରି ତହୁଁ କରୁଅଛି ମାଇଲା । ରାବଣ ଜଗତିପରେ ଯାଇଁଣ ବସିଲା । ଜଗତି ତଳକୁ ଛିନ୍ନ ଭିନ୍ନ କରିଦେଇ । ଶ୍ରୀ ରଘୁନାଥଙ୍କ ପାଶେ ପ୍ରବେଶିଲ ଯାଇ ।୭୦।

ଇତ୍ୟବସରେ ରକ୍ଷସାଃ
ଏକେନପ୍ଲବଗାର୍ଭକେଣ ଦଳିତାଷ୍ଟଦ୍ୱାରେବ ଦୃଷ୍ଟଃ
ପ୍ରାସାଦାଷ୍ଟା ସିତାତପବସ୍ତୃଶଃ ଚ୍ଛିନ୍ନାଃ କ୍ଷଣାଦଙ୍ଗଣେ ।।
ତନ୍ମଧ୍ୟେ ଦଶକନ୍ଧରଃ ଶିଖରିଭିଃ ସାର୍ଦ୍ଧଂ ସମୁନ୍ମୂଳିତୋ
ବଦ୍ଧୋଽସ୍ମିଂ ସହ ସେତୁନା ଜଳଧିନା ସାକଂସମୁଲ୍ଲଙ୍ଘିତଃ ।

ସକଳ ଅସୁରେ ମିଳି କରନ୍ତି ବିଚାର । ହାଟେ ଘାଟେ ବାଟେ ଅଙ୍ଗଦର ସମାଚାର । ଆସିଥିଲା ଏ ଲଙ୍କାକୁ କପି ଏକଗୋଟା । ମାର ଫକାଇଲା ମେଣ୍ଟ ରାକ୍ଷସକୁଳଘଟା ।। ଶୋଭା ପାଉଥିଲେଯେଉଁ ଅଟ୍ଟାଳିକା ପୁର । ସେହୁ କପିବର ପାଦେ କଲା ନାଶ ଘୋର ।। ରାଜାଶିରେ ଯେ ମୁକୁଟେ ଶୋଭା ପାଉଥିଲା । ତା ସଙ୍ଗେ ସେ ମୁକୁଟେକୁ ଚୂର୍ଣ୍ଣ କରିଦେଲା ସମୁଦ୍ରକୁ ଲଙ୍ଘି ଲଙ୍କା ଛିନ୍ନ ଭିନ୍ନ କରି । ପୁଣି ହେଁ ରାବଣ ଗର୍ବ ଦେଲା ଚୂର୍ଣ୍ଣ କରି । ଲଙ୍କାଗଡ଼େ ଝସ ଦେଇ ବାନର ପଶିଲେ । ସିନ୍ଧୁ ସଙ୍ଗେ ରାବଣକୁ କପି ଲଙ୍ଘି ଗଲେ । ୭୧ ।

( ଅଙ୍ଗଦୋ ରାମସନ୍ନିଧିଂ ଗତ୍ୱା ଇତ୍ୟାହ )

ଗଣୟତି ହିତବାକ୍ୟଂ ରାବଣୋ ନୈଷ ଦମ୍ଭା-
ଦିବ ଭୁଜବଳବହ୍ନିଂ ପ୍ରାପ୍ତକାମଃ ପତଙ୍ଗଃ ।।
ତଦନୁ ଚ ହରିସେନାଚକ୍ରସଂଚୂର୍ଣ୍ଣିତାଙ୍ଗଂ
ରଘୁକୁଳନୃପବୀର ଛିନ୍ନଶୀର୍ଷଂ ବିଧେହି । ୭୨ ।

ଅଙ୍ଗଦ ବୋଇଲା ପ୍ରଭୁ ଶୁଣ ରଘୁରାଣ । ଯାହା ମୁଁ କହିଲି ସେହୁ ନ କଲା ଗ୍ରହଣ ।। କହୁଅଛୁ ଦାବାନଳ ମଧ୍ୟେ ଦେବ ପୋଡ଼ି । ସେହି କଥା ଭାବନା କରଇ ଘଡ଼ି ଘଡ଼ି । ତା ଭାବନା ଥାଉ ଆମ୍ଭେ ଆଠ ଘେନି ଯିବା । ଲଙ୍କା ଗଡ଼େ ଅସୁରଙ୍କୁ ଗୋଡ଼ାଇ ମାରିବା । ଧନୁ-ଶର ଘେନି ଚାଲ ପ୍ରଭୁ ରଘୁନାଥ । ଲଙ୍କେଶ୍ୱର ଦଶଶିର କର ପ୍ରଭୁ ହତ ।୭୨।

ଏଷ ଶ୍ରୀଲହନୂମତାବିରଚିତେ ଶ୍ରୀମନ୍ ମହାନାଟକେ
ବୀରଶ୍ରୀଯୁକ୍ତରାମଚନ୍ଦ୍ର ଚରିତେ ପ୍ରତ୍ୟକ୍ଷ୍ୟତେନୁକ୍ରମୈଃ

ମିଶ୍ର ଶ୍ରୀମଧୁସୂଦନେନ କବିନା ସନ୍ଦର୍ଭସଙ୍କ୍ଷିକୃତେ
ଯୁଦ୍ଧୋପନ୍ନମଶୋଭିଧୋଽସ ଗତବାନଙ୍କୋ ମହାନ ସପ୍ତମଃ ॥

ଏ ମହାନାଟକ ହନୁମନ୍ତ ବିରଚିତ । ଏଥିରେ ବର୍ଣ୍ଣିତ ବୀର ଶ୍ରୀରାମ ଚରିତ ॥ ମିଶ୍ର ଶ୍ରୀ ମଧୁସୂଦନଙ୍କର ସଙ୍କ୍ଷିକୃତ । ଯୁଦ୍ଧଯାତ୍ରା ବାଢ଼ିଦେଲା ବୀର ବାଳୀସୁତ ॥ ସପ୍ତମ ଅଙ୍କ ଏଠାରେ ସମାପତ ହେଲା । ଶ୍ରୀରାମ ସୁମର ଚନ୍ଦ୍ରମଣି ଗୀତ କଲା ।

ଇତି ହନୁମତ୍କୃତେ ମହାନାଟକେ ସପ୍ତମୋଽଙ୍କଃ ॥

---

# ଅଷ୍ଟମ ଅଙ୍କ ।

ତତ୍ଶ୍ରୁତ୍ୱା ରାମଃ ।

କାକୁତ୍ସ୍ଥଃ ସ୍ୱବିଶେଷମଙ୍ଗଦମୁଖାଦାକର୍ଣ୍ଣ୍ୟ ଲଙ୍କାପତେ
ର୍ବୃତ୍ତଂ ସମ୍ୟଗନର୍ଗଳଂ ଚ ବିଭବଂ ଚକ୍ରେ ବିମର୍ଶଂ ମୁହୁଃ ।
ଶ୍ଳାଘ୍ୟୋଽସୌ ଦଶକନ୍ଧରୋ ମମ ରିପୁର୍ଦୃଷ୍ଟ୍ୱା ଚ ମଦ୍ଵିକ୍ରମଂ
ବୈଦେହୀ ନ ସମର୍ପିତା ଯଦମୁନା ମୁକ୍ତାପି ନାହଂକୃତିଃ ।୧।

ଦଶଶିରର ପ୍ରତାପ ବଳ ବର୍ଣ୍ଣ ଶୁଣି । ବାଳୀ ସୁତଙ୍କୁ ଗୁହିଁଣ ପ୍ରଭୁ ଶୃପପାଣି । ବସି ବିଗ୍ରହ କଲେ ପ୍ରଭୁ ରଘୁବୀର । ଧନ୍ୟତୋର ପିତାମାତା ଅନ୍ୟ ଦଶଶିର । ମୋର ପ୍ରତଜ୍ଞା ନ ଜାଣି ପାପିଷ୍ଠ ଅସୁର । ନ ପଶି ସରଣ ମୋର ନୋହିଲ କୋମୃର । ୧ ।

ଇତ୍ୟବସରେ ରାବଣଃ ।

ଶ୍ରୁତ୍ୱା ଦାଶରଥି ସୁବେଲ କଟକେ ସାଟୋପମର୍ବ୍ବୈଧନୁ—
ଷ୍ଟଂକାରୈଃ ପରିପୂରୟନ୍ତି କକୁଭଃ ପୋଞ୍ଛନ୍ତି କୌକ୍ଷେପକାନ୍ ।
ଅଭ୍ୟଷ୍ୟନ୍ତି ତଥୈବ ଚାବଫଲକୈ ର୍ଲଙ୍କାପତେସ୍ତତ୍ପୁନ-
ର୍ବୈଦେହୀକୁଚପତ୍ରବଲ୍ଲିରଚନାବୈଦଗ୍‌ଧ୍ୟମର୍ବ୍ବୈକରାଃ । ୨ ।

ସୁବଳ ପର୍ବତେ ବିଜେ କର ରଘୁବୀର । ଶୁଣି ଦଶଶିର ଯୁଦ୍ଧେ ହେଲା ଅଗ୍ରସର ॥ ରକ୍ଷପତି ଅସ୍ତ୍ରଧର ତାରବିଶଂହସ୍ତ ଦଶଦିଗ ପାଳେ.

ସବ ହେଲେ ଅଚମ୍ଭିତ । ଦଶଶିର ବୋଲେ ଧନୁ ଧର ଉପଗତ ॥ ଘର୍ଷଣ କରଲ କପି କଳଙ୍କ ଛଡ଼ାଇ । ଦଶଭୁଜେ ସୀତାଙ୍କର ରୂପକୁ ଲେଖଇ ॥ ନିସ୍ତ୍ରଣ କର ସୀତା ରୂପଚନ୍ଦ କର । ଜାନକୀଙ୍କ ସ୍ତନ-ପଠ ଲେଖେ ଯତ୍ନ କର । ୨ ।

ତତୋ ନିଜରାଜମନ୍ଦରଶିଖରସ୍ଥ ମଞ୍ଚମା ରୁଢ଼ଂ ।
ଲଙ୍କାୟାଂ କୃତବାନୟଂ ହି ବିକୃତଂ ଦଗ୍ଧାଗ୍ରପୁଚ୍ଛଃ ପୁର
କୋଽପ୍ୟେଷଃ ପ୍ରତିଭାତି ବଲୀୟଦ୍ଭୁଶୋ ନୂନଂ ତଦୀୟଃ ସୁତଃ ।
ଶ୍ୟାମଃ କାମସମ କୃତଃ ଶରଧନୁର୍ଦ୍ଧଶ୍ଚ ସ ସୀତାପ୍ରିୟଃ
ପ୍ରତ୍ୟେକଂ ରଘୁମୈଥିତେତି ନିଦେନ୍ ଦଞ୍ଚିଷ୍ଟେ ତୋ ରାବଣଃ । ୩ ।

ନିଜ ରାଜ୍ୟ ଜଗତୀରେ ବସେ ଦଶଶିର । ବସି ଅନୁମାନ କରେ ଲଙ୍କାକୁ ତାହାର ॥ ମର୍କଟେକୁ ଚାହିଁ ମନେ ବିଚାରଇ ବସି । ଅନୁମାନ ଜଣାଯାଏ ହେବ ପୂର୍ବ ଦୋଷୀ ॥ କିଣ୍ଟିନ୍ଧ୍ୟା ନୃପତିପ୍ରାୟ ଦେଖା-ଯାଉଅଛି । ଯେଣୁ ବାଳୀ ତନୟର ପରାପ୍ତ ହୋଇଛି ॥ କାମଦେବ ପ୍ରାୟ ରୂପକେ ନିରୀକ୍ଷଣ । ଦେଖେ ତାଂହସ୍ତେ ଥିବାର ଧନୁଃଶରାସନ । ମାୟାରୂପ ଧରିଛି କି ଦଶରଥ ବାଳ । ଏହି ଅନୁମାନ କରେ ବସି ଲଙ୍କପାଳ ।୩ ।

ଅହାବସରେ ମନ୍ଦୋଦରୀ ।

ଦୃଷ୍ଟ୍ୱା ରାଘବମେବ ରାକ୍ଷସବନସ୍ୱଚ୍ଛନ୍ଦ ଦାବାନଳଂ
ଜାନକ୍ୟାଂ ନିଜବଲ୍ଲଭସ୍ୟ ପରମଂ ପ୍ରେମାଣମାଲୋକ୍ୟ ଚ ।
କାଙ୍କ୍ଷନ୍ତୀ ମୁହୁରମ୍ବୁଜସଜାୟଂ ଭଙ୍ଗ ଚ ମୁଗ୍ଧା ମୁହୁ-
ଧାବନ୍ତୀ ମୁହୁରନ୍ତରାଳପତିତା ମନ୍ଦୋଦରୀ ସୁନ୍ଦରୀ । ୪ ।

ଏଥୁଅନ୍ତେ ପ୍ରବେଶିଣ ମନ୍ଦୋଦରୀ ରାଣୀ । ରାକ୍ଷସର ପାଟରାଣୀ ଅଟଇ ସେ ପୁଣି ॥ ଦେଖିକର ରାକ୍ଷସଙ୍କୁ ଉପୁଜିଲ ଶଙ୍କା । ସକଳ ଅସୁର ନେଇ ରଙ୍ଗବର୍ଣ୍ଣ ଏକା ॥ ନିଜକାନ୍ତ ଅପ୍ରେମକୁ ମନ୍ଦୋଦରୀ ଦେଖି ।

ଜନମ୍ପୀ ହୋଇଣ ପଚାରଇ ଶଶୀମୁଖି ॥ ଇଚ୍ଛୁଥାଏଁ କାନ୍ତସଙ୍ଗେ କରି-
ବାକୁ କେଳି । ନିଶି ଅବସରେ ଏହା ଭାବୁଥାଏ ବାଳୀ ।୪।

ବନ୍ଦାଳୁବୃନ୍ଦାରକବୃନ୍ଦବନ୍ଦମନ୍ଦାରମାଲାମକରନ୍ଦବନ୍ଦ୍ୟାନ୍ ।
ମନ୍ଦୋଦର୍ଯ୍ୟଂ ଚରଣାରବିନ୍ଦରେଣୂନ୍ ହରାନ୍ କର୍କଶତାମନୈଷୀତ୍

ଏହି ସମୟରେ ରାଜା ପାଶେ ଯାଇଁ ମିଳି । ଦଶଗ୍ରୀବ ମୁଖଚାହି ପୁଚ୍ଛାକଲେ ବାଳୀ ॥ ଦେବ ଜାନକୀଙ୍କ ପାଇ ବଳାଉଛ ଆଶ । ବର୍ଣ୍ଣିବା ଉଚିତ ନୋହେ ଶୁଣ ହେ ଲଙ୍କେଶ ॥ ଯେବେ ତୁମ୍ଭ ସନ୍ଧାନେ ଦିଶଇ ପଦଚିହ୍ନ । ଯେଉଁ ମକରନ୍ଦ ସୁରେ କରନ୍ତି ଅପମାନ । ସେ ଚରଣ ରେଣୁକୁ ମୁଁ ବଳାଉଛୁ ଆଶ । ସ୍ପୃଶୁଁ କମଳିନୀ ମଣ୍ଡିୟ ହୋଇଛୁ ପ୍ରକାଶ ।୫।

ଅଞ୍ଜଳିଂ ବଦ୍ଧ୍ୱା ରାବଣଂ ଜ୍ଞାପୟତି
ମନ୍ଦୋଦରୀ । ଦେବ !

ତ୍ୱଂ ବାହୁଭ୍ୟା ଉଦ୍ଧୃତଚନ୍ଦ୍ରଶେଖରଗିରିର୍ଭ୍ରାତା ଜଗଦ୍‌ଭକ୍ଷକଃ
ପୁତ୍ରଃ ଶକ୍ରଜୟୀତ୍ୟନେନ ରଣଧୀର୍ନନଂ ବଲୀ ବାଳିଜିତ୍ ।
ତଦ୍ରାଜନ୍ ବଲା ବଲାଦପହୃତା ଦେହ୍ୟସ୍ୟ ସା ଜାନକୀ
ଲଙ୍କାୟାଂ ରହସୀତ୍ୟୁବାଚ ବଚନଂ ମନ୍ଦୋଦରୀ ମନ୍ଦିରେ ।୬।

ବେନି କର ଯୋଡ଼ି କହେ ରାଣୀ ମନ୍ଦୋଦରୀ । ଜିଣିଅଛ ତ୍ରିଲୋଚନ କୈଳାସ ଗିରି । ରାକ୍ଷସ କୁଳେ ଉଦ୍ଭବ ଭ୍ରାତ କୁମ୍ଭକର୍ଣ୍ଣ । ପୃଥ୍ୱୀ ଭକ୍ଷିବାକୁ ଇଚ୍ଛା କରଇ ସଦନ । ଅପର ଯେ ଇନ୍ଦ୍ରଜିତ ପୁତ୍ରେକ ଅଛଇ । ଶଚୀପତିଙ୍କ ଜିଣିଣ କୀର୍ତ୍ତି ରଖିଛଇ ॥ ତଥ୍ୟ କରି ଜାଣି ଅଛୁ ଆହେ ପ୍ରାଣେଶ୍ୱର । ସମରେ ପୁଣି ବିବେକପଣରେ ଚତୁର । ତଥାପି ଯୁଦ୍ଧରେ ପ୍ରଭୁ ହାରିବ ରାମକୁ । ଯହୁଁ ରାମ କିଷ୍କିନ୍ଧ୍ୟାରେ ବଧିଲେ ବାଳୀକୁ ।୭।

ରାବଣେ ନିଜଭୁଜାଡ଼ମ୍ବରଂ ନାଟୟତି ।

କିଂ ତେ ଭୀରୁ ଭୟଂ ନିଶାଚରପତେର୍ନାସୌ ରିପୁର୍ମେ ମହାନ୍
ଯସ୍ୟାଗ୍ରେ ସମରୋଦ୍ୟତସ୍ୟ ନ ସୁରାସ୍ତିଷ୍ଠନ୍ତି ଶକ୍ରାଦୟଃ ।

ମଦୋର୍ଦ୍ଦଣ୍ଡକମଣ୍ଡଳୋଦ୍ଧୃତଧନୁଃକ୍ଷିପ୍ତାଃକ୍ଷଣାନ୍ମାର୍ଗଣାଃ
ପ୍ରାଣାନସ୍ୟ ତପସ୍ୱିନଃ ସତରଣେ ନେଷ୍ୟନ୍ତି ପଶ୍ୟାଧୁନା । ୭ ।

ଆପଣା ବଳ ଦେଖାଇ ବଞ୍ଚିବା କୁମର । ମଦୋଦଣ୍ଡ କ୍ଷଣ ହିଁ ଶ ଦେଲଇ ଉତ୍ତର ॥ ରାକ୍ଷସକୁଳେ ମୋ ଜନ୍ମ ଘୋର ମାନବକୁ । କ୍ଷତ୍ରୀ ମଧ୍ୟେ ନ ଗଣାନ୍ତ ସମାନ୍ୟ ରାମକୁ । ରାକ୍ଷସଙ୍କ ଚୂଡ଼ାମଣି ନ ଜାଣୁକି ତୁହି । ମୋର ଭୟେ ସ୍ୱର୍ଗେ ଦେବେ ନ ରହନ୍ତି କେହି । ଆରେ ପ୍ରାକ୍ଷେଶ୍ୱର ଏବେ ଭସ୍ମ ପରାହର । ଆଜ ଯୁଦ୍ଧେ ଦେଖିବୁ ଯେହ୍ନି ପଣ ମୋର ॥ ହସ୍ତେ ଯେବେ ଧରିଅଛ ବାଣ ଶରାସନ । ଦଶରଥ କୁମରର ନେବାକୁ ପରାଣ । ୭ ।

ଅବାବସରେ ଅରବୁନ୍ଦନାମା ମନ୍ତ୍ରୀ ।

ଦେବ ତ୍ୱାଂ ପ୍ରତି ସମ୍ପ୍ରତି ପ୍ରତିଭଟପୋଲ୍ଲାସନଂ ନୋ ମୁଦେ
ଦେବାସ୍ତ୍ୱଂ ପ୍ରତିପଦ୍ୟତେ ହୃଦିତଂ ଯସ୍ମାଦ୍‌ବୟଂ ମନ୍ତ୍ରିଣଃ ।
ସୀତାରକ୍ଷଣଦକ୍ଷଲକ୍ଷ୍ମଣଧନୁର୍ଲେଖାପି ନୋଲ୍ଲଙ୍ଘିତା
ହେଲୋଲ୍ଲଙ୍ଘିତବାରିଧିଃ କପିବଲୈଃ ସାର୍ଦ୍ଧଂ ସାରାମୋମହାନ୍

ରାବଣର ମନ୍ତ୍ରୀଥିଲେ ଅରବିନ୍ଦ ବୀର । ବେନି କର ଯୋଡ଼ି କହେ ଶୁଣ ଦଶଶିର ॥ ଜାଣୁଛି ମୁଁ ଏ ଯୁଦ୍ଧରେ ଯୋଗ ଭଲ ନାହିଁ । ଶତ୍ରୁ ସଙ୍ଗେ ଯୁଝିବାର ଉଚିତ ନୁହଇ ॥ ନ କର ହେ ଯୁଦ୍ଧ ହିତମଣି ଫେରିଯାଅ । ଆସୁ ଯୋଗ ଦେଖି ଯୁଦ୍ଧେ ଅଗ୍ରସର ହୁଅ ॥ ଗାରକାଟି ଯାଇଥିଲେ ସାନୁଜ ଲକ୍ଷ୍ମଣ । ପର୍ଣ୍ଣକୁଟୀରେ ସୀତାଙ୍କୁ ରଖାଇଣ ପୁଣ ॥ ନେଇଥିଲେ ତୁମ୍ଭେ ଗଲ ଯତି ବେଶଧରି । ପଞ୍ଚବଟୀରୁ ସୀତାଙ୍କୁ ଆ- ଥିଲ ହରି ॥ କଠୋରାସ୍ତ୍ର ଶୁଣି କପି ସେନା ସଙ୍ଗତରେ । ହେଳା କରି ପାରହେଲେ ସାଗର ଭିତରେ ॥ ତୁମ୍ଭଠାରୁ ବଳିଷ୍ଠ ହୋଇବେ ରଘୁ- ନାଥ । ଯୁଦ୍ଧ ନ କରି ଫେରିଯାଅ ଦଶମାଥ । ୮ ।

ଇତ୍ୟବସରେ ବିରୂପାକ୍ଷନାମା ମନ୍ତ୍ରୀ ।

ଯତ୍ତ୍ୱଂ ଦେଶହରେଣ ମାରୁତସୁତେନାତାର ବାରଂନିଧି

କ୍ଷିପ୍ତଂ ଯେ ସ୍ୱଦବାନଳଜ୍ୱାଳାପ୍ତୃ ଇବ ପ୍ରାବେଶି ଲଙ୍କାପୁରୀ ।
ସୀତାଦେଶି ସମଭୂଷଣି ଶାଖିଲଶ୍ରୀଭଞ୍ଜି ରକ୍ଷଃପତେ-
ରତ୍ନ୍ୟଂତ୍ତପୃରତୋ ବଂଦାନ୍ଧଂ ଚ ଦୂଷ୍ଟ ତ୍ୱମଃ କଥଂ ମାନବଃ ।

ଦଶଶିର ମୁଖଗୃହିଁ ବିରୂପାକ୍ଷ କହି । ଯାହା ମୁଁ କହୁଛି ରଜା ଶୁଣ ମନଦେଇ ॥ ଯେଉଁ ଲଙ୍କାପୋଡ଼ି ଅଇଥିଲ ଦୂତହୋଇ । ସାଗରକୁ ପାରହୋଇଲା ନ ଜାଣିଲେ କେହି ॥ ଆପଣାର ପ୍ରାପ୍ତ ମଣି ପଣି ଲଙ୍କାପୁରେ । ଜାନକୀଙ୍କି ଠାବକଲା ଅଶୋକ ବନରେ ॥ ମଧୁବନ ଭଗ୍ନକରି ବଣ୍ଡ ନେଇ ଦେଲା । ତୁମ୍ଭର ସାକ୍ଷାତେ ଲଙ୍କାଗଡ଼ ପୋଡ଼ି ଦେଲା ॥ ଯାର ଦୂତ ଏତେ କୃତ୍ୟ କଲା ଦଶଗ୍ରୀବ । ମାନବ ନୁହଇ ପ୍ରଭୁ ଜାଣ ସେ ଦେଖିବ । ୯ ।

ଅଥ ମହୋଦର ନାମା ମନ୍ତ୍ରୀ ।

ରାଜନମୁଖ ସୁଖବାଂଚୋ ମଧୁରାଃ କସ୍ୟ ନ ପ୍ରିୟାଃ ।
ତବ କ୍ଷୋଦକ୍ଷମାଃ କିଂ ତୁ ନୈତା ବ୍ୟସନ ସଙ୍ଗମେ । ୧୦ ।

ଦଶଶିର ମୁଖ ଚାହିଁ ମହୋଦର କହି । ଦେନି କର ଯୋଡ଼ି ରାଜା ପାଶେ ଉଭାହୋଇ ॥ ଅନନ୍ଦ ହୋଇ ଶୁଣନ୍ତୁ କହୁଛି ମୁଁ ହିତ । ସ୍ୱସ୍ଥଂ ବସ୍ତୁ ମତେ ୟ ହୋଇଛନ୍ତି ମୂର୍ତ୍ତିବନ୍ତ ॥ ଦୁଃଖକୁ ସୁଖ ମଣିବା ଉଚିତ ନୁହଇ । ବଚନରକରନ୍ତୁ ମନେ ଅଛେ ଲଙ୍କସାଇଁ । ୧୦ ।

ପ୍ରିୟା ବା ମଧୁରା ବାକ୍ ଚ ହର୍ମ୍ୟେଷ୍ୱେବ ନୃରାଜତେ ।
ଶ୍ରୀରକ୍ଷଣେ ପ୍ରମାଣଂ ତୁ ବାଚଃ ସୁନୟ କର୍କଶାଃ । ୧୧ ।

ପ୍ରେମଭରେ ଅଟ୍ଟାଳିକା ପରେ ବସିକରି । ଯାହା ମୁଁ କହୁଛି ହିତଭାବ ଲଙ୍କଶିରି ॥ ରାଜ୍ୟପାଳ ଥିବା ଲୋକେ ଗମ୍ଭୀର ହୋଇଲେ । ଚଷ୍ଟେ ତେ ସୁଖ ଲଭଇ ଶାସ୍ତ୍ରେ ଏହା ବୋଲେ ।୧୧।

ବିଭବେ ଭୋଜନେ ଦାନେ ତିଷ୍ଠନ୍ତି ପ୍ରିୟବାଦନଃ •
ବିପଦ୍ରବାଗତାୟାଂ ତୁ ଦୃଶ୍ୟନ୍ତେଖଲୁ ମନ୍ତ୍ରିଣାଃ । ୧୨ ।

ଭୁଞ୍ଜିବା ଦଣ୍ଡକରିବା ବୈଭବ କାଳରେ । ଭଲ କହୁଥିଲେ ସୁଧା ନଧ ବାଞ୍ଛା କରେ ॥ ଯେତେବେଳେ ବିପତ୍ତି ଆସିଣ ପ୍ରବେଶିବ । ସେ ସମୟେ ହିତ ଲୋକମାନଙ୍କୁ ଖୋଜିବ । ୧୨ ।

ଅଗ୍ରେ ପ୍ରସ୍ଫୁରିତନାଶାନାଂମ କତା ପରେ ଗୁଣଃ ।

ତଥାପି ପ୍ରଭୁ ଭକ୍ତାନାଂ ନୈଖର୍ଯ୍ୟଦମୁଚ୍ୟତେ । ୧୩ ।

ଯେତେବେଳେ ମୃତ୍ୟୁ ଆସି ଉପସ୍ଥିତ ହୁଏ । ଅଧୁନିମାନ ତାହାଙ୍କୁ ପୁଣି ଦେଖାଯାଏ । ଯେଉଁ ଜନ ପ୍ରଭୁଠାରେ ଭକ୍ତ ରଖିଥାଏ । ସେ କହିଲେ ସାମନ୍ତ ତାହାକୁ ସାଦ ହୁଏ । ୧୩।

ଯୈତେରେବ ସୂତଭିଃ ସ୍ୱମୀ ପ୍ରାପ୍ୟତେ ବ୍ୟସନାଟ୍ଟବଃ ।

ପଶ୍ଚାନ୍ତୁ କନ୍ଦମାପନ୍ନୈ ଦ୍ଧିରଭିର୍ଦ୍ଦିଂ ନୈବ କେପ୍ୟତେ । ୧୪ ।

ଯେଉଁ ଭୃତ୍ୟ ପ୍ରଥମରେ ଗୂଢ଼ ବାକ୍ୟ କହେ । ବିପଦ ଦୁଃଖରେ ନିଜ ସ୍ୱାମୀକୁ ପକାଏ ॥ ଯନ୍ତୁହିଁ ନ କରେ କିଛି ବସେ ମୂକପର । ବିପଦ ସମୟେ କେବେ ନ ପାରେ ଉଦ୍ଧର । ୧୦ ।

ନଦ୍ୟସ୍ତ୍ୱଖଲମୈତ୍ରୀ ଚ ଲକ୍ଷ୍ମୀଶ୍ଚ ନୃପତିର୍ଦ୍ଦ୍ୱିଷାଂ ।

ସୁକୁମାରଶ୍ଚ ବନିତା ରାଜନ୍ ସ୍ଥିରଂ ଯୌବନାଃ । ୧୫ ।

ନାରୀ ସୁକୁମାରୀ ପୁଣି ଯୌବନ ସୁସ୍ଥିର । ନଦୀ ଖଳମୈତ୍ର ଲକ୍ଷ୍ମୀ ଭାଗ୍ୟ ନୃପବର ॥ ସର୍ବଦା ପ୍ରିୟ ଅଟଇ ଖଳ ଲୋକଙ୍କର । ବର୍ଜନୀୟ ସଦା ଏହା ସାଧୁମାନଙ୍କର । ୧୫ ।

ଯାବଦ୍ଧାଶରଥେର୍ନ ପଶ୍ୟସି ମୁଖଂ ଯାବନ୍ନ ବାର୍ଂନିଧିଂ

ଶୁଷ୍କଂ ଯାବଦମାଂ ନପାବକବଶାଂ ଲଙ୍କାଂ ନିରସ୍ତାଳକାଂ ।

ଯାବନ୍ନୈବ ନିଜାନୁଜସ୍ୟ ଚରିତଂ ଯାତଂ କୁଲାଙ୍ଗାରତାଂ

ତାବଦ୍ରାବଣ ଲୋକନାଥଦୟିତା ସୀତା ସ୍ୱୟଂ ଦୀୟତାଂ ।୧୬।

ନ ଦେଖିବ ଶ୍ରୀରାମଙ୍କ ମୁଖ ଯେଉଁ ପରେ । ନ ଶୁଖୁ ଯେମନ୍ତ ଏହି ସମୁଦ୍ର ବାର ॥ ନ ହେଉ ଏ ଲଙ୍କାପୁର ଅଗ୍ନି ବାଧ୍ୟ ଯେତ । ନ ତେଜନ୍ତୁ ଅଗ୍ରଭ୍ରାତା ବିଭୀଷଣ ଯେମନ୍ତ । ସାନୁଜ ସୋଦର ତବ ବାର

ବାଣ୍ଟିଷଣେ । ନ କରୁ ସେ କୁଳାଙ୍ଗାର ଭାବକୁ ଧାରଣେ । ଅହେ ଲଙ୍କେଶ୍ୱର କର ଚେତନ୍ତ ବାହୁର । ସୀତାଙ୍କୁ ନେଇଣ ରାମେ ସମର୍ପଣ କର ।

ଇତ୍ୟବସରେ ପୁନଃ ବିରୂପାକ୍ଷନାମା ମନ୍ତ୍ରୀ ପ୍ରବିଶ୍ୟ

ଜୟତି ଜୟତି ଦେବସ୍ତ୍ରୈଦଶମୌଳିମୁକୁଟରଞ୍ଜିତ ପାଦପୀଠୋପଚାରଃ ।

ଜୟଧ୍ୱନି କରି ବିରୂପାକ୍ଷ ଏହି କାଳେ । କହେ ଶୁଣ ଦଶାନନ ଉଭାହୋଇ ତଳେ ॥

ନୀତିଶାସ୍ତ୍ରବିଦୋନୀତଂ ପଠନ୍ତି ନୃପତେଃ ପୁରଃ ।

କେବଳଂ ଯୁବରାଜାଦ୍ୟପୁରତୋ ନ କଦାଚନ ।୧୭।

ନୀତି ସର୍ବଶାସ୍ତ୍ରବିଶାରଦ ଜନମାନେ । କହୁଥିବେ ନୀତି ଯାଇ ନୃପ ସନ୍ନିଧାନେ ॥ କେବଳ କହେ କି କେହି ଯୁବରାଜା ଆଗେ । ନୁହେ ଏହା କେତେବେଳେ ଅହେ ଲଙ୍କପତେ ।

ଦଣ୍ଡେଷ୍ୱପି ହୈରକାଣ୍ଡେଽପି ତତ୍ତ୍ୱଗ୍ରହଣକେ ବଦୈଃ ।

ସୁଖଂ ଚିଦଗେଧ ଭୁଞ୍ଜନ୍ତି ନୃପଃ କର୍ଣ୍ଣାନ୍ତପଠେପଦୈଃ । ୧୮ ।

ବିପଦେ ଉତ୍ସାହ ଦେଇ ଚିନ୍ତାକୁ ହରଇ । କାନରେ କୁହଇ ଯେହୁ ସୁଚତୁର ହୋଇ । ସେହି ଗୁଣି ମନ୍ତ୍ରୀ ଯେଉଁ ନୃପପାଶେ ରହି । ତାହାର ପ୍ରସାଦୁଁ ରାଜା ଅଇଶ୍ୱର୍ଯ୍ୟ ପାଏ ॥

ସୁରେଜ୍ୟାଦିଭିରାଚାର୍ଯ୍ୟୈ ର୍ନୀତିଶାସ୍ତ୍ରଂ ବିଧା ମତଂ ।

ଐହିକଂ ଚାମୁଷ୍ମିକାଖ୍ୟମୈହିକାମୁଷ୍ମିକଂ ତଥା । ୧୯ ।

ଦେବଗୁରୁ ଆଦି ବିଜ୍ଞମାନେ ଛନ୍ତି କହି । ତିନମତ ଜାଣ ନୀତିଶାସ୍ତ୍ର ହେ ଅଛଇ ॥ ଇହ ପରଲୋକେ ସୁଖ ଦିଅଇ ଅନେକ । ମନେ ହେତୁ କର ଅହେ ରାଜା ଦଶମୁଖ । ୧୯ ।

ଐହିକାମୁଷ୍ମିକଂ ତତ୍ର ଶାସ୍ତ୍ରାଣାମୁତ୍ତମୋ ତ୍ତମଂ ।

ଅମୁଷ୍ମିକଂ ତୂତ୍ତମଂ ସ୍ୟାଦୈହିକଂ ତ୍ୱଧମାଧମଂ । ୨୦ ।

ଇହଲୋକ ପରଲୋକ ସୁଖ ଅତିଭଲ । ପରଲୋକ ସୁଖ ତହୁଁ ଉତ୍କୃଷ୍ଟ କେବଳ । ଅତି ଅଧମଟି ଜାଣ ଇହଲୋକ ସୁଖ । ଏହା ନୀତିଶାସ୍ତ୍ରେ ଅଛି ହେ ଲଙ୍କା ନାୟକ । ୨୦ ।

ଯେ ଜ୍ଞାନାତ୍ ସ୍ୱାମିନଂ ହତ୍ୱା ଭଜନ୍ତେ ମନ୍ତ୍ରିଣଃ ସୁଖଂ ।
ଅନ୍ୟଶସ୍ତ୍ରାଦ୍ଧିଭର୍ଯାନ୍ତି ସର୍ବେଽପି ନରକଂ ଧ୍ରୁବଂ । ୨୧ ।

ସୁଖଲାଗି ଜାଣି ଜାଣି ଯେଉଁ ମନ୍ତ୍ରୀଗଣ । ରଜାଙ୍କୁ ଶସ୍ତ୍ରେ ବଧନ୍ତି ବା ବିଷ ଦେଇଣ । ଅଥବା ଅନ୍ୟ ଶତ୍ରୁର ହାଥନ୍ତି ଅସ୍ତ୍ର । ସେହିମାନେ ନରକ ଭୁଞ୍ଜନ୍ତି ନିଶ୍ଚୟ । ୨୧ ।

ତୁଲ୍ୟଃ ସୂର୍ଯ୍ୟା—ଦ୍ୱିଜବଧୈ ବ୍ରହ୍ମାଭଙ୍ଗୋ ମହୀଭୁଜାଂ ।
ତଦ୍ବଧେ ଯଦ୍ଭବେତ୍ପାପଂ ନ ଶେଷୋ ବକ୍ତୁ ମର୍ହତି । ୨୨ ।

ରାଜାଆଜ୍ଞା ଭଙ୍ଗକଲେ ଅଟେ ବଂଶନାଶ । ସ୍ତ୍ରୀହତ୍ୟା ବ୍ରହ୍ମହତ୍ୟା ସମ ପାପମାନ । ରାଜାଙ୍କୁ ବଧିଲେ ଯେତେ ପାପ ହୁଏ ଜାତ । ସହସ୍ର ମୁଖରେ କହି ନ ପାରେ ଅନନ୍ତ । ୨୨ ।

ଯଜ୍ଞାନାତ୍ ସ୍ୱାମିନଂ ହତ୍ୱା ଭଜନ୍ତେ ମନ୍ତ୍ରିଣଃ ପ୍ରିୟଂ
ଶତଶସ୍ତ୍ରାଦିଭିଃ ଶାସ୍ତ୍ରଂ ତଦ୍ଦ୍ରୋହିବଦିତସ୍ମୃତଂ । ୨୩ ।

ଶସ୍ତ୍ର ଅବା ଶତଦାନେ ଯେଉଁ ମନ୍ତ୍ରୀ ଜାଣ । ପ୍ରିୟଜନ ଭଜେ ମାରି ନିଜ ନୃପରାଣ । ଦ୍ରୋହକ ବୋଲନ୍ତି ତାଙ୍କୁ ଅଟେ ଲଙ୍କପତି । ନୀତିଜ୍ଞମାନେ ସ୍ୱା ନୀତିଶାସ୍ତ୍ରେ କହୁଛନ୍ତି । ୨୩ ।

ଅପରାଧଂ ବିନା ମନ୍ତ୍ରୀ ପ୍ରଭୁନା ପୀଡ଼ିତୋଽପି ସନ୍
ନ ବୈରୂପ୍ୟଂ କ୍ୱଚିଦ୍ୟାତି ତଦା ମୃଷ୍ଟ କମୁଚ୍ୟତେ । ୨୪ ।

ରାଜାଠାରୁ ପାଇଲେ ହେ ବିନାଦୋଷେ ଦଣ୍ଡ । ସୁମନ୍ତ୍ରୀ ସମର୍ପି ଥାଇ ରାଜାଠରେ ପିଣ୍ଡ ॥ କେତେବେଳେ ସେ ସ୍ୱାମୀର ଅନିଷ୍ଟ ନ ଇଛଇ । ହେ ଲଙ୍କେଶ ଅମୃଷ୍ଟିକ ବୋଲି ତାଙ୍କୁ କହି । ୨୪ ।

ରାଜ୍ୟଗ୍ରହଣଶକ୍ତୋଽପି ମାନସାପି ନ ଚିନ୍ତୟେତ୍ ।
ସହବଃ ସ୍ୱାମିନୋନାନା ନୈହିକାମୃଷ୍ଟିକଂ ହି ତତ୍ । ୨୫ ।

ଶକ୍ତିବଳେ ଯେଉଁ ମନ୍ତ୍ରୀ ରାଜ୍ୟ ଲଭିବାରେ । ରାଜାର ବନ୍ଧ ଚିନ୍ତାଙ୍କୁ ମନରେ ନ ଧରେ । ତାଙ୍କୁ ଦ୍ରୋହିକ ମୃଷ୍ଟିକ ସଭାରେ କହନ୍ତି । ନୀତିଶାସ୍ତ୍ରରେ ଏକଥା ଅଛି ଲଙ୍କପତି । ୨୫ ।

ପଦ୍ମିନୀ କାନ୍ତିମାପେଦେ ସଂକୋଚଂ ଚ କୁମୁଦ୍ୱତୀ ।
ନ ଭବନ୍ତି ଚିରଂ ପ୍ରାୟଃ ସଂପଦୋ ବିପଦୋ ଽପି ବା । ୨୬ ।

ଯେହ୍ନେ ଦିବସରେ ଶୋଭା ଦିଶଇ ନଳିନୀ । ରାତ୍ରରେ ସେ ଯେହ୍ନେ ମ୍ଲାନଭଜେ ବଂଶପାଣି । କେତେ ଶୋଭା ପାଏ ରଜନୀରେ କୁମୁଦିନୀ । ଦିନରେ ସେ ଶୋଭା ନପାଏଟି ବଂଶପାଣି । ଏହି ପରାୟେ ଅଟଇ ସମ୍ପଦ ବିପଦ । ଚିରସ୍ଥାୟୀ ନୁହେ ଏହା କର ହୃଦବୋଧ । ୨୬ ।

ରାବଣଃ ଧୈର୍ଯ୍ୟମବଲମ୍ବ୍ୟ ।

ମତବିପଶ୍ଚିତାଂ ମନ୍ତ୍ରୀ ରଢ଼ମନ୍ତ୍ରୀ ବଲୀୟସି ନାଂ ।
ପରାକ୍ରମେ କଯାରାଣାଂ ମାନିନାଂଦ୍ଭସିବଲ୍ଲଭ । ୨୭ ।

ଏ ଉକ୍ତିରେ ରାବଣ କହଇ ଧୈର୍ଯ୍ୟ ଧରି । ମୁଁ ଯାହା କହଇ ସବେ ଶୁଣ କର୍ଣ୍ଣ ଡେରି । ଜ୍ଞାନୀ ଲୋକ ମାନଙ୍କର ମନ୍ତ୍ରୀ ଅଟେ ମନ । ବଳସୀର ମନ୍ତ୍ରୀ ଅଟେ ପୀରଢଟି ଘେନ । ମହା ପରାକ୍ରମ ଥିବା ଲୋକମାନଙ୍କର । ଖଡ୍ଗ କାର୍ଯ୍ୟ କରିଥାଇ ମନ୍ତ୍ରୀ ପରକାର । ୨୭ ।

ତତଃ ପୁନରପି ବିରୂପାକ୍ଷମହୋଦରୌ ।
ଶୁକଶ୍ଚ ସାରଣୋ ବୀରଶ୍ଚୈତ୍ୱେକୌ ମନ୍ତ୍ରିଣୌ ତବ ।
ଦାନସଂ ତନ୍ମାସ୍ଥାୟ ଗତୌ ତସ ସ୍ଥିତାବପି । ୨୮ ।

ପୁନଶ୍ଚ ଯାଇଁ ସ ବିରୂପାକ୍ଷ ମହୋଦର । ନୀତି ଶାସ୍ତ୍ର କହନ୍ତି ସେ ରାବଣ ଅଗର ॥ ବୀରଙ୍କ ମଧ୍ୟରେ ଶ୍ରେଷ୍ଠ ଶୁକ ଯେ ସାରଣ । ଏ ଦୁହେଁ ସୀହାକ ମନ୍ତ୍ରୀ ତୁମ୍ଭଙ୍କ ଜାଣ । ଯେଣୁ ସେ ଦୁହେଁ ଧରଣ ବାନର ଆକୃତ । ଶତ୍ରୁର ଅଗ୍ରସ୍ତୁ ନେଲେଟି ହେ ଲଙ୍କପତି ।୨ ।

ଆବାମା ମୂର୍ତ୍ତିକୌ ଶଜନ୍ ବିରୂପାକ୍ଷ ମହୋଦରୌ ।
ମୈଥିଲୀ ଦୀୟତାଂ ତୁର୍ଣ୍ଣଂ ନୋଚେତ୍ ସ୍ରହ୍ମଚରୌ ତବ । ୨୯ ।

ଆମ୍ଭେ ଦୁହେଁ ଯେଣୁ କର ଅମୂର୍ତ୍ତିକ ମନ୍ତ୍ରୀ । ତୁମ୍ଭ ଅଗେ କହୁଁ ଅଛୁଁ ଏହିତ ଭାରତୀ । ଅବିଳମ୍ବେ ସୀତାଙ୍କୁ ହେ ଦିଅନ୍ତୁ ଫେରାଇ । ଦୁଇ ଭାଇ ଫେରିଯାନ୍ତୁ ଜାନକୀଙ୍କୁ ନେଇ । ନୋହିଲେ

ତୁମ୍ଭର ଦେଖ ଗତ ଯାହା ହେବ । ସତ୍ୟ କହୁଛୁ ସେ ଗତ ଆମ୍ଭଙ୍କୁ ମିଳିବ ।

ରାବଣଃ କଂଚୟସ୍ୟସ୍ମୃ ।
ମୀତଶାସ୍ତ୍ରମିଦଂ ଶ୍ରୁତ୍ୱା କୁମ୍ଭକର୍ଣ୍ଣୋ ମହାବଳୀ ।
ହନ୍ତି ଚେଦ୍‌ବାନରାନ୍ ଯୁଦ୍ଧେ ପ୍ରଥମଂ ଦ୍ରେଷ୍ୟତାମଯୃଂ ।୭୦।

ଏମନ୍ତ ନୀତ ବାଣୀକି ଶୁଣି ଦଶାନନ । ଭୟେ ସହ ବୋଲେ ଅହେ ମନ୍ତ୍ରୀଗଣେ ଶୁଣ । ମୋର କୁମ୍ଭକର୍ଣ୍ଣ ଭାଇ ମହାବଳୀଯ଼ାନ । ନାଶେ କପିଙ୍କି ସେ ଯୁଦ୍ଧେ କରବ ତକ୍ଷଣ ॥ ଏହା ଶୁଣି ସକଳ ମନ୍ତ୍ରୀଏ କହୁଛନ୍ତି । ଆଗେ ତ ହାଙ୍କୁ ପଠାନ୍ତୁ ଆହେ ଲଙ୍କପତି ।୭୦।

ପୁନରପି ମନ୍ଦୋଦରୀ ।
ବିଭୀଷଣୋ ବୈରିବଲଂ ପ୍ରବିଷ୍ଟୋ
ନାଦ୍‌ରାବଣଃ ସଂପ୍ରତି କୁମ୍ଭକର୍ଣ୍ଣଃ ।
ରାଜା ଭମନୀ ପତିତଃ କଳଙ୍କେ
ଲଙ୍କା ନିମଗ୍ନାପି ଗଭୀରପଙ୍କେ । ୭୨ ।

ବିଭୀଷଣ ଶରଣ ପଶିଲ ଶତ୍ରୁ ପାଦେ । କୁମ୍ଭକର୍ଣ୍ଣ ବୀର ଶୋଇଅଛୁ ଘୋର ନାଦେ । କଳଙ୍କେ ପତିତ ହେଲେ ରାଜା ଅଭିମାନୀ । ଗଭୀର ପଙ୍କରେ ଲଙ୍କା ହେଲ ନିମଗନୀ ॥ ଏତେ ବଚନ ମାନସେ ରାଣୀ ମନ୍ଦୋଦରୀ । ଯାଇଁ ରାଜା ପାଶେ ହିତ କହଇ ତଥ୍ୟରେ । ୭୧ ।

କୈଳାସଶୈଳୋଦ୍ଧରଣପ୍ରବୀଣୋ ବୀରଃ କୁବେରାନ୍ତକ ଏକ ଏଷଃ ।
ତଥାପି ରାମୋ ଜିତବାଳିବୀର୍ଯ୍ୟଃ ଶଙ୍କାସ୍ପଦଂ ସମ୍ପ୍ରତି ରାକ୍ଷସାନାଂ ॥

ନିଜ ବାହୁବଳେ ଟେକିଅଛ କଇଳାସ । ବୀରପଣେ ଭୁବନେ ଜଡ଼ାଇ ଅଛ ଯଶ । ଆବର ଅଟହେ ତୁମ୍ଭେ କୁବେରଙ୍କ ଭାଇ । ଏବେ କହୁଅଛୁ ଶୁଣ ଆହେ ପ୍ରାଣସାଇଁ ॥ ବାଳୀବୀରକୁ ଯେଣୁ ହେ ଜିଣିଛନ୍ତି ରାମ । ସମ୍ପ୍ରତି ରାକ୍ଷସଙ୍କର ସେ ଭୟର ସ୍ଥାନ । ୭୨ ।

ରାମୋଽୟଂ ରବିବଂଶଜୋ ଦଶରଥସ୍ୟ ପଲଚୂଡାମଣେଃ
ପୁତ୍ରଃ ସର୍ବମହୀଶ୍ୱରୋ ନରଗଣୈଃ ସଂପୂଜିତୋ ରକ୍ଷତାତ୍ ।
ସୀତାହାରକୃତାନ୍ତକୋ ନିଜଭୁଜପ୍ରୌଢ଼ପ୍ରତାପାନଳ—
ସ୍ତ୍ରୈଲୋକ୍ୟସ୍ୟ ହିତାର୍ଥସାଧନବିଧୌ ଜାନାସି ନୈବ କଥଂ ॥

ସୂର୍ଯ୍ୟ ବଂଶେ ଜନମି ଅଛନ୍ତି ଏହି ରାମ । ରାଜା ଦଶରଥଙ୍କର ଅଟନ୍ତି ନନ୍ଦନ ॥ ସସାଗରା ପୃଥିବୀ ମଧ୍ୟରେ ପୁଣି ରାଜା । ସକଳ ଲୋକେ କରନ୍ତି ଯାଙ୍କ ପଦପୂଜା ॥ ସୀତା ହରଣକାରୀର ଏହାଟି ଶମନ । ଯେହୁ ଜନ୍ମି ଛନ୍ତି ତ୍ରିଭୁବନ ହିତେ ଜାଣ ॥ ତ୍ରୈଲୋକ୍ୟ ହିତ ସାଧନେ ଯାହାଙ୍କର କର । ତାହାଙ୍କ ନ ଜାଣ ତୁମ୍ଭେ ହେ ପରାଣେଶ୍ୱର ।୩୩।

ଏକଃ ସୁଗ୍ରୀବଭୃତ୍ୟଃ କପିରଖିଲବନଂ ପତ୍ତନଂ ଚୂର୍ଣ୍ଣଦଗ୍ଧ୍ୱା ।
ଯାତସ୍ତୂର୍ଣ୍ଣଂ ତଦାନୀଂ ଦଶମୁଖ ଭବତଃ କିଂ କୃତଂ ବୀରବର୍ଗୈଃ ।
ପ୍ରାପ୍ତୋଽସୌ ପତ୍ତନାନ୍ତଂ ସକଳକପିବଳୈର୍ବାର୍ଦ୍ଧିମୁଲ୍ଲଂଘ୍ୟଧୀରେ
ଦ୍ଦଂ ସୀତାଂ ମୁଞ୍ଚମୁଞ୍ଚୈତ୍ୟନିଶମ୍କଥଯେତ୍ ପ୍ରେୟସୀ ରାବଣସ୍ୟ ।୩୪।

ପୁଣି ସୁଗ୍ରୀବଙ୍କ ଭୃତ୍ୟ ଗୋଟିଏ ବାନର । ପୋଡ଼ିଦେଇ ଗଲା ପରା ସ୍ୱର୍ଣ୍ଣ ଲଙ୍କାପୁର ॥ ତୁମ୍ଭ ବୀର ମହାବୀରମାନେ ଯେତେ ଥିଲେ । ସେ କାଳରେ ସେ କପିର ନାଶ ଅବା କଲେ । ଅଟେହେ ଜୀବନ ବଲ୍ଲଭ ହେଉଛ ମନେ ॥ ସିନ୍ଧୁ ଜଳ ଲଙ୍ଘି ସୁଗ୍ରୀ ଯୁଝିବା କାରଣେ । ଗଡ଼ର ନିକଟେ ଅଛି କପି ସୈନ୍ୟ ଘେନି । ଛାଡ଼ିଦିଅ ସୀତାଙ୍କୁ ହେ କହୁଛି ଦମ୍ଭିନୀ । ୩୪ ।

ରାବଣଃ ପାଶ୍ଚାର୍ଯ୍ୟଂ ।

ଏତେ ତେ ମମ ବାହବଃ ସୁରପତେର୍ଦୋର୍ଦ୍ଦଣ୍ଡକଣ୍ଡୂହରାଃ
ସୋଽହଂ ସର୍ବଜନପ୍ରଭବକରୋ ଲଙ୍କେଶ୍ୱରୋ ରାବଣଃ ।
ସେତୁଂ ବନ୍ଧମିମଂ ଶୃଣୋମି କପିଭିଃ ପଶ୍ୟାମି ଲଙ୍କାଂ ବୃତାଂ
ଜୀବଦ୍ଭିର୍ନହି ଦୃଶ୍ୟତେ କିମଥବା କିଂ ବା ନ ବା ଶ୍ରୂୟତେ ?

ଅଷ୍ଟର୍ଘ ମନେ ରାବଣ କହେ ଏ ଭାରତୀ । ସ୍ୱର୍ଗର ଇନ୍ଦ୍ରକୁ ଯେଉଁ ଭୃତ୍ୟେ ଜିଣିଛନ୍ତି ॥ ସେ ପ୍ରାୟ ସେ ବାହୁମାନେ ଅଛନ୍ତି ମୋହର । କିଜେ ମୁଁ ତ ଜାଣିଅଛୁ ଏହୁ ତନୁପୂର ॥ ଲଙ୍କାଗଡ଼ ଅଧିପତି ମୋ ନାମ ରାବଣ । ଶୁଣିଲି ବାନରେ କଲେ ସାଗର ବନ୍ଧନ ॥ ଲଙ୍କାକୁ ଘେରିଲେ ପୁଣି ଦେଖିଲଇଁ ମୁହିଁ । ଜୀବ ଥିଲେ କାଯ ଦେଖା ଶୁଣିା ବା ନ ଯାଇ । ୩୦ ।

ପୁନଃ ପ୍ରହସିତ ଅରବିନ୍ଦଃ ।

ଯେ ଧ୍ୱଂସନ୍ତି ନିଜଂ ନାଥଂ ତେଽପି ପାପଧିକାରିଣଃ
ବଯଂ ତଥାବିଧା ନୈବ ଭବାନପି ନ ମୂଢ଼ଧୀଃ । ୩୧ ।

ଏହିକାଳେ ଅରବିନ୍ଦ ନାମେ ମନ୍ତ୍ରୀ ତହିଁ । ନୀତି ବାକ୍ୟ ପ୍ରକାଶିଲା ପରବେଶ ହୋଇ ॥ ଯେବଣ ମନ୍ତ୍ରୀ ଏ ନିଜ ସ୍ୱାମୀଙ୍କୁ ମାରନ୍ତି । ତାଙ୍କ ତନୁଁ ପାପୀ ତନୁପୂରେ କେ ନାହାନ୍ତି ॥ ସେପ୍ରକାର ଜ୍ଞାନହୀନ ନୋହୁ ଅମ୍ଭେମାନେ । ସ୍ୱୟଂ ଆପଣ କଦାପି ନୁହନ୍ତି ତେହେଁ ।୩୨।

ରାବଣଃ ।

ନିଯୁକ୍ତିହସ୍ତାର୍ପିତରାଜ୍ୟଭାରସ୍ତିଷ୍ଠନ୍ତି ଯେ ସୌଧବିହାରସାରାଃ ।
ବିଡ଼ାଲବୃନ୍ଦାର୍ପିତଦୁଗ୍ଧଭାଣ୍ଡାଃ ସ୍ୱପନ୍ତି ତେ ମୂଢ଼ଧିୟଃ କ୍ଷିତୀନ୍ଦ୍ରାଃ ।୩୩।

ଲଙ୍କେଶ କହଇ ରାଜ୍ୟଭାର ଅନ୍ୟେ ଦେଇ । ଯେ ରାଜା ଏ ଅଟ୍ଟଳିରେ ବିହରନ୍ତି ଯାଇ ॥ ସେମନେ କ୍ଷୀର ଭାଣ୍ଡକୁ ମଞ୍ଜର ମେଳାରେ । ରଖିଦେଇ ଶୋଇ ରହିଥାନ୍ତି ନିଶ୍ଚିନ୍ତରେ ॥ ବୁଦ୍ଧିହୀନ ବୋଲି ତାଙ୍କୁ ଜନେ କହୁଥାନ୍ତି । ଅବର କହୁଛୁ କିଛି ଶୁଣି ଦେଇ ମତି ॥

ଜୀର୍ଣ୍ଣୋଽପ୍ୟହ୍ନ କାଳକୂଟକବଳେ ପ୍ଳୁଷ୍ଟେ ତଥା ମନ୍ମଥେ
ନୀତେ ଭସ୍ମତଭାଲନେତ୍ରଦହନେନାତାଂ କଳ୍ପାନ୍ତଦାବାନଳୈଃ ।
ଚଃ ଶକ୍ତ୍ୟା ଏମଲଂ କୃତେଽପି ଶଶିନଂ ଶୈଳାତ୍ମଜାଂ ସ୍ୱର୍ନଦୀଂ
ଧତ୍ତେ କୌତୁକରାଜନୀତିନିପୁଣଃ ପାୟାତ୍ ସ ବଃ ଶଙ୍କରଃ ।୩୪।

ଜୀର୍ଣ୍ଣ କରିଛନ୍ତି ଭକ୍ଷି ଯେ କାଳକୂଟକୁ । ନେତ୍ରାନଳେ ଜାଳି ଦେଇଛନ୍ତି ମଦନକୁ ॥ ଚନ୍ଦ୍ରମା ଜାହ୍ନବୀ ଯାଙ୍କ ଶିରେ ବିରାଜନ୍ତି । ଅର୍ଦ୍ଧାଙ୍ଗରେ ପାର୍ବତୀଙ୍କି ଯେହ୍ନେ ବହିଛନ୍ତି । ରଜନୀତ ଶାସ୍ତ୍ରେ ଯେହ୍ନୁ କୁଶଳେ ଅଟନ୍ତି । ମଙ୍ଗଳ କରିବେ ଅବଶ୍ୟ ସେ ପଶୁପତି ।୩୮ ।

ପୁନଃ ଅରବିନ୍ଦରୂପାକ୍ଷୌ ।

ଦିଗ୍ବାସାଯଦି ତେ କିମସ୍ୟ ଧନୁଷା ଶସ୍ତ୍ରଂ ଚ କିଂ ଭସ୍ମନା
ଭସ୍ମାଥାସ୍ୟ କିମଙ୍ଗନା ଯଦି ଚ ସା କାମଂ ପରଂ ଦ୍ବେଷ୍ଟି କିଂ ।
ଇତ୍ୟନ୍ୟୋଽନ୍ୟବିରୁଦ୍ଧକର୍ମଣି ରତଂ ପଶ୍ୟନ୍ନିଜଂ ସ୍ବାମିନଂ
ଭୃଙ୍ଗୀ ସାନ୍ଦ୍ରଶିରାବନଦ୍ଧଶକଲଂ ଧତ୍ତେଽସ୍ଥିଶେଷଂ ବପୁଃ ।୩୯।

ପୁଣି ବିରୂପାକ୍ଷ ଅରବିନ୍ଦ ରାଜା ପାଶେ । ଯାଇଣ ଏମନ୍ତ ବୁଝାଇଲେକ ହରଷେ ॥ ଦିଗମ୍ବର କାହିଁପାଇଁ ଧନୁକୁ ବହିବ । ଧନୁଦ୍ଧର ଜନ କିମ୍ପା ଭସ୍ମ ବୋଳିହେବ ॥ ଭସ୍ମଧାରୀର ଭାରିଜା ଥାଇ କିଅ ହେବ । କି କାର୍ଯ୍ୟ ଶତ୍ରୁର ପାଶେ ଯେବେ ନାରୀ ଥିବ ॥ ଏପରି ବିରୋଧ କାର୍ଯ୍ୟ ସ୍ବାମୀର ଦେଖିଣ । ଅସ୍ଥିଶେଷ ଭୃଙ୍ଗୀ ଦେହେ କରନ୍ତି ବହନ ।୩୯।

ବ୍ରାହ୍ମଣଂ ମନ୍ତ୍ରିଣଂ ଦ୍ରୋଣଂ ଶୁଦ୍ଧଂ ଫଳଂ ଭବିଷ୍ୟତି ।
ଗୁରୁଂ ଦୁର୍ଯ୍ୟୋଧନସ୍ତୀକ୍ଷ୍ଣା ଯଥା ତ୍ବଂ ମା ତଥାଭବ । ୪୦ ।

ବ୍ରାହ୍ମଣ ମନ୍ତ୍ରୀ ଯେ ଦ୍ରୋଣ ଶୁଦ୍ଧବୀର ପୁଣି । ଏହାଙ୍କ କଥା ନ ମାନ କୁରୁକୁଳ ମଣି ॥ ତାହାର ଯେଉଁ ଦୁର୍ଯ୍ୟୋଗ ହୋଇବା ଶେଷରେ । ସେ ଫଳକୁ ନ ଭୁଞ୍ଜନ୍ତୁ ଆପଣ ଏଠାରେ । ୪୦ ।

ସ୍ବମନ୍ଦିରଂ ପ୍ରବିଶତି ରାବଣେ ମନ୍ଦୋଦରୀ

ପ୍ରାଣନାଥ । ପଶ୍ୟ ।

ମନ୍ଦେ ଦଶାନନକଳ ଙ୍ଗ ମନୋହରନ୍ତେ ।
ଭେଦୋଽସ୍ତି କୋଽପି ଯଦି ନାଥ ବଚସ୍ତ୍ବୟି ତ୍ବଂ ॥

ତହୁଁ ନିଜ ପୁରେ ଯାଇ ପ୍ରବେଶ ହୋଇଲା । ରାଣୀ ମନ୍ଦୋଦରୀ ଆସି ସଖୀଙ୍କର କହିଲା ॥ ଜନକସୁତା ଅବଚ ମନ୍ଦୋଦରୀ ସତୀ । ସୁନ୍ଦରୀ

ଏକରେ ଦୁହେଁ ସମାନ ଅଟନ୍ତି । ମନମଧ୍ୟେ ବିଚାରନ୍ତୁ ଆହେ ପ୍ରାଣେଶ୍ୱର । ପ୍ରଭେଦ ଅଛି କା ଏହି ଦୁହିଙ୍କ ମଧ୍ୟର । ୯୧ ।

ରାବଣଃ

ମୈନଃ ପ୍ରିୟେ ପରମଲସ୍ତବ ଭେଦମାର୍ଯ୍ୟା-
ତ୍ୟେଙ୍ଗ ବିଦେହଦୁହିତୁଃ ଧରନୀଜ୍ଜ୍ୱାଣଂ । ୯୧ ।

ରାବଣ କହଇ ଶୁଣ ଆଗୋ ପ୍ରାଣେଶ୍ୱରୀ ! ତୁମ୍ଭ ଦେହ ଗନ୍ଧାଢ଼ନ୍ତି ମଲ ମଛପରି ॥ ସୀତା ଦେହ ଧଦ୍ମପୁଲରେ ବାସୁଅଛି । ଦୁହିଙ୍କ ମଧ୍ୟେ ଏତିକି ପ୍ରଭେଦ ରହୁଛି । ୯୨ ।

ରୂପେ ତବାସ୍ୟସ୍ତା ନ କୋଽପି ଭେଦଃ
ଖେଦଂ ପ୍ରିୟେ ମଦ୍ୱଚନେନ ମା ଗାଃ ।
ସୀତାଧରେ ବାମଧୁରେ ଦଶାଢ୍ୟା
ରମେଽଥବା ରଂସ୍ୟତ ଏବ ସଦ୍ୟଃ । ୯୨ ।

ନାହିଁ ପ୍ରଭେଦ ରୂପେ ତୁମ୍ଭର ତାହାର । ନ ଭାବ ମନରେ ଆନ ଆଗୋ ପ୍ରିୟାବର । ଜାନକୀଙ୍କ ଅଧରେ କରିବ ରମକ୍ରୀଡ଼ା । ନିଷ୍ଠିୟ ଏମନରେ ଆଜ କରିବି ମୁଁ କ୍ରୀଡ଼ା । ୯୨ ।

ହେ ମାୟାବିନୋ ରାକ୍ଷସାଃ ଅଦ୍ୟ ତ୍ୱୟା ଖଳୁ ମାୟାପ୍ରପଞ୍ଚ ରଚନାଭି ମୂର୍ଦ୍ଧିଦ୍ୱୟଂ ନିର୍ମାୟ ରାମଲକ୍ଷ୍ମଣୟୋରିଦମିତି ଜାନକୀ ସନ୍ନିଧାନେ ଦୀୟତାଂ । ଅନୁଚରାଃ ଯଥାଦିଶସି ମହାରାଜ ଇତି ମାୟାଂ ନାଟୟନ୍ତି । ୦ ।

କହଇ ରାବଣ ହେ ମାୟାବି ନିଶାଚରେ । ଶ୍ରୀରାମ ଲକ୍ଷ୍ମଣଙ୍କର ଶିରକୁ ମାୟାରେ । ଭିଆଣ କର ବହନ ନ କର ବିଲମ୍ବ । ସେ ମୁଣ୍ଡକୁ ପକାଅ ଜାନକୀ ଆଗେଣ । ଅନୁଚର ମାନେ ତହୁଁ ଯେ ଅଜ୍ଞା କହିଣ । ଚଳିଗଲେ ମୁଣ୍ଡ କରିବାକୁ ଯେ ନିର୍ମାଣ । ୦ ।

ଅଥ ଦଶବଦନୋଽସୁଂ ରାମସୌମିତ୍ରି ମାୟା-
ବିରଚିତଶିରସୀ ତଦ୍ଦୂଷ୍ଣବଶି ଦୃଷ୍ଟ୍ୱେ ।

ଗଳଦବିରଳରକ୍ତେ ପ୍ରେତପର୍ଯ୍ୟସ୍ତନେତ୍ରେ
ଜନକଦୁହିତୃବକ୍ତ୍ରେ ସ୍ଥାପୟ୍ୟାମାସ ପଦ୍ମଃ । ୪୩ ।

ଏ ଉତ୍ତାରୁ ଦୁଷ୍ଟ ଲଙ୍କପତି ଯାଇଁ କରି । ଶ୍ରୀରାମ ଲକ୍ଷ୍ମଣ ଶିର ମାୟାରେ ନିର୍ମିଅଛି ॥ ଦେହଯର ଶ୍ରୀମୁଖ ଦୁଇଟି ନୂଲବଦଣ । ଜ୍ୟୋଧାର ଭୁହୁଅଛୁ ତହୁଁ ଘନଘନ । ଦୁହିଙ୍କ ନେତ୍ର ଯୁଗଳ ନୀଳୋତ୍ପଳ ଦଳେ । ଶୋଭା ପାଉଅଛୁ ଅହା ଅତି ନୃ ମାଧୁରୀ । ସେ ଦୁଇଶିର ଦୈତ୍ୟ ନେଇଣ ସତ୍ୱରେ । ରଖିଦେଲ ସୀତା ସତୀଙ୍କର ସମ୍ମୁଖରେ । ୯୩ ।

ଦୃଷ୍ଟ୍ୱା ଜନକୀ ସବାଷ୍ପଂ ।
ଅହହ ଜନକପୁତ୍ରୀ ଫୁଲ୍ଲରାଜୀବନେତ୍ରୀ
ନୟନସଲିଲଧାରବଦ୍ଧନିର୍ଝରାରୀ ।
ରମଣମରଣଭୀତା ମୂର୍ଚ୍ଛନାଙ୍କଂ ନ ନୀତା
ହୃଦୟ ଦହନଜାଲଃ ସଂଦହେଦ୍ବା ବିଶାଳଃ । ୪୪ ।

ପ୍ରଫୁଲ୍ଲ ପଦ୍ମନୟନୀ ଜନକନନ୍ଦନୀ । ବହୁତ ବିଳାପ କଲେ ସ୍ୱାମୀ ମୃତ୍ୟୁ ଜାଣି । ନେତ୍ରୁ ଅଶ୍ରୁ ଧାର ବହି ବକ୍ଷ ଭିଜିଗଲା । ସ୍ୱାମୀ ମୃତ୍ୟୁ ଭଲି ମନେ ମହା ଭୀତ ହେଲ ॥ ବୋଇଲେ ହେ ପ୍ରାଣନାଥ ନ ଦେଲ କମାଇ । ଜ୍ୱଳନ୍ତା ନଳେ ଯାହା ନ ଛୁଇଁଲ ମୁହିଁ । ୦୪ ।

ଅଧରମଧୁ ମଦୀୟଂ କାମକେଳୀଷୁ ପୀତ୍ୱାଃ
ମୃତମିତ ଦେବାଧୀସ୍ତୀରବାନୀରକଞ୍ଜେ ।
କମମୃତପଦେପ୍ସୁଂ ଶୀଘ୍ର ମଦଂମୃତେର୍କ
ତ୍ୱମଇବ ନହି ଶକ୍ତଂ ନାଥ ମନ୍ଥାହି ଦେହେ ରଂ । ୪୫ ।

ମୋ ଅଧର ମଧୁପାନ କରି ହେ ଜୀବେଶ । ଅମୃତ ପିଇଲ ବୋଲି ହେଉଥାଅ ତୋଷ । ନଦୀକୂଳେ ବେତସୀ କୁଞ୍ଜରେ ଥାଇ କରି । ଚନ୍ଦ୍ରମଣ୍ଡଳକୁ ଗୃହିଁ ଅହେ ଗୃପଧାରୀ । ଦାନେ କହିଥିଲ ଏଥି କିଛି ନାହିଁ ରସ । ଅମର ହୁଅନ୍ତି ଜନେ ସୁଧା କରି ଗ୍ରାସ । କପରି ବା ମୃତ୍ୟୁ ଯୋଗ ହେବ ହେ ତୁମ୍ଭର । ଗଗନେ ଥାଇଣ ସର୍ପ ନାଶେ ଅନ୍ଧକାର ।

ଯେହୁଅର ରହୁ ଶତ୍ରୁ କରନ୍ତି ବିନାଶ । ସମୂଳେ ଅସୁର କୁଳ ହୁଅନ୍ତେ-ନିବଂଶ । ୪୫ ।

ସ୍ଫୁରତି ମଧୁରବାଣୀ କିଂ ନ ବକ୍ତ୍ରାରବିନ୍ଦେ
ନୟନକମଲୟୋସ୍ତେ ନୋ ମଦଙ୍ଗେ ବିଳାସଃ ।
ଅମରପୁରବଧୂନାଂ ବଲ୍ଲଭୋଽଦ୍ୟାସି ନୂନଂ
ବ୍ରଜତୁ ପରମହଂସୋ ମେ ତ୍ୱଦାଲିଙ୍ଗନେନ । ୪୬ ।

ଶ୍ରୀମୁଖ କମଳୁଁ ଏ-ବ ମଧୁର ବଚନ । କହୁନାହୁଁ କାହୁଁ ପାଇ-କୋଦଣ୍ଡଧାରଣ । ପଦ୍ମଦଳ ନୟନରେ ମେ ତେ କାହୁଁ ପାଇଁ । ଗୃହୁଁ ନାହଁ କିସ ମନେ ଭାବି ପ୍ରାଣସଇଁ । ଦେବସ୍ତ୍ରୀଙ୍କ ସଙ୍ଗ ଅଜ ନିଷ୍ଟୟ କରିବ । ମୋର ଏ ଜୀବନେ ଜାଣି ଅହେ ଜୀବଧବ । ତୁମ୍ଭର ଶ୍ରୀଅଙ୍ଗ-ଆଲିଙ୍ଗନ କରିବାକୁ । ନିଷ୍ଟୟ ଚଳିଯିବ ହେ ଅମର ପୁରକୁ । ୪୬ ।

ନାଥ ତ୍ୱୟାନ୍ୟବନିତାବିମୁଖେନ ଲବ୍ଧା
ନ ସ୍ୱୀକୃତା ବସୁମତୀ ନ ଚ ରାଜଲକ୍ଷ୍ମୀଃ ।
ତ୍ୱମୀଦୃଶଂ କଥମହୋ ବନିତାଃ ସୁରାଣାଂ
ଗୃହ୍ଣନ୍ତି ମୀଳସି ମଥୈବ ନ ତେଽପରାଧଃ । ୪୭ ।

ପରସ୍ତ୍ରୀସ୍ୱୀକାର ତୁମ୍ଭେ ନ କର ଗ୍ରହଣ । ତେଣୁ ତେଜିଲ ଚଞ୍ଚଳ-ପୃଥିବୀ ଲଭିଣ । ରୂପେ ମୁଗ୍ଧ ହୋଇ ଲକ୍ଷ୍ମୀ ଅସିଥିଲ ତେଲେଭେ । ଏ-ଗୁଣ ତୁମ୍ଭର ଦେଖି ଗୃହଲଗଲ ଯେବେ । ଅସୁର ବାଳା କପଟ ବି-ଗ୍ରହଣ କରିବ । ବୃଥ ରେ ସେଠାକୁ ସିନା ଯାଉଛ ରାଘବ ॥ ତୁମ୍ଭର-ଦୋଷ ଏଥିରେ ନାହିଁ ହେ କାନ୍ତ । ମୋ ଦୋଷୁଁ ଏହା ଘଟିଲ ଅହେ-ପ୍ରାଣନାଥ । ୯୭ ।

ଇତି ରାମଶରୈଃ ସମାଲିଙ୍ଗିତୁମିଚ୍ଛତି

ଆକାଶେ ।

ନ ଖଲୁ ନ ଖଲୁ ଧୀତେ ରାମଭୂପାଳମୌଳିଃ
ସମରଶରସି ବଦ୍ଧୋ ନ ତ୍ରିୟସ୍ତେ ବଦାଚିତ୍ ।

ସ୍ପୃଶ କଥମପି ମେ ତର୍ମାନ୍ନିଶାଗ୍ରୀବଶସ୍ତ୍ରଂ
ହର ହର ହରଭକ୍ତ୍ୟସୈଂଷ ମସ୍ତୁ ବଚ୍ଛାଚଃ । ୪୮ ।

ମୋହାକହୁ ଶ୍ରୀରାମଙ୍କ ମାୟା ମସ୍ତକକୁ । ଶ୍ରୀକର ଲଗନ୍ତେ ଆଲିଙ୍ଗନ କରିବାକୁ । ଏ କାଳେ ଅକାଶୁଁ ହେଲ ଏହୁ ଦୈବବାଣୀ । ଛୁଅଁ ନାହିଁ ଛୁଅଁ ନାହିଁ ଜନକଦୁଲଣୀ । ଯେ ମୁଣ୍ଡ ଶ୍ରୀରାମଙ୍କର ନୁହଇ ତଗୋ ସତ । କେତେ ରଣେ ନ ମରିବେ ପ୍ରଭୁ ରଘୁନାଥ । ଅସୁର ମୁଣ୍ଡକୁ ଛାଡ଼ ଅଟେ ବଇଦେହୀ । ହରଭକ୍ତି ରାବଣର ମାୟା ଅଟେ ଏହି ।୪୮।

ସରମା ବଦତି ।

ଅକର୍ଣ୍ଣଯ୍ୟାକର୍ଣ୍ଣବିଶାଳନେତ୍ରେ ରାମାଗମାଦାତ୍ତିକନିଶାଚରାଣାଂ ।
କୋଳାହଳଂ କହଳମର୍ଦ୍ଦଳାନାଂ ହ୍ରେଷାରବଂ ଯନ୍ତ୍ରତୁରଙ୍ଗମାନାଂ ।

ସରମା ବୋଲଇ ତହୁଁ ସୀତାଙ୍କ ଆଗରେ । ଅଟେ ଜଗତ ଜନନୀ ସନ୍ତାପ ନ କର ।। କହୁଛି ମୁଁ ଶୁଣ ଗୋ ସତୀଙ୍କ ଶିରୋମଣି । ଶ୍ରୀରାମ ଆସିବାରୁ ଗୋ ନିଶାଚର ଶ୍ରେଣୀ । ବିକଳେ କରନ୍ତି ମହାକୋଳାହଳ ନାଦ । ସୈନ୍ୟଙ୍କ ମଧ୍ୟରେ ବାଜୁଅଛୁ ବାରବାଦ୍ୟ । ଅଶ୍ୱମାନଙ୍କର ହ୍ରେଷା ରବଟି ପ୍ରବଳ । ଏଣୁ କରି ହୋଇଛି ଏ ଶବଦ ଗହଳ । ୪୯ ।

ତ୍ରିଜଟା ।

ବିରମ ବିରମ ଶୋକାତ୍କୋପନଷ୍ଟାଦ୍ୟ ରାମଃ
ସମୁଚ୍ଛ୍ୱସ୍ତଜନବନ୍ଧୁଂ ରାବଣଂ ମର୍ଦ୍ଦୟିତ୍ୱା ।
ବିକଚଦ୍ୱୃତ୍ପଲ ନୀଲଃ କୋମଳଂ କୋମଲାଙ୍ଗୀ
ତଦଧରମଧୁପାନଂ ସ୍ୱୀକରିଷ୍ୟତ୍ୟଜସ୍ରଂ । ୫୦ ।

ତ୍ରିଜଟା କହଇ ତହୁଁ ଶୁଣ ଗୋ ଜାନକୀ । ଶୋକ ନ କର ଶରଦ ସୁଧାକର ମୁଖୀ । ସବାନ୍ଧବ ପୁତ୍ରସହ ରାବଣକୁ ରଣେ । ବଧିବେ ଶ୍ରୀରାମଚନ୍ଦ୍ର ଆଜ ତୀକ୍ଷ୍ଣ ବାଣେ । ନୀଳେନ୍ଦ୍ର ମଣି ପରାୟେ ଯାହାଙ୍କ ଶରୀର । ସେ ଆଜ ଚୁମ୍ବିବେ ତବ ବଧୁଲି ଅଧର ।୫୦।

ରାବଣଃସ୍ୱଗତଂ ।

ପୁନରପି ମାୟାବେଶୋଽଶୋଗବ୍ରତ୍ୟମିତ ।

ତେନ୍ୟାନଃସ୍ୱାନଶଙ୍ଖଧ୍ୱନିଗନ୍ତୁରଗସ୍ପନ୍ଦନାନାଂ ନିନାଦୈଃ
ସାନନ୍ଦଂ ଘଣ୍ଟଘୋଷୈଃକଟକଟକଟେଭ୍ୟୋଽଷ୍ଟ ଲକୋଳାହଳେନ ।
ଲଙ୍କାମାତ୍ରାଣ୍ଡିକାନାଂ ସ୍ତ୍ରସ୍ତମଭବଦତୋ ହଦବୋ ରାବଣସ୍ୟ
ଛିନ୍ନାନ୍ୟୁନ୍ମୁଣ୍ଡେ ଦଧାନଃ ଶିରସିଚ୍ଛିଦବେତ୍ତେକତଃ ପଞ୍ଚ ପଞ୍ଚ ।୫୧।

ପାଡୁଅଛୁ ଅସିବ ମୁଁ ପୁଣି ମାୟା ବେଶେ । ଏତେ ବିଚାରଣ ତହୁଁ ଶୁଣିଲା ହରଷେ । ତେଲ୍ସ ଅଣ୍ଡ ଶଙ୍ଖ ନାଦ ଘୋର ଗରଜନ । ସେନାପତିଙ୍କର ବାଦ୍ୟନିସ୍ତ୍ରାଣେ ମୁଖ ଗୋଟେ । ଲଙ୍କାଗଡ଼ଯାକ ପୂର୍ଣ୍ଣ ଅନନ୍ଦ ବାଢ଼ିଲେ । ଅଟେ ଶ୍ରୀରାମରୂପକୁ କରିଣି ଧାରଣ । ଆସଇ ଦୁଷ୍ଟ ରାବଣ ମାୟା ଅଟେ ଭଣି । ନିଜର ଦଶମୁଣ୍ଡକୁ କାଟି ରୋଷଭରେ । ପାଞ୍ଚ ପାଞ୍ଚ ଗୋଟା ଧରି ଅଣ୍ଟୁଳି ତା କରେ । ୫୧ ।

( ଏବଂଭୂତଃପୁନରଶୋକବନେ ରାବଣଃ । )

ଲଙ୍କାଦ୍ୟୋଽପ୍ୟଦ୍ୟ ନନ୍ଦନବେଶଧାରୀ
ପାପୋଜଗାମ ପୁରତୋ ଜନକାତ୍ମଜାୟାଃ ।
ନାମ୍ନାପି ଯସ୍ୟ କୃତ ଇଚ୍ଛତ ତସ୍ୟ ରୂପା—
ଦନ୍ୟାଙ୍ଗ ନାପହରଣେ ନ ମନଃ କଦାଚିତ୍ । ୫୨ ।

ଏମନ୍ତେ ଶ୍ରୀରାମଚନ୍ଦ୍ରଙ୍କର ବେଶଧରି । ସୀତାଙ୍କ ପଶେ ମିଳିଲା ଲଙ୍କ ଦଣ୍ଡଧାରି ॥ କହିଲା ଗୋ ପ୍ରାଣ ପ୍ରିୟେ ଶୁଣ ମୋ ବଚନ । ପର ନାରୀ ନାମ ନ ଧରିବା କଦାଚନ । ପରସ୍ତ୍ରୀଙ୍କି ମୁଁ ଅବା କେଉଁ ପରକାରେ । କରିବ ଗ୍ରହଣ ମନେ ବିଚାର ତୁ ଥରେ । ୫୨ ।

ଜାନକୀ ସହର୍ଷଂ ।

ସାକ୍ଷାଦାଲୋକ୍ୟ ରାମଂ ଝଟିତି କୃତଚଟୌଦ୍ଭିରନମ୍ରାପି ହର୍ଷା—
ଦୂତ୍ଥାୟୈବ ଦସ୍ତ୍ରଦୋ ଭ୍ୟାଂ ଦଦ୍ଦେନିତକୁଚ୍ଛୋଦଗତେ ଲୋମତାଙ୍ଗୀ ।

ଧନ୍ୟାହଂ ପ୍ରାଣନାଥ ତ୍ୟକ୍ତ ରେଜନ୍ନ ଚରଚ୍ଛିନ୍ନଶୀର୍ଷାଣି ଗାଢ଼ଂ
ମାମାଲିଙ୍ଗ୍ୟ'ଦ୍ୟ ଖେଦଂ ଜହି ବରଦ୍ଵରଦ୍ଵାପାବକଃ ଶାନ୍ତିମେତୁ । ୫୩ ।
ସାହାତେ ଶ୍ରୀରାମ ରୂପ ଦେଖି ଦଇଦେହୀ । ଆଲିଙ୍ଗନ କରିବାକୁ ଉଠିଲେକ ତହିଁ । ବୋଇଲେ ଅସୁର ଶିର ଛାଡ଼ ପ୍ରାଣଧନ । ତୁମ୍ଭ ଶ୍ରୀମୁଖ ଦେଖିଲି ଅଜ ମୁହିଁ ଧନ୍ୟ । ପ୍ରେମେ ଅଲିଙ୍ଗନ କର ମୋର ଦୁଃଖ ଯାଉ । ଶରଦ ଅନିଳ ଲିଭୁ ହେ କୋଦଣ୍ଡବାହୁ । ୫୩ ।

ରାବଣଃ ସବିଷାଦଂ ।

ଦୃଷ୍ଟ୍ଵା ତତୋଽପ୍ୟବସରେ ଜନକାତ୍ମଜାୟାଂ
ଲଙ୍କାପତେର୍ମକରକେତୁଶରାତୁରାୟାଂ ।
କ୍ଲୀବୋ ବଶୀର୍ଣ୍ଣମଣିଦଣ୍ଡଯୁତଃ ଶିରୋଭିଃ
ପାପସ୍ତତଃ ଶିବଶିବାନ୍ତରଧୀମୃତ ଦ୍ରାକ୍ । ୫୪ ।

ସୀତାଙ୍କୁ କାମ ଆତୁରା ଦେଖି ଲଙ୍କରାଣ । ପୁରୁଷ ପଣିତା ଶୂନ୍ୟ ହେଲା ତତକ୍ଷଣ ॥ ପୁଣି ଦୁରାତ୍ମାର ମନେ ବଳ୍ପରେ ଏମନ୍ତ ଯାହା ଭାବନାରେ ଶୁଖି ଯାଉଛି ମୋ ଗାତ୍ର । ତା ଆଗରେ ଏ ଦଶା ଯା ଘଟିଗଲା ମୋତେ ଶିବ ଶିବ ରଟି ଦୁଃଖେ ଚଳିଲା ତୁରିତେ । ୫୪ ।

ଆକାଶ ବାଣୀ ।

ମନ୍ଦୋଦରୀ ରଘୁଶରାହତରାକ୍ଷସେନ୍ଦ୍ରଂ
ଚନ୍ଦ୍ରିଷ୍ୟତି ଦ୍ରୁମପି ଦ୍ରକ୍ଷ୍ୟସି ତଦ୍ରାମଂ ।
ଜାନୀହି ରକ୍ଷପତିର୍ନହି-ରାମଭଦ୍ରୋ
ମାୟାମୟେନ ବପୁଷା ବଦଧଚ୍ଛି ରାଂସି । ୫୫ ।

ଏହି କାଳେ ଅକାଶରୁ ହେଲା ଦୈବବାଣୀ । ଯା ମୁଖ ଚୁମ୍ବିଲ ନାହିଁ ମନ୍ଦୋଦରୀ ରାଣୀ । ସେ ରାକ୍ଷସ ଶ୍ରୀରାମଙ୍କ ବାଣେ ନାଶ ହେବ । ଶ୍ରୀ ରଘୁକୁଳ ନାଥଙ୍କୁ ତୁମ୍ଭେ ଗୋ ଦେଖିବ । ଏ ଯେ ନୁହନ୍ତି ଶ୍ରୀରାମ ମାୟାବି ରାବଣ । ମାୟାବଳେ ନିଜ ମୁଣ୍ଡ ଧରିଛି ଦାରୁଣ । ୫୫ ।

ଜାନକୀ ସର୍ବତ ଡଂ ।

ହାକାଶ ହା ଧରଣି ହା ବରୁଣାର୍କ ବାୟୋ
ବେତ୍ସ୍ୟାମି ଧର୍ମ କଟମାଗତମାତ୍ମନାଥଂ । ୫୬ ।

ଅତି ଦୁଃଖରେ କହନ୍ତି ଶ୍ରୀରାମ ଘରଣୀ । ରାକ୍ଷସ ମାୟା କେହ୍ନେ ବା ପାରିବି ମୁଁ ଜାଣି । ହା ଆକାଶ ହା ଧରଣୀ ହା ବରୁଣ ଦେବ । ହା ପବନ ଦେବତା ହା ଛାୟାଦେବୀ ଧବ । ସୁଦୟା କର ମୋ ପ୍ରତି ସକଳ ଅମର । ପରାଣନାଥଙ୍କୁ ସତେ ଦେଖିବି ନେତ୍ରର । ୫୬ ।

ସୀତାଂ ପ୍ରତି ସରମା ।

ଜାନକି ତ୍ୱଂ ନ ଜାନୀଷେ ରାବଣସ୍ୟା ତିଦାରୁଣାଂ ।
ମାୟାମାସାଦ୍ୟ ମା ଭୈଷୀ ରାମଃ କାମଂ ସ ଜୀବତି । ୫୭ ।

ସରମା କହଇ ଅଗୋ ରାମ ରାଣୀ ଶୁଣ । ଲଙ୍କପତି ମାୟା ଅଟଇ ବଡ଼ଇ ଦାରୁଣ । ତା ମାୟାଙ୍କୁ କେବେହେଁ ତୁମ୍ଭେ ନ ପାରିବ ଜାଣି ଜୀବନେ ଅଛନ୍ତି ନିଶ୍ଚେ ରଘୁକୁଳ ମଣି । ଭୟ ନ କର ଏଥିକି ଜନକ ତନୟୀ । ଶୋକ ପରିହର ଏବେ କହୁଅଛୁ ମୁହିଁ । ୫୭ ।

ରାବଣଃ ସ୍ୱଗତଂ ।

କୃତକୃତ୍ୟୋଽପି ଶ୍ରମତ୍ତ୍ୱେ ବର୍ତ୍ତିମାନେ ମୟି ସ୍ଥିତେ ।
ରୁନ୍ଧନ୍ତି ଦେବତାଃ ସର୍ବାଃ ପାପମୂଳାଃ ପ୍ରବୃତ୍ତୟଃ । ୫୮ ।

ମନେ ମନେ ଲଙ୍କପତି ବିଚାରଇ ବସି । ଶ୍ରମରୂପ ଧରି ମୁଁ ଏଠାକୁ ଅଛି ଆସି । ମୋ କାର୍ଯ୍ୟରେ ଦେବତାଏ ବାଧା ଦେଲେ ଯାହା । ପାପମୂଳ ପ୍ରବୃତ୍ତି ସତ୍ୟ ସତ୍ୟ ଏହା । ୫୮ ।

ପାପମୂଳାଃ ପ୍ରକୃତୟୋ ଦେବାଃ ସର୍ବସ୍ୱ ପ୍ରତିବନ୍ଧାତି ।
ଭବତୁ ରଣସ୍ଥଲୀଷୁ ତାପସଦ୍ୱୟଂ ନିହତ୍ୟ ବୈଦେହ୍ୟାକେଳି-
କଳାକୁତୂହଳମନୁଭବିଷ୍ୟାମୀତି ନିଷ୍କ୍ରାନ୍ତଃ । ୫୯ ।

ସୁଦ୍ଧ ପାପର ମୂଳ ଯେ ପ୍ରକୃତି ଜାଣ । ଦେବତାଏ ବାଧାଦ୍ୟନ୍ତି ସର୍ବ କାର୍ଯ୍ୟେ ପୁଣ ॥ ଆଜି ଦୁଇଭାଇଙ୍କି ମୁଁ ରଣେ ବଧିକରି । ନିଶ୍ଚିନ୍ତେ ରହିବି ସୁଖେ ଘେନି ଶ୍ରମନାରୀ । ୫୯ ।

ଏଷଶ୍ରୀଲହନୂମତା ବିରଚିତେ ଶ୍ରୀମନ୍ମହାନାଟକେ
ବୀରଶ୍ରୀଯୁକ୍ତରାମଚନ୍ଦ୍ରଚରିତେ ପ୍ରତ୍ୟକ୍ଷିତେନକମୈଃ ।
ମିଶ୍ର ଶ୍ରୀ ମଧୁସୂଦନେନ କବିନା ସନ୍ଦର୍ଭସଙ୍କ୍ଳିତେ
ମାୟାରାବଣସଂକ୍ଷୟୋନ ଗତବାନଷ୍ଟମୋ ମହାନଙ୍କଃ ॥

ଏ ମହାନାଟକ ହନୂମନ୍ତ ବିରଚିତ । ସନ୍ଦର୍ଭ ଛନ୍ଦେ ବର୍ଣ୍ଣିତ ଶ୍ରୀ ରାମ ଚରିତ ॥ ଶ୍ରୀ ମଧୁସୂଦନ ମିଶ୍ର ଦ୍ୱାରା ସଙ୍କଳିତ । ରାବଣର ମାୟା ରୁପ ଧାରଣ ବୃତ୍ତାନ୍ତ । ଅଷ୍ଟମ ଅଙ୍କ ଏଠାରେ ହେଲା ସମାପତ । ଶ୍ରୀରାମ ସ୍ୱାମୀର ଚିନ୍ତାମଣି ଟୀକେ ଗୀତ । ॥

ଇତି ଶ୍ରୀ ହନୂମଦ୍ରଚିତେ ମହାନାଟକେଷ୍ଟମୋଽଙ୍କଃ ।

---

## ନବମ ଅଙ୍କ ।

ନେପଥ୍ୟେ ।

ଭୋ ଭୋ ବାନରାଙ୍ଗଦାଦ୍ୟା ବାନରଭଟାଃ ଶୃଣୁତ । ଅଦ୍ୟ ଖଲୁ ଭବଦ୍ଭିଃ ସାବଧାନୈଃ ସ୍ଥାତବ୍ୟଂ । ରାବଣପ୍ରହିତା ପ୍ରଭଞ୍ଜନା ନାମ ରାକ୍ଷସୀ କାପି ଶଙ୍କିତୌ ରାମଲକ୍ଷ୍ମଣୌ ହନିଷ୍ୟତୀତି ବିଭୀଷଣ ଆହ୍ୱଣତି । ୦ ।

ଏହିକାଳେ ବିଭୀଷଣ ବୀର ପ୍ରବେଶିଣ । କହେ ଅଙ୍ଗଦାଦି ସବୁ ବୀରମାନେ ଶୁଣ ॥ ସକଳେ ସାବଧାନରେ ଆଜ ରହିଥିବ ॥ ପ୍ରଭଞ୍ଜନା ବୋଲି ଦଇତୁଣୀଏ ଆସିବ ॥ ତାହାକୁ ପଠାଉଅଛି ଦୁଷ୍ଟ ଲଙ୍କପତି । ବୁଝାଇ କହୁଛି ତାକୁ ଏମନ୍ତ ଭାରତୀ ॥ ରାତିଅଧେ ଶୋଇଥିବେ ଦଶରଥ ସୁତେ । ତାଙ୍କ ମୁଣ୍ଡ ପାଖିରୁ ତୁ ସେ କାଳେ ତୁରିତେ । ୦ ।

ତତୋନନ୍ତରି ପ୍ରବଶ୍ୟ ପ୍ରଭଞ୍ଜନା ସ୍ୱଗତଂ ।
ଉଖାତଦାରୁଣସୁତୀକ୍ଷ୍ଣ କୃପାଣପାଣିଂ
ବୀରାଟବପୁ କାପି ନିର୍ଭୟଭୂତଃ ଶୟାନଂ ।

ହଂ ହୋ ସୁଦର୍ଶନପରିକ୍ରମଣେନ ଗୁପ୍ତଂ
ରମଂ ନିହନ୍ତି କଥମଦ୍ୟ ବରଂ ବରାକୀ । ୧ ।

ଏ ଉତ୍ତାରେ ନିଶାକାଳେ ଯେ ଅସୁରୀ ଆସି । ଭାଳୁଅଛି ବାନରମାନଙ୍କ ମେଳେ ପଶି ॥ ତୀକ୍ଷ୍ଣ ଛୁରୀ ଦୁଇ ଭାଇ ଧରଣି ହସ୍ତରେ । ଶୋଇଛନ୍ତି ବୀରଙ୍କ ମଧ୍ୟେତ ନିର୍ଭୟରେ ॥ ଗୁପ୍ତେ ପୁଣି ଭ୍ରମୁଅଛି ଚକ୍ର ସୁଦର୍ଶନ । କେଉଁ ପରି ଏହାଙ୍କୁ ମୁଁ କରିବି ନିଧନ । ୧ ।

ଅତ୍ରାବସରେ ପ୍ରବୁଦ୍ଧମଙ୍ଗଦଂ ବୀରମବଗମ୍ୟାଧୀରଂ ପୁନର୍ଗନ୍ତୁ-
ମୁଦ୍ୟତା ପ୍ରଭଞ୍ଜିନୀ ଅଙ୍ଗଦଃ ସାଟୋପଂ ।

ମାଗାସ୍ତ୍ରିୟୁ ନିଶାଚରେ କ୍ଷଣମପି ସ୍ଥିତ୍ୱା ପୁନର୍ଗମ୍ୟତାଂ
ଯାବତ୍ତେ ଭୁବନମାଖିଳଜଗଦ୍ବିଦ୍ରାବଣୋ ରାବଣଃ ।
ଅଦ୍ୟାତ୍ୟଙ୍ଗଦବାହୁପାଶପତିତା ମୂଢ଼େତ୍ଥମାକନ୍ଦସେ
ସହସ୍ୟାନ୍ତିକମାଗତେବ ହରିଣୀ କସ୍ତ୍ୟାଂ ଦରିଦ୍ରାସ୍ୟତେ । ୨ ।

ଏହି ଅବସର ପାଇ ସେ ଅଙ୍ଗଦବୀର । ଅଳସ ଭାଙ୍ଗି ଉଠିଣ ବସିଲା ସତ୍ୱର ॥ ବୋଇଲା ବୀରମାନଙ୍କୁ ଏମନ୍ତ ବଚନ । ପୁଣି ଆସିବାକୁ ପ୍ରଭଞ୍ଜିନୀ କରେ ମନ ॥ ଏହା କହି ରାକ୍ଷସୀକି ବୋଲେ ବାଳିସୁତ । ଆଲୋ ରାକ୍ଷସୁଣୀ କେଉଁଣେ ଯାଉଛୁ କହତ ॥ ଦଣ୍ଡେ ମୋ ଆଗରେ ରହ ଆଲୋ ନିଶାଚରି । ଦେଖିବି ବାରେ ତୋହର ପ୍ରାକର୍ମ କାଇରି ॥ ବାହୁବଳ ଦେଖାଇ ଯେ ନିନ୍ଦେ ଜଗତକୁ । ରହିବୁ ତୁ ଯାଇ ସେହି ଦାଇତ ପାଶକୁ ॥ କାହିଁ ପାଇଁ ଅଛୁ ମୋର ବାହୁପାଶେ ଥାଇ । ସେହି ଆଗୁଁ ମୃଗୁଣୀ କି ନିସ୍ତାର ଲଭଇ । ୨ ।

ଉଦ୍ଧାଗତ୍ୱା ଲଙ୍କେଶ୍ୱରମେବ ନିବେଦୟାମି ଯଥାସୌ ନକ୍ତଂ ।
ବଧୋ ନ ଭବତୀତ ପ୍ରବିଶ୍ୟ ପ୍ରଭଞ୍ଜିନୀ । ଜୟତୁ ଜୟତୁ
ଲଙ୍କାନାଥଃ । ରାଜନ୍ ସୁଦର୍ଶନଚକ୍ରେଣ ରକ୍ଷିତଂ ରାମଚନ୍ଦ୍ରଂ
ନିଶି ହନ୍ତୁଂ ନ ଶକ୍ୟତେ । ତଦ୍ରାକ୍ଷସାଃ ପ୍ରାତଃ ସମରାଙ୍ଗଣେ-
ପ୍ରତୀପ୍ସିତାଃ କାର୍ଯ୍ୟାଃ । ରାବଣଃ ସତ୍ୟମେତତ୍କରୋମି । ୦ ।

ତହୁଁ ପ୍ରଭଞ୍ଜନ ଭାଲେ ଏମନ୍ତ ମନରେ । ଯାଉଛୁ ମୁଁ କହିବି ରାଜାର ଛାମୁରେ ॥ କେଶି ରେ କେବେହେଁ ରାମ ନ ମରିବେ ଦେଖିଲା । ଭାବଭାବି ପ୍ରଭଞ୍ଜନ ତହୁଁ ଗଲଚଳି ॥ ରାବଣର ନିକଟରେ ପ୍ରବେଶ ହୋଇଲା । ମନକଥା ଗୁପ୍ତ ସହିତରେ କହିଲା ॥ ଜୟ ଜୟ ଲଙ୍କାପତି ମହାବୀର ବର । ଯାହା ମୁଁ କହୁଛୁ ଶୁଣ ମନ କର ସ୍ଥିର । ଯାହାଙ୍କୁ ରକ୍ଷା କରୁଛୁ ସୁଦର୍ଶନ ଚକ୍ର । କେଶିରେ ତାହାଙ୍କୁ କେହୁ ବାଧିବ ପ୍ରତ୍ୟକ୍ଷ ॥ ସବୁ ଦୈତ୍ୟମାନେ କାଲି ଯିବାଟି ଜାଣିଣ । ସେ ରାମ ଲକ୍ଷ୍ମଣ ତୁଲେ କରନ୍ତୁ ହେ ରଣ ॥ ଏମନ୍ତ ଶୁଣି ରାବଣ ସିଂହନାଦ କଲା । କାଲି ସମରେ ରାମଙ୍କୁ ମାରହେ ବୋଇଲା । ୦ ।

## ଅଥ ଯୁଦ୍ଧୋଦ୍‌ଯୋଗଃ ।

ସୁଗ୍ରୀବୋଽବାଙ୍ଗଦଲକ୍ଷ୍ମୀରଦରମିତବପୁର୍ବାଳିପୁତ୍ରଃ କୁମାରଃ
ଶ୍ରୀଗମ୍ଭୀରାତୀରାମାଃ ପ୍ଳବଗପରିବୃଢ଼ାଃ ପ୍ରୌଢ଼ିମାରୂଢ଼ବନ୍ତଃ ।
ଉଲ୍ଲଙ୍ଘ୍ୟୋଲ୍ଲଙ୍ଘ୍ୟ ଲଙ୍କାଂ ଜଳନିଧିପରିଖାଂ ଭୂତଭୂତପ୍ରଭାବାଂ
ସର୍ବେ ଦେବାନ ଖର୍ବାନ୍ ଦଧତି ଖଲୁ ରଣେ ଗାଢସାନ୍ କ୍ଷୋଭୟିତ୍ୱା ॥

ମହା ବଳିଷ୍ଠ ସେ କପି ରାଜ ସୁଗ୍ରୀବର । ଆବର ଅଙ୍ଗଦ ବୀର ବାଳୀର କୁମର । ଅତି ମନୋହର ତହିଁ ଦେବ ଯୂଥପତି । ଅନ୍ୟସୈନ୍ୟ ପ୍ରୌଢ଼ୀକୁ ଧାରଣ କରିଛନ୍ତି ॥ ସମୁଦ୍ର ଯାହାର ହୋଇଛୁ ଗଡ଼ଖାଇ । ସଂଭ୍ରମଗ୍ରନ୍ଥରେ ପୁଣି ପ୍ରତାପେ ନିନ୍ଦଇ । କପିମାନେ ସେହି ଲଙ୍କା ଦୁର୍ଗକୁ ଡେଇଁଣ । ରଣେ ମାରନ୍ତି ଦୈତ୍ୟଙ୍କୁ ଯେତେ ବଡ଼ ସାନ । ବାନର ବଳଙ୍କୁ ଭୟ କରଣ ଅସୁରେ । ଏଣେ ତେଣେ ପଳାଇଅଛନ୍ତି ଶୀଘ୍ରତରେ ॥ ଗୋଡ଼ାଇ ବାନରେ ତାଙ୍କୁ ଧରି ଯେ ଅଟନ୍ତି । ଅସୁର ମାନଙ୍କ ମନେ ହୋଇଲା ମହାଭୀତି । ୩ ।

ପ୍ରାକାର କୂଟାନୁଘଲ ପ୍ରପାତୈର୍ନିପୀଡ଼୍ୟମାନାଃ ପଟୁଶୁଦ୍ଧିଦୈତ୍ୟାଂ
ତୈରେବ ଯୋଧାନ୍ କବଞ୍ଜୁରୁଚୈଃ ପ୍ଳବଙ୍ଗମାଃ କନ୍ଧୁକବଦ୍ଧିପନ୍ତଃ ॥

ପାଚେରୀ ପରେ ରହିଣ ସବୁ ନିଶାଚର । ଫିଙ୍ଗିଲେକ ବାନରଙ୍କୁ ଅତିକାଳ ପଥର । କପିଏ ସେହି ଶିଳାକୁ ହାତରେ ଧରିଣ । କନ୍ଦୁକ ପ୍ରାୟ ଖେଳିଲେ ସୈନ୍ୟଙ୍କ ମଧ୍ୟେଣ । ଦୈତ୍ୟଙ୍କୁ ଘେରି କପିଏ ମାଇଲେ ଯୁଦ୍ଧରେ । ଲଙ୍କାର ଉଚ୍ଚ ପାଚେରୀ ଭାଙ୍ଗିଦେଲେ ଖଟର ।୪।

ପ୍ରକାରମୂର୍ଦ୍ଧ୍ନି ମିଳିତାରଜନୀଚରେନ୍ଦ୍ରା ।
ଧାରାଧରାଇବ ଧରାଧରଶୃଙ୍ଗଭାଜଃ ।
ନାରାଚପୁଞ୍ଜମଭିତୋ ମୁଖରା ବବର୍ଷୁ-
ସ୍ତେନାପି ମତ୍ତବପୁଷୋ ନନୃତୁଃ ପ୍ଲବଙ୍ଗାଃ । ୫ ।

ପାଚେରୀ ଶିଖେ ଚଢ଼ିଣ ସେ ଲଙ୍କା ରାକ୍ଷସେ । ପୁଣି ମେଳା ହୋଇ ରଣେ ପଶିଲେ ସାହସେ ॥ ବଡ଼ବଡ଼ ପଥରମାନ ଯେ ଧରି କରେ । ଫିଙ୍ଗିଲେ ଲକ୍ଷକରଣି କପିଙ୍କ ଉପରେ । ସେହି ଶିଳାକୁ ବାନରେ ତେଇଁ ତେଇଁ ଯାନ୍ତି । ହାତେ ଧନୁଶର ଧରି ରାକ୍ଷସେ ତଡ଼ନ୍ତି ॥ ଶ୍ରାବଣ ମାସର ଜଳଧାରା ପରକାରେ । ବରଷିଲେ ବାଣମାନ ମହା ବେଗ ଭରେ । ସେହି ବାଣ ଘାତେ କପିମାନେ ବିଶେଷରେ । ମତ୍ତ ହୋଇ ନୃତ୍ୟ କଲେ ଦୈତ୍ୟଙ୍କ ଆଗରେ । ୫ ।

ଖେଲନ୍ତୋଽଖିଳବାନରା ଜଲନିଧୌ ହୃଷ୍ଟା ରଣେ ରକ୍ଷସା-
ନୁତ୍ପାଟ୍ୟାଶୁ ବିମାନମେବ ଜଗୃହୁଃ ପୃଥ୍ୱୀଂ ସମାଂ ଚକ୍ରିରେ ।
ଦୃଷ୍ଟ୍ୱା ତଂ ଚ ବିଭୀଷଣଂ ରଘୁପତେ ସାମ୍ପ୍ରତ ବାକ୍ୟଂ ତଦା
ସ୍ତୁତ୍ୱାସୌ ହନୁମାନ୍ ପେତ୍ୟ ତରସା ଦସ୍ତାପଯୁଷ୍ଟ୍ୱରଂ । ୬ ।

ଲଙ୍କା କଟକରେ ଖେଳୁଥିବା କପିମାନେ । ଜୁଝିବା ଦୈତ୍ୟମାନଙ୍କୁ ବଧି ରଣ ସ୍ଥାନେ । ଚଢ଼ିଲେ ଯାଇ ବିମାନମାନଙ୍କୁ ଧଇଲେ । ତଳେ କଟ୍ଟୁଡ଼ି ବେଗରେ ଭଗ୍ନ କରିଦେଲେ । ସମତଳ କରି ଦେଲେ ପୁଣି ଅବନୀକି । ଭୟେ ଆକୁଳିତ ବିଭୀଷଣ ସୈନ୍ୟ ଦେଖି । ବିଭୀଷଣଙ୍କୁ ଅନାଇଁ ବୋଇଲେ ଏମନ । ଆହେ ପ୍ରଭୁ ବେଗେ ଏଥୁଁ କରିପାର ନାଶ । ଆହେ ବୀରବର ରାମ ରଘୁକୁଳ ପତି । ରକ୍ଷାକର ବହନ ହେ

ଶ୍ୟାମଳ ମୂରତି । ଏମନ୍ତ ଶୁଣି ପ୍ରବେଶି ହନୂମନ୍ତ ବର ! ବୋଲେ ବାତ୍ଭୀଷଣ ନଜଗ୍ନାନକୁ ସତ୍ୱର । ଟ୍ରୟ୍ୟାନକାର ନିମିତେ ବିଳମ୍ବ ନକର ଏହି ପ୍ରକାରେ କହିଲେ ପବନ କୁମର । ୬ ।

ମହୋଦରଃ ମହାରାଜ ଲଙ୍କେଶ୍ୱର ।

ଅଗ୍ରେଷସ୍ତ ରଘୁପତେଃ ପରିଣାହଯୁକ୍ତ—

ସଂପାକପାଟଳମୁଖୀ କପିବୀର ସେନା ।

ନିଃଶେଷମାପିବତି ରାକ୍ଷସବୀର ଚକ୍ରଂ

ପ୍ରାତଃପ୍ରଭେବ ତମନସ୍ୟ ତମି ସ୍ରଚକ୍ରଂ । ୭ ।

ଏ ସମୟେ ରାବଣର ମନ୍ତ୍ରୀ ମହୋଦର । ଯାଇଁ ଜଣାଇଲା ଶୁଣ ଅହେ ଲଙ୍କେଶ୍ୱର । ଶ୍ରୀରାମର ସୈନ୍ୟ ରଣେ ଅଗ୍ରସାର ହୋଇ । ରହିଛନ୍ତି କପିବଳ କଳନା ତା ନାହିଁ । ସେହି କପିମାନେ ରକ୍ତମୁଖା ହୋଇଛନ୍ତି । ଅନ୍ଧକାରକୁ ଯେସନେ ସୂର୍ଯ୍ୟ ବିନାଶନ୍ତି ॥ ଦୈତ୍ୟ ବୀର ମାନଙ୍କୁ ତେସନେ କପିକୁଳ । ବିନାଶିବେ ଯେତେ ଅଛି ହୋଇଛନ୍ତି ଠୁଳ ।୭।

ନ୍ୟଞ୍ଚଦ୍‌ଭୂବଲୟଂ ବଲତ୍‌କ୍ଷିତିଧରଂ କ୍ଷୁଭ୍ୟତ୍‌ସମସ୍ତାର୍ଣ୍ଣବଂ

ନଶ୍ୟଦ୍ଦୈବତବଧୂ ବିଲୋଚନଜଲପ୍ରାରବ୍ଧବକ୍ଷୋଦ୍‌ଗମଂ ।

ପ୍ରୋଦଞ୍ଚତ୍‌କପିବାହିନୀପରଭରବ୍ୟାଧୂତଧୂଳିପଟ

ଚ୍ଛନ୍ନାଦିତ୍ୟପଥଂ କଥଂ ନ ବଦତଂ ତଚ୍ଚକ୍ରନିର୍ଯାଣାବଧିକଂ । ୮ ।

ଜାଣିଅଛତ ରାମର ଯୁଦ୍ଧ ଯାନବେଳେ । ଥରଥର ଭୂମଣ୍ଡଳ ଲଣି ଶନ୍ତ ହେଲେ । ଟଳି ପଡିଲେ ଯେ କମ୍ପିକମ୍ପି ଗିରିମାନେ । ଆବର ସପ୍ତସାଗର କମ୍ପିଲ ସେକ୍ଷଣେ । ଅମରନାରୀ ନୟନରୁ ବହେ ଅଶ୍ରୁଜଳ କପିଙ୍କ ପାଦ ଭାରରେ ଗଗନ ମଣ୍ଡଳ ॥ ଧୂଳି ଉଡ଼ି ପୂର୍ଣ୍ଣ ହୋଇଗଲା ତତକାଳେ । ସୂର୍ଯ୍ୟଙ୍କର ଗତି ପଥକୁ ସେ ରୁନ୍ଧି ଦେଲେ ୮।

ଜମ୍ବୁ ପ୍ରଦ୍ୟାଣେ ରଘୁନନ୍ଦନସ୍ୟ

ଧୂଳୀକଦମ୍ବାସ୍ତମି ତେ ଦ୍ୱନେଶେ ।

ଶଶିପ୍ରଭଂ ଛତ୍ରମୂଦ୍ୱୀକ୍ଷ୍ୟ ବାଲା
ସୂର୍ଯ୍ୟୋଦୟେ ରୋଦିତି ଚକ୍ରବାକୀ । ୯ ।

ଯେତେବେ ରଘୁନନ୍ଦନ ହେ ଯୁଦ୍ଧେ ବାହାରିଲେ । ଗଗନେ ଧୂଳି ମଧ୍ୟରେ ସୂର୍ଯ୍ୟ ଲୁଚିଗଲେ । ଚନ୍ଦ୍ରମା ପରାୟ ବିରାଜଇ ରାମ ଛତ୍ର । ଚକ୍ରବାକୀ ବିଚାରିଲା ହୋଇଲାକ ରାତ୍ର ॥ ସହଜେତ ସ୍ତ୍ରିରୀ ସ୍ନେହ ବିଚ୍ଛେଦ କ୍ଲୁଝିବ । ଅନେକ କାନ୍ଦିଲା ଦିବଶରେ ଥର ଥର । ୯ ।

ପୁନଶ୍ଚ

ଭ୍ରୂଭଙ୍ଗା ବିଭିଷିଦ୍ଧ୍ୱ ରଘୁପତିରବତାଦନ୍ଧ ନା ବେଦତୋଽସୌ
ତିଷ୍ଠତ୍ୟେତ୍ର ମାତୁଲସ୍ୟ ଦ୍ୱଚ ପୁନରନୁଜେ ମନ୍ତ୍ରିଣେ ଦତ୍ତକର୍ଣ୍ଣଃ ।
ବାଣେ ଦତ୍ତାର୍ଦ୍ଧ ଦୃଷ୍ଟିସ୍ତବ କପିପ ଶୁନେ ଲକ୍ଷ୍ମଣେ ସସ୍ମିତୋ ଯଃ
ସୁଗ୍ରୀବଗ୍ରୀବବାହୁଃ କୃତଚରଣଭରଃ ସାଙ୍ଗଦେ ବାୟୁପୁତ୍ରେ । ୧୦ ।

ବିରୁପାକ୍ଷ କହୁଛନ୍ତି ପୁଣି ଏ ପ୍ରକାର । ଅବର ଶୁଣିମାହେଉ ହେ ଲଙ୍କା ଈଶ୍ୱର ॥ ଅତି ଅଦଭୂତ କଉଶଳ ସେ ରାମର । ଆଖି ପିଛଡ଼ାକେ ବାନ୍ଧିଦେଲା ସିନ୍ଧୁନୀର । ବନ୍ଦଏ ଆପିଣ ନାତି ସମ୍ମୁଖରେ କହନ୍ତି ବସିଛି ବିଲୋକ ତବ ମାତୁଳଙ୍କ ଗତି । ବିଭୀଷଣେ କଥାରେ ହେ ଡେରିଛି ଶ୍ରବଣ । ବଧିବେ ତୁମ୍ଭଙ୍କୁ ମାରି ଯେଉଁ ଯେଉଁ ବାଣ ॥ ଲକ୍ଷ୍ମଣେ ବୀର ପାଶରେ ଦେଉଅଛି ଅଣି । ହସି ଦେଖୁଅଛି କରି ଅଳପ ଗ୍ରୀହାଣି । ସୁଗ୍ରୀବ ବାହରେ ବେନି କରକୁ ରଖିଛି । ହନୁ ଅଙ୍ଗଦ ଉପରେ ତା ପାଦ ବେନି ଅଛି । ୧୦ ।

ବିଭୀଷଣଃ ରାମଂ ପ୍ରତି ।

ସମୁଦ୍ର ପ୍ରସଭଂ ପୟୋଧି ଲହରୀପୁଞ୍ଜୈରିବ ପ୍ରାବୃତା
ଲଙ୍କାଂ ବାନରଯୂଥପୈ ଶଶିଶିଖାଭଙ୍ଗୀଂ ପିଶଙ୍ଗୋତ୍କୁଲୈଃ
ବୈଦେହୀବିରହବ୍ୟଥୌ କବଧୁରଃ କ୍ଲିଷ୍ଟୋଽଥ ଲଙ୍କେଶ୍ୱରଃ
ସୋଽୟଂ ସପ୍ରତି ରାଜପୁତ୍ର କଟକାଟୋପଃ ସମୁତ୍କୃଷ୍ଟତେ ।୧୧ ।

ଶ୍ରୀରାମେ କହଇ ବିଭୀଷଣ ଏ ସମୟେ । ଦେଖ ପ୍ରଭୁ ମେଳଦାଣ୍ଡି ଯୂଥ ପତି ଚୟେ ॥ ସିନ୍ଧୁ ବକ୍ଷରେ ଯେପରି ଲହରୀ ଖେଳଇ । ତେହ୍ନେ ଲଙ୍କାଗଡ଼କୁ ଅବୋର ଛନ୍ତି ରହି । ଅଗ୍ନି ଶିଖା ଯେଉଁପରି କାରେ ଦେଖାଯାଏ । ତେସନ ପିଙ୍ଗଳ ବର୍ଣ୍ଣ ଦିଶନ୍ତି କପିଏ ॥ ସୀତା ହରନ୍ତେ ମନେ ପାଇ ମହାଦୁଃଖ । ବହୁତ କଷ୍ଟ ଲଭୁଛି ଦୈତ୍ୟ ଦଶମୁଖ ॥ ସେନାପତିମାନଙ୍କ ମଧ୍ୟରେ ସେ ରହିଛି । ଦେଖ କେଡ଼େ ଗର୍ବେ କଥାମାନ ସେ କହୁଛି । ୧୧ ।

ମହୋତ୍ପାତଂ ଦୃଷ୍ଟ୍ଵା ଅରବିନ୍ଦଃ ।

ପଶ୍ୟ ଲଙ୍କେଶ୍ୱର ।

ଗଗନଂ ଗଳିତଂ ଭୂମିର୍ଗଳିତା ଗଳିତାଦ୍ଦିଶଃ ।

ସରିତଃ ପ୍ଳବଗୈଃ ପୀତାଃ ସୀତ ପତିପଦା ନୁଗୈଃ । ୧୨ ।

ଏଣେ ଅରବିନ୍ଦ ମନ୍ତ୍ରୀ ରାବଣ ପାଶରେ । କହଇ ହେ ଲଙ୍କପତି ଦେଖ ନୟନରେ । ଘୋର୍ଟ ଅବିଲୁପ୍ତି ଏବେ ମହା ଉତ୍ପାତ । ଶ୍ରୀରାମଙ୍କର ଏହି କପିଏ ସମସ୍ତ ॥ ମେଳି ହୋଇ ଗଗନ ସମୁଦ୍ର ଦଶଦିଗ । ଗିଳି ଦେଲେଣି ମନରେ ବହି ମହାରାଗ । ୧୨ ।

କ୍ୱଚିନ୍ମୀନଃ କ୍ୱଚିନ୍ମେଷଃ କ୍ୱଚିଲ୍ଲମ୍ବିତକୃତ୍ତିକା ।

କ୍ୱଚିନ୍ମୃଗଶିରଃସାର୍ଦ୍ରୈର୍ନଭୋବ୍ୟାଧଗୃହାୟତେ । ୧୩ ।

ଏବେ ଗଗନ ମଣ୍ଡଳ ଗୋଟା କେଉଁପରି । ଦିଶୁଅଛି ଦେଖ ଦେବ ଲଙ୍କ ଦଣ୍ଡଧାରୀ ॥ କାହିଁ ଅଛି ମୀନ କାହିଁ ରହିଅଛି ମେଷ । କାହିଁ ସୁଦୀର୍ଘ କୃତ୍ତିକା ଦିଶୁଛି ଲଙ୍କେଶ । ରକ୍ତ ଜରଜର ହୋଇ କାହିଁ ମୃଗଶିର । ପଡ଼ିଅଛି ବ୍ୟାଧ ଗୃହେ ଯେମନ୍ତ ପ୍ରକାର । ୧୩ ।

ରାବଣଃ ସାବଜ୍ଞଂ ।

ପ୍ରତାପଂ ସୋଢୁଂ ରବିରପି ଦଶାସ୍ୟସ୍ୟ ନ ବିଭୁ

ର୍ନିମଜ୍ଜତ୍ୟନ୍ମଜ୍ଜତ୍ୟପରଜଳଧୌ ପୂର୍ବଜଳଧୌ ।

ହରଃଶେତେ ବାର୍ଦ୍ଧୌ ନିବସତି ହିମାଦ୍ରୌ ପୁରହରୋ
ବିରଞ୍ଚିଃ କିଂଚାପି ସ୍ୱଜନିକମଲଂ ମୁଞ୍ଚତି ନ ବା । ୧୪ ।

ମନ୍ତ୍ରୀଙ୍କ ବାଣୀକି ମନେ ଗୋଚରନା ନ କର । ମହାଗର୍ବେ କହଇ ସେ ରାବଣ ଏପର । ମୋର ପ୍ରତାପକୁ ସୂର୍ଯ୍ୟ ସହି ନ ପାରଣ । ପଶ୍ଚିମ ସିନ୍ଧୁ ଜଳରେ ହୋଇଲା ମଗନ ॥ ତହୁଁ ଜଳେ ବୁଡ଼ି ବୁଡ଼ି ପୂର୍ବ ଦିଗରେ । ଉଠି ଦେଖା ଦେଲା ଏବା ମୋହର ଭୟରେ ॥ ପୁଣି ମୋ ତେଜକୁ ବିଷ୍ଣୁ ସହି ନ ପାରିଲା । କ୍ଷୀର ସାଗର ଭିତରେ ସେ ଶୋଇ ପଡ଼ିଲା ॥ ଅବର ଯେ ସଦାଶିବ ମୋହର ତେଜକୁ । ସହି ନ ପାରି ଅଛିଲା ସେ ଗିରି ରାଜକୁ । ବ୍ରହ୍ମାର କଥା କି ଅବା କହିବଇଁ ମୁହିଁ । ନିଜଘର ଛାଡ଼ଣି ସେ ଗଲାକି ପଳାଇ । ୧୪ ।

ଇତ୍ୟଭିହିତେଷୁ ରାକ୍ଷସେଷୁ ଭୋ ଭୋ ମନ୍ତ୍ରିଣଃ ପ୍ରବୋଧ୍ୟତାମସ୍ମ ମନୁଜନ୍ମା କୁମ୍ଭକର୍ଣ୍ଣଃ । ମନ୍ତ୍ରିଣୋ ଯଥାଦିଶତି ଦେବଃ । ୦ ।

ଦୈତ୍ୟଙ୍କ ବଚନ ଶୁଣି ବୋଲେ ଲଙ୍କପତି । ମୁଁ ଯାହା କହୁଛି ଶୁଣ ଅହେ ସର୍ବ ମନ୍ତ୍ରୀ । କୁମ୍ଭକର୍ଣ୍ଣ ଭାଇ ମୋର ଅଛି ନିଦ୍ରା ଭରେ । ମୋ ନିକଟେ ଅଣାଇବାକୁ ଯାଇଣ ସତ୍ୱରେ । ଆଦେଶ ମାତ୍ରକେ ମନ୍ତ୍ରୀ ମାନେ ଚଳିଗଲେ । କୁମ୍ଭକର୍ଣ୍ଣ ଶୋଇ ଥିବା ସ୍ଥାନରେ ମିଳିଲେ । ୦ ।

ରାବଣଃ ।

ନ୍ୟକ୍କାରୋହ୍ୟୟମେବ ମେ ଯଦରୟସ୍ତତ୍ରାପ୍ୟସୌ ତାପସଃ
ସୋଽପ୍ୟତ୍ରୈବ ନିହନ୍ତି ରାକ୍ଷସକୁଳଂ ଜୀବତ୍ୟହୋ ରାବଣଃ ।
ଧିକ୍ ଧିକ୍ ଶକ୍ରଜିତଂ ପ୍ରବୋଧିତବତା କିଂ କୁମ୍ଭକର୍ଣ୍ଣେନ ବା
ସ୍ୱର୍ଗଗ୍ରାମଟିକାବିଲୁଣ୍ଠନ ବୃଥୋଚ୍ଛୂନୈଃ କମେଭିର୍ଭୁଜୈଃ

ଏମନ୍ତେ ମନ୍ତ୍ରୀମାନଙ୍କୁ ପଠାଇ ଦେଇଣ । ମନେ ବିଚାରଇ ବସି ଦୁଷ୍ଟ ଲଙ୍କରାଣ । ତ୍ରିଭୁବନ ବିଜୟୀ ମୁଁ ରାବଣ ମୋ ନାମ । ଧିକ ମୋର ବୀରପଣ ଧିକ ପରାକ୍ରମ । ମୋର ବହୁଶତ୍ରୁ ରହିଛନ୍ତି ଏସଂସାରେ ।

ଓଳେ ମାତ୍ର ସେଥିକ ମୁଁ ଖାତର ନ କରେ ॥ କିନ୍ତୁ ଉପାଠାଏ ମୋତେ ହୋଇଅଛି ବଇରି । ସେହି ପୁଣି ବଂଶମୋର ପକାଉଛି ମାରି ॥ ଜୀବନେ ଥାଇ ତା ଦେଖୁଅଛି ମୋ ନୟନ । ଏଥିଁ ଅଧିକ କି ଅଛି ଆଉ ଅପମାନ । ଧିକ ଅରେ ମେଘନାଦ ବୀରପଣ ତୋର । କି କରିବ ଅବା ଉଠି କୁମ୍ଭକର୍ଣ୍ଣ ବୀର । ଯେ ହାତେ ସ୍ୱର୍ଗକୁ ମୁହିଁ କରିଥିଲି ଲୁଟ । ସେହି ହାତ ଥାଇ ମୋ ଏବେ କି କରୁଛନ୍ତି । ୧ ।

( କୁମ୍ଭକର୍ଣ୍ଣସମୀପଂ ଗତେଷୁ ମନ୍ତ୍ରିଷୁ କୁମ୍ଭକର୍ଣ୍ଣପ୍ରିୟା )
ବିରମ ବିରମ ତୂର୍ଣ୍ଣଂ କୁମ୍ଭକର୍ଣ୍ଣସ୍ୟ କର୍ଣ୍ଣ—
ମଖିଳ ତବ ନିନାଦୈ ରଷ ନିଦ୍ରାଂ ଜହାତି ।
ଇତି କଥୟତି ନ ଚେତ୍ ପ୍ରେୟସୀ ପ୍ରେକ୍ଷ୍ୟମାଣା
ଦଶକଗଲକରତ୍ରେ ହସ୍ତିୟୂଥଂ ପ୍ରବିଷ୍ଟଂ । ୧୬ ।

କୁମ୍ଭକର୍ଣ୍ଣର ମନ୍ଦିରେ ଯୁବତୀ ଏ ଥିଲା । ମନ୍ତ୍ରୀଙ୍କର ଆଗମନ ଜାଣି ଚେଇଁ ଉଠିଲା । କୁମ୍ଭକର୍ଣ୍ଣ କର୍ଣ୍ଣେ ଯାଇଁ ଇହାଲି ଝୁଠେଇ । ଉଠ ଉଠ ବୀର ମନ୍ତ୍ରୀମାନେ ଡାକୁଛନ୍ତି । ତାହା ଦେଖିଣ କହଇ ବୀରମନ୍ଦୋଦରୀ । ଡାକନା ଗୋ ଆଉ ତୁମ୍ଭେ ହେ ଯୁବତୀବର । ଯାର ପାର୍ଶ୍ୱେ ହାତୀମାନେ ପଶି ପ୍ରାଣେ । ପଶିଯାଉଛନ୍ତି ଦେଖି ଲାଗୁଅଛି ଭୟେ । ନାକକାନ ରନ୍ଧ୍ରେ ପୁଣି ବାହାର ପଡ଼ନ୍ତି । ତୁମ୍ଭ ଏ ଡାକକୁ କି ସେ ଶୁଣିବ ତତକ୍ଷଣ ଅବର ତାର କି ଏହି ଘୋରନିଦ୍ରା ଏବେ । ଭଗ୍ନ ହେବ ବୋଲିଣ ବିଚାରୁଛ କି ତୁମ୍ଭେ । ୦୬ ।

ନିଦ୍ରାଂ ତଥାପି ନ ଜହୌ ଯଦା କୁମ୍ଭକର୍ଣ୍ଣଃ
ଶୀକଶୃଙ୍ଗବୃନ୍ଦରଜନୀରଜନୀମିମୀନାଂ ।
ଗନ୍ଧର୍ବଯକ୍ଷସୁରସିଦ୍ଧବରାଙ୍ଗନାନାଂ
ମାକର୍ଣ୍ଣ୍ୟ ଗୀତମମୃତଂ ପରମଂ ସନାଦଃ । ୧୭ ।

ଏମନ୍ତ କହି ମନ୍ତ୍ରୀଏ ଡାକିଲେ ଅନେକ । ମହାଗର୍ଜନ ଛାଡ଼ିଲେ ହାତୀ ଘୋଡ଼ାଯାକ ॥ ତେବେ ନିଦା ନ ଭାଙ୍ଗିଲା ସେ କୁମ୍ଭକର୍ଣ୍ଣର ।

କିନ୍ନରାଙ୍କି ମନ୍ତ୍ରୀ ଏ ଅଣିଲେ ତତପର ॥ ଗନ୍ଧର୍ବ ଯକ୍ଷ ଯେ ସୁର ସିଦ୍ଧ ନାରୀ କ୍ରିଲେ । ନିଦ୍ରା ଭଙ୍ଗାଇବା ପାଇଁ ସେଠାକୁ ଅଇଲେ । ଅପସ୍-ସ୍ରାଏ ଅସି ପୁଣି ନୃତ୍ୟ ଗୀତ କଲେ । ଅତିସୁମଧୁର ମୃଦୁସ୍ୱରେ ଦୈତ୍ୟ ଅଳେ । ସଙ୍ଗୀତ ଗାଇଲେ ତେବେ ସେ କୁମ୍ଭକର୍ଣ୍ଣର । ନିଦ୍ରା ଭଙ୍ଗ ନ ହୋଇଲା ଶୋଇଅଛି ବୀର । ୧୭ ।

ଦତ୍ତାନି ତପ୍ତତୈଲାନି କୁମ୍ଭକର୍ଣ୍ଣସ୍ୟ କର୍ଣ୍ଣୟୋଃ ।
ତତୋ ଜନିଦ୍ର ଚକ୍ଷୁଃ ସନ୍ନୁତ୍ଥିତୋ ଯଥୁ ରୋଦ୍ଧତୈଃ । ୧୮ ।

ପୁରୋଧାମାନେ ଅଣାଇ ତପତତେଲ । ଦୈତ୍ୟର କର୍ଣ୍ଣରେ ଢାଳି ଦେଲେ ତତକାଳ ॥ ତହୁଁ ନିଦ୍ରାରୁ ଉଠିଲା ବୀର ଚକ୍ଷୁମଳି । ଏଣିକି ତେଣିକି ଅନାଇଲା ମହାବଳୀ । ୧୮ ।

ଉତ୍ଥାୟ କୁମ୍ଭକର୍ଣ୍ଣଃ ।
ସୁପ୍ତୋତ୍ଥିତଃ କବଳୟନ୍ ଘନଶୈଳଜାଲଂ
ଗ୍ରୀବାସ୍ଥଂ ପଶ୍ୟବନ୍ନପି କୁମ୍ଭକର୍ଣ୍ଣଃ ।
ତୃପ୍ତିଂ ଜଗାମ ନ ତତୋ ଭୁବିଦତ୍ ସୁରାସ୍ତା
ଗଙ୍ଗାଂ ପିବାମି ଯମୁନାଂ ସହ ସାଗରେଣ । ୧୯ ।

ତା ଦେଖି ମନ୍ତ୍ରୀଏ ତହୁଁ ଶୀଘ୍ର ଚଳିଗଲେ । ଗିରି ପ୍ରମାଣରେ ମାଂସ ଗୁହାଇ ଅଣିଲେ ॥ କୁମ୍ଭକର୍ଣ୍ଣ ତାହାସବୁ ବେଗେ ଖାଇଦେଲା । ମଦ୍ୟଭାଣ୍ଡ ଦ୍ୟନ୍ତେ ତାହା ଅନନ୍ଦେ ପିଇଲା ॥ ତେବେ ସନ୍ତୋଷ ହୋଇଲା ବୀର କୁମ୍ଭକର୍ଣ୍ଣ । ହୋଇଲା ଚିହ୍ନିବା ସ୍ଥିର ମତ ସମାନ ॥

ଜନିଦ୍ରଃ କୁମ୍ଭକର୍ଣ୍ଣୋ ରାଜସମିପମାଗତ୍ୟ
ଜହୁନ୍ତି ପୌଲସ୍ତ୍ୟ ପାଦାଃ ।

ଅନିଦ୍ରାରେ ଢୁଲାଇ ଢୁଲାଇ ସେ ଦଇତ । ରାବଣ ସମୁଖେ ଚଳିଗଲା ତୁରିତ ॥ ଦୈତ୍ୟରାଜର ଚରଣେ ନମସ୍କାର କଲା । ଜୟ ଜୟ ଲଙ୍କେଶ ବୋଲିଣ ଡାକଦେଲା । ୦ ।

ଇତ୍ୟନ୍ତରେ ରାମଃ ।

ଉପସ୍ଥିତଂ ବୀକ୍ଷ୍ୟ ତମାହ ରାମୋ
ଲଙ୍କାଶିରୋନିର୍ମିତଜାନୁ ଦଘ୍ନଂ ।
ଭୋ ମାରୁତେ ଯତ୍ନମୂଦସ୍ତମେତତ୍
କିଂ ନେତ୍ୟବାଦୀତ୍ ସ ଚ କୁମ୍ଭକର୍ଣ୍ଣଃ । ୨୦ ।

ଏହି ସମୟରେ ରଘୁନାଥ ଦେଖିଲେ ଚାହିଁ । କୁମ୍ଭକର୍ଣ୍ଣ ଶିର ଗଗନକୁ ଅଛି ଛୁଇଁ । ତା ଜାନୁ ମୂଳେ ରହିଛି ସେହି ଲଙ୍କାପୁରୀ । କପିଗଣ ଆଚମ୍ଭିତ ହେଲେ ଦେଖିକରି ॥ ପୁଚ୍ଛିଲେ ହନୂମନ୍ତଙ୍କୁ ପ୍ରଭୁ ଦାଶରଥି । ଏକ ଅଦ୍ଭୁତ ଦେଖାଯାଏ ହେ ମାରୁତି ॥ ଜନ୍ତୁକି ହୋଇଲା କାଳପୁରୁଷ ଏ ଉଦେ । ମୋ ମନ ସଂଶୟ ନାଶ କହିଦେଇ ପଦେ ॥ ଶ୍ରୀରାମଙ୍କ ବଚନେ କହଇ ହନୁବୀର । ଏ ଯେ କୁମ୍ଭକର୍ଣ୍ଣ ସାନ ଭାଇ ରାବଣର । ୨୦ ।

କୁମ୍ଭକର୍ଣ୍ଣଃ ।

ଯଦ୍ୟପି କ୍ଷିତିପାଳାନାମାଜ୍ଞା ସର୍ବଂସଗା ସ୍ମୃତଂ ।
ତଥାପି ଶାସ୍ତ୍ରଦୀପେନ ଚରନ୍ତେ୍ୟବ ମତଃ ସତାଂ । ୨୧ ।

କୁମ୍ଭକର୍ଣ୍ଣ ବୋଇଲେ ଶୁଣ ଅହେ ଲଙ୍କେଶ୍ୱର । ଯଦ୍ୟ କହ ରାଜା-ଆଜ୍ଞା ଅଟଇ ପ୍ରମାଣ । କିନ୍ତୁ ଶାସ୍ତ୍ର ଅନୁଯାୟୀ ସମସ୍ତେ ଚଳନ୍ତି । ସାଧୁ-ମାନେ ଶାସ୍ତ୍ରରୁ ମାନସ ନ ଟଳାନ୍ତି । ୨୧ ।

ରାବଣଃ ।

ଇତି ଭ୍ରାତୃବଚଃ ଶ୍ରୁତ୍ୱା ତଥେତ୍ୟାହ ଦଶାନନଃ ।
ଶାସ୍ତ୍ରନିଃସଂଶୟା ବାନ୍ତି ସତଃ କସ୍ୟ ନ ବଲ୍ଲଭାଃ । ୨୨ ।

ଭାଇର ବଚନ ଶୁଣି କହେ ଦଶଶିର । ଅନ୍ୟଥା ନୁହଇ କହିଲୁ ତୁ ଯେଉଁ ଗିର । ମନ୍ତ୍ର ସଂଶୟନ ଜନଙ୍କୁ ଶାସ୍ତ୍ର ବିନାଶଇ । କେଉଁ ସାଧୁ ହେଲେ ପ୍ରିୟ ବା ସେ ନୋହି । ୨୨ ।

ରାବଣଃ ।

ଉତ୍ସେପ୍ସ୍ୟତି କୀଟକେନ୍ଦ୍ର ଶିଖରଶ୍ରେଣୀବଦ୍ଧଷ୍ଟାଙ୍ଗଦେ
ରେଭିଃ ପୀନତରୈଃ ସ୍ୱବାହୁରଜସ୍ୟପ୍ରାପ୍ତହସ୍ତଗତୈର୍ଭୁଜୈଃ ।
ସଂଗ୍ରାମେ ମମ କୁମ୍ଭକର୍ଣ୍ଣବିଜୟୀ ତ୍ୱଂ ହ୍ୟଭିକାଙ୍କ୍ଷିତୈଃ
ପ୍ରତ୍ୟାଶା ଶିଥିଲୋଽସ୍ମ୍ୟହଂ ତ୍ରଜ ପୁନଃ ସ୍ୱାପାୟ ନିଦ୍ରାଲୟଂ ।୨୩

ଏବେ ଯା କହୁଛି ମୁହିଁ ଶୁଣ ଭାଇ ମୋର । ଅନୀତରେ ରହି ମୁଁ ସାଧିଛି ତ୍ରିପୁର । ଏହି ଭୁଜବଳରେ କୈଳାସ ପର୍ବତକୁ । ତୋଳି ଅଛି ନ ଜାଣୁ କି ତୁହି ସେ କଥାକୁ । ଦେବ ଦାନବେ ସକଳେ ଯୁଦ୍ଧେ ହାରିଛନ୍ତି । ମୁଁ ଜାଣେ ମୋ ସମରେ ଜଣେ କେ ନାହାନ୍ତି । ରଣେ ବିଜୟୀ ତୋ ଭାଇ କୁମ୍ଭକର୍ଣ୍ଣ ବୀର । ଆଶା କରିଥିଲି ଶତ୍ରୁ ବଧିବ ନିକର । ମୋର ସେହି ଆଶା ଏବେ ଏଥି ପୂର୍ଣ୍ଣ ହେଲା । ନିଦ୍ରା ମନ୍ଦିରେ ଶୁଅ ଯାଇରେ ଏଥିଁ ଫଳା । ୨୩ ।

କୁମ୍ଭକର୍ଣ୍ଣଃ ।

ସୀତାପ୍ରିୟଂ ଚ ଦଳିତେଶ୍ୱରକାର୍ମୁକଂ ଚ
ବାଳକଦ୍ରୁହଂ ଚ ରଚିତାମ୍ବୁଧିବନ୍ଧନଂ ଚ ।
ରକ୍ଷୋଘ୍ନଂ ଚ ବରଦଂ ଚ ବିଭୀଷଣସ୍ୟ
ରାମଂ ନିହତ୍ୟ ଚରଣୌ ତବ ବନ୍ଦୟାମେ । ୨୪ ।

ତାଙ୍କୁ ପ୍ରତିଜ୍ଞା କରଣ କୁମ୍ଭକର୍ଣ୍ଣ ଭଣେ । ମୁଁ ଯାହା କହୁଛି ଅରେ ଶୁଣନ୍ତୁ ଶ୍ରବଣେ । ସୀତା ମାନସରଞ୍ଜନ ଗରବ ଗଞ୍ଜନ । ବାଲି ନିସୂଦନ ହର କୋଦଣ୍ଡ ଭଞ୍ଜନ । ସିନ୍ଧୁଜଳେ ସେତୁ ବାନ୍ଧିଅଛି ଯେଉଁ ବୀର । ରଣେ ଅସୁର କୁଳକୁ କରୁଛି ସଂହାର । କହୁଛି ବିଭୀଷଣକୁ ଲଙ୍କା ରାଜ୍ୟ ଦେବ । ଦେଖନ୍ତୁ ଭଙ୍ଗି ମୋହର ସେହି ରାଘବ । ଆଜ ନିଶ୍ଚେ ସେହି ରାମ ଶିର କାଟିକରି । ବନ୍ଦିବି ହେ ଦଶମାଥ ଚରଣେ ତୁମ୍ଭର । ୨୪ ।

ଦେବ ତ୍ୱଂ ସ୍ୱପଷେନ୍ଦ୍ରଃ ପରହରତୃଣବଦ୍ଧୋ ଦ୍ୱିଷଃ ଶୋକଶଲ୍ୟଂ
ହତ୍ୱା ତଦ୍ଦ୍ୱେଷିବୃନ୍ଦଂ କଲୁଷମହର୍ମପି ଯାଲୟାମ୍ୟଦ୍ୟ ରକ୍ତୈଃ ।
କୋ ରାମୋ ଲକ୍ଷ୍ମଣୋ ବା କଇହ କପିପତିଃ କୋଽଙ୍ଗଦଃ କୋ ହନୂମାନ୍
କଃ କାଳଃ କୋ ବିଧାତା ମୟି ଚଳତି ରଣେ ରୋଷଣେ କୁମ୍ଭକର୍ଣ୍ଣେ

ଶୋକ ପରିହର ଅହେ ଲଙ୍କା ମହୀପାଳ । ତୃଣ ପ୍ରାୟେ ଶତ୍ରୁଙ୍କୁ ମୁଁ ଜାଣଇ କେବଳ । ଶତ୍ରୁମାନଙ୍କୁ ଆଜ ମୁଁ ରଣେ ସଂହାରିବ । ରୁଧିରେ ଧୋଇ ପାପର ଭାର ଛଡ଼ାଇବ ॥ ଜାଣିଛନ୍ତି ମୋ ନାମ ବୀର କୁମ୍ଭକର୍ଣ୍ଣ । ଯେବେ କ୍ରୋଧ ବହେ ମୁହିଁ ଅରମ୍ଭି ବାରଣ ॥ ଶ୍ରୀରାମ ଲକ୍ଷ୍ମଣ କିବା ସେ ସୁଗ୍ରୀବ କପି । କି ଅବା ହନୂ ଅଙ୍ଗଦ ଶମନ ଅଦ୍ୟାପି ॥ ଧାତା ଅବା କାଳ କେହୁ ମୋର ସମ୍ମୁଖରେ । ରହି ନ ପାରିବେ ମୃତ୍ୟୁ ଲଭିବେ ସତ୍ୱରେ । ୨୫ ।

ବାନରମୁପାଗତ୍ୟ ସ ଷେଦଂ

କୁମ୍ଭକର୍ଣ୍ଣଃ ।

ଅୟି କପିକୁଳମଲ୍ଲାଃ କିଂ ମୁଧା ଜାତଭୀତା
ନହି ଜଗତି ଭବଦ୍ଭିର୍ଯୁଧ୍ୟତେ କୁମ୍ଭକର୍ଣ୍ଣଃ ।
ନ ହି ଜଳଧରପୋତୋ ଲେଢ଼ି କୁଲ୍ୟାମକୁଲ୍ୟା
ମପି ମଶକକଦମ୍ବଂ କେଶରୀ କିଂ ପିନଷ୍ଟି । ୨୬ ।

ଏହା କହି କୁମ୍ଭକର୍ଣ୍ଣ ରଣରେ ପଶିଲା । ଯୁଦ୍ଧ ଛାଡ଼ି କପିମାନେ ଭୟରେ ଭାଜିଲା ॥ ହୋଇ ପଳାଇଲେ ଯେତେ ଥିଲେ ସେ ସରବେ । କୁମ୍ଭକର୍ଣ୍ଣ ବୋଇଲା ଯେ ଅତ୍ୟନ୍ତ ଗରବେ । ପଳାଅନା ପଳାଅନା ରେ ବାନର ଗଣେ । ତୁମ୍ଭେତରେ ଅଛ ପଶୁଜାତି ବୁଦ୍ଧିହୀନ । ତୁମ୍ଭ ତୁଠେଲ୍ କାହୁଁ ଯୁଝିବ ଏ କୁମ୍ଭକର୍ଣ୍ଣ । ଅଳ୍ପଜଳେ ନଦୀ ପୋଖରୀ ହୁଏ କି ପୂର୍ଣ୍ଣ ॥ ମଶା ପକ୍ଷୀକୁ କେବେହେଁ ମାରଇ କି ସିଂହ । ପଳାଇ ନଯାଅ ତୁମ୍ଭେ ମାନେ ରହ ରହ । ୨୭ ।

ସ୍ରମ୍ଧରା

ନାହଂ ବାଲୀ ସୁବାହୁର୍ନ ଖରବିଶିରସୌ ଦୂଷଣସ୍ତାଡ଼କାହଂ
ନାହଂ ସେତୁଃ ସମୁଦ୍ରେ ନ ଚ ଧନୁରପି ଯତ୍ତ୍ର୍ୟମ୍ବକସ୍ୟ ତ୍ରୁଟ୍ୟାହଂ ।
ରେ ରେ ରାମ ପ୍ରତାପାନଳକବଳମହାକାଳମୂର୍ତ୍ତିଃ କଳ ହଂ
ଧୀରାଣାଂ ମୌଳିଶଳ୍ୟଃ ଅମରଭ୍ରମକରଃ ସଙ୍ଗତଃ କୁମ୍ଭକର୍ଣ୍ଣଃ ।

ଶ୍ରୀରାମେ ଅନାଇଁ ପୁଣି କୁମ୍ଭକର୍ଣ୍ଣ କହି । ବାଲୀ ପରି ରାମ ମୋତେ ନ ମଣରେ ତୁହି । ମୁହିଁ ନୁହଇଁ ଖର ଦୂଷଣ ତ୍ରିଶିର । ନୁହେଁ ତାଡ଼କା ଅବର ସୁବାହୁ ଅସୁର । ନୁହଇ ସମୁଦ୍ର ଅବା ଶିବର କାର୍ମୁକ । ଅରେରେ ମାନବ ରାମ ତୋ ପ୍ରତାପ ଦେଖ ॥ ଏହି ପ୍ରତାପ ଅନଳେ ଏକା ମୁଁ କେବଳ । ମହାକାଳ ମୂର୍ତ୍ତିରେ କରିଛି କବଳ ॥ ବୀରବୀର ମୋ ନାମ ଅଟେ କୁମ୍ଭକର୍ଣ୍ଣ । ଯୁଦ୍ଧ ପ୍ରାଙ୍ଗଣେ ଚିହ୍ନିବୁ ମୋତେ ରେ ଅଧମ । ୨୭ ।

ବାଦ୍ଧଃ ତବଦ୍ଧସେନାଗ୍ରସ୍ଥ ବୀରଂ କପୀନ୍ଦ୍ରଂ
ପରିଦ୍ଧଗୁରୁଭୁଜାଭ୍ୟାଂ ଗାଢ଼ମା ପୀଡ଼୍ୟ ଧୃତ୍ୱା ।
ନିରଗମଦତତୂର୍ଣ୍ଣଂ ତୂର୍ଣ୍ଣସୂନ୍ ପୂର୍ଣ୍ଣଦର୍କଂ
କପିକୁଳମଥ ଲଙ୍କାସମ୍ମୁଖଂ କୁମ୍ଭକର୍ଣ୍ଣଃ । ୨୮ ।

ଏହା କହି କୁମ୍ଭକର୍ଣ୍ଣ ଯୁଦ୍ଧ ଯେବେ ଗଲା । କପି ଆଦେ ତଜ୍ଜ୍ଵାଗ ସମ୍ପୂର୍ଣ୍ଣ ଦେଖିଲା । ପରଘ ଧରି ମାଇଲା ଅନେକ ବାନର । ସମ୍ମୁଖରେ ଥିବା ଯୂଥପତି ଯେତେ ବୀର ॥ ସୁଗ୍ରୀବ ବୀରକୁ ପୁଣି ପଟରେ ଭେଟିଲା । ଦୁଇ ଭୁଜେ ଦୃଢ଼େ ତାକୁ ଯାକଣ ଧଇଲା ॥ ଚଞ୍ଚଳେ ସେ କପିରାଜ ସୁଗ୍ରୀବ ଘେନିଣ । ନିଜ ରାଜଧାନୀକି ଚଳିଲା କୁମ୍ଭକର୍ଣ୍ଣ ।

ସ୍ୱଗତଂ ।

ଯଦର୍ପିତଂ ଗୃଦ୍ୟରଣେନ ବାଳିନା
ବଧାୟ ଦୋର୍ମୂଳବଶଂ ଦଶାନନଂ ।

ତଦୁଦ୍ଧୃତଂ ଶଲ୍ୟମନେନ ମାନନୋ
ନିବେଶ୍ୟ କଷାକୁହରେ କପୀଶ୍ୱରଂ । ୨୮ ।

ଏଥେ ଯାନ୍ତେ କୁମ୍ଭକର୍ଣ୍ଣ ପାଞ୍ଚଇ ମନରେ । ବାଳୀ ରଜା ରାବଣଙ୍କୁ ପ୍ରଥମ ଯୁଦ୍ଧରେ । କାଖେ ଜାକି କରି ଅତ ଲଙ୍କାଦେଇଥିଲା । ରାଜାଙ୍କ ବକ୍ଷରେ ତାହା ଶଲ୍ୟ ପ୍ରାପ୍ତ ଥିଲା ॥ ସେହି ବାଳୀର ଭାଇଟି ଏ ସୁଗ୍ରୀବ ବୀର । ଆଜ କାଖରେ ଏହାଙ୍କୁ ଜାକିଲି ସତ୍ୱର । ସେହି ମାନ ରାଜା ରାବଣଙ୍କ ବକ୍ଷଶଲ୍ୟ । ଉଦ୍ଧାରିଲି କରିଛୁ ମୁଁ ଉତ୍ତମ କୌଶଳ ।୨୯।

ଗଗନମୁତ୍ପତ୍ୟ ।

ସୁଗ୍ରୀବଂ ବାହୁମୂଳେ ପ୍ଲବଗବଲପତଂ କଣ୍ଠଦେଶେ ଭ୍ରୁକୁଟେନ
ଷିପ୍ତ୍ୱା ନିଷ୍ପୀଡ଼୍ୟ ଗାଢ଼ଂ ରଜନିଚରେପୁରଂ ସଦଧାନୋ ଜଗାମ ।
ସାନନ୍ଦଂ କୁମ୍ଭକର୍ଣ୍ଣେ ପ୍ରଦନୁ କପିଭଟ୍ଟେସ୍ତସ୍ୟ ତୂର୍ଣ୍ଣଂ ସକର୍ଣ୍ଣଂ
ଘ୍ରାଣଂ ଜଗ୍ଧ୍ୱା ଜଗାମ ସ୍ୱଶିବିରମୁଦରଂ କର୍ଣ୍ଣରେଣୋଭିହତ୍ୟ । ୩୦ ।

ଏ ପ୍ରାପ୍ତ ଯେ କୁମ୍ଭକର୍ଣ୍ଣ ମନରେ ପାଞ୍ଚିଲା । ତତ୍କ୍ଷଣେଟେ ଅକାଶ ମାର୍ଗକୁ ଉଠିଗଲା । କାଖେ ସୁଗ୍ରୀବଙ୍କୁ ଜାକି କରି ଚେତାହୀନ । ନିଜ ଭୁବନେ ଚଳିଲା କାହେ ପକାଇଣ । ଅତଂନ୍ତ ଆନନ୍ଦେ ଯାଏ କୁମ୍ଭକର୍ଣ୍ଣ ବୀର । ଏ ଅନ୍ତେ ଚେତନା ପାଇ ସେ କପିଈଶ୍ୱର । କୁମ୍ଭକର୍ଣ୍ଣର-ପେଟକୁ କହୁଣୀ ଅଘାତେ । ପୁଣି ନାକ କାନକୁ ତା କାମୁଡ଼ିଲା ଦନ୍ତେ । ଦୈତ୍ୟର ନାକ କାନକୁ ଘେନି ସେ ସୁଗ୍ରୀବ । ଯହିଁ ସୈନ୍ୟଛନ୍ତି ତହିଁ ପ୍ରବେଶିଲା ସବ ।

ପୁନରାଗତଃ କୁମ୍ଭକର୍ଣ୍ଣଃ ।

ନିଃଶ୍ରେଷ୍ୟ ତ୍ରୁଜ୍ୟ ବାହ୍ୱଂ ନୟନକମଳଯୋର୍ଦ୍ଦ୍ୱନୋବାରି ଦତ୍ତ୍ୱା
କୃତ୍ୱା ଲଙ୍କୋପଗୂଢ଼ଂ ସକରୁଣମପୁନର୍ଭବ ମାତ୍ୱା ନିଶୂଳଂ ।
କ୍ରୋଧାନ୍ଧଃ କାଳମୂର୍ତ୍ତିଃ ପ୍ରଂ ସୁହୃତବହାଙ୍ଗାରନେତ୍ରୋ ବିକର୍ଣ୍ଣ
ଶ୍ଛିନ୍ନଘ୍ରାଣୋଽବତୀର୍ଣ୍ଣଃ ପୁନରପି ସମରପ୍ରାଙ୍ଗଣେ କୁମ୍ଭକର୍ଣ୍ଣଃ ।୩୧

ତହୁଁ ଦୈତ୍ୟ ଦୀର୍ଘ ନିଶ୍ୱାସକୁ ଯେ ଛାଡ଼ିଲା । ପୁଣି ତା ନୟନ ଯୁଗୁଁ ଅଶ୍ରୁ ଗଡ଼ିଗଲା ॥ ସେ ଲୋତକ ଜଳେ ନିଜ ଅଙ୍ଗକୁ ବୁଡ଼ାଇ । କ୍ରୋଧ ହୋଇ ତ୍ରିଶୂଳ ଧରି ପୁଣି ସେହି ॥ ପାଞ୍ଚ ସମ ଆଦ୍ୟକର ସେ କପିକୁଳକୁ । ନ ମାଇଲେ ନ ଆସିବ ଏ ଲଙ୍କାଅଳକୁ । ଏହି ପ୍ରତିଜ୍ଞାରେ ଲଙ୍କାକୁ ଯେ ସ୍ପର୍ଶ କଲା । ପୁନଶ୍ଚ କ୍ରୋଧରେଯୁକ୍ତ କାରଣେ ଆସିଲା ॥ ପ୍ରଳୟ ଅଗ୍ନି ଅଙ୍ଗାର ପରି ତା'ର ବର୍ଣ୍ଣ । ବାଲକଣେ ଧାଳେ ଛାଡ଼ିଥିବା ନାଶା କର୍ଣ୍ଣ । କାଳଯମ ପରି ଅତି ଭୀଷଣ ଦିଶଇ । ଯୁଦ୍ଧ ଷେତ୍ରରେ ମିଳିଲା ତମ ତମ ହୋଇ । ୩୧ ।

ତଂ ଦୃଷ୍ଟ୍ୱୈବ ପ୍ରବିଷ୍ଟା ଗିରିବରକୁହରଂ କେସ୍ତଚ୍ଚୋଃ କପୀନ୍ଦ୍ରାଃ
କେଚିତ୍ପ୍ରାଦାନ୍ତବାନ୍ତପ୍ରଚଳିତପବନାନ୍ଦୋଳିତାଃ ଖେ ଚରନ୍ତି ।
ଚକ୍ରେଚିଦ୍ଦୋର୍ଦଣ୍ଡଚଣ୍ଡଭ୍ରମଣନିପତିତାଃ ଶୋଣିତାନୁଦ୍‌ ଗିରନ୍ତି
ଦ୍ରାଣୋନ୍‌କେଚିତ୍‌ ପ୍ରବୀରାଃ ଦଥମପି ଦଧତି ସ୍ଥିତଂ ଜ୍ଞାତଭିଜ୍ଞାଃ ॥

ବଡ଼ ବଡ଼ ବାନରେ ତାହାକୁ ଦେଖିକରି । ଗିରି ଗୁହାରେ ଲୁଚିଲେ ମନେ ଭୟ କରି । କେହିବା କୁମ୍ଭକର୍ଣ୍ଣର ଗତି ପବନରେ । ଆକାଶେ ଉଡିଲେ ଧୂଳି ପରି ପରକାରେ ॥ କେହିବା କୁମ୍ଭକର୍ଣ୍ଣର ଭୁଜ ଧକା ଖାଇ । ରୁଧିର ବାନ୍ତ କଲେ ଯେ ମସ୍ତକ ଘୂରାଇ । ଦନ୍ତ-ମରା ହୋଇଛନ୍ତି କେତେ କପିବଳ । ଧରିଛନ୍ତି ମାତ୍ର କଣ୍ଠେ ଜୀବନ କେବଳ । ୩୨ ।

ନୃତ୍ୟିଷ୍ୟ ଶୂଳମଜସ୍ରଂ ତ୍ରିପୁରାନ୍ତକସ୍ୟ
ସଂହାରକେତୁମିବ କୋଟିତଡ଼ିତ୍‌ ପ୍ରଭଂ ଚ
ଘୋରଂ ଜ୍ୱଳନ୍ତମୁରସି କ୍ଷିପତି ସ୍ମ ରକ୍ଷ-
ସ୍ତାବିପତେ ସ୍ତଦାପ୍ତଣୀ ରଘୂଣି ନିରସ୍ତଂ । ୩୩ ।

ଅତିଶୟ ଦୁର୍ଦ୍ଧର୍ଷ ମହେଶଙ୍କର ଶୂଳ । କୋଟି ବିଜୁଳିର ପ୍ରଭା ପ୍ରକାଶେ ତାହାର । ପୁଣି ଧାରେ ସଂହାର କାଳର ଧ୍ୱଜସମ । ଜ୍ୱଳନ୍ତ ଅଗ୍ନି ପରାୟ ତେଜ ତାବସମ । ସେ ଶୂଳଧରିଣ କରେ କୁମ୍ଭକର୍ଣ୍ଣ

ବୀର । କପିରାଜ ବକ୍ଷେ ନେଇ କଲେ ପ୍ରହାର । ସେ ଶୂଳକୁ ଦେଖି ପ୍ରଭୁ କୋଦଣ୍ଡ ଧାରଣ । ଦୁଇଖଣ୍ଡ କରିଦେଲେ ମାରି ତୀକ୍ଷ୍ଣବାଣ ॥

କ୍ରୋଧାଗ୍ନେର୍ଜ୍ୱଲତେର୍ଗତଃ କପିଶିବିରଗତୋ ମୁଦ୍ଗରଂ ଗୃହ୍ୟଧାନୋ
ବକ୍ତ୍ରେ ନିକ୍ଷିପ୍ୟ କୋଟିଂ କବଳସ୍ଥିତ ଭଟାନୁତ୍କଟାନ୍ କୁମ୍ଭକର୍ଣ୍ଣଃ ।
କାଂଶ୍ଚିତ୍ ପଦ୍ଭ୍ୟାଂ ପିନଷ୍ଟି ଶ୍ୱସନସହଚରା ବାନରାଃ କର୍ଣ୍ଣରନ୍ଧ୍ରା
ନ୍ନିର୍ଗଚ୍ଛନ୍ତ୍ୟେକ ଏତାନ୍ ପୁନରପି ଦଶନୈ ଶ୍ଚର୍ବିତାନତ୍ତି ଘୋରଂ ॥

କ୍ରୋଧରେ ଜଳଇ ଦେହ ପ୍ରେତେକ ଜଳେ ପେଟ । ଅସଂଖ୍ୟ କପିଙ୍କି ଗିଳିଯାଉଅଛି ଦୁଷ୍ଟ । ବଡ଼ବାନରମାନଙ୍କୁ ପାଦେ ଦଳିଲଣି । ହାତରେ ଏକ ଭୀଷଣ ମୁଦ୍ଗରତା ପୁଣି । କପି ଟାଣେ ପଶିଦୈତ୍ୟ କରୁଛନ୍ତି ମର୍ଦ୍ଦନ । ନାକ କାନ ବାଟେ ବାହାରନ୍ତି କପିଗଣ । କେତେ ବାନର ମାନଙ୍କୁ ଦନ୍ତରେ ଚୋବାଇ । ଘୋଷଭରେ ହାଡ଼ ସବୁ ଦେଉଅଛି ଖାଇ ।୩୮।

ସବ୍ୟେନ ସାନ୍ଦ୍ରଶିବିରଂ ଚ କରେଣଧୁନ୍ୱନ୍
ବ୍ୟାଭଞ୍ଜନଶ୍ଚ କଟକଂ ତତ ଉତ୍ତରେଣ
ସୁଗ୍ରୀବମେବ କପିବୀରକରେଷୁ ସସ୍ତ୍ରୁ
ଜଗ୍ରାହ କୋପକଳିତୋ ଯୁଧି କୁମ୍ଭକର୍ଣ୍ଣଃ ।୩୫।

ବାମ ହାତେ କପିଆଟେ ମନ୍ତ୍ରେ ନିଶାଚର । ସୁଗ୍ରୀବକୁ ଟେକିଅଛି ଦକ୍ଷିଣ ହସ୍ତର । ହାବୁଡ଼େ ପଡ଼ନ୍ତେ ମହା ମହା କପିବୀରେ । କୋପେ ତାଙ୍କ ତୁଳେ ଦୈତ୍ୟ ଯୁଝଇ ସଙ୍ଗରେ । ୩୫ ।

ଜାତଂ ବିଲୋକ୍ୟ ବଶମସ୍ମମଥାଙ୍ଗଦସ୍ତଂ
ଗାରୁତ୍ମ-ତନ-ଭ୍ରୁବ ପାତସ୍ଥିତ ସ୍ୱ ଶକ୍ତ୍ୟଂ ।
ମୁକ୍ତ୍ୱାର୍ଯ୍ୟପି ନାଃଶୂନ୍ୟତ ଯାବଦସୌ କପୀନ୍ଦ୍ର
ସ୍ତାବଦ୍ୱବନ୍ଧ ନରସିଂହପଦାଙ୍ଗଦଂ ସଃ ।୩୬।

ଏଉତ୍ତାରେ ଯୁବରାଜ ସେ ଅଙ୍ଗଦ ବୀର । ସୁଗ୍ରୀବଙ୍କ ଦୁର୍ଦ୍ଦଶାକୁ ଦେଖି ନସୁନର ॥ ଗୋଟିଏ ଗରୁଡ଼ ପାଶ ସମର ଭୂମିରେ । ପାଡିଲା ଅଙ୍ଗଦ ବୀର ଅତ ବେଷଭରେ । ସେହି ପାଶରେ ପଡିଲା କୁମ୍ଭକର୍ଣ୍ଣ ବୀର ।

ଏ କାଳରେ ମୁକୁଳି ସେ କପିଙ୍କଈଶ୍ୱର । ସୁଦୀର୍ଘ ନିଶ୍ୱାସ ଏକ ଛାଡ଼ିଲା ତତ୍‌କ୍ଷଣ । ପୁନଶ୍ଚ ଆସି ସୁଗ୍ରୀବ ଧରେ କୁମ୍ଭକର୍ଣ୍ଣ । ନରସିଂହ ପାଶରେ ସେ ଅଙ୍ଗଦଙ୍କୁ ପୁଣି । ବାନ୍ଧି ପକାଇଲା କୁମ୍ଭକର୍ଣ୍ଣ ବୀରମଣି ।୩୬।

ଦୃଷ୍ଟ୍ୱା ନୀଳସ୍ତଦୁଭୟମପି ଗ୍ରସ୍ତମାନମ୍ୟ ରକ୍ଷଃ
ସ୍କନ୍ଧେ ମୌଳୌ ଶ୍ରବଣ କୁହରେ ଘ୍ରାଣବକ୍ତ୍ରା ଦରେଷୁ ।
ତୀବ୍ରଜ୍ୱାଳୋ ଦହତି କୁପିତଃ ସ୍ୱେନ ରୂପେଣ ବୀରଃ
ନିର୍ଯ୍ୟ ଦୋଃଭ୍ରୂଭ୍ରୁଦନ୍ ବକ୍ତ୍ରଃ ଶ୍ରୋତ୍ର ତୌ ବାନରେନ୍ଦ୍ରୌ ।୩୭।

ସୁଗ୍ରୀବ ଅଙ୍ଗଦ ଦୁହେଁ ହୁଅନ୍ତେ ବନ୍ଧନ । ନଳ ସେନାପତି ତାଙ୍କ ବିପଦ ଦେଖିଣ । କ୍ରୋଧ ଅନଳରେ ଜଳିଉଠିଲା ସେ ବୀର । ସ୍ୱ ତେଜରେ ଜାଳିଦେଲା ଦେହ ରାକ୍ଷସର ॥ କାନ୍ଧମୁଣ୍ଡ ନାକ କାନ ମୁଖ ଉଦରରେ । ଅଗ୍ନି ଲାଗନ୍ତେ ଦହିତ ଗନ୍ଧେ ବିକଳରେ । ଏହିକାଳେ ସୁଗ୍ରୀବ ଅଙ୍ଗଦ ବୀର ବେନି । ଆକାଶ ମାର୍ଗେ ଡେଇଁଣ ଉଠିଲେ ତକ୍ଷଣି । ୩୭ ।

ଲଙ୍କାଶିଖରେ ରାବଣସ୍ୟ ଚେଷ୍ଟା ।

ଲଙ୍କେଶ୍ୱରସ୍ତମବଲୋକ୍ୟ ରଣେ ଜ୍ୱଳନ୍ତଂ
କାଦମ୍ବିନୀ ସହଚରମ୍ଭୃତବାରିଧାରାଃ
ତୂର୍ଣ୍ଣଂ ମୁମୋଚ ତଦୁପର୍ଯ୍ୟୁପଲବ୍ଧ ସଂଜ୍ଞୋ
ଭ୍ରୋକ୍ତୁଂକୃତାନ୍ତ ଇବ ନୀଳନଳୌ ସଦର୍ପୀ । ୩୮ ।

ପାଚେରି ଉପରେ ଦେଖୁଥିଲା ଲଙ୍କପତି । ଅଗ୍ନିରେ ଜଳନ୍ତି ଉଚ୍ଚ କୁମ୍ଭକର୍ଣ୍ଣ ଘାତି । ମେଘମାନଙ୍କୁ ଡାକିଣ ବେଗେ ଆଜ୍ଞାଦେଲା । ତହୁଁ ସୁଧା ଧାରାପର ବରଷା ହୋଇଲା । କୁମ୍ଭକର୍ଣ୍ଣ ଅଙ୍ଗୁ ଅଗ୍ନି ଲିଭିଗଲା ତହୁଁ । ଉଠିଲା ସେ ବୀର ପୁଣି ଚେତନାକୁ ପାଇ । ଅଗ୍ରେ ନୀଳ ନଳ ଦୁଇବୀରଙ୍କୁ ଦେଖିଲା । କାଳ ଯମପରି ଗିଳିବାକୁ ମନକଲା । ୩୮ ।

ଜାମ୍ବବାନ୍ ।

ଦମ୍ଭୋଳିଃ କୁମ୍ଭକର୍ଣ୍ଣଂ ଗିରିମିବ ତରସା ପାତୟନ୍ନାନୁବନ୍ଧଂ ।
କଣ୍ଠଂ ଗାଢଂ ବଧୃତ୍ୟ ସ୍ୱଭୁଜଗୁରୁମଦୋଜାମ୍ବବାନ୍ ଲାଡବୋଷଃ ।

ନିର୍ମୁକ୍ତୌ ତାବଭୂତାମଭିଦଦଥ ମରୁତ ପୁଷ୍ପବୃଷ୍ଟିସ୍ତଦଙ୍ଗେ
ଶୁଲାଘାଘାତେନ ରୋଷାଦ୍ରଜନିଚରଭଟେସ୍ତଂ ନିରଯେୟାଦତସ୍ମେ ।୩୯।

ନଳନୀଳଙ୍କ ଦୁର୍ଦ୍ଦଶା ଦେଖି ଜାମ୍ବବାନ । କ୍ରୋଧରେ ଦୈତ୍ୟଙ୍କୁ ଯାଇଁ ଧଇଲା ତକ୍ଷଣ । ବେନି ଜାନୁକୁ ଛନ୍ଦଣି ପକାଇଲା ତଳେ । କୁମ୍ଭକର୍ଣ୍ଣର ତଣ୍ଟିକି ଚିପିଦେଲା ବଳେ । ବହ୍ମଦଣ୍ଡକୁ ଅସୁର ଦେହରେ ପିଟିଲା । ବଜ୍ରକିବା ମହାଗିରି ଉପରେ ପଡ଼ିଲା । ଆକାଶେ ରହିଣ ଦେଖୁଥିଲେ ଦେବଗଣ । ଜାମ୍ବବାନ ଶିରେ ପୁଷ୍ପ କଲେ ବରଷଣ । ଏହି କାଳେ ନଳ ନୀଳ ସେନାପତି ବେନି । କୁମ୍ଭକର୍ଣ୍ଣ ଫାନ୍ଦୁ ମୁକ୍ତ ହୋଇଲେ ତତକ୍ଷଣି । ଜାମ୍ବବଙ୍କୁ ଦୈତ୍ୟ ପ୍ରହାରିଲା ଶୋଇ-ଠାଏ । ତହୁଁ ଡେଇଁ ମନ୍ତ୍ରୀବର ଚଞ୍ଚଳେ ପଳାଏ । ୩୯ ।

ଅଲୋକିତୋ ରଘୁବରେଣ ସଲକ୍ଷ୍ମଣେନ
କାଳାନ୍ତକାଦପି ରିପୋଃ ପରିଶଙ୍କିତେନ ।
ସ୍ଥାନଂ ଜଗାମ ହନୁମାନ୍ ସମରେଽବତାର୍ଯ୍ୟ
ମହେଶ ଉଗ୍ରନରସିଂହ ଇବାରୁଣାକ୍ଷଃ । ୪୦ ।

ଲକ୍ଷ୍ମଣଙ୍କ ସହ ରାମ ଦେଖୁଥିଲେ ରଣ । ଅନାଇଲେ ରୁଦ୍ରରୂପୀ ହନୁର ବଦନ । ପ୍ରଭୁଙ୍କର ମନକଥା ହନୁ ଜାଣି ପାରି । ରଣ ସ୍ଥଳେ ବେଗେ ଚଳେ କାଳଯମ ପରି । ବାଳସୂର୍ଯ୍ୟପରି ଚକ୍ଷୁ କରି ରାତ-ବାଳା । ନୃସିଂହ ମୂରତି ଧରି ଶତ୍ରୁ ପାଶେ ଗଲା । ୪୦ ।

ମୈନାକୋ ମେରୁଶୃଙ୍ଗେ ସ୍ଥିତଇବ ହନୁମତ୍ପାଣିପଦ୍ମେ ମହାଧ୍ରଃ
କମ୍ପନ୍ତେ ଯାଟସେନ୍ଦ୍ରାଃ ଶିରମିବ ଚ ଦଧୌ ମୁଦ୍ଗରଂ କୁମ୍ଭକର୍ଣ୍ଣଃ ।
ଅଦ୍ରୀଂ ନିବାର୍ଯ୍ୟ ଦବାରିଃ ପ୍ରହିତମନିଲଜେନାଚ୍ଛିନନ୍ମୁଦ୍ଗରେଣ
ଲଗ୍ନେନାଞ୍ଜନେୟୋଽଭୂତଜନିତରୁଷା ମୁଦ୍ଗରଂ ଦ୍ରାକ୍ ଚକର୍ଷ ।

ପର୍ବତେକ ହନୁମନ୍ତ ବହେଣ୍ଟି ଧରି । ମେରୁ ଶୃଙ୍ଗରେ ଅଛିକି ମଇନାକ-ଗିରି । ତାକୁ ଦେଖି ଭୟରେ କମ୍ପିଲେ ନିଶାଚରେ । ଗିରିପ୍ରାୟ କୁମ୍ଭକର୍ଣ୍ଣ ଧଇଲା ମୁଦ୍ଗରେ । ଦୈତ୍ୟଙ୍କୁ ଦେଖି ମାରୁତି ପିଟିଲାକ

ଶିର । ମୁଦ୍‌ଗରେ ତା କୁମ୍ଭକର୍ଣ୍ଣ ବୀର ଦେଲା ଚୂର । ତହୁଁ ହନୁମନ୍ତ କୋପେ ଲଙ୍ଗୁଳ ବୃଦ୍ଧି କଲା । ଦୈତ୍ୟ ହାତରୁ ମୁଦ୍‌ଗର ଛଡ଼ାଇ ଘେନିଲା । ୪୧ ।

କୁମ୍ଭକର୍ଣ୍ଣୋ ହନୂମନ୍ତଂ ନିରୁଧ୍ୟ ଛଦ୍ମନା ବଲୀ ।
ଅଗ୍ରଜାୟ ପ୍ରଦାସ୍ୟାମୀତ୍ୟୁପାୟନମିବାଦଧାତ୍ । ୪୨ ।

ଏଥୁଅନ୍ତେ ମହାବଳିଷ୍ଠ ସେ କୁମ୍ଭକର୍ଣ୍ଣ । କପଟ ଯୁଦ୍ଧେ ହନୂକୁ ବାନ୍ଧିନେଲା ପୁଣ । ମନେକଲା ଭାଇ ଆଗେ ନେଇ ଦେବି ଆଜ । ଉପହାର ପାଇ ତୋଷ ହେବେ ମୋ ଅଗ୍ରଜ । ୪୨ ।

ନିରୁଦ୍ଧଂ ହନୂମନ୍ତଂ ଦୃଷ୍ଟ୍ୱା ଅଶୋକବନେ
ସୀତାଂପ୍ରତି ରାବଣଃ ।

ରାମଃ ସ୍ତ୍ରୀବିରହେଣ କାତରବପୁସ୍ତଚ୍ଚିନ୍ତୟା ଲକ୍ଷ୍ମଣଃ
ସୁଗ୍ରୀବୋଽଙ୍ଗଦ ଏବ ଭେଦକତୟା ନିର୍ମୂଳକୂଳଦ୍ରୁମଃ ।
ଅନ୍ୟଃ କଃ ସ ବିଭୀଷଣଃ ସ ଚିରଂପୋଃ କାରୁଣ୍ୟଦୈନ୍ୟାତିଥି-
ର୍ଲଙ୍କାଦ୍ୱାରକପାଟପାଟନପଟୁର୍ବଦ୍ଧୋଽଯ୍ୟମେକଃ କପିଃ । ୪୩ ।

ହନୂର ବନ୍ଧନ ଦେଖି ରାଜା ଲଙ୍କପତି । ଅଶୋକ ବିପିନେ ଯାଇ ମିଳିଲା ଝଟତି ॥ ସୀତାଙ୍କ ଆଗେ କହଇ ଏହି ପରକାର । ନାରୀ ବିରହରେ କ୍ଷୀଣ ରାମର ଶରୀର । ତାଚିନ୍ତାରେ ଲକ୍ଷ୍ମଣ କାତର ହୋଇଲାଣି । ଯେ ସୁଗ୍ରୀବ ବାଲୀକି ମରାଇ ଅଛି ପୁଣି ॥ ସେ ସୁଗ୍ରୀବ ଅଙ୍ଗଦ ହୋଇଣ ପରସ୍ପର । ନଦୀକୂଳେ ପଡ଼ି ଅଛନ୍ତି ଯେ ବୃକ୍ଷପର ॥ ରାମ ଦୁଃଖରେ ମୋ ଭାଇ ବୀର ବିଭୀଷଣ । ଜୀଇ ଥାଉଁ ଥାଉଁ ମରିଗଲା ଅକାରଣ । ଆଉ ବାନରମାନଙ୍କୁ ନ ଗଣଇଁ ମୁହିଁ । କପିଟାଏ ଥିଲା ସେହି ଥାଟ ମଧ୍ୟେ ରହି । ଲଙ୍କାଗଡ଼ ଦ୍ୱାର କବାଟକୁ ଭାଙ୍ଗେ ପରେ । ଦେଖ ବନ୍ଧନ ହୋଇଲା ଦୈତ୍ୟଙ୍କ ହାତରେ । ୪୩ ।

ରାବଣ ସୀତଯୋରୁକ୍ତପ୍ରତ୍ୟୁକ୍ତୀ ।
ଭବତୀ ରମ୍ଭୋରୁ ( ନି ) ଦଶବଦନଗ୍ଲାନିରଧୁନା
ସତେ ରାମଃ ସ୍ଥାତା ( ନ ) ଯୁଧି ପୁରତୋ ଲକ୍ଷ୍ମଣୀଧଷଃ ।
ଇଯଂ ଯସ୍ୟନ୍ତ୍ୟେଷୈ ( ବି ) ପଦମଚଲଦ୍ବାନରଚମ୍
ଲିଖିଂସ୍ୟେତ ଂ ଷଷ୍ଠାକ୍ଷରପଟବଲୋପାତ୍ ପଠ ପୁନଃ । ୪୪ ।
ପୁନଶ୍ଚ ବୋଲେ ରାବଣ ଶୁଣ ଚନ୍ଦ୍ରମୁଖି । ଅଜ ଦେବତାଙ୍କମୁହଁ ନାଚୁ ଯିବ ଶୁଖି । ଲକ୍ଷ୍ମଣେର ସହ ତୋର ସେହି ରାମ ଜାଣ । ଅଜ ମୋ ଅଗରେ ନ ରହିବ କଲେ ରଣ । ମହା ବାପଦକୁ ଲଭିବେ ଗୋ କପିମାନେ । ଜାନକୀ କହନ୍ତି ତହୁଁ ରାବଣ ବଚନେ । ପଦ ଅଦ୍ୟରୁ ଛଅଟି ଅକ୍ଷରକୁ ଛାଡ଼ି । ଲୋପକର ଏକାକ୍ଷର ଅରେ ଦାଅ ପଢ଼ି । ପଢ଼ିଲ ଲଙ୍କେଶ ହେବ ରାବଣ ମରଣ । ଯୁଦ୍ଧେ ଅଜ ଜାଣିବେ ଯେ ଶ୍ରୀରାମ ଲକ୍ଷ୍ମଣ । ଉଚ୍ଚପଦ ଅଜ ନିଶ୍ଚେ ଲଭିବେ କପିଏ । ପଢ଼ି ରାବଣ ମନରେ ଅତି ଲଜ ପାଏ । ୪୪ ।

ସୀତେ ରାବଣ ( ବୈଦେଶା ) ଯମପୁରେ ବାସଶ୍ଚିରଂ ତେଷ୍ୟତେ
କୀଶାନାମପି ( ମରଣେ ) କଲକଲୈର୍ଯୁଦ୍ଧେ ପ୍ରବୃଦ୍ଧେ ସତ ।
କୌଶଲ୍ୟା ହୃଦ ( ଶୋଚନା ) ସ୍ଥିତବଦ୍ୟୁଂ ଭୂୟୋଽପି ବାସ୍ପାଯୃତେ
ପାପିଷ୍ଠା କ୍ଷରପଞ୍ଚମାପୃନରମଂ ହୃଦ୍ଧା ନିବର୍ତ୍ତ ଂ ପଠ । ୪୫ ।
ପୁନନଶ୍ଚ ସୀତାଙ୍କୁ ଚାହିଁ କହେ ଲଙ୍କନାଥ । କଲକଲ ଶବ୍ଦେ ନାଶ ହେବେ କପିଯୂଥ । ଅଜ ରଣେ ନିଶ୍ଚେ ରାମ ଯିବ ଯମପୁର । କୌଶଲ୍ୟା ହୃଦେ ଏ ଶୋକ ରହିଯିବପୂର । ସୀତା ସୀତା ବୋଲନ୍ତିରେ ପାପିଷ୍ଠ ପାମର । ପଦ୍ୟ ଅଦ୍ୟରେ ଛାଡ଼ିଣ ପାଞ୍ଚ ଯେ ଅକ୍ଷର । ତିନି ଅକ୍ଷରକୁ ଲୋପ କରରେ ଅସୁର । ଏହି ଶ୍ଳୋକକୁ ଏବେ ତୁ ପୁଣିପାଠ କର । ଶୁଣି ଲଙ୍କେଶ ପଢ଼ଇ ପୁନଃ ପୁନଃ କର । ଅରେ ରେ ରାବଣ ଯିବୁ ତୁଯେ ଶମନ ପୁରୀ । ମହା ଅନନ୍ଦେ ଯୁଦ୍ଧରେ କପି ସେନାଗଣ । କଳକଳ ନାଦେ ପୁରାଇବେ ଯୁଦ୍ଧସ୍ଥାନ । ଏହିକଥା ତୋ ହୃଦକୁ ନିଶ୍ଚେ ଜାଳିଦେବ । ପଢ଼ିସାରି ଲଜପାଇଲ ସେ ଦୈତ୍ୟଧବ । ୪୫ ।

କୁମ୍ଭକର୍ଣ୍ଣଂ ଗୃହୀତୋ ହନୂମାନ୍ ।
ଅଥ ଚରଣ ଯୁଗଂ ତଦ୍ୱକ୍ଷସି ସ୍ଥାପୟିତ୍ୱା
ଖରକରନଖରାଗ୍ରୈର୍ଗାଢ଼ ମୁତ୍ପାଟ୍ୟକର୍ଣ୍ଣୌ ।
କମଠକଠିନଦନ୍ତୈର୍ଦଂଶ ସଂଦଶ୍ୟ ନାଶା-
ମୁଦପତଦତିବେଗାଦୁଗ୍ରକର୍ମା କପୀନ୍ଦ୍ରଃ । ୪୬ ।

ମହାବୀର ହନୂମନ୍ତ ଏଥୁ ଅନ୍ତେ ପୁଣ । ଦୁଇପାଦକୁ ଦୈତ୍ୟର ଉପରେ ରଖିଣ । ତା କାନକୁ ତୀକ୍ଷ୍ଣ ନଖେ ଗାଢ଼େ ଉପାଡ଼ିଲା । ନାକକୁ ତାର କଠିନ ଦାନ୍ତେ କାମୁଡ଼ିଲା । ବେଗେ ଆକାଶ ମଧ୍ୟେ ଯାଇଁ ପଶିଲା ବହ୍ନିନ । ଅତି ଲାଜପାଇ ଲେଉଟିଲା କୁମ୍ଭକର୍ଣ୍ଣ । ୪୬ ।

ସପଦି ଚ ବଳବୃତ୍ତଃ କ୍ରୋଧନଃ କୁମ୍ଭକର୍ଣ୍ଣ-
ସ୍ତ୍ରିମୂଲମତୁଲମନ୍ତ୍ରାଶେଷଶସ୍ତ୍ରଂ ବ୍ୟତୀନୀତ୍ ।
ନିଶିତଶରନିପାତୈର୍ଲୀଳୟା ତତ୍ର ରାମୋ
ବ୍ୟକିରଦଣୁବଦୁଚ୍ଚୈଃ ସ୍ତଦ୍ଦୃଢଙ୍ଗଂ କ୍ରମେଣ । ୪୭ । .

କ୍ରୋଧ ଭରେ କୁମ୍ଭକର୍ଣ୍ଣ ପୁନଶ୍ଚ ଜୁଝିଲା । ଏକାବେଳେ ବହୁଶର ମନ୍ତ୍ରାଶ ବାହିଲା । ଲୀଳା କ୍ରମେ ରାମ ତାକୁ ତୀକ୍ଷ୍ଣବାଣ ମାରି । ରେଣୁ ପ୍ରମାଣରେ ଦେଲେ ଖଣ୍ଡଖଣ୍ଡ କରି । ବଡ଼ ଅଙ୍ଗମାନଙ୍କୁ ତା ପୁଣି ଚାପପାଣି । କାଟି ପକାଇଲେ ତୀକ୍ଷ୍ଣଶରେ ତତକ୍ଷଣି । ୪୭ ।

ବାନରା ଊଚୁଃ ।

ଅତ୍ୟନ୍ୟେଷାଂ ପୁରତୋ ମନସ୍ତୁଷ୍ଟିରସ୍ମଂ ଯଃ କୁମ୍ଭକର୍ଣ୍ଣ ଭ୍ରତ୍ୱା
ନାସାର୍ଥଂ କିଂ ସ୍ୱତେ ସ ତେଷୁ ବହୁତୋ ନା ସ୍ୱାସ୍ଥ୍ୟ ସୁକ୍ତଂ ତବ ।
ପଶ୍ୟନ୍ତ୍ୟୋଽପି ପରା ପରାକ୍ରମଗତଂ ଯାତୋଽପି କିଂ ଗୃହ୍ୟତ
କାପାଳୀ କିମୁ ଶଙ୍କରୋଽପି ମନୁଜୋ ରାମୋ ବୟଂ ବାନରାଃ ॥

କୁମ୍ଭକର୍ଣ୍ଣକୁ ଅନାଇ କହନ୍ତି ମର୍କଟେ । ଗର୍ବ ଦେଖାଇବୁ ରେ ତୁ ଅନ୍ୟ କାନକଟେ । ତୋ ଗର୍ବ ଦେଖି ସେମାନେ କାତର ହୋଇବେ ତୋ ଗର୍ବ ତାଙ୍କ ଆଗେ ଶୋଭବରେ ହବେ । ଅମ୍ଭ ପାଖରେ ତୋ

ଗର୍ବ ଅଟେ ଅନୁଚିତ । ବିକ୍ରମ ଅସୁର ଯେଶୁ ଦେଖୁ ଛୁ ଦଇତ । କାଣୁ କାଣୁ କମ୍ପାଇ ତୁ ହେଉ ଅନ୍ତପର । ଶଙ୍କରଙ୍କୁ ମଣୁଅଛୁ କପାଳୀର ସର । ନରପ୍ରାୟ ଶ୍ରୀରାମଙ୍କୁ ମଣୁଛରେ ଅସୁର । ବାନର ପର ଅସ୍ମଙ୍କୁ କରୁଛୁ ତୁ ସ୍ଥିର । ୪୮ ।

ଅତ୍ରାନ୍ତରେ ରଘୁପତିଃ ଶରଯୁଗ୍ମମୈନ୍ଦ୍ରଂ
ତ୍ୟାକ୍ତ୍ୱା ସ୍ମ କର୍ଣ୍ଣନିଧନାୟ ରଣେ ମୁମୋଚ ।
ଭିତ୍ତ୍ୱା ବିଭେଦ ହୃଦୟଂ ଧରଣୀମଥୈକୋ
ମୂର୍ଦ୍ଧାନମସ୍ୟ ଚ ମହୀଧ୍ରଯୁଦସ୍ୟ ଶୂନ୍ୟଂ । ୪୯ ।

ଏହି ସମୟରେ ପ୍ରଭୁ ରଘୁକୁଳ ଚନ୍ଦ୍ର । ଶର ବେନି ମାଇଲେ ଯା ଦେଇଥିଲେ ଇନ୍ଦ୍ର ॥ କୁମ୍ଭକର୍ଣ୍ଣ ବକ୍ଷେ ଏକ ଶର ବାଜିଗଲା । ଚିଡି ଫୁଟିଯାଇ ଅବନୀକି ସେ ଭେଦିଲା । ଅନ୍ୟ ଶରଗୋଟି ପ୍ରଭୁଙ୍କର ହାତୁଁ ଯାଇ । ଶୀଘ୍ର କୁମ୍ଭକର୍ଣ୍ଣ ଶିର କାଟିଦେଲା ତହିଁ । ୪୯ ।

( କୁମ୍ଭକର୍ଣ୍ଣସ୍ୟ ଶିରଶ୍ଛେଦନସମୟେ ଲକ୍ଷ୍ମଣଃ ପ୍ରାହ । )
ଧୀରଂ ଧାରୟ କୂର୍ମରାଜ ଧରଣୀଂ ସାର୍ଦ୍ଧଂ ଫଣିସ୍ୱାମିନା
ଦିଙ୍ନାଗାଃ କୁରୁତ ସ୍ଥିରାନ୍ କୁଲଗିରୀନ୍ ଦନ୍ତୈ ର୍ଦୃଢାଗ୍ରୈଃ ସ୍ୱୟଂ ।
ଯସ୍ମାଦେଷ ପତତ୍ୟ ଖମଣ୍ଡଲଗଲଦ୍ରକ୍ତୌଘମତ୍ତ୍ୟୟନ୍ତଂ
କୃତ୍ତଂ ରାମଶରୋତ୍କରୈଃ ପତତି ଯତ୍କୌମ୍ଭକର୍ଣ୍ଣଂ ଶିରଃ ॥

ଯେତେବେଳେ ଛିଣ୍ଡିଲା ସେ କୁମ୍ଭକର୍ଣ୍ଣ ଶିର । ଲକ୍ଷ୍ମଣବୀର ବୋଇଲେ ଏସନ ପ୍ରକାର । ହେ କର୍ମରାଜ କହୁଛି ମୋର ବୋଲ କର । ଫଣୀରାଜ ସହ ଧୀରେ ଅବନୀକି ଧର । ହେ ଦିଗହସ୍ତୀଏ ତୁମ୍ଭ ଭୟଙ୍କର ଦନ୍ତେ । ଅଷ୍ଟକୁଳ ଗିରିକି ହେ ଧର ଯା ତୁରିତେ ॥ ଶ୍ରୀରାମଚନ୍ଦ୍ରଙ୍କ ବାଣେ କୁମ୍ଭକର୍ଣ୍ଣ ଶିର । ଛିଣ୍ଡିଯାଇ ଗଗନୁ ଖସଇ ଧୀର ୨ । ତହୁଁ ଯେଉଁ ରକ୍ତଧାର ପଡୁଅଛି ଗଳା । ଜାହ୍ନବୀ ଅସନ୍ତ କିବା । ଶୂନ୍ୟପଥୁଁ ଚଳା । ୫୦ ।

ଇତ୍ୟବସରେ ହନୁମାନ୍ ।
ଜଙ୍ଘଂ ମରୁତ୍ ନୟଚକ୍ରଚପେଟ ଘାତୈ-
ର୍ମୂର୍ଦ୍ଧା ନ୍ୟପାତ ସହସା ରଜନୀଚରସ୍ୟ ।
ଭଗ୍ନୋଽପି ମାରୁତସୁତସ୍ୟ ଭୟଙ୍କରଃ ସନ୍
ବଭ୍ରାମି ପୁଚ୍ଛନିବୃତୋ ଗଗନେ କବନ୍ଧଃ । ୫୧ ।

ଏହି ସମୟରେ ହନୁମନ୍ତ ମହାବୀର । ଦୃଢ଼କରି ଗୋଡ଼ାଏ ମାଇଲା ସତ୍ୱର । କୁମ୍ଭକର୍ଣ୍ଣର ମୁଣ୍ଡକୁ ଊର୍ଦ୍ଧ୍ବକୁ ଫିଙ୍ଗିଲା । ବେକ ଗଣ୍ଡି ଭାଙ୍ଗି ଭୟଙ୍କର ଦିଶିଗଲା ॥ ତହୁଁ ବେଗେ ହନୁମାନ ବୀରଧାଇଁ ଆସି । ଲାଞ୍ଜରେ ଦୈତ୍ୟ ଗଣ୍ଡିକି ବାନ୍ଧିଲା ଆକର୍ଷି । ଆକାଶମାର୍ଗରେ ବୁଲାଇଲା ବାରମ୍ବାର । ମହାବଳିଷ୍ଠ ସେ ହନୁ ପବନ କୁମର । ୫୧ ।

ସଦ୍ୟୋ ରାଘବମଲ୍ଲଭଲ୍ଲଦଳିତ ଗ୍ରୀବାପ୍ରକାଣ୍ଡ ପତ-
ନିଃଷଙ୍ଗଃ କ୍ଷିତିଧାରଶୃଙ୍ଗସଦୃଶଂ ଦଂଷ୍ଟ୍ରା କରାଳଂ ଶିରଃ ।
ଦ୍ରାକ୍ ଶାଖାମୃଗଚକ୍ର ଚୂର୍ଣ୍ଣନଭୟା ଦାଦାୟ ତାରାପଥାତ୍
ପ୍ରକ୍ଷିପ୍ତଂ ଚ ମହାର୍ଣ୍ଣବେ ହନୁମତା ଦୃଷ୍ଟଂ ଚ ସର୍ବୈଃ ସୁରୈଃ ॥

ଗିରି ଶୃଙ୍ଗର ପରି ସେ କୁମ୍ଭକର୍ଣ୍ଣ ମୁଣ୍ଡ । ଭୟଙ୍କର ଦନ୍ତମାନ ଯେହ୍ନେ ଶାଳଖଣ୍ଡ । ରାଘବଙ୍କ ଭଲ୍ଲ ଅସ୍ତ୍ରେ ତ ପ୍ରକାଣ୍ଡ ଗ୍ରୀବା । ଛିଣ୍ଡିବାରୁ ପଡ଼ନ୍ତେ ସେ ମହାଗିରି କବା । ଦେଖି ହନୁମନ୍ତ ଦୂରୁ ଆଇଲେକ ଧାଇଁ । ଦୈତ୍ୟର ଶିରକୁ ଶୀଘ୍ର ଧଇଲେକ ତହିଁ ॥ ଗଗନମାର୍ଗରୁ ନେଇ ସିନ୍ଧୁରେ ଫିଙ୍ଗିଲା । ଦେଖୁଛନ୍ତି ଦେବତାଏ ସେ ଅଶ୍ଚର୍ଯ୍ୟ ଲୀଳା ।୫୨।

କବନ୍ଧ ପତିତେ ହନୁମାନ୍ ।

ଦେବାଃ ସର୍ବେ ବିମାନାନ୍ୟ ପନୟତ ରବେଃ ସ୍ୟନ୍ଦନୋ ଯାତ ଦୂରଂ
ରେ ରେ ଶାଖାମୃଗେନ୍ଦ୍ରା ସ୍ତ୍ୟଜତ ରଣଭୂବଂ ଜୀବନେ ବାଞ୍ଛସାଶ୍ଚ ।
ପ୍ରୋଦ୍‌ଧୂର୍ଣ୍ଣଃ ସୋଽଞ୍ଜନାଦ୍ରି ପ୍ରତିନୀମୂରବଧୂଃ ସର୍ବସନ୍ତାପକାନାଂ
ଲଙ୍କାତଙ୍କୈକହେତୁର୍ନିପତତି ନଭସଃ କୌମ୍ଭକର୍ଣ୍ଣଃ କବନ୍ଧଃ । ୫୩।

ଭବଦ୍ଧ ପଡ଼ିବା ସମୟରେ ହନୁମନ୍ତ । ଅମର ବନ୍ଧଙ୍କୁ କହିଁ କହଇ ଏମନ୍ତ । ହେ ଅମରେ ଯେ ଯାହା ବିମାନ କାଢ଼ିନିଅ । ଉଠ ବେଗ ଦୂରେ ବେଗେ ହେ ସ୍ଵପୂଙ୍କ ପ୍ରିୟ । ଅଟେ କପି ବାରେ ଯୁଦ୍ଧ ଛାଡ଼ ମୁଁ କହୁଛୁ । ଦେଖ ଦେଖ କୁମ୍ଭକର୍ଣ୍ଣ ମସ୍ତକ ଖସୁଛୁ । ଯୁଦ୍ଧ ଛାଡ଼ ଦେଖ ଅଧି ଜାଇଥିବା ଦୈତ୍ୟେ । କୁମ୍ଭକର୍ଣ୍ଣ ଗଣ୍ଡିଦେଖ ଖସଇ କେମନ୍ତେ । ଅଞ୍ଜନ ଗିରି ପରାୟ ଦାରୁଣ ବର୍ଣ୍ଣ ତାର । ଘୂର୍ଣ୍ଣି ଗଗନମାର୍ଗେ ଦେଖଇ ପ୍ରକାର । ଯେଣୁ ଅତି ଅଦ୍ଭୁତ ଏ ଦେଖାଯାଏ ସେହି । ତେଣୁ ଲଙ୍କାର ବିପଦ କାରଣ ଅଟଇ । ୫୬ ।

ଉତ୍କ୍ରାନ୍ତୋଽପି ସ୍ଵଦେହା ପ୍ରବରସୁରବଧ୍ ଦୋଭି ରାକୃଷ୍ୟମାଣଃ
ପ୍ରାଣଦାଣାସ୍ୟ ଭର୍ତ୍ତୁଃ ପୁନରପି ସମରାପେକ୍ଷୟା ନାରୁରୋହ ।
ସଙ୍ଗୀତେ ନାରଦାଦ୍ୟୈର୍ମୃଦୁମୁରଜରବୈସ୍ତୂୟମାନୋ ବିମାନଂ
ଧୀରଃ ସଂଗ୍ରାମଧୀରଃ କିବ ଶିବ ସ କ ୦ କଥ୍ୟତେ କୁମ୍ଭକର୍ଣ୍ଣଃ

କୁମ୍ଭକର୍ଣ୍ଣର ଦେହରୁ ଛାଡ଼ନ୍ତେ ପରାଣ । ଶୀଘ୍ର ଧଇଲେ ତାହାକୁ ଦେବ ବନ୍ଧୁ ଗଣ । ପୁଣି ରାବଣର ପ୍ରାଣ ରକ୍ଷାର କାରଣ । କାଳେ କୁମ୍ଭକର୍ଣ୍ଣ ଯାଇଁ ଅରମ୍ଭିବ ରଣ । ଏ ବିଚାରେ ତାକୁ ଦିଅ ଇଣ ବିମାନରେ । ନାରଦାଦ୍ୟ ମୁନି ଗଣ ପ୍ରବେଶି ସେଠାରେ ॥ ବାଦ୍ୟନାଦ ସହ ନାନା ରଙ୍ଗେ କରିଗାନ । ଚଅଁଠେଳ ଦେ ଚଳି ଗଲେ ଅମର ଭୁବନ । ଉଦେ ନ ପୁଣ ଯେ କୁମ୍ଭକର୍ଣ୍ଣ ନିଶାଚର । କିଏ ବା ବର୍ଣ୍ଣି ପାରିବ ଧୀର ମଣତାର । ୫୭ ।

[ ଅନନ୍ତରଂ ସୀତା ପରିତ୍ୟାଗାୟ ମନ୍ଦୋଦରୀବାକ୍ୟଂ ]

ଲଙ୍କାନାଥ ତବାନୁଜୋ ଯୁଧି ହତେ ରାମେଣ ରତ୍ନାକରଂ
ସଂଲଙ୍ଘ୍ୟ ପ୍ଲବଗେସ୍ତଥା ପରିବୃତଃ ପ୍ରୁଦ୍ଵାରତେ ତିଷ୍ଠତି ।
ତ୍ରୈଲୋକ୍ୟଭୟଦା ପଦ୍ମୁତା ଚନ୍ଦ୍ରାନନଜା ରୋଷାନ୍ତିତା ସାଦ୍ଧ୍ଵୀ
ଶ୍ରୀରାମାୟ ସମର୍ପ୍ୟତାଂ ଚ ଭବତା ଲଙ୍କା ଚିରଂ ଭୁଜ୍ୟତାଂ । ୫୮ ।

ଲଙ୍କପତି ଆଗେ କହେ ରାଣୀ ମନ୍ଦୋଦରୀ । ଅହେ ପ୍ରାଣନାଥ ଶୁଣ ବଚନ ମୋହର ॥ ରଣେ ପ୍ରାଣ ଦେଲ ତୁମ୍ଭ କୁମ୍ଭକର୍ଣ୍ଣ ଭାଇ । କପି ସୈନ୍ୟ ସହ ରାମ ଦ୍ୱାରେ ଛନ୍ତି ରହି । ଲୋଭ କରିଣ ସୀତାଙ୍କୁ ହରିଲ ଆଣିଲ । ସେ ନାରୀ କୋପରେ ନ ହୋଇବ ତୁମ୍ଭ ଭଲ । ଶ୍ରୀରାମର ନିକଟେ ତାହାକୁ ଦେଇ ଆସ । ଚିରଦିନ ଲଙ୍କା ସୁଖ ଭୁଞ୍ଜ ହେ ଲଙ୍କେଶ । ୫୫ ।

ରାବଣଃ ସକ୍ରୋଧଂ ସମବେକ୍ଷିତପ୍ରାଚଣ୍ଡ୍ୟଂ ମେଘନାଦଂ ସମାହୂୟ ବଧ୍ୟତାଂ ତପସ୍ୱିନାବିତି ପ୍ରସ୍ଥାପୟାମାସ । ମେଘନାଦଃ ସମରାରମ୍ଭଂ ନାଟୟତି । ବାନରାଃ ପଲାୟନ୍ତେ ।

ମେଘନାଦଃ ସ୍ୱଗତଂ ।

ନାହଂ ସୌମିତ୍ରିକୋପାସ୍ୟ ଜାନେଽଲ୍ପମପି କାରଣଂ ।
ନୂନଂ ଚଞ୍ଚଳ ବୁଦ୍ଧୀନାଂ ସ୍ନେହକୋପାବକାରଣୌ । ୫୬ ।

ରାଣୀ ବାଣୀ ଶୁଣି କ୍ରୋଧେ କହେ ଲଙ୍କପତି । ମେଘନାଦ କାହିଁ ଅଛି ଡକାଅ ଝଟତି ॥ ଦୂତ ଜଣାଇଲା ମେଘନାଦର ପାଶରେ । ପିତା ପାଶେ ଇନ୍ଦ୍ରଜିତ ପହୁଞ୍ଚିଲା ଖରେ । କୁମରକୁ ଚାହିଁଣ କହଇ ଦଶଶିର । ଯୁଦ୍ଧେ ତପସ୍ୱୀ ଦୁହିଙ୍କୁ ବହନ ତୁ ମାର ॥ ପିତା ଆଜ୍ଞା ପାଇ ରୋଷ ବହି ଇନ୍ଦ୍ରଜିତ । ରଣେ ପ୍ରବେଶ ହୋଇଲା ମାୟାରଣେ ଦୈତ୍ୟ ॥ ଦେଖି ଭୟ ପାଇ ପଳାଇଲେ କପିଗଣ । ଧନୁ ଧରିଣ ଆଗରେ ମିଳିଲେ ଲକ୍ଷ୍ମଣ । ଏସନେକ ମାନସେ ବିଚାରେ ଇନ୍ଦ୍ରଜିତ । ବୃଥା କୋପକରେ ସଉମିତ୍ରି ଦରେ ସେତ । ଅତି ଚଞ୍ଚଳ ସ୍ୱଭାବ ଅଟଇତ ଯେଣୁ । ଅକାରଣେ ହେବେ ସ୍ନେହ କୋପ ଦୁଇ ତେଣୁ । ୫୬ ।

ମେଘନାଦଃ ।

କ୍ଷୁଦ୍ରାଃ ସଂନ୍ୟାସମେତେ ବିଜହିତ ହରୟୋ! ଭଗ୍ନଶକ୍ରେଭକୁମ୍ଭା
ଯୁଷ୍ମଦ୍‌ଗାତ୍ରେଷୁ ଲଜ୍ଜାଂ ଦଧତି ପୁନରମୀ ସାୟକା ନିଷ୍ପତନ୍ତଃ ।

ସୌମିତ୍ରେ ତିଷ୍ଠ ପାତ୍ରଂ ତ୍ୱମପି ନ ହି ରୁଷାଂ ନନ୍ୱହଂ ମେଘନାଦଃ
କିଂଚିଦ୍ଭ୍ରୂଭଙ୍ଗଲୀଲାନିୟମିତଜଲଧିଂ ରାମମନ୍ୱେଷୟାମି । ୫୭ ।

କପିଙ୍କି ଅନାଇଁ କହେ ରାବଣର ସୁତ । ମାନସରେ ଭୟ ତୁମ୍ଭେ ନ କର କିଞ୍ଚିତ ॥ ଇନ୍ଦ୍ରର ଐରାବତକୁ ମୋର ଏହି ବାଣ । ବିଦାରି ପକାଇ ଅଛି ଭଲକରି ଜାଣ ॥ ତୁମ୍ଭଙ୍କୁ ସେ ବାଣେ ବଧିଲେତ ହେବ ଲାଜ । ମୋ ଆଗରୁ ବେଗେ ପଳାଅରେ ରାମ ଅନୁଜ ॥ ତୁ ବାଳକ ଅଟୁ ଯୋଗ୍ୟ ନୋହୁ ମୋ କୋପକୁ । ଭ୍ରୂଭଙ୍ଗୀ ଲୀଳାରେ ଯେ ବାନ୍ଧିଛି ସାଗରକୁ ॥ ସେହି ରାମକୁ ଖୋଜେ ଏ ଇନ୍ଦ୍ରଜିତ ବୀର । ତୁମ୍ଭଙ୍କୁ ବଧିବା ମୋର ନାହିଁ ଦରକାର । ୫୭ ।

ସୁଗ୍ରୀବମାରୁତିନଳାଙ୍ଗଦନୀଳମୁଖ୍ୟା-
ବାଷ୍ପାନ୍ଧକାରଜଲଦାନ୍ତରିତଂ ପ୍ରଚଣ୍ଡଂ ।
ତଂ ରାବଣିଂ ଜଳଦମଣ୍ଡଳମାସ୍ଥିତଂ ନୋ
ପଶ୍ୟନ୍ତି ତାନ୍ ପ୍ରହରତି ସ୍ମ ସ ଘୋରବାଣୈଃ । ୫୮ ।

ଏହା କହି ମେଘନାଦ ମେଘେ ଲୁଚିଗଲା । କପିବୃନ୍ଦଙ୍କୁ ଭୀଷଣ ଶର ପ୍ରହାରିଲା ॥ ସୁଗ୍ରୀବ ଅଙ୍ଗଦ ଯେ ମାରୁତି ନଳ ନୀଳ । ମନ୍ତ୍ରୀ ଜାମ୍ବବାନ ଆଦି ଋକ୍ଷ କପିବଳ ॥ କେହି ନ ଦେଖନ୍ତି ଇନ୍ଦ୍ରଜିତ ଅଛି କାହିଁ । ଶୂନ୍ୟରୁ ତୀକ୍ଷ୍ଣ ବାଣ ଯେ ଅନେକ ଖଞ୍ଜଇ । ୫୮ ।

ମାୟାରଥଂ ସମଧିରୁହ୍ୟ ନଭସ୍ଥଲସ୍ଥୋ
ଗମ୍ଭୀରକାଳଜଲଦଧ୍ୱନିରୁଦ୍ଧଗର୍ଜ ।
ବାଣୈରପାତୟଦଥୋ ଫଣିପାଶବଦ୍ଧୌ
ସ୍ତୌ ମେରୁମନ୍ଦରଗିରି ବୈନେବ ଶକ୍ରଃ । ୫୯ ।

ମାୟାରଥେ ଆକାଶରେ ଇନ୍ଦ୍ରଜିତ ବୀର । ଗର୍ଜେ ରଢ଼ି ମେଘ ଘଡ଼ଘଡ଼ି ପରକାର ॥ ନାଗପାଶ ଅସ୍ତ୍ରକୁ ଯେ ବହନ ଧରିଲା ॥ ଯୁଦ୍ଧସ୍ଥଳେ ରାମ ଲକ୍ଷ୍ମଣଙ୍କୁ ବାନ୍ଧିଦେଲା ॥ ମେରୁ ମନ୍ଦର ଯେସନେ ଇନ୍ଦ୍ର ବଜ୍ର ଘାତେ । ବେନିଭାଇ ଢଳିଣ ପଡ଼ିଲେ ସେହିମତେ ॥

ଅଥ ସରମା ରାମଲକ୍ଷ୍ମଣୟୋର୍ନାମ୍ ଗତାଂ ସୀତାୟୈ
କଥିତବତୀ । ତତଃ ସୀତା ।
କିଂ ଭାର୍ଗବଚ୍ୟବନଗୌତମକାଶ୍ୟପାନାଂ
ବାଣୀ ବଶିଷ୍ଠମୁନିଲୋମଶକୌଶିକାନାଂ ।
ଜାତା ନୃଥାପ୍ୟହହ ଯା ସଧଟବତ ସୀତେ
ମେ ମନ୍ଦଭାଗ୍ୟବଶତଃ ସକଳଂ ବିନଷ୍ଟଂ । ୭୦ ।

ଏଥୁ ଅନନ୍ତରେ ଶୁଣି ସରମା ସୁଦଶୀ । ସୀତାଙ୍କ ପାଶେ ସ୍ଥାୟକୁ
ଛନ୍ଦେ ଧୀର କରି ॥ ତହୁଁ ଜାନକୀ ବୋଇଲେ କାନ୍ଦଣି କହନ୍ତ । ମିଥ୍ୟା
ହେଉଲକ ଋଷିମାନଙ୍କ ଭାରତୀ ॥ ଭାର୍ଗବ ଚ୍ୟବନ ଯେ ଗୌତମ
ମୁନିବର । କାଶ୍ୟପ ବଶିଷ୍ଠ ମୁନି ଲୋମଶ ଅବର ॥ କୌଶିକ
ସହି ତ ମୋର ପିତାଙ୍କ ମନ୍ଦିରେ । ପ୍ରବେଶ ହୁଅନ୍ତି ଅସିକରି ଯେତେ-
ବେଳେ ॥ ମୋତେ ଉଆରି କହନ୍ତି ମଧୁର ବଚନେ । ବିଧବା
ନୋହିବୁ ଯାତେ ରଖିଥାଅ ମନେ ॥ ଏହାପରି କେତେ ପ୍ରକାରେ
କହୁଥାନ୍ତି । ଆଶ୍ଚର୍ଯ୍ୟ ଲାଗୁଛି ମିଥ୍ୟା ହେଲ ତାଙ୍କ ଉକ୍ତି ॥ ମୋର
ମନ୍ଦକରମରେ ଏହା ଲେଖାଥିଲ । ଋଷି ମୁନିମାନଙ୍କ ବଚନ ନ
ରହିଲ । ୭୦ ।

ସରମା ।

ଶ୍ରୁତ୍ୱାହତଂ ଦଶରଥାତ୍ମଜୟୋର୍ବିମାନ
ମାରୁହ୍ୟ ପୁଷ୍ପକମବାପ ଦଶାନନସ୍ୟ ।
ଅଙ୍କଂ ନିନାୟ ସରମା ଜନକସ୍ୟ ପୁତ୍ରୀଂ
ସୀତାଂ ବିଦୀର୍ଣ୍ଣହୃଦୟାଂ ସମରାଙ୍ଗଣଂ ଚ । ୭୧ ।

ଏତେକେ ବେନିଭାଇ ନାଗପାଶେ ବନ୍ଧା ହେଲେ । ଚରମାନେ ରାବଣ
ଅଗ୍ରରେ ଜଣାଇଲେ ॥ ସେ ବାରତା ପାଇ ଦୁଷ୍ଟ ପାପିଷ୍ଠ ରାବଣ ।
ସରମାକୁ ଚହିଁଣ କହଇ ତତକ୍ଷଣ ॥ ପୁଷ୍ପକ ରଥରେ ସୀତାକୁ ତୁ
ବସାଇଣ । ମୁଦ୍ଧକ୍ଷେତ୍ରକୁ ଘେନିଣ ଯାଅ ଲୋ ବହନ । ରାବଣ ଆଜ୍ଞା

ମାନଙ୍କେ ସରମା ଯେ ତହୁଁ । ଚଳିଗଲା ସୀତା ପାଶେ ଅବିଳମ୍ବେ ସେହୁ ॥ ସୀତାଦେବୀଙ୍କି ପୁଷ୍ପକ ବିମାନେ ବସାଇ । ସମରସ୍ଥାନକୁ ନେଇ ଗଲା ତ୍ୱରା ହୋଇ ॥ ରଣକ୍ଷେତ୍ରେ ପ୍ରବେଶିଲା ସୀତାଙ୍କୁ ନେଇଣ । ଦେଖି ଦେବୀଙ୍କର ହୃଦ ହୋଇଲା ବିଦୀର୍ଣ୍ଣ । ୬୧ ।

ସମରଭୂମୌ ସୀତା । ହା ରାମ ହା ବତ୍ସ ଲକ୍ଷ୍ମଣ ମଦର୍ଥେ
ସୁବହ୍ୟୋଃ ଶ୍ରବ୍ଣୀ ଗତଃ । ୦ ।

ହା ରାଘବ ପ୍ରିୟତମ ସ୍ଫୁରତୀହ ବାମୋ
ବାହୁସ୍ତଥା ନୟନମପ୍ୟନୁତଂ କିମେତତ୍ ।
ନାଦ୍ୟାପି ଯନ୍ମଧୁରନିର୍ମଳ ଦୃଷ୍ଟିପାତୈଃ
ସମ୍ଭାବୟସ୍ୟପି ବିଳାସଗିରା ଭୁଜାଭ୍ୟାଂ । ୬୨ ।

ହା ରାଘବ ପ୍ରିୟତମ ହା ବତ୍ସ ଲକ୍ଷ୍ମଣ । ମୋ ଲାଗି ପାଇଲ ତୁମ୍ଭେ ଏଡ଼େକ କଷଣ ॥ ମୋର ବାମ ନେତ୍ର ବାମ ବାହୁ ଘନ ଘନ । ସ୍ଫୁରୁଅଛି ଅହେ ପ୍ରଭୁ ଶ୍ରୀରଘୁନନ୍ଦନ । ଋଷିମାନଙ୍କ ବଚନ ହୋଇବଟି ମିଥ୍ୟା । ଯେଣୁ ତୁମ୍ଭ ମୁଖୁ ନ ଶୁଣୁଛି ମୃଦୁ କଥା ॥ ମଧୁର ଦୃଷ୍ଟିରେ ତ ମୋତେ ଦେଖୁ ନାହଁ । ଦୁଇଭୁଜେ ଆଲିଙ୍ଗନ କରାଇ ନ ଦିଅ । ୬୨ ।

ଲକ୍ଷ୍ମଣଂପ୍ରତି—

ପ୍ରାଣେଶ୍ୱରଃ ପ୍ରତିଗିରଂ ନ ଦଦାତି ରାମୋ
ହା ବତ୍ସ ଲକ୍ଷ୍ମଣ ମମାପନୟେନ ରୁଷ୍ଟଃ ।
ମଦ୍ବତ୍ସଲସ୍ତ୍ୱମପି ନୋତ୍ତରମାଦଦାସି
ଭ୍ରାନ୍ତ୍ୟାଭ୍ରୁବଂ ମମ କୃତେଽଥ ଦିବଂ ଗତୋ ବା । ୬୩ ।

ପୁଣି ଶୋକଭରେ ବୀର ଲକ୍ଷ୍ମଣଙ୍କୁ ଚାହିଁ । ବୋଲନ୍ତି ଆରେ ସୌମିତ୍ରି କାନ୍ତ ରୋଷ ବହି ॥ ମୋତେ କିଛି କଥା ଏବେ କହୁଲ ତ ନାହିଁ । ଯେଣୁ ମୋତେ ଦୈତ୍ୟବଳେ ଆଣିଛି ଚୋରାଇ । ତେଣୁ ଲାଜପାଇ ନାଥ ପ୍ରାଣକୁ ହାରିଲେ । ତୁ ମଧ୍ୟ କଥାତ କହୁ ନାହୁ ପଦେ

ହେଲେ ॥ ମୋ ପ୍ରତି ଭକତି କରି ଥାଉତ ଅନେକ। ଏବେକାହିଁ ପାଇଁ ଧନ ହୋଇଲରେ ମୂକ ॥ ଭ୍ରମି ଭ୍ରମି ପୃଥ୍ୱୀ ଯାକ ମୋତେ ନ ପାଇଣ। ଖୋଜିବାକୁ ଗଲକିରେ ତୁ ସ୍ୱର୍ଗ ଭୁବନ। ୭୬।

ସୀତାବିଳାପଃ।

ସ୍ୱର୍ଗା ଧିକ୍ଷୌ ଝଟିତି ମାଽନବଲୋକୟନ୍ତୌ
ନ ବ୍ରହ୍ମଲୋକମଧିଗଚ୍ଛତ ଏବ ତାବତ୍।
ପ୍ରାଣାଧିବଂ ବ୍ରଜତ ଦେବଗଣ୍ ମୁହୋତ
ଶୂନ୍ୟାନିଲଂ ଜନକଜା ସହ ସଙ୍ଗରେଣ। ୭୪।

କାହିଁଣ କହନ୍ତି ପୁଣି ଆପଣା ପ୍ରାଣକୁ। ଏ ଦେହକୁ ଛାଡ଼ିଯାଅ ଶୀଘ୍ର ତୁ ସ୍ୱର୍ଗକୁ। ସ୍ୱର୍ଗ ଛାଡ଼ି ବୈକୁଣ୍ଠ ନ ଯାଅ ବେନିଭାଇ। ଏମନ୍ତ କାଳରେ ତାଙ୍କୁ ଭେଟି ହୁଅ ଯାଇଁ ॥ ଆକାଶେ ଥାଇଣ ଦେବ କହିଲେ ଏମନ୍ତ। ଶୋକ ସମ୍ବରଣ କର ଗୋ ଜଗତମାତ। ନ କାନ୍ଦ ନ କାନ୍ଦ ଅଛି ଧେନ ଅମୃତବାଣୀ। ଦୀର୍ଘ ନିଶ୍ୱାସ ଛାଡ଼ିଲେ ବୈଦେହୀ ତା ଶୁଣି ॥ ଯୁଦ୍ଧସ୍ଥାନେ ଶ୍ରୀରାମ ଲକ୍ଷ୍ମଣ ଏ ଦୁହିଙ୍କି। ନିରୀକ୍ଷଣ କଲେ ପତିବ୍ରତା ଜାନକୀ। ୭୪।

ଅତ୍ରାବସରେ ବୈକୁଣ୍ଠାଦ୍ଗରୁଡ଼ଃ।

ହାହାକାରଂ ନିଶମ୍ୟ ତ୍ରିଭୁବନବହିତଂ ରାବଣୋଃ କର୍ମଘୋରଂ
କ୍ରୋଧାଗ୍ନେର୍ଧୂମଘାଟୀ ଦଳିତରିପୁକୁଳଂ ନାଗସୂନ୍ ରକ୍ଷସେନ୍ଦ୍ରଂ।
ପକ୍ଷାଘାତ ପ୍ରଚଣ୍ଡପ୍ରଚଳିତପବନଧ୍ୱସ୍ତଶୈଳେନ୍ଦ୍ର ପାତୈଃ
ସମ୍ପ୍ରାପ୍ତୋ ବୈନତେୟଃ ସ୍ରବଦମୃତ ରସୋ ଜୀବୟାମାସରାମ। ୭୫।

ଭୀଷଣ କାର୍ଯ୍ୟ କଲା ସେ ଇନ୍ଦ୍ରଜିତ ବୀର। ତିନିପୁର ଲୋକ ମୁଖେପଡ଼େ ହାହାକାର। ଏକାଳେ ବୈକୁଣ୍ଠପୁରୁ ବିନତାନନ୍ଦନ। ଅମୃତ ଘେନି ପ୍ରବେଶ ହୋଇଲେ ବାହାନ। କ୍ରୋଧେ ପକ୍ଷୀବର ଉଡ଼େ ଗଗନମାର୍ଗରେ। ଗିରିମାନ ଭାଜିପଡ଼େ ତା ପକ୍ଷଘାତରେ। ଅମୃତ ସିଞ୍ଚି ପ୍ରଭୁଙ୍କୁ ଚେତା କରାଇଲା। ତା ଦେଖି ରାବଣ ଚିତ୍ତେ ମହାଭୟ ହେଲା।

ଅମରପତିଜିତା ତୌ ନାଗପାଶେନ ବଦ୍ଧା
ବଥ ଗରୁଡ଼ସକାଶାନ୍ମୁକ୍ତପାଶୌ ଭବନ୍ତୌ ।
ବିବିଧବହୁଭଜ ଯୁଦ୍ଧଂ ତତ୍ର ରାମାନୁଜନ୍ମା
ଶିତଶରହୁତଜୀବଂ ମେଘନାଦଂ ଚକାର । ୭୬ ।

ଦୁଷ୍ଟ ମେଘନାଦ ନାଗପାଶେ ବାନ୍ଧିଥିଲା । ଗରୁଡ଼ ଆସି ତାହା ମୁକୁଳାଇ ଦେଲା । ଶ୍ରୀରାମ ଲକ୍ଷ୍ମଣ ଯୁଦ୍ଧ ଅରମ୍ଭିଲେ ପୁଣ । ଇନ୍ଦ୍ରଜିତକୁ ବିନ୍ଧିଲେ ବହୁ ତୀକ୍ଷ୍ଣବାଣ । ଲକ୍ଷ୍ମଣଙ୍କ ଶର ଯାଇଁ ତା ଅଙ୍ଗେ ବାଜିଲା । ଚେତା ହଜାଇଣ ସେ ରଥ ଉପରେ ପଡ଼ିଲା । ୭୬ ।

ମାୟାସୀତା ବଧଃ

ପାପୋ ବିରଚ୍ୟ ସମରେ ଜନକସ୍ୟ ପୁତ୍ରୀଂ
ହା ରାମ ରାମ ଉମଶୋଭ ଗିରଂ ଗିରନ୍ତୀଂ
ଖଡ଼୍‌ଗେନ ପଶ୍ୟତ ବଦନ୍ନିତି ରେ ପ୍ରବୀରା ।
ମାୟାମୟୀଂ ଶିକଶିବେନ୍ଦ୍ର ଜିଦଂଜଘାନ । ୭୭ ।

ତହୁଁ ମହାଭୟେ ଇନ୍ଦ୍ରଜିତ ପଳାଇଲା । ଏକ ମାୟାସୀତା ସେ ଦଇତ ନିର୍ମିଣିଲା । ରଥପରେ ଥାଇ ସେହି ମାୟା ସୀତା ପୁଣି । ହା ରାମ ହା ରାମ ବୋଲି କାନ୍ଦେ ଘୁଣ ଘୁଣି । ଇନ୍ଦ୍ରଜିତ ବୀର କହେ ଖଡ଼୍‌ଗ ଝମକାଇ । ଦେଖରେ ବାନର ସୀତା ବଧୁଛୁ ଏଠାଇଁ ॥ ଏମନ୍ତ କହିଣ ସୀତା କେଶକୁ ଧଇଲା । ଅହା ସେ ଦାରୁଣ ଶତ୍ରୁ ହାଣି ପକାଇଲା । ୭୭ ।

ଦ୍ବିଧାକୃତାଂ ତାଂ ପୁନରାପଦାନୋମାୟାରଥସ୍ଥୋଽମ୍ବରବର୍ତ୍ମନା ଚ ।
ବ୍ରହ୍ମେନ୍ଦ୍ର ପଦେଶାଧ୍ବନ ନିକୁମ୍ଭିଳାଦେବ୍ୟନ୍ୟଗ୍ରୋଧମୂଳାବ ଠମାଜଗାମ । ୭୮ ।

ମାୟା ସୀତାକୁ ହାଣି ସେ ଦୁଷ୍ଟ ନିଶାଚର । ଶୂନ୍ୟମାର୍ଗେ ଗଲା ଚଢ଼ି ମାୟାରଥବର । ନିକୁମ୍ଭ ଗିରି ନିକଟେ ନିକୁମ୍ଭିଲା ଗିରି । ସେଠାରେ ପ୍ରବେଶ ହେଲା ସେ ଇନ୍ଦ୍ର ଅରି । ତହିଁ ଏକ ବଟବୃକ୍ଷ ଅଛଇ ନିକର । ଏକ ଯଜ୍ଞକୁଣ୍ଡ ରହିଅଛି ସେହିଠାର ॥ ନିକୁମ୍ଭିଲା

ବଟ ମୂଳେ ବ୍ରହ୍ମାଦର ମତେ । ହୋମ ଆରମ୍ଭିଲା ଦୈତ୍ୟ ଅତହୃଷ୍ଟ ହୋଇ । ୬୮ ।

ଯୁଦ୍ଧଭୂମୌ ରାମଃ ।

ଦୃଷ୍ଟ୍ୱା ମାୟାଜନକତନୟାଖଣ୍ଡନଂ ରାମଚନ୍ଦ୍ରୋ
ଗୁର୍ବୀମୁର୍ବୀତଳମୁଦଗତୋ ଭୂର୍ଣ୍ଣମାସାଦ୍ୟ ମୂର୍ଚ୍ଛାଂ ।
ତସ୍ମାଦାଗ୍ରେ ପୁନରନୁଜନ୍ମଶ୍ଚେତନାଂ ପ୍ରାପ୍ୟ ରାମଂ
କୃତ୍ୱୋତ୍ସଙ୍ଗେ ସ୍ମରସି ନ ଗିରଂ ବ୍ୟାହରନ୍ନତ୍ୟରୋଦୀତ୍ ॥

ମରଥିବା ମାୟାସୀତା ପାଦେ ରଘୁମଣି । ମୂର୍ଚ୍ଛାଯାଇ ଭୂମିପରେ ପଡ଼ିଲେ ତକ୍ଷଣି ॥ ଅନୁଜ ଲକ୍ଷ୍ମଣ ତାଙ୍କୁ ଚେତା କରାଇଲା । କୋଳ କରି ନେଇ ନିଜ କୋଲେଡ଼ େବସାଇଲା ॥ ଯହୁଁ ରାମ କିଛିମାତ୍ର କଥା ନ କହିଲେ । ଅତ୍ୟନ୍ତ ବ୍ୟାକୁଳେ ତହୁଁ ଲକ୍ଷ୍ମଣ କାନ୍ଦିଲେ । ୬୯ ।

ତତୋନିକୁମ୍ଭିଳାଦ୍ରୌ ବଟମୂଳେ ମେଘନାଦଃ ।
କୁଣ୍ଡେ ବିଭୀତକସମିଦ୍ଭିରଥାର୍ଦ୍ଧଚନ୍ଦ୍ରେ
ଶନୈଭକୁମ୍ଭଦଳନଃ ପ୍ଲବମାଜୁହାବ ।
ଶତ୍ରୁଞ୍ଜୟସ୍ୟ ରଥବରେଽର୍ଦ୍ଧ ସମୁଦ୍‌ଗତେଽଗ୍ନେ
ଯଜ୍ଞଂ ବଭଞ୍ଜ ତରସା ହନୁମାନୁପେତ୍ୟ । ୭୦ ।

ନିକୁମ୍ଭିଳ ବଟମୂଳେ ରହି ଇନ୍ଦ୍ରଅରି । ବିଭୀତକ କାଷ୍ଠେ ଅଗ୍ନି ପ୍ରଜ୍ୱଳିତ କରି ॥ ଆହୁତ ଦେଲାକ ତହିଁ ମାଂସ ମିଶା ଘୃତ । ଅଗ୍ନି କୁଣ୍ଡେ ଦୃଶ୍ୟ ହେଲା ଶତ୍ରୁଞ୍ଜୟ ରଥ ॥ ଅଧେ ମାତ୍ର ବାହାରିଛି ସେହି ରଥବର । ଏସମୟେ ଯଜ୍ଞଭଙ୍ଗେ ପବନ କୁମର । ୭୦ ।

ବିଭୀଷଣେନ ସହ ଲକ୍ଷ୍ମଣଃ । ଅରେ ମେଘନାଦ ତେ ମାୟାଂ ଜ୍ଞାତ୍ୱା ପିତୃବ୍ୟସମୀପଂ ପ୍ରେରୟାମ୍ୟଦ୍ୟ । ୦୦ ।

ଦୋଷ୍ଟମ୍ଭାସ୍ଫାଳକେଳିସ୍ଫୁଟନିକଟରବସ୍ତ ଘୋରନିର୍ଘୋଷଃ
ଘହାରସ୍ତଂ ନିଯୋଜ୍ୟ ସ୍ୱଧନୁଷି ଧରଣୀଂ ପାଣିନାହତ୍ୟ ବୀରଃ ।

କ୍ରୋଧାନ୍ଧୋ ରାବଣସ୍ୟ ଜ୍ୱଲଦନଲଶିଖାମୁଦ୍ଗିରନ୍ ପାଣିପୁତ୍ରେ
ସ୍ଥିତ୍ୱା ଚକ୍ଷେପ ସୌମିତ୍ରିରଥ ଦୃଢ଼ଶରେ ମେଘନାଦସ୍ୟ ସାଦ୍ଧ୍ର ।୭୧

ଲକ୍ଷ୍ମଣ ପ୍ରଚଣ୍ଡ ହେଲେ ଏହି ଅବସରେ । ଅଛଇ ଯେ ବିଭୀଷଣ ତାହାଙ୍କ ସଙ୍ଗରେ ॥ ବୋଇଲେ ରେ ଇନ୍ଦ୍ରଜିତ ତୋ ମାୟା ଛେଦିବି । ଖଡ଼୍ଗ ତା ପାଶକୁ ତୋତେ ଆଜ ପଠାଇବି ॥ ଏତେ ବୋଲି ଧନୁ ଧରି କଲେ ଆସ୍ଫାଳନ । ଭୟଙ୍କର ଧ୍ୱନି ତହୁଁ ହେଲା ଉତପନ । ସେ ଧ୍ୱନି ଶୁଣିଣ ନାକେ କାତର ହୋଇଲେ । ସଂହାରାସ୍ତ୍ର ବେଗେ ନେଇ ଧନୁରେ ଯୋଡ଼ିଲେ ॥ ଧନୁହୁଲେ ପୃଥିବୀକୁ କରଣ ଅସ୍ଥିର । ବେଗେ କାଟି ପକାଇଲେ ଇନ୍ଦ୍ରଜିତ ଶିର ॥ ମୁକୁଟେ ବିରାଜୁଅଛୁ ଇନ୍ଦ୍ରଜିତ ଶିରେ । ଜ୍ୱଳନ୍ତ ଅନଳ ଶିଖା ତହିଁରୁ ବାହାରେ ॥ ସେ ମୁଣ୍ଡକୁ ବେଗେ ନେଇ ରାବଣର ହାତେ । ରଖିଲେ ସୁମିତ୍ରାସୁତ ପୁଣି ବାଣ ଘାତେ ।

ଦୂତଃ ରାବଣଂ ପ୍ରତି ସଭୟଂ ।

ହେ ହେ ରାଜନ୍ଦଶଗ୍ରୀବ ମେଘନାଦୋ ମହାବଳଃ ।
ମୃତଃ ସୌମିତ୍ରିବାଣେନ ବିଭୀଷଣ କୁମନ୍ତ୍ରଣାତ୍ । ୭୨ ।

ରାବଣ ସମ୍ମୁଖରେ ଭୟେ ଏ ସମୟେ ଚର । ଜଣାଇଲା ଶୁଣ ଦେବ ଲଙ୍କାର ଈଶ୍ୱର ॥ ମହାବଳୀ ମେଘନାଦ ସମରେ ପଡ଼ିଲା । ବିଭୀଷଣ ମନ୍ତ୍ରଣାରେ ଲକ୍ଷ୍ମଣ ମାଇଲା । ୭୨ ।

ରାବଣଃ

ତନୟମରଣବାର୍ତ୍ତାଂ ରାବଣୋ ଦୂତବକ୍ତ୍ରାତ୍
ପତତି ଧରଣିପୃଷ୍ଠେ ଛିନ୍ନଶାଖୀବ ଶ୍ରୁତ୍ୱା ।
ବଦତି ଚ ପୁନରୁତ୍ଥୋ ଲବ୍ଧସଂଜ୍ଞଃ ସଭାୟାଂ
ମଣିକବଦନରନ୍ଧ୍ରେ ହସ୍ତିଯୂଥଂ ପ୍ରବିଷ୍ଟଂ । ୭୩ ।

ପୁତ୍ରର ମରଣ କଥା ଦୂତମୁଖୁ ଶୁଣି । ଛିନ୍ନବୃକ୍ଷପରି ତଳେ ଲୋଟେ ଦଂଶତାଣି ॥ ଚେତ ଉଠି ପୁଣି କ୍ରୋଧେ ସଭାମଧ୍ୟେ ବୋଲେ । ମଣି-ମୁଖବାଟେ ହାତୀପଲ ପଶିଗଲେ । ୭୩ ।

ହତେ ମେଘନାଦେ ରାବଣଂ ପ୍ରତି ମନ୍ଦୋଦରୀ ।

ଦୃଷ୍ଟ୍ୱା ବୈନ୍ୟଂ ଭଗିନ୍ୟାଃ ଖରବଲମଥନଂ ମାତୁଳସ୍ୟାପି ନାଶଂ
ତାଲାନାଂ ଭେଦନଂ ତତ୍ କପିବରହନନଂ ତଚ୍ଚ ସୁଗ୍ରୀବସଖ୍ୟଂ ।
କର୍ମାଣ୍ୟୁଦ୍ୟାନହନ୍ତୁର୍ଜଲନିଧିତରଣେ ଯୋ ନ ଜାତସ୍ତଦାନୀଂ
ଯୋଽସ୍ମିଂନଷ୍ଟେ କୁଳେଽସ୍ମିନ୍ କଥମିହକଥନେ ଜାୟତେ ତେ ବିବେକଃ ॥

ଇନ୍ଦ୍ରଜିତ ମଲା ଶୁଣି ମନ୍ଦୋଦରୀ ରାଣୀ । କାନ୍ଦି କାନ୍ଦି ରାବଣଙ୍କୁ ବୋଲେ ଏହି ବାଣୀ ॥ ଭଗିନୀର ନାକକାନ ଖଡ଼ଗେ ଛେଦିଲେ । ଖର ଆଦି ଅସୁରଙ୍କୁ ସମରେ ମାଇଲେ । ତୁମ୍ଭ ମାମୁ ମାରୀଚକୁ ମାଇଲେ ଅବର । ଛେଦିଲେ ସପତ ତାଳ ମାରି ଏକଶର ॥ କପିରାଜ ବାଳିଙ୍କୁ ଯେ ବଧିଲେ ସମରେ । ମିତ୍ରଭାବ ଆଚରିଲେ ସୁଗ୍ରୀବ ସଙ୍ଗରେ ॥ ସମୁଦ୍ରକୁ ପାରି ହୋଇ ଆସି ହନୁମାନ । ଲଙ୍କାପୁରେ କଲା ଯେଉଁ ଯେଉଁ କର୍ମମାନ ॥ ଏହା ଦେଖି ନ ହେଲା ତ ବିବେକ ତୁମ୍ଭର । ବଂଶ ନାଶ ଗଲେ କିମ୍ପା ବାତୁର ନ କର । ୭୪ ।

ଅଥ ତାଂ ପ୍ରତି ରାବଣଃ ।

ରାମାସ୍ତ୍ର ପ୍ରଚଣ୍ଡପକ୍ଷକକ୍ଷଶିଖିନେ ଦାସ୍ୟାମି ବା ମୈଥିଲୀଂ
ଯୁଦ୍ଧେ ରାଘବସାୟକୈରଭିହତଃ ସ୍ୱର୍ଗଂ ଗମିଷ୍ୟାମି ବା ।
ନୀତଜ୍ଞେ କଥୟସ୍ୱ ଦେବି କତରଃ ପକ୍ଷୋଗୃହୀତସ୍ତ୍ୱୟା
ଶ୍ରେୟୋବ୍ରୂହି ମମ ପ୍ରିୟେଽପି ଭବିତା କୋବାଧୁନା ତଦ୍ବଦ ।

ରାବଣ କହଇ ଅଗୋ ଶୁଣ ପ୍ରାଣସହି । ନୀତି ଶାସ୍ତ୍ର ଜାଣ ତୁମ୍ଭେ କି କହିବ ମୁହିଁ ॥ ଶତ୍ରୁ କକ୍ଷଅଗ୍ନି ତୁଲ୍ୟ ଯେବଣ ଶ୍ରୀରାମ । କି ଅବା ତାହାର ସଙ୍ଗେ କରିବ ସଂଗ୍ରାମ ॥ ରାମବାଣେ ରଣେ ମଲେ ସ୍ୱର୍ଗପୁରେ ଯିବି । ଅଥବା ରାମକୁ ନେଇ ସୀତା ସମର୍ପିବି । କେଉଁ ପକ୍ଷ ନେଲ ତୁମ୍ଭେ କହ ମୋତେ ତାହା । କହ ପୁଣି ମୋ ପକ୍ଷରେ ଶ୍ରେୟ ହେବ ଯାହା । ୭୫ ।

ନରୁତ୍ତରଂ ଦୃଷ୍ଟ୍ୱା ପୁନରାହ ।

ଜାନାମି ସୀତାଂ ଜନକପ୍ରସୂତାଂ ଜାନାମି ରାମଂ ମଧୁସୂଦନଂ ଚ ।
ଜାନାମ୍ୟହଂ ନୃପ କରସ୍ୟ ବଧସ୍ତଥାପି ସୀତାଂ ନ ସମର୍ପୟାମି ।୭୬।

ଉତ୍ତର ନ ପାଇ ପୁଣି ବୋଲେ ଦଶାନନ । ଜାଣଇ ମୁଁ ଶ୍ରୀରାମଙ୍କୁ ଶ୍ରୀମଧୁସୂଦନ ॥ ଜନକ ନନ୍ଦନୀ ବୋଲି ସୀତାକୁ ମୁଁ ଜାଣେ । ଜାଣଇ ମରିବା ନିଶ୍ଚେ ମନୁଷ୍ୟର ବାଣେ ॥ ତଥାପି ରାମଙ୍କୁ ସୀତା କେବେ ଦେବି ନାହିଁ । ସତ୍ୟ କଥା କହିଲଇଁ ତୋ ଆଗରେ ଏହି । ୬୬ ।

ରାବଣଃ ସମରାଙ୍ଗଣେ ପ୍ରବିଶ୍ୟ କାଳଂ ପ୍ରତି ।

ରେ କାଳ ତ୍ୱମକାଳକଲ୍ପବଧିରଭବଃ ସ୍ୱୈରଂ ସକାମୋଭବ
ସ୍ଥାନେ ଭୂଷୟ ନୂତନଂ ଶବଶିରଃଶ୍ରେଣୀ ଭିରଙ୍ଗଂ ସ୍ୱକଂ ।
ଜମ୍ବୁଦ୍ୱାରଘରମେତ୍ୟ ଶଂସ ସହସା ସଜ୍ଜୀଭବ ତ୍ୱଲ୍ଲତେ
ସନ୍ନଦ୍ଧଃ କରବାଳଭୀଷଣଭୁଜୋ ଯୁଦ୍ଧାୟ ଲଙ୍କେଶ୍ୱରଃ ।୭୭।

ସମରେ ପ୍ରବେଶ ହୋଇ ରାଜା ଦଶାନନ । କାଳକୁ ଆକ୍ଷେପ କରି ବୋଲେ ଏ ବଚନ ॥ ଅରେ ଯମ ଅକାଳରେ କଳ୍ପ ତୁ ବଧିର । ସ୍ୱଚ୍ଛନ୍ଦେ ଆଜ ତୋ ମନ କାମନା ପୂରିବ । ନୂଆ ଶବମୁଣ୍ଡେ ଅଙ୍ଗ ହୋଇବ ଭୂଷଣ । ତେଣୁ ଯାଇ ଶ୍ରୀରାମଙ୍କୁ କହ ଏହିକ୍ଷଣେ ॥ ସଜ ହୋଇ ଆସୁ ବେଗେ କରିବ ସମର । ଖଣ୍ଡାଧରି ଆସିଅଛୁ ବୀର ଲଙ୍କେଶ୍ୱର । ୭୭ ।

ଇତ୍ୟବସରେ ରାମଂ ପ୍ରତି ହନୂମାନ୍ ।

ନୀଲୋଽୟଂ ଦଶମୁଖପଶିପଙ୍କଜାନା
ମଗ୍ରେଷୁ ଭ୍ରମରତନୁ ଭ୍ରମଂ ତନୋତି ।
ଅପ୍ୟେକୋ ଦଶମୁଖମୌଳିଭୂଷଣେଷୁ
ଭ୍ରାକ୍ ପ୍ରେଙ୍ଖନ୍ ଘଟ୍ଟଦଧଦଦ୍ଦ୍ରୁ ନୀଳଶୋଭାଂ । ୭୮ ।

ଏ ସମୟେ ହନୁ ବୋଲେ ଦେଖ ରଘୁପତି । କେମନ୍ତ ପ୍ରକାରେ ଏହୁ ନୀଳ ସେନାପତି ॥ ଭ୍ରମୁଅଛି ରାବଣର ହାତ ନିକଟରେ । ପଦ୍ମ

ଫୁଲପାଖେ ଯେହ୍ନେ ଉଡ଼ନ୍ତି ଭ୍ରମରେ ॥ ଏକ କପି ରହିବାରୁ ମୁକୁଟ-ପାଖରେ । ଇନ୍ଦ୍ରନୀଳମଣି ତୁଲ୍ୟ ଶୋଭନ୍ତୁ ବସ୍ତାରେ । ୭୮ ।

ବିଭୀଷଣୋରାମଂ ପ୍ରତି ।

ଭଙ୍କ୍ତ୍ୱା କାଞ୍ଚନଶେଖରଂ ମଣିଗଣାନାକାର୍ଯ ବିଷ୍ୱକ୍ତତ
ଶ୍ଳିଷ୍ଟ୍ୱା କୁଣ୍ଡଳମଣ୍ଡଳଂ ବ୍ୟାକଳଯ୍ୟ କଲ୍ପଦ୍ରୁପୁଷ୍ପସ୍ରଜଂ ।
ଅଙ୍ଘ୍ରିଭ୍ୟାମଭିଲଂଘ୍ୟ କୁମ୍ଭରୁଧିରସାରଂ ପୁନଃ ପୂପ୍ଲୁବେ
ଦୁର୍ମତ୍ରସ୍ୟ ଦଶାନନସ୍ୟ ଶିରସି କ୍ରୀଡ଼ନ୍ ପ୍ଲବଙ୍ଗାଧିପଃ । ୭୯ ।

ବିଭୀଷଣ ବୋଇଲେ ଦେଖ ଦେଖ ରଘୁପତି । ରାବଣ ମସ୍ତକେ ଖେଳେ ସୁଗ୍ରୀବ ନୃପତି ॥ କାଞ୍ଚନ ପର୍ବତ ତୁଲ୍ୟ ମୁକୁଟକୁ ଭାଙ୍ଗି । ତହିଁ ଥିବା ମଣି ଦିଏ ଏଣେ ତେଣେ ଫିଙ୍ଗି ॥ କୁଣ୍ଡଳ କୁସୁମମାଳ ଛିଣ୍ଡାଇ ପକାଏ । ଦଶଗୋଟା ମସ୍ତକକୁ ପାଦେ ଲଙ୍ଘିଯାଏ ॥ ପୁଣି ଡେଇଁ ଅଛି ମୁଣ୍ଡେ ଚରଣ ପ୍ରହାରେ । କ୍ଷତସ୍ଥାନୁ ଦେଖ ଜେହ୍ନେ ରୁଧିର ବାହାରେ । ୭୯ ।

ରାବଣଃ ସକ୍ରୋଧଂ ।

ଲଙ୍କେଶ୍ୱରଃ ସୁତବଧାତ୍ପ୍ରଣବକ୍ରଚକ୍ରୋ
ଧୃତ୍ୱା କରେ ଛିପତି ତଦ୍‌ବ୍ରହ୍ମଦତ୍ତଶକ୍ତିଂ ।
ପୌଲସ୍ତ୍ୟବକ୍ଷସି ରୁଗ୍ନର୍ଦ୍ଧପଥେ ଜ୍ୱଳନ୍ତୀଂ
କ୍ଷିପ୍ତାମ୍ବୁଧୌ ହନୁମତା ତରସା ଗୃହୀତ୍ୱା । ୮୦ ।

ଏ ସମୟେ କ୍ରୋଧଭରେ ରାଜା ଦଶାନନ । ପୁତ୍ରବଧେ ରକ୍ତବର୍ଣ୍ଣ ଦିଶେ ତା ବଦନ ॥ ଯେଉଁ ଶକ୍ତି ଦେଇଥିଲେ ପୂର୍ବେ ବେଦପତି । ବିଭୀଷଣ ଉପରେ ମାରେ ଧରି ସେ ଶକତି ॥ ଜ୍ୱଳନ୍ତ ଅନଳ ପରି ଶକ୍ତି ଆସୁଥିଲା । ହନୂମାନ ଯାଇ ତାକୁ ବାଟରେ ଭେଟିଲା ॥ ସେ ଶକ୍ତିକୁ ବଳେ ଧରି ପବନନନ୍ଦନ । ପକାଇ ଦେଲାକ ନେଇ ସମୁଦ୍ରେ ବହନ । ୮୦ ।

ଶକ୍ତିହରଣମବଲୋକ୍ୟ ବ୍ରହ୍ମାଣଂ ହନୁମଦଂତେ ରାବଣେ
ମାରୁତିଃ ସ୍ଥାନାନ୍ତରଂ ନେୟ ଇତି ବ୍ରହ୍ମବାକ୍ୟେ ନାରଦଃ ।
ଦ୍ରାଙ୍‌ ନାରଦୋଽଥ ଜନକସ୍ୟ ଭୟାଦନୈଷୀତ୍‌
ସ୍ଥାନାନ୍ତରଂ ସମରତଃ ପବନସ୍ୟ ସୂନୁଂ ।
ତନ୍ନୈକବୀରନିଧନାହତୁଲପ୍ରଭାବାଂ
ଜଗ୍ରାହ ରାକ୍ଷସପତିଃ ସ୍ୱଭୁଜେନ ଶକ୍ତିଂ । ୮୧ ।

ଶକତିକୁ ନେଲ ଯହୁଁ ପବନନନ୍ଦନ । ବ୍ରହ୍ମାଙ୍କୁ ବଧିବା ପାଇଁ ଚଳେ ଦଶାନନ ॥ ରାବଣର ଭୟେ ବ୍ରହ୍ମା ଡ଼ାକି ନାରଦଙ୍କୁ ବୋଇଲେ ଏକ୍ଷଣି ଯାଅ ସମର ଭୂମିକୁ ॥ ମୋହର ଅଟନ୍ତି କହି ବିପ୍ର ହନୁମନେ । ରଖିଆସ ସମରୁ ନେଇ ଅନ୍ୟସ୍ଥାନେ ॥ ଏଥୁଅନ୍ତେ ନାରଦ ଯେ ବେଗେ ଚଳିଗଲେ । ହନୁକୁ ନେଇଣ ଅନ୍ୟସ୍ଥାନେ ରଖାଇଲେ । ଏ ସମୟେ କ୍ରୋଧ ହୋଇ ରାଜା ଲଙ୍କପତି । ବିଶଂତି ଭୁଜରେ ଧରେ ଏକଘ୍ନୀ ଶକତି । ୮୧ ।

ତସ୍ମିନ୍ନିଶାଚରପତିଃ ପରହୀନଶକ୍ତିଃ
ଶକ୍ତିଂ ମୁମୋଚ ନିଧନାୟ ବିଭୀଷଣସ୍ୟ ।
ତଂ ରକ୍ଷିତୁଂ କନକଶୈଳଇବାଭି ରାମୋ
ରାମାନୁଜୋ ନିଜମୁରଃ କବଚୀଚକାର । ୮୨ ।

ଯେତେବେଳେ ଧଇଲା ସେ ଏକଘ୍ନୀ ଶକତି । ତାର ତେଜେ ବଳହୀନ ହେଲା ଲଙ୍କପତି ॥ ଶକତିକୁ ବୁଲାଇଣ ବୋଇଲା ଏମନ୍ତ । ମହାପାପୀ ବିଭୀଷଣେ କର ଯାଇ ହତ ॥ ଶକତି ଆସନ୍ତେ ଦେଖି ସୁମିତ୍ରାନନ୍ଦନ । ବିଭୀଷଣ ଅଗେ ଉଭା ହୋଇଲେ ବହନ ॥ କନକ ପର୍ବତ ତୁଲ୍ୟ ସୁନ୍ଦର ଦିଶିଲେ । କବଚ ପରାୟେ ନିଜ ବକ୍ଷରେ ଧଇଲେ । ୮୨ ।

ଶକ୍ତିଃ ପ୍ରୌଢ଼ୋଗ୍ରତେଜଃ ପ୍ରଳୟ ସମୁଦ୍ଧତାଦ୍ରାବଣାତ୍‌କୋପମାନା
ଗର୍ଜନ୍ତୀ ଦୀପୟନ୍ତୀ ଜ୍ୱଳିତଦଶଦିଶୋ ଲକ୍ଷ୍ମଣଂ ବୋଧୟନ୍ତି ।
ହାହାକାରପ୍ରଳାପଂ ସକଳଜନଭବଂ ଦେବଦୈତ୍ୟେନ୍ଦ୍ରକମ୍ପ
ବ୍ରହ୍ମାଦ୍ୟୈଃ ସ୍ତୂୟମାନା ଭୁଜଗପତିପୁରଂ କାରୟନ୍ତୀ ଜଗାମ ।୮୨।

ଉଗ୍ରତେଜେ ବୀରଗର୍ବେ ମାରିଲା ରାବଣ । ତେଣୁ ସେ ଶକତି କୋପେ କରଇ ଗର୍ଜନ ॥ ଦଶଦିଗମାନଙ୍କୁ ସେ କରଇ ଉଜ୍ଜ୍ୱଳ । ଭେଦେ ଯାଇଁ ସୁମିତ୍ରାଙ୍କ ସୁତବକ୍ଷସ୍ଥଳ ॥ ସକଳ ଭୁବନ ପୂରେ ହାହାକାର ରବେ । କମ୍ପିଲେ ରାକ୍ଷସେ ପୁଣି ଇନ୍ଦ୍ର ଆଦି ଦେବେ ॥ ସ୍ତୁତି କରୁଛନ୍ତି ବ୍ରହ୍ମା ଆଦି ଦେବେ ମିଳି । ବାସୁକିର ଭୁବନକୁ ବେଗେ ଗଲା ଚଳି ।୮୩।

ସ୍ଥାନାନ୍ତର ଦାଗତ୍ୟ ହନୂମାନ୍ ।

ପଶ୍ଚାଦାଗତେ ବିଭୀଷଣବଲେ କ୍ଷୀଣେ ପ୍ଳବଙ୍ଗେଶ୍ୱରେ
ମୂଢ଼େ ଜାମ୍ବବତି ପ୍ଲବଙ୍ଗମଗଣେଽପି କ୍ଷୁପ୍ତ ଭୂପୃଃ ସ୍ଥିତେ ।
ଶକ୍ତିପ୍ରୌଢ଼ମହାପ୍ରହାରବେଦୁରେ ମୂର୍ଚ୍ଛାଂ ଗତେ ଲକ୍ଷ୍ମଣେ
ହା ରାମେ ବିଲପତ୍ୟହୋ ହନୂମତା ପ୍ରୋକ୍ତଂ ସ୍ଥିରୈଃ ସ୍ଥୀୟତାଂ ॥

ଅନ୍ୟସ୍ଥାନୁ ଆସି ଦେଖେ ପବନର ସୁତ । ଅନୁତାପେ ବିଭୀଷଣ ହୋଇଛନ୍ତି ଚକିତ ॥ ବଳକ୍ଷୀଣ ହୋଇ ପଡେ କପିପତି ସୁଗ୍ରୀବ । ମୋହରେ ପଡ଼ିଛି ପୁଣି ଦେଖଇ ଜାମ୍ବବ ॥ ଲୁଚିଛନ୍ତି ଏଣେ ତେଣେ ସକଳ ବାନରେ । ଶକ୍ତିଘାତେ ପଡ଼ିଛନ୍ତି ଲକ୍ଷ୍ମଣ ମୂର୍ଚ୍ଛାରେ ॥ ହାୟ ରାମ କହି କଲେ ବହୁତ ରୋଦନ । ଧୈର୍ଯ୍ୟ ଧରି ରହେ ପୁଣି ପବନନନ୍ଦନ ।୮୪।

ଶକ୍ତ୍ୟପ୍ରଭାବେଣ ବାନରାନ୍ ହତପ୍ରାଣାନ୍ ଦୃଷ୍ଟ୍ୱା ରାମାଜ୍ଞୟା
ଜ୍ୱଳଦୁଲ୍ମୁକଂ ଧୃତ୍ୱା ପରିଭ୍ରମନ୍ତଂ ବିଭୀଷଣଂ
ପୃଚ୍ଛତି ଜାମ୍ବବାନ୍ ।

ଅଞ୍ଜନା ସୁପ୍ରଜା ଯେନ ମାତରିଶ୍ୱାତ୍ମ ରାକ୍ଷସ ।
ହନୂମାନ୍ ବାନରଶ୍ରେଷ୍ଠଃ କାମଂ ଜୀବତି ବା ନ ବା ।୮୫।

ଶ୍ରୀରାମ ବୋଇଲେ ଅହେ ବିଭୀଷଣ ଶୁଣ । ଶକ୍ତି ତେଜେ କପି-
ବଳ ହରାଇଲେ ପ୍ରାଣ ॥ ମଲେଣି ଜୀଇଛନ୍ତି କଏ ଦେଖଅଗ୍ନି ଜାଳି । ଆଜ୍ଞା
ପାଇ ବିଭୀଷଣ ବେଗେ ଗଲା ଚଳି ॥ ହୁଳାଜାଳି ଗୋଟି ଗୋଟି ବାନ-
ରଙ୍କୁ ଦେଖେ । ବୁଲି ବୁଲି ପ୍ରବେଶିଲା ଜାମ୍ବବାନ ପାଖେ ॥ ବିଭୀଷଣେ
ଶୁଣି ବୋଲେ ମନ୍ତ୍ରୀ ଜାମ୍ବବାନ । ଜୀଇଛନ୍ତି କି ହନୂମାନ ବାନର ପ୍ରଧାନ ।
ଅଞ୍ଜନା ଯେବଣେ ପୁତ୍ରେ ପୁତ୍ରବତୀ ହୋଇଲା । ଯେଉଁ ପୁତ୍ରେ ପୁତ୍ରବାନ
ବାୟୁ ବୋଲାଇଲା । ୮୫ ।

ତଂ ପ୍ରତି ବିଭୀଷଣଃ ।

ନୈବ ରାଜନି ସୁଗ୍ରୀବେ ନୈବ ରାମେ ନ ଚାଙ୍ଗଦେ ।
ଆର୍ଯ୍ୟେଣ ଦର୍ଶିତଃ ସ୍ନେହୋ ଯଥା ବାୟୁସୁତେ ପରଃ । ୮୬ ।

ବିଭୀଷଣ ବୋଲେ ଶୁଣ ଅହେ ଜାମ୍ବବାନ । ଶ୍ରୀରାମ ଅଙ୍ଗଦ
କରୁ ସୁଗ୍ରୀବ ରାଜନ ॥ ଏମାନଙ୍କଠାରେ ସ୍ନେହ ତୁମ୍ଭର ନ ଥାଏ ।
ହନୁଠାରେ ଯେଉଁ ପର ସ୍ନେହ ଦେଖାଯାଏ । ୮୬ ।

ଜାମ୍ବବାନ୍ ।

ତସ୍ମିନ୍ ଜୀବତି ଦୁର୍ଦ୍ଧର୍ଷେ ହତମପ୍ୟହତଂ ବଳଂ ।
ହନୂମତି ଗତପ୍ରାଣେ ଜୀବନ୍ତୋଽପି ହତା ବୟଂ । ୮୭ ।

ଜାମ୍ବବ ବୋଲଇ ଯେବେ ହନୁ ଜୀଇଥାଏ । ଜୀଇଛନ୍ତି ତେବେ
ସବୁ ବାନର ସେନାଏ ॥ କଷ୍ଟେ ଯେବେ ମରିଥାଏ ହନୂମାନ ଜାଣ
ଜୀଇ ଥାଉଁ ଥାଉଁ ଅମ୍ଭେ ହରାଇଲୁ ପ୍ରାଣ । ୮୭ ।

ଶକ୍ତିବିଦ୍ଧଂ ଲକ୍ଷ୍ମଣଂ ଦୃଷ୍ଟ୍ୱା ରାମଃ ।

ବତ୍ସୋତ୍ତିଷ୍ଠ ଧନୁର୍ଗୃହାଣ ରିପବଃ ସୈନ୍ୟଂ ବିନିଘ୍ନନ୍ତି ନଃ
କିଂ ଶେଷେଽଦ୍ୟ ନିରାକୃତାଃ କିମରୟଃ ପ୍ରତ୍ୟୁକ୍ତିତା କିଂ ପ୍ରିୟା
ଭ୍ରାତର୍ଦେହି ବାଚଂ ଜହୀହି ହୃଦୟଭ୍ରାନ୍ତିଂ ନ ପର୍ଯ୍ୟନ୍ତେ
ଦୈତ୍ୟୈକେଽପି ପ୍ରିୟସାହସେ ସୁତବଧାନ୍ନାତଃ କୃତାର୍ଥୀ ଭବ ।୮୮।

ଲକ୍ଷ୍ମଣଙ୍କ ପାଶେ ଯାଇ ସମସ୍ତେ ମିଳିଲେ । ଶକତିର ଘାଆ ଦେଖି ଶ୍ରୀରାମ କାନ୍ଦିଲେ ॥ ବୋଇଲେ ହେ ବତ୍ସ ଉଠ ଧର ଧନୁଶର । ଶତ୍ରୁ ଆସି ଅମ୍ଭ ସୈନ୍ୟ କରନ୍ତି ସଂହାର ॥ ନିଶ୍ଚିନ୍ତ ହୋଇଣ ବାବୁ କିପାଇଁ ଶୋଇଲୁ । ଅସୁରଙ୍କୁ ମାରି କିବା ସୀତା ଉଦ୍ଧାରିଲୁ । ରାଜାଙ୍କ ବାର୍ତ୍ତା ସୀ ଯେବେଣେ ହେବ ଅରେ ଭାଇ । ତାହା କହ ମନୁ ଭ୍ରାନ୍ତି ନ ଫେଡ଼ୁ କିପାଇଁ ॥ ଆଗୋ ମାତ କଇକେୟୀ ହୁଅନ୍ତୁ କୃତାର୍ଥ । ଅସୁର ଯୁଦ୍ଧରେ ପ୍ରାଣ ହରାଇଲା ସୁତ । ୮୮ ।

ତାତଃ ସ୍ୱର୍ଗମୁପାଗତୋ ବୟମପି ଦୈବେନ ଦୂରୀକୃତା
ସୀତା ଦୁଷ୍ଟନିଶାଚରେଣ ବଳିନା ପତ୍ନୀ ମନୋହାରିଣୀ ।
ଭ୍ରାତା ସର୍ବଗୁଣୈକରତ୍ନନିଲୟଃ ସଂଗ୍ରାମଧନେହୋଽଧୁନା
ଦୁଃଖାଦ୍ଦୁଃଖପରମ୍ପରାବିରଚୟନ୍ ଦୈବେନ ପ୍ରାପ୍ତସ୍ତ୍ୱହଂ ।୮୯।

ଆନନ୍ଦରେ ସ୍ୱର୍ଗପୁରର ଚାଲିଗଲେ ପିତା । ତଜ ଦେଲା ରାଜ୍ୟ ପୁଣି ଅମ୍ଭଙ୍କୁ ବିଧାତା ॥ ବଳବନ୍ତ ଅତିଦୁଷ୍ଟ ରାକ୍ଷସ ରାବଣ । ମୋର ମନୋହାରିଣୀକୁ କଲାକ ହରଣ ॥ ଯେଉଁ ଭାଇ ଅଟେ ସବୁ ଗୁଣର ସାଗର । ସଂଗ୍ରାମ ଜନମେ ଅଳ୍ପ ଜୀବନେ ତାହାର ॥ କେବଳ ମୁଁ ଦୁଃଖପରେ ଦୁଃଖକଲି ଭୋଗ । ମୋ କରମେ ଲେଖାଥିଲା ଏ ପ୍ରକାର ଯୋଗ । ୮୯ ।

ସୁଗ୍ରୀବୋ ରାମଂ ପ୍ରତି ।

ପାତାଳାନ୍ନ ସମୁଦ୍ଧୃତୋ ବତ ବଳିର୍ନୀତୋ ନ ମୃତ୍ୟୁଃ କ୍ଷୟଂ
ନୋନ୍ମୃଷ୍ଟଂ ଶଶଲାଞ୍ଛନସ୍ୟ ମଳିନଂ ନୋନ୍ମୂଳିତା ବ୍ୟାଧୟଃ ।
ଶେଷସ୍ୟାପି ଧରାଂ ବିଧୃତ୍ୟ ନ ହୃତୋ ଭାରବଳୀ ଯୁଜ୍ୟତାଂ
ଚେତଃ ସତ୍ପୁରୁଷାଭିମାନପଦବୀ ମିଥ୍ୟୈବ କିଂ ଖିଦ୍ୟସେ । ୯୦।

ସୁଗ୍ରୀବ ବୋଇଲା ଅହେ ପ୍ରଭୁ ରଘୁବୀର । ବାଲିକୁ ପାତାଳୁ କେହି ନ କଲା ଉଦ୍ଧାର । ମରଣକୁ କ୍ଷୟକରି ନ ପାରିଲେ କେହି । ଚନ୍ଦ୍ରର କଳଙ୍କ କେହି ଦେବଙ୍କ ଛଡ଼ାଇ । କଲା କି ବ୍ୟାଧିକୁ କେହି

ସମୂଳରେ ନାଶ । ଭାରାଭର ବାସୁକିର ନ ହେଲା ଉଶ୍ୱାସ ॥ ପୁରୁ-ଷାଭିମାନୀ କଥା ମିଥ୍ୟାହିଁ କେବଳ । କପି ଖେଦକର ପୁଣି ମନକୁ ଚଞ୍ଚଳ ।୯୦।

ସୁଗ୍ରୀବଂ ପ୍ରତି ରାମଃ ।

ଭ୍ରାତୃବନ୍ଧୁ ସ୍ତ୍ରିଭୁବନେ ନହି ବନ୍ଧୁରସ୍ତି
ପ୍ରାଣାର୍ଦ୍ଧ ଜଗତିପ୍ରତି ମୂର୍ତ୍ତିରେବ ।
ହା ଲକ୍ଷ୍ମଣ ହିତଭୃତୋ ରଘୁନନ୍ଦନସ୍ୟ
ତ୍ୱଂ ଯାସି କାଲସଦନଂ କମୁ ମାଂ ବିହାୟ । ୯୧ ।

ଶ୍ରୀରାମ ବୋଇଲେ ଆହେ ସୁଗ୍ରୀବ ନୃପତି । ଭାଇଠାରୁ ବନ୍ଧୁ କେହି ଜଗତେ ନାହାନ୍ତି ॥ ମୋ ପ୍ରାଣର ପ୍ରତିମୂର୍ତ୍ତି ଅଟୁରେ ଲକ୍ଷ୍ମଣ ॥ ମୋତେ ଛାଡ଼ି ଯିବୁ କେହ୍ନେ ଯମର ଭୁବନ । ୯୨ ।

ଧନୁଷି ନିପୁଣଶିକ୍ଷା ବେଦମନ୍ତ୍ରେ ଚ ଦୀକ୍ଷା
ଜନକନୃପତିଗେହେ ଗୃହିତୋ ମେ ବିବାହଃ ।
ଇଦମନୁଚିତମସ୍ମିନ୍ନଗ୍ରଜେ ବିଦ୍ୟମାନେ
ଶମନଭବନଯାନେ ଯତ୍ତ୍ୱମଗ୍ରଗାମୀ ।୯୨ ।

କି ବର୍ଣ୍ଣିବି ଗୁଣ ତୋର ଭାଇରେ ଲକ୍ଷ୍ମଣ । ଧନୁର୍ବିଦ୍ୟା ବେଦ-ମନ୍ତ୍ରେ ଅଟୁ ତୁ ନିପୁଣ ॥ ଜନକ ନୃପତି ଘରେ କହିଥିଲୁ ତୁହି । ଅଗେ କେହ୍ନେ ବାଭ ହେବ ଥାଉଁ ବଡ଼ଭାଇ । ଏତେବେଳେ କିପାଁ ତାହା ନ କରୁ ବିଚାର । ଯମଦ୍ୱାରେ ଯିବାପାଇଁ ହେଉ ଅଗ୍ରସର । ୯୨ ।

ଭୁକ୍ତେ ମଯ୍ୟି ପ୍ରଥମମତ୍ସି ଫଳାନି ବତ୍ସ
ସୁପ୍ତେ କରୋଷି ଶୟନଂ ମୟି ଜାଗ୍ରତି ତ୍ୱଂ ।
ପ୍ରାଣାନ୍ ଜହାସି ସୁରଲୋକସୁଖାୟ କିଂ ବା
ସାପତ୍ନଭାବମହହ ପ୍ରକଟୀକରୋଷି । ୯୩ ।

ଅଗେ କିଛି ଫଳ ମୂଳ କଲେ ମୁ ଭକ୍ଷଣ । ପଛେ ତୁ ଭୋଜନ କରୁ ଭାଇ ରେ ଲକ୍ଷଣ ॥ ମୁଁ ଶୋଇ ସାରିଲେ ପୁଣି କରୁ ତୁ ଶୟନ ।

ମୂର୍ଦ୍ଧି ତ ଜାଇଛନ୍ତି କେଉଁଠେ ତେଜେ ତୁ ଜୀବନ ॥ ଏତେବେଳେ ଶତ୍ରୁ-
ଭାବ ବହିଲୁ କପାଇଁ । ସ୍ୱର୍ଗ ସୁଖ ଭୋଗକରୁ ମୋତେତ ନ ଦେଇ ॥

ଯାସ୍ୟାମି କଲସଦନଂ ସହ ଲକ୍ଷ୍ମଣେନ
ସୀତାପି ଯାସ୍ୟତି ଭସ୍ମୀଦଶକଣ୍ଠଗେହଂ ।
ଯାସଂନ୍ତି ବାନରଚମୂପତୟଃ ସ୍ୱଦେଶାନ୍
ହା ହନ୍ତ ନାସ୍ତି ଗତିରେବ ବିଭୀଷଣସ୍ୟ ।୧୪ ।

ଯମପୁରେ ଯିବା ମୁହିଁ ଲକ୍ଷ୍ମଣ ସଙ୍ଗରେ । ଭସ୍ମରେ ରହିବ ସୀତା
ରାବଣମନ୍ଦିରେ ॥ ନିଜ ନିଜ ଦେଶେ ଯିବେ କପି ସେନାପତି । ଏ
ବିଭୀଷଣର ହାୟ ନାହିଁ କିଛି ଗତି । ୧୪ ।

ମହାଶୟ ମୟା ସାକଂ ତ୍ୱମରଣ୍ୟମିହାଗତଃ ।
ନ ଗଚ୍ଛାମି ତ୍ୱୟା ସାର୍ଦ୍ଧଂ ନାକମପ୍ୟହମନ୍ୱହଃ । ୧୫ ।

ଆରେ ବାବୁ ରାଜସୁଖ ଭୋଗକୁ ଛାଡ଼ିଲୁ । ମୋ ସଙ୍ଗତେ ବନ-
ବାସ କଷ୍ଟ ତୁ ସହିଲୁ ॥ ସ୍ୱର୍ଗ ସୁଖ ଭୋଗିବାକୁ ତୋହର ସଙ୍ଗତେ ।
ଯାଉ ନାହିଁ ଏ ଲଳିକ ଜୀବନ କେମନ୍ତେ । ୧୫ ।

ଅଦ୍ୟାବଧି ତ୍ୱମନୁଗୋ ମମ ଦୈବଯୋଗା
ଦଦ୍ୟାନୁଗୋଽସ୍ମି ନନୁ ବତ୍ସ ନ ଗଚ୍ଛ ହିତ୍ୱା ।
ଯାବଦ୍ରଣେ ମରଣମେତି ମମୈବ କାୟ
ସ୍ତାବତ୍ପ୍ରିୟଂ ତ୍ୱମପି ତେ ଧବା ମାନଦେହି । ୧୬ ।

ଆଜଯାଏ ଅନୁଗାମୀ ହୋଇଥିଲୁ ତୁହି । ଦୈବଯୋଗେ ଅନୁ-
ଗାମୀ ହୋଇଲଇଁ ॥ ଯେ ପର୍ଯ୍ୟନ୍ତ ରଣେ ମୋତେ ନୋହୁଛି
ମରଣ । ସେ ପର୍ଯ୍ୟନ୍ତ ଛାଡ଼ି କେବେ ନ ଯିବୁ ଲକ୍ଷ୍ମଣ । ୧୬ ।

ହା ବତ୍ସ ଲକ୍ଷ୍ମଣ ଧିଗସ୍ତୁ ସମୀରସୂନୁଂ
ଯସ୍ତ୍ୱାଂ ରଣେଽପ ପତିତଂ ପରିତ୍ୟଜ୍ୟ ଗତୋଽଭୂତ୍
ଗୋପାୟତୀହ ଭରତସ୍ତୁ ମମାନୁଜଃ କଂ
ଯସ୍ମା ମହ୍ୟଧନୁ ରୁଦ୍ଧତଶକ୍ତିପାତାତ୍ । ୧୭ ।

ବାୟୁ ବସ୍ତ୍ର ଲକ୍ଷଣ ରେ ମାରୁତଙ୍କ ଧ୍ୱଜ । ତୋତେ ଘୋଡ଼ା ଗଲା ରଣେ ହୋଇଣ ବିମୁଖ ॥ ଭରତ ଙ୍କ ଗୁଣ ଦିଆ ଧନୁ ଧର କରେ । ଶକତ ଘାତରୁ ଆସି ରଖୁଛନ୍ତି ଏଠାରେ । ୯୭ ।

ଏତଛ୍ରୁତ୍ୱା ମନୁମାନ୍ ।

ପାତାଳତଃ କମୁ ସୁଧାରସମାନୟାମି
ନିଷ୍ପୀଡ୍ୟ ଚନ୍ଦ୍ରମମୃତଂ କମୁତାହରାମି ।
ଉଦଣ୍ଡଚଣ୍ଡକିରଣଂ ନନୁ ବାଽନ୍ୟାମି
କୀନାଶପାଶମନିଶଂ କମୁ ଚୂର୍ଣ୍ଣୟାମି । ୯୮ ।

ଏହା ଶୁଣି ହନୁ ବୋଇଲ ଆହେ ରଘୁରାଇଁ । ପାତାଳରୁ ଅମୃତ ମୁଁ ଆଣିବ କି ଯାଇ ॥ ଚନ୍ଦ୍ରକୁ ଚୁପୁଡ଼ି ତହୁଁ ଅମୃତ ଆଣିବ । କିବା ସୂର୍ଯ୍ୟ କିରଣକୁ ଯେ ଇ ନିବାରିବ ॥ କିଅବା ଏକ୍ଷଣି ଯିବ ଯମ ଭୁବନକୁ । ଆସିବ ଛିଣ୍ଡାଇ ଦେଇ ଯମର ପାଶକୁ । ୯୮ ।

ରାମଃ ହନୁମନ୍ତଂ ବ୍ରୁତେ ।

ବୈଦ୍ୟଂ ସୁଷେଣମଧୁନୈବ ତଦାନୟ ତ୍ୱଂ
ଲଙ୍କାପତେରନୁଚରୋଽପି ଯତେତ ଭିଷକ୍ ସଃ ।
ନୈବାନ୍ୟଥା ବଦସି ରାମଗିରା ହନୂମାନ୍
ପର୍ଯ୍ୟଙ୍କସୁପ୍ତମଚିରେଣ ତମାନିନାୟ । ୯୯ ।

ଶ୍ରୀରାମ ବୋଇଲେ ଅରେ ପବନନନ୍ଦନ । ସୁଷେଣ ବୈଦ୍ୟକୁ ଘେନି ଆସ ଯା ବହନ ॥ ରାବଣର ବୈଦ୍ୟ ଯେହୁ ଅଛି ଲଙ୍କାପୁରେ । ଶତ୍ରୁ ମିତ୍ରଠାରେ ବୈଦ୍ୟ ସମଜ୍ଞାନ କରେ ॥ ଆଜ୍ଞାମାତ୍ରେ ହନୁମାନ ବେଗେ ଚଳିଗଲା । ଲଙ୍କାର ଭିତରେ ଯାଇ ପ୍ରବେଶ ହୋଇଲା ॥ ଶୋଇଛି ସୁଷେଣ ବୈଦ୍ୟ ପଲଙ୍କ ଉପରେ । ପଲଙ୍କ ସହିତେ ଟେକି ଆଣିଲା ସତ୍ୱରେ । ୯୯ ।

ସୁପ୍ତୋତ୍ଥିତଂ ରଘୁପତିର୍ଭିଷଜାଂ ବରିଷ୍ଠଂ
ପପ୍ରଚ୍ଛ ତଂ ସକରୁଣଂ ତରୁଣୋପଚାରଂ

ସ ବ୍ୟାଜହାର ହନୁମଚଣ୍ଡି ଚୁର୍ଣ୍ଣ ରଜନ୍ୟାଂ
ଗୀବତ୍ୟଯୌ ଦ୍ରୁହ୍ନଣଶୈଳବିଶଲ୍ୟ ବଲ୍ୟା । ୧୦୦ ।

ଖଟରେ ସୁଷେଣ ବୈଦ୍ୟ ନିଦେ ଅଛୁ ଶୋଇ । ତାହାଙ୍କୁ ଶ୍ରୀରାମଚନ୍ଦ୍ର ଉଠାଇଲେ ଯାଇ ॥ ପଚାରିଲେ ଦୟାକର କହ ହେ ସୁଷେଣ । କେମନ୍ତେ ହୋଇବ ଭଲ ମୋ ଭାଇ ଲକ୍ଷ୍ମଣ ॥ ବୋଇଲା ସୁଷେଣ ବୈଦ୍ୟ ଆହେ ରଘୁପତି । ଅଛଇ ବିଶଲ୍ୟ ଲତା ଦ୍ରୁହ୍ନଣ ପର୍ବତେ ॥ ଔଷଧି ଆଣଇ ଧଳା ହନୁମନ୍ତ ପ୍ରାୟ । ରାତି ଥାଉ ଆଣି ଦେଲେ ବଞ୍ଚିବ ନିଶ୍ଚୟ । ୧୦୦ ।

ଦ୍ରୁହ୍ନପର୍ବତଂ କେ ଯାସ୍ୟନ୍ତୀତି ପ୍ରଶ୍ନେ ଜାମ୍ବବାନ୍ ।
ନଳସ୍ତ୍ରିରହ୍ନଂପୁନରେକେ ଗତ୍ୱା ତଦୈବ ମେଦ୍ରୁ ଧ୍ୱବଦୌ ଦ୍ୱିରହ୍ନଂ ।
ସୁଗ୍ରୀବନୀଳୌ ପୁନରେକରହ୍ନଂ ବ୍ରଜଗଦୋ ଯାମଚତୁଷ୍ଟୟେନ ।୧୦୧।

ବହୁଦୂରେ ରହିଅଛି ସେହୁ ହିମଗିରି । କିଏ ଯିବ ବୋଲି ପଚାରିଲେ ଚାପଧାରୀ । ଜାମ୍ବବ କହଇ କପି ସେନାଙ୍କ ମଧ୍ୟରେ । ନଳ ଯେବେ ଯିବ ତିନିରାତ୍ରେ ଫେରି ପାରେ । ଦୁଇ ରାତ୍ରିରେ ଫେରିବେ ମହାଧ୍ରୁଧ୍ୱବନ୍ଦ । ସୁଗ୍ରୀବ ଏକ ରାତ୍ରିରେ ଅଣିବେ ଔଷଧ । ଚାରି ପ୍ରହରେ ଫେରିବ ବାଳିର କୁମର । ନିଜ ମାନସରେ ପ୍ରଭୁ କରନ୍ତୁ ବିଚାର ।୧୦୧।

ରାମଂ ଶୁଷ୍କମୁଖଂଦୃଷ୍ଟ୍ୱା ହନୂମାନ୍ ।
ନୀତ୍ୱା ଲଙ୍କାଂ ସୁଷେଣଂ ପୁନରନିଲସୁତଃ ପ୍ରାର୍ଥୟାମାସ ରାମଂ
ଦେବାଜ୍ଞାଂ ଦେହି ବୀରସ୍ତବହୃତକରଣେ ପଶ୍ୟ ତାଃ ସନ୍ତି ସର୍ବେ ।
ଲକ୍ଷାଣାଂ ଷଷ୍ଟିରାସ୍ତେ ଦ୍ରୁହ୍ନଣଗିରିରତୋଯୋଜନାନାଂହନୂମାନ୍
ତୈଳାଗ୍ରେଃ ସର୍ଷପସ୍ୟ ସ୍ଫୁଟେନ ରବିପଦସ୍ତନ ଗତ୍ୱାନ ତୈମି ।୧୦୨।

ଶୁଣି ଶ୍ରୀରାମଚନ୍ଦ୍ରଙ୍କ ମୁଖ ଗଲାଶୁଖି । ସୁଷେଣକୁ ଲଙ୍କାରେ ଛାଡ଼ିଲା ବାତବହ୍ନି । ତହୁଁ ଅସି କରଯୋଡ଼ି କହେ ହନୂମାନ । ଶୁଣିମା ହେଉ ହେ ପ୍ରଭୁ ମୋର ନିବେଦନ ॥ ଆପଣଙ୍କ ହିତେ ବୀରମାନେ ଛନ୍ତି ଅସି । ତହିଁ କେହି ଯାଇ ନ ପାରିବେ ହେ ଉରସି ॥ ଷାଠିଏ ଲକ୍ଷ ଯୋଜ

ଏହାଠାକୁ ସେ ଦୂହଣ । ଏହାକ୍ଷଣି ଯିବ ଆଜ୍ଞା ହଉ ରଘୁନାଥେ ॥ ଦ୍ରୋଣଗିରିରେ ଯୋଉଷ ଫୁଟେ ଯେତେକ୍ଷଣି । ଔଷଧି ଆଣିବ ସେହି ସମସ୍ତ ମଧ୍ୟେଣି । ୧୦୨ ।

ଓଷଧ୍ୟାନେତୁଂ ଗତେ ପବନାତ୍ମଜେ ରାମଃ ।
ମାତର୍ନିଶୀଥିନି ଚିରଂ ଭବ ଦୀର୍ଘଯାମା
ତ୍ୱଂ ଗୃଢ଼କାରବପୁଷା ଗଗନଂ ପିଧେହି ।
ନାଥ ପ୍ରଭାକର ରୁଚିଂ ନ କୁରୁ ପ୍ରକାଶଂ
ଯାବନ୍ନ ଦୃଷ୍ଟିପଥମେତି ସମୀରସୂନୁଃ । ୧୦୩ ।

ହନୁମନ୍ତ ଯାଆନ୍ତେ ଔଷଧି ଆଣିବାକୁ । କହନ୍ତି ଶ୍ରୀରଘୁନାଥ ତହିଁ ରଜନୀକୁ ॥ ଅଗୋ ରାତ୍ରୀଦେବୀ ତୁମ୍ଭେ ବୃଦ୍ଧି ହୋଇଯାଅ । ଅନ୍ଧାରରେ ଆକାଶକୁ ଢ଼ାଙ୍କି ରଖିଥାଅ । ଅହେ ଦିନମଣି ବେଗେ ଉଦୟ ନ ହୁଅ । ଯେ ପର୍ଯ୍ୟନ୍ତ ନ ଆସିଛି ପବନର ପୁଅ । ୧୦୪ ।

ତତେ ହନୁମାନ୍ ।

ଧ୍ୟାତ୍ୱାମ୍ବାନଂ ପ୍ରଣମ୍ୟ ପ୍ରଭୁମବନିସୁତାବଲ୍ଲଭଂ ତସ୍ୟ ବାକ୍ୟଂ
ନୀତ୍ୱାଯୋଧ୍ୟାଂ ଗମିଷ୍ୟସ୍ୟଖିଲକୁଶଲତାମାନୟିଷ୍ୟସ୍ୟପୀତି ।
ତଣ୍ଡୋଡ୍ଡୀନଂ ଚକାର ଦ୍ରୁତମଥ ଜନନୀ ଲକ୍ଷ୍ମଣସ୍ୟୋପଲଭ୍ୟ
ସ୍ୱପ୍ନେ ବ୍ୟାଳଃ ସମନ୍ତଂ କବଳୟତି ଭୁଜଂ ବାମ ମୁଚ୍ଚୈଃ ପୀତ ।୧୦୪।

ଶ୍ରୀରାମ କହନ୍ତି ବତ୍ସ ! ଯିବୁ ଅଯୋଧ୍ୟାକୁ । ମୋ ଆଗେ କହିବୁ ଅସି କୁଶଳବାର୍ତ୍ତାକୁ ॥ ତହୁଁ ହନୁମାର ବୁଦ୍ଧିରୂପ ଚିନ୍ତା କର । ନିଜ ପ୍ରଭୁଙ୍କ ଚରଣେ ପ୍ରଣାମ ଆଚର ॥ ଅନ୍ତଗତେ ତାଙ୍କ ଆଜ୍ଞା ରଖି ଭକ୍ତିଭରେ । ବିଶ୍ୱମୂରତି ଧରିଣ ଉଡ଼େ ଗଗନରେ ॥ ପବନଙ୍କୁ ଚଞ୍ଚଳରେ ଉଡ଼ି ଗଲା । ଅଯୋଧ୍ୟାକଟକେ ଯାଇ ପ୍ରବେଶ ହୋଇଲା ॥ ସେହି ଗତ ରଜନୀରେ ସୁମିତ୍ରା ଜନନୀ । ଶୟନ କାଳେ ସ୍ୱପନ ଦେଖିଲେକ ପୁଣି ॥ ବାମକର ବାହୁ ପର୍ଯ୍ୟନ୍ତେ ଏକ ଅହି । ଗଳିଅଛି ଏହି ସ୍ୱପ୍ନ ଦେଖିକରି ତହିଁ ॥ ସଚେତ ହୋଇଣ ରାଣୀ ଉଠିଲେ ବହନ । ବହୁ ତାପ କଲେ ଚିନ୍ତି ଚିନ୍ତି ସେ ସ୍ୱପନ । ୧୦୪।

ପ୍ରୋବାଚ କୋଶଲସୁତାପୁର ତୋଽଭ୍ରତଂ ସା
ସ୍ୱପ୍ନଂ ଚ ସା ମୁନିବଶିଷ୍ଠପୁରୋହ ତସ୍ୟ ।
ପାର୍ଶ୍ୱେ ନିଯୋଜ୍ୟ ସଶରଂ ଧନୁରାଦଧାନଂ
ଶାନ୍ତିଚକାର ଭରତଂ ମୁନିବାକ୍ୟହୋମୈଃ । ୧୦୫ ।

ସେହି ଅଦଭୁତ ସ୍ୱପ୍ନ କଥା କୌଶଲ୍ୟାଙ୍କୁ । କହିଲେ ସୁମିତ୍ରା ରାଣୀ ଅରାଇଣ ବୃକ୍ଷ ॥ ବଶିଷ୍ଠ ଋଷିଙ୍କି ଯାଇଁ ସେହିକ୍ଷଣି ଭେଟ । କହିଲେ କୌଶଲ୍ୟା ରାଣୀ ସ୍ୱପନ କଥାଟ । ବଶିଷ୍ଠ ଭରତ ଆଗେ ବୁଝାଇ କହନ୍ତି । ତାହା ଶୁଣି ଭରତ ଯେ କ୍ରୋଧଭରେ ଅତି । ଧନୁଶର ଆପଣାର ହସ୍ତରେ ଧଇଲେ । ପୁରୋଧାଙ୍କ ଦ୍ୱାରା ଶାନ୍ତିହୋମ କରାଇଲେ । ୧୦୫ ।

ଦ୍ରୋଣାଦ୍ରିଶିଖରେ ହନୂମାନ୍ ।

ଦୃଷ୍ଟ୍ୱା ସର୍ବାସୁହିମକରଣୋଦ୍ୟଦ୍‌ଭିସ୍ତବର୍ତୈଲେ
ବଲ୍ଲୀରତ୍ନାନ୍ୟମଲଖଦିରାଙ୍ଗାରଭାସ୍ୱନ୍ତି ଯାରଃ ।
ଭ୍ରାନ୍ତ୍ୟା ଦୋର୍ଭ୍ୟାଂ ଗିରିମୁଦହରନ୍ନୃପାତେଷ ତାତଂ
ସଦୂରାସ୍ୱଂ ଦ୍ରୁତମୁପଗତସ୍ତଦ୍‌ଗ୍ରନ୍ଥୈର୍ନୋଲ୍ଲହାର । ୧୦୬ ।

ଦ୍ରୋଣ ପର୍ବତର ଶିଖେ ମିଳି ହନୁବୀର । ଦେଖଇ ସକଳ ଲତା ଚନ୍ଦ୍ରମା ପ୍ରକାର ॥ ଅବର ତହିଁରେ ଯେତେ ୨ ରତ୍ନ ଅଛି । ଖଦିର କାଷ୍ଠର ଅଗ୍ନି ପରି ଝଟକୁଛି । ତହିଁ ଔଷଧିଲତିକା ଖୋଜି ନ ପାଇଣ । ନିଜ ବାହୁବଳେ ଗିରି କଲା ଉତ୍ପାଟନ ॥ ଯହୁଁ ନ ଚିହ୍ନିଲା ସେହି ମହାଗିରିବର । ପବନଦେବଙ୍କୁ ମନେ ଚିନ୍ତାକଲା ତାର । ତା ଜାଣି ସହାୟ ହୋଇଲେ ଦେବ ପ୍ରଭଞ୍ଜନ । ସେ ବଳେ ଗିରି ତୋଳିଲା ବୀର ହନୁମାନ । ଅତିଅତି ମୃଣାଳ ଆକାଶେ ଉଠିଲା । ପବନ ବେଗରେ ଉଡ଼ି ଉଡ଼ିଣ ଧାଇଁଲା । ୧୦୬ ।

ଅଯୋଧ୍ୟାୟାଂ ଶାନ୍ତିମଣ୍ଡପେ ଭରତ ବଶିଷ୍ଠୌ ।
ହୃତ୍ୱା ଶ୍ରୀଖଣ୍ଡକାଣ୍ଡଂ ସତଗରକୁସୁମଂ ପୁଣ୍ଡରୀକଂ ମୃଣାଳଂ

କର୍ପୂରୋଶୀରଗର୍ଭଂ ପ୍ରଚୁରଘୃତଯୁତଂ ନାରିକେଳଂଜୁହ୍ବ ।
ତୂର୍ଣ୍ଣଂ ପୂର୍ଣ୍ଣାହୁତିଂ ସଜ୍ଜ୍ୱଳଦନଲକୃତଂ ଶୈଳମାଦାୟ ବୀରଃ
ପ୍ରାପ୍ତ ସୁନାଞ୍ଜନେୟଃ ସ କ୍ୱମପି ଭରତସ୍ତଂ ଶରେଣାଜଘାନ ।

ଅଯୋଧ୍ୟା ନଗ୍ର ନିକଟେ ହେଲା ପରବେଶ । ଏକାଳେ ଭରତ ସହ ବଶିଷ୍ଠ ମୁନୀଶ । ଶାନ୍ତିମଣ୍ଡପରେ ଦୁଇଜଣ ବସିଛନ୍ତି । ତହିଁ ଶାନ୍ତିହୋମ କୁଣ୍ଡେ ବଶିଷ୍ଠ କରନ୍ତି । ଶ୍ରୀଖଣ୍ଡ ଚନ୍ଦନ ପୁଣି ତଗର ସୁମନ । ପୁଣ୍ଡରୀକ ମୃଣାଳକର୍ପୂର ସହିତେଣ । ଉଶୀର ଅବର ବହୁ ପ୍ରମାଣରେ ଘୃତ । ନାରିକେଳସହ ପୂର୍ଣ୍ଣ ଆହୁତି ପ୍ରଦତ୍ତ ॥ କରନ୍ତେ ଏହି ସମୟେ ପବନ ନନ୍ଦନ । ଉଡ଼ି ଉଡ଼ି ଆସୁଅଛି ଆକାଶ ମାର୍ଗେଣ । ଜ୍ୱଳନ୍ତ ଅଗ୍ନି ପରାୟ ପର୍ବତ ମୁଣ୍ଡାଇ । ଖରତର ହୋଇ ବୀର ଅସୁଅଛି ଧାଇ । ତା ଦେଖି ଭରତ ବୀର ମାଇଲେ ବାଟୁଳି । ହନୁର କପାଳେ ବାଜିଗଲା ସେହୁଗଲି ।୧୦୭।

ହନୂମାନ୍

ପୁଙ୍ଖାବଶେଷଭୂରତେଷୁ ଲଲାଟପଟ୍ଟେ।
ହାରାମ ଲକ୍ଷ୍ମଣ କୁତୋଽହମ ତବ ବାଣଃ ।
ସମ୍ମୂର୍ଚ୍ଛିତୋ ଭୁବିପପାତ ଗିରିଂଦଧାନୋ
ଲଙ୍ଗୂଲଶେଖରରୁହେଽଡ ସକେଶରେଣ । ୧୦୮।

ସେହି ବାଟୁଳି ବାଜନ୍ତେ ମାରୁତିଲଲାଟେ । ହା ରାମ ଲକ୍ଷ୍ମଣ ବୋଲି ମୁଖରେ ସେ ରଟେ ॥ ଗୁହୁଁ ଗୁହୁଁ ମୂର୍ଚ୍ଛା ଯାଇ ଭୂମିରେ ପଡ଼ିଲା । ଲଞ୍ଜ ଅଗ୍ରେ ଗିରି ଧରି ସେ ପବନବଳା । ୧୦୮।

ଭରତାଦୟଃ ସର୍ବସ୍ଥୃୟଂ ।
ସର୍ବେ ନିଶମ୍ୟ ସହଲକ୍ଷ୍ମଣରାମନାମ
ତତ୍ରୋପଗମ୍ୟ ହନୁମତ୍ପଦୟୋର୍ନିପେତୁଃ ।
ବୃତ୍ତଂ ଚତସ୍ୟ ବଚନା ଦପନୀୟ ଶଲ୍ୟଂ
ମୂର୍ଚ୍ଛା ଜହାର ସ ମୁନିର୍ଗିରିଜୌଷଧୈସ୍ତୈଃ ।୧୦୯।

ପରେ ଶ୍ରୀରାମ ଲକ୍ଷ୍ମଣ ନାମକୁ ଶୁଣିଲେ । ଅଷ୍ଟର୍ଘ ଟନ ରେହନ ଗାଗରେ ମିଳିଲେ । ୧ାଗ ହରୁ ଔଷଧ ତେଳ ଦେଲେକ ବଶିଷ୍ଠ । ଏଟଟେ ହୋଇ ବସିଲ ପବନର ଗୃହେ । ୨ । ଭରତଙ୍କୁ ସୀତାଗୃେଷ୍ଣ ବାରତା କହିଲ । ଶକ୍ତିଭେଦ ଅଦ୍ୟ ରାମବାର୍ତ୍ତା ଜଣାଇଲ ।୧୦୯ ।

ହନୂମାନ ସାଦ୍ୟସ୍ପୃଂ॥

ଜଙ୍ଘାସ୍ପୃ ଭରତବାହୁ ପରାକ୍ରମସ୍ୟ

ରାମସ୍ତୁ ତସ୍ୟଯୁଦ୍ଧି ଲକ୍ଷ୍ମଣ ଶକ୍ତିଭେଦେ ।

ଶ୍ରୀକ୍ରୋଽହମିତ୍ୟଥ ଗିରିଂ ନୟୁ ତଂ କୁମାରଂ

ବାକ୍ୟଂଜଗାଦ ହନୁମନ୍ ଭରତଂ ସରୋଷଃ ୧୧୦ ।

ଲକ୍ଷ୍ମଣଙ୍କ ଶକ୍ତିଭେଦ ସ୍ଥାନେ ରଘୁପତି । ଭରତ ବୀରଙ୍କ ବାହୁ ବଳ ପ୍ରଶଂସନ୍ତି ॥ ସେ ବଚସ୍ୟୁ ଜାଣିବାକୁ କ୍ରୋଧେ ରାମଦୂତ । ଭରତଙ୍କ ନିକଟରେ କହଇ ଏମନ୍ତ ॥ ଶ୍ରାନ୍ତ ହେଲି ଆଉ ନେଇ ନ ପାରିବ ଗିରି । ଏ ଗିରିକି ତୁମ୍ଭେ ଘେନିଯାଅ ବହିକରି । ୧୧୦ ।

ଭରତଃ ।

ଶ୍ରୁତ୍ୱେତି ତସ୍ୟ ବଚନଂ ଭରତଃ ଶରାଗ୍ରେ

ସାଦ୍ରିଂ କପିଂ ସମଧିରୋପ୍ୟ ଗୁଣେ ନିଯୋଜ୍ୟ ।

ମୋକ୍ତୁଂଦଧେ ଝଟିତି କୁଣ୍ଡଳିନଂ ଚକାର

ତୁଷ୍ଟାବ ତଂ ପରମବିସ୍ମୟମା ଗତଃ ସଃ ୧୧୧।

ଏମନ୍ତ ଶୁଣି କୁମାର ଭରତ ଉଠିଲେ । ବାଣଶିଖେ ହନୁସହ ଗିରିକି ରଖିଲେ ॥ କୁଣ୍ଡଳୀ ଆକୃତି କରି ଦେଲେ ଗୁଣେଯୋଇ । ଛାଡ଼ି ଦେବାକୁ ମାନସେ ବସୁରଙ୍ଗେତହିଁ ॥ ତା ଦେଖି ମାରୁତି ଅତି ଆଚମ୍ବିତ ହେଲ । ଭରତ ବୀରଙ୍କୁ ବହୁତ ସେ ପ୍ରଶଂସିଲ । ୧୧୧ ।

ହନୂମାନ୍ ।

ଉତ୍ତୀର୍ଯ୍ୟ ବାଣାତ୍ କୁଶଳଂ ଗୃହୀତ୍ୱା

ସଂ ପୂଜ୍ୟ ବାହୂ ଭରତସ୍ୟବାଗ୍ଭିଃ ।

ମଟେନା ଦରଦ୍ରସ୍ୟ ଯଥାଦ୍ଧଗନ୍ତଂ
ତଥା ହନୂମାନ୍ ଶିବିରଂ ଜଗାମ । ୧୧୨ ।

ବାଣ ଶିଖରୁ ମାରୁତି ଶୀଘ୍ର ଓହ୍ଲାଇଲା । ତାଲଞ୍ଜିଅଗ୍ରରେ ଧରିବା ତାକୁ ରଖିଲା । ଭରତ ଛାଜ ଦେବିକ ବହୁ ପ୍ରଶଂସିଲା । ଅକାଶମାର୍ଗରେ ତହୁଁ ବେଗେ ଉଡ଼ିଗଲା ॥ ଦରିଦ୍ର ଜନର ମନ ଯଥା ଧଟନ୍ତରେ । ତଥା ହନୂମନ୍ତ ମିଳେ ଶିବିର ପାଶରେ ।୧୧୨।

ଅଦ୍ରିଂ ରୁଦ୍ରାବତାରଃ ପ୍ରଳୟସମୁଦ୍ଧାତଦ୍ୱାଦଶାର୍କାନ୍ତକାରଂ
ଦ୍ରୋଣଂ ଦୋଷ୍ଣା ଦଧାନଃ କଠକନକକଠତାମାଗତୋ ଘ୍ୟଦ୍ଧିଗତେ
ଧଗଦ୍ଭାଟୋଖବଦ୍ଧୁଷ୍ଟି ସ୍ତଚଳତରସରସ୍ତୀରମାସ୍ଥାୟ ବୀର
ସ୍ତାରଂ ଧୀମାନରୋଦୀତ୍ଦନୂ ସ୍ୱହମୁଦାବାହ୍ନମାନଗାମ ।୧୧୩।

ପ୍ରଳୟେ ଦ୍ୱାଦଶ ସୂର୍ଯ୍ୟଧରେ ଯେମନ୍ତ । ସେହିପରି ଦିଶୁଛନ୍ତି ଦ୍ରୋଣ ପର୍ବତ ॥ ମହାବୀର ହନୁମାନ ରୁଦ୍ରରୂପ ଧରି । ବାହୁବଳରେ ଅଣିଲ ସେହି ଦ୍ରୋଣଗିରି ॥ ଅର୍ଦ୍ଧରାତ୍ରରେ ବାନର ଥାଟ ନିକଟରେ । ପ୍ରବେଶ ହେଲା ଅସି ସ୍ୱଚ୍ଛେ ଜରଜରେ ॥ ତାହା ଦେଖି ମାନସେ ଚିନ୍ତିଲେ କପିଗଣ । ନିଶୀ ଶେଷ ହେଲା ଉଦେ ହେଲେ କି ତପନ ॥ ପୂର୍ବଦିଗକୁ ଅନାଇଁ ଦେଖିଲେ ସଟେ ମିଳା । ନିକଟର ତଡ଼ାଗକୁ ଗୃହୀଁ ଦେଖିଲେ ତାଳା ॥ ଉଚ୍ଚରେ କାହ୍ନ ଲେକ ସ୍ୱବୁଦ୍ଧି କପିମାନେ । ହନ ବୋଲି ତହୁଁ ଚିହ୍ନିଲେକ ସନ୍ନିଧାନେ । ବହୁ ପରଶଂସା କରି ପବନଗୃଠକୁ । ଅନନ୍ଦରେ ସଙ୍ଗେ ଭାର ଅସିଲେ ଆଠକୁ ।

ଇତ୍ୟ ଚସରେ ଗ୍ରବଣଂ ପ୍ରତି ମହୋଦରଃ ।
ହତ୍ୱା ମାୟୂ ମନ୍ଦର୍ଷିଂ ରଜନୀଚରବଦ୍ଧୂଂ ଗନ୍ଧକାଳୀଂ ହ୍ରଦସ୍ଥାଂ
ଗ୍ରାହୀରୂପାଂ ବିମର୍ଦ୍ଦ୍ୟ ପ୍ରବଳମଥ ବଳଂ ରକ୍ଷସାଂ ମର୍ଦ୍ଦୟିତ୍ୱା ।
କୃତ୍ୱା ଗନ୍ଧର୍ବକୋଟିଂ ଝଟିତି ତଡନ୍ନେକ୍ସ୍ୱାଳମାଦାୟ ଶୈଳଂ
ପ୍ରାପ୍ତଃ ଶ୍ରୀମାନ୍ ହନୁମାନ୍ ପୁନରପି ତରସାନନ୍ଦତସ୍ତତ୍ପୁରସ୍ତାତ୍ ।

ଏହି ସମୟରେ ମନ୍ତ୍ରୀ ମହୋଦର ଗଲା । ଲଙ୍କପତି ରାବଣ ଆଗରେ ଜଣାଇଲା । ବୋଇଲା ଶୁଣିମା ହେଉ ଅହେ ଲଙ୍କନାଥ । ଦୂତ ମୁଖରୁ ଶୁଣିଲି ଯେତକ ଉକତ । ତବ ଆଜ୍ଞାରେ ଏଠାରୁ କାଳନେମି ଯାଇଁ । ତପସ୍ୱୀ ରୂପରେ ଗିରି ପାଶେ ଥିଲା ରହି ॥ ତାକୁ ପଥେ ବଧିଲା ହେ ସେହି ହନୁମନ୍ତ । ଅବର କହୁଛି ଶୁଣ ଏକଇ ବୃତ୍ତାନ୍ତ ॥ ଗନ୍ଧକାଳୀ ବୋଲି ଏକ ଗନ୍ଧର୍ବ ରମଣୀ । ଶାପେ କୁମ୍ଭୀର ରୂପରେ ହ୍ରଦେ ଥିଲା ପୁଣି ॥ ଜଳରେ ପଶିଣ ହନୁମାନ ଅପ୍ରମାଦେ । ସେହି କୁମ୍ଭିରୀ ବେଗ ଠାକୁ ମରଦିଲା ପାଦେ ॥ ଯେଉଁ ରାକ୍ଷସମାନଙ୍କୁ ତୁମ୍ଭେ ଥିଲ ପେଷି । ପର୍ବତ ଶିଖେ ଉଠିଲା ଏଥେ ତାଙ୍କୁ ନାଶି । କୋଟିଏ ଗନ୍ଧର୍ବ ଥିଲେ ସେ ଗିରି ଉପରେ । ସଭିଙ୍କି ବଧିଲା ହନୁ ବୀର ଅକ୍ଳେଶରେ । ଔଷଧିକୁ ଯେଣୁ ସେହୁ ଚିହ୍ନି ନ ପାରିଲା । ଗିରି ସହିତରେ ତୋଳି ମୁଣ୍ଡାଇ ଆଣିଲା ॥ ଭରତଙ୍କୁ ବାଡ଼ି ଦେଲା ନନ୍ଦିଗ୍ରାମେ ପୁଣି । ତହୁଁ କପିଆଡେ ଅଧି ମିଳିଲା ପାବନି । ୧୧୪ ।

ସର୍ବେ ବାନରାଃ ସାନନ୍ଦଂ ।

ଯୋ ମୈନ୍ଦଦ୍ୱିବିଦାଦ୍ୟବାନରଚମୂଚକ୍ରସ୍ୟ ରକ୍ଷାକରଃ
ସଂହର୍ତ୍ତା ରଣୀଙ୍ଗଣେ ଭୈରବବରବୋଲ୍ଲି ସଦ୍ୟ ଲଙ୍କାପତେଃ ।
ସୀତା ଚଙ୍କମହାଙ୍କକାରହରଣେ ପ୍ରଦ୍ୟୋତନୋଽୟଂ ହରିଃ
ସଂତ୍ରାତ୍ରଃ ପବନାତ୍ମଜଃ ପତେ ମହଃ ଶ୍ରୀକଣ୍ଠବୈକୁଣ୍ଠସ୍ତୋଃ ।୧। ।

ଆନନ୍ଦ ମନେ କହିଲେ ସକଳ ବାନର । ମୈନ୍ଦ ଦ୍ୱିବିଦାଦି କପିଙ୍କି ଯେତେକ ବର ॥ ରକ୍ଷା କରଇ ଅବର ଲଙ୍କାଗଡ଼ ଈଶ । ଉଲ୍ଲାସକୁ ଯେଉଁ କପି କରଇ ବିନାଶ । ସୀତାଦେବୀଙ୍କର ଯେହୁ ବଢ଼ାଏ ଆନନ୍ଦ । ହରି ଶ୍ରୀରାମ ଦୁହିଙ୍କ ଚିତ୍ତ କରେ ମୋଦ ॥ ଏବେ ସେ ପବନସୁତ ପରବେଶ ହେଲା । ବାନରମାନଙ୍କ ମେଳେ ଏ ଧ୍ୱନି ପଡ଼ିଲା । ୧୧୫ ।

ଲକ୍ଷ୍ମଣଃ ।

ଆଲେପିତୋ ହନୁମତା ଗିରିକୌଷଧେନ

ମୂର୍ଚ୍ଛାଂ ବିହାୟ ସଶରଂ ଧନୁରାଦଦାନଃ ।

ସ୍ମାରଶ୍ଚନ୍ଦ୍ରକରଣୀର୍ଧରଣୀ ଚରିତ୍ରା

ଲଙ୍କାପତେଃ କୁପିତକାଳଭବୋପପତସ୍ମେ । ୧୧୬ ।

ଦେବରୁଁ ଔଷଧି ପବନ ବାଟ ହନୁବର । ଲକ୍ଷ୍ମଣଙ୍କ ଅଙ୍ଗେ ଲେପ ଦେଲେ କ ସତ୍ଵର ॥ ମୋହ ତେଜି ସଜ୍ଜମିନି ଧନୁଶର ଧରି । ଉଭାହେଲେ ସମର ପ୍ରାଙ୍ଗଣେ ଗିରିପରି ॥ କୋଟିସୂର୍ଯ୍ୟ ପ୍ରାୟ ମହାତେଜ ଜାତ ହୋଇ । ଶ୍ରୀରାମଙ୍କ ମୁଖାବ୍ଜ ବିକାଶ ହେଲା ତହିଁ ॥ କ୍ରୋଧ ସମୁଦ୍ରରେ ଏହି ଉପମା ହୋଇଲେ । ରାବଣ ପ୍ରାଣ ନେବାକୁ ଯମ କି ଆଇଲେ । ୧୧୬ ।

ରାମଃ ସାନନ୍ଦଂ ହା ବତ୍ସେତି ଗାଢ଼ମାଲିଙ୍ଗ୍ୟ ବେଦନାଂ ତ୍ୟଜ ଏବମୁକ୍ତୌ ଲକ୍ଷ୍ମଣଃ ।

ଇଦାନୀଂ ନନ୍ଦନଂ ବେଦି ସ୍ପୃଷ୍ଟଂ ଯୋ ବେତ୍ତି ରାଘବଃ

ବେଦନା ରାଘବେନ୍ଦ୍ରସ୍ୟ କେବଲଃ ବ୍ରଣିନୋ ବୟଂ ।୧୧୭।

ଅତି ଆନନ୍ଦିତ ମନେ ଶ୍ରୀରଘୁନନ୍ଦନ । ଗାଢ଼େ ଅଲିଙ୍ଗନ କଲେ ଭାଇଙ୍କି ବନ୍ଧନ ॥ ହା ବତ୍ସରେ ତୋ ଦେହେ ନାହିଁ ତ କଷ୍ଟ କଷ୍ଟ । ଏମନ୍ତ ଶୁଣି କହନ୍ତି ସୁମିତ୍ରାଙ୍କ ସୁତ ॥ ଏହି ବେଦନାକୁ ପ୍ରଭୁ କାହିଁତ ନ ଜାଣିଲେ । ଯେ ରାଘବ ସେ ଏକା ମୋ କଷ୍ଟକୁ ଜାଣିଲେ । ଯେତେ ବେଦନା ସେ ସବୁ ରାମଚନ୍ଦ୍ରଙ୍କର । କେବଳ ମୋ ଦେହେ ବ୍ରଣ ହୋଇଛି ହେ ବୀର । ୧୧୭ ।

ତତୋ ରାବଣୋ ଲକ୍ଷ୍ମଣଂ ହତାନ୍ନୋ କାର୍ଯ୍ୟ ବ୍ରୂତେ ତ୍ଵଂ ରାମସମୀପଂ ଗତ୍ଵା କଥୟ ଯଦ୍ୟପି ହରପ୍ରସାଦାଦରଣ୍ଡଂ ମେ ଦାସ୍ୟସି ତର୍ହି ସୀତାଂ ସମର୍ପୟିଷ୍ୟାମୀତ୍ୟୁକ୍ତୌ ରାମାନ୍ତିକଂ ଗତେ ଲକ୍ଷ୍ମ-ଣାସେ କିଂ କୁର୍ବତେ ରାଘବ ଇତି ରମେଶ୍ୟ ପ୍ରଶ୍ନେ । ୦ ।

ଲୋହିତାକ୍ଷ ଦୈତ୍ୟଙ୍କୁ ଯେ ଏହି ସମୟରେ । ସ୍ତବଣ କହଇ ତାଙ୍କ ଅତ୍ୟନ୍ତ ଆଦରେ ॥ ଏହିକ୍ଷଣି ତୁହି ଯାଇଁ କହ ରାମ ଆଗ । ଯେ ପରଶୁ ଅସ୍ତ୍ର ଶୂଳଧାରୀ ମହାଭାଗ ॥ ପୂର୍ବେ ଦାନ କରିଥିଲେ ପରଶୁରାମଙ୍କୁ । ଯେ ଦର୍ପ ଲଭିଛି ରାମ ଜିଣି ଯେ ତାହାଙ୍କୁ । ସେ ପରଶୁ ଅସ୍ତ୍ର ଦେଲେ ସୀତା ଫେରାଇବା । ଯେବେ ପର୍ଶୁରାମ ପର୍ଶୁ ଗୋଟି ମୁଁ ଲଭିବା ॥ ଶୁଣି ଲୋହିତାକ୍ଷ ବୀର ଶୀଘ୍ର ଗଲା ଚଳି । ରଘୁବର ଶ୍ରୀରାମ ଚନ୍ଦ୍ରଙ୍କ ପାଶେ ମିଳି ॥ ପରଶୁ ମାଗିବା ଆଗରେ ସେ ଉଭା ହେଲା । ଦେଖି ତାହାଙ୍କୁ ପୁଚ୍ଛିଲେ ଦଶରଥ ବାଳା ॥ କହ କହ ଅଟେ ବୀର କହ ବେଗ କରି । ଲଙ୍କାପୁରେ ଦୈତ୍ୟମାନେ ଅଛନ୍ତି କପରି । ୧୧୮ ।

ଲୋହିତାକ୍ଷଃ ।

ଅଧାକ୍ଷୀନ୍ନୋ ଲଙ୍କାମୟମୟମୁଦନ୍ୱନ୍ତମତର-
ଦ୍ୱିଶଲ୍ୟାଂ ସୌମିତ୍ରେରୟମୁପନିନାୟୌଷଧବରାଂ ।
ଇତି ସ୍ମାରଂ ସ୍ମାରଂ ତ୍ୱଦରିନଗରୀଭିତ୍ତିଲିଖିତଂ
ହନୂମନ୍ତଂ ଦନ୍ତୈର୍ଦଶତି କୁପିତୋ ରାକ୍ଷସଗଣଃ । ୧୧୮ ।

ଲୋହିତାକ୍ଷ କହେ ତବ ଶବ୍ଦ କଟକରେ । ହନୁର ଛବିଟି ଲୋଖା ଅଛି ଯେ କାନ୍ଥରେ ॥ ତାକୁ ଚାହିଁ କେବଣ ଅସୁର ପଚାରଇ । ଆମ୍ଭ ଲଙ୍କାଗଡ଼ ପରା ପୋଡ଼ିଥିଲା ଏହି ॥ କେହୁ ବୋଲେ ଲଙ୍ଘିଲା ଏ ସିନ୍ଧୁର ଜଳକୁ । କେହୁ ବୋଲେ ଔଷଧି ଦେଲା ଲକ୍ଷ୍ମଣଙ୍କୁ ॥ ଲଙ୍କାପୁର ଦୈତ୍ୟମାନେ ଏହିପରି କହି । କ୍ରୋଧେ ସେ ରୂପକୁ ଦାନ୍ତେ କାମୁଡନ୍ତି ତହିଁ । ୧୧୮ ।

ରାମୋ ବହସ୍ୟ କମର୍ଥ୍ମାଗତୋଽସୀତି ପ୍ରଶ୍ନେ ଲୋହିତାକ୍ଷଃ ।
ଦେବ ଭାର୍ଗବଂ ଜିତ୍ୱା ଲବ୍ଧଂ ପରଶୁଂ ପ୍ରଦଦାତୁ ।
ସୀତାଂ ଦଶାସ୍ୟଃ ସମର୍ପୟିଷ୍ୟତି । ୦ ।

ହସି ହସି କହନ୍ତି ଶ୍ରୀରଘୁକୁଳପତି । କି କାରଣେ ଅଛିଅଛୁ କହ ତୁହି ଏଥି ॥ କୋହ ତାକଷ ବୋଲେ ଶୁଣ ଶୁଣ ପେର ବାଣୀ । ଏଥି ହୁଁବେ ତୁମ୍ଭେ ପଶୁ ରାମଙ୍କୁ ଦେଇ ଜାଣି ॥ ଯେଉଁ ଅସ୍ତ୍ରଟି ପାଇଛ ଅହେ ରଘୁନାଥ । ସେ ଦେଶୁ ଅସ୍ତ୍ର ରାବଣଙ୍କୁ କଲେ ଦାନ ॥ ତେବେ ତୁମ୍ଭର ସୀତାଙ୍କୁ ଫେରାଇ ଦେଇ ଦେବ । ସତ୍ୟ ସତ୍ୟ କହୁଅଛି ନେବାର ହେବ । ୦ ।

ରାମଃ ସସ୍ମିତଂ ।

ପୌଲସ୍ତ୍ୟପ୍ରଣୟେନ ତାବଦନେନ ସ୍ପୃଷ୍ଟ୍ବା ମନୋ ମୋଦତେ
ଦେଯୋ ନୈଷ ହରପ୍ରସାଦପରଶୁ ସ୍ତେନାଧୁନା ତ ମ୍ୟତ ।
ଯତ୍ନାତ୍ୟଃ ସ ଦଶାନନୋ ମମ ତିଷ୍ଠ ଦଣ୍ଡ ଦ୍ୱିଜେଭ୍ୟୋ ମହୀ
ତୁଭ୍ୟଂ ବ୍ରୂହି ରସାତଳଂ ବଳଭିଦେ ନାର୍ଜିତ୍ୟ କିଂ ଦୀୟତାଂ ।୧୧୯।

ମନେ ମନେ ହସି ତହୁଁ ଜାନକୀରମଣ । ବୋଇଲେ ରାବଣ ପାଶେ କହିବୁ ଏସନ ॥ ତାର ଏ ବୁଦ୍ଧିକି ଦେଖି ହେଲି ଆନନ୍ଦିତ । ପ୍ରୀତିରେ ଅସ୍ତ୍ରନ ଦେବି ଆରେ ଦଶମାଥ ॥ ତୁତ ମହା ମୂର୍ଖ ତୋତେ କେହ୍ନେ ଦେବି ଅସ୍ତ୍ର । ପଶୁ ଦାଇ ଅତି କ୍ରୋଧ କରିବୁ ତୁହିତ ॥ ବ୍ରାହ୍ମଣଙ୍କୁ ଦାନ କରିଅଛି ସବୁ ମହୀ । ଆଉର ରସାତଳକୁ ତୋତେ ମୁଁ ଦେଲଇ ॥ ସମରେ ଅଜି ରାବଣ ତୋତେ ଜିଣି ମୁହିଁ । କହ ବାସବକୁ ପୁଣି କିସ ମୁଁ ଦେବଇଁ । ୧୧୯ ।

ଦୂତମୁଖାଚ୍ଛ୍ରୁତ୍ୱା ରାବଣଃ ସକ୍ରୋଧଂ ।

ଭେଗ୍ରମର୍ଦ୍ଦଲଶଙ୍ଖତାଳନକରସ୍ଫାଟନୋଲ୍ଲସତ୍ଜ୍ୱାହଲୀ
ନିଃଶାଣସ୍ୱନପୂର୍ଣ୍ଣକର୍ଣ୍ଣକୁହରେ ନିର୍ଯାନ୍ତଗର୍ଯା ବଭୌ ।
ଯୁଦ୍ଧାର୍ଥଂ ଦଶକନ୍ଧରେ ରଥଗତୋ ମାଣିକ୍ୟମୌଳିର୍ଘଣେ
ଦୀପାଦୀପିତମସ୍ତକୋ ଜନକଜାସକ୍ତୋ ବଧେଃ କର୍ମଣା । ୧୨୦ ।

ଦୂତର ମୁଖରୁ ଏହା ଶୁଣି ଲଙ୍କେଶ୍ୱର । ମନ ମଧ୍ୟରେ ତା କ୍ରୋଧ ଜଳିଲା ବିଶେଷ ॥ ପୁର ମଧ୍ୟରୁ ରଣକୁ ବାହାର ହୋଇଲା । ଶଙ୍ଖ

ଭେସି ତୁସି ତହୁଁ ଅନେକ ବାଜନ୍ତ ॥ ତାଳ ମର୍ଦ୍ଦଳ ମହୁରି କଂସାଳ ଶବଦେ ॥ କାହଳୀ ଠମକ ନିଶାଣରେ ବାଦ୍ୟ ନାଦେ ॥ ସବୁର କଣ୍ଠୁଲୁ ଦୈତ୍ୟ ସ୍ତବ କରନ୍ତେ ନୀ । ମସ୍ତକ ଉପରେ ତାର ମାଣିକ୍ୟ ଖଞ୍ଜିଲା । ବ୍ରହ୍ମଲୋକରେ ଯା ଯଶ ହୋଇଅଛି ପ୍ରକଟ । ଦଇବେ ଜାନକୀ ପାଶରେ ଅଶକ୍ତ ସେ ଦୁଷ୍ଟ । କଥପରେ ଯେ କାଳରେ ସଇଁଣ ବସିଲା । ସେହିକାଳେ ଅତ୍ୟନ୍ତ ଶୋଭାକୁ ବସ୍ତାରିଲା । ୧୨୦ ।

ଇତ୍ୟବସରେ ରୁଦ ମାନା ମନ୍ଦୋଦରୀ ।

ଶୋକାଂ ଲଙ୍କେଶମାଗାଃ କ୍ରୁତରେମଗ୍ନନର୍ମ୍ମବ ଗାଢ଼ୋପଗୂଢ଼ଂ
ଦୈବାଜ୍ଞାଂ ଦେହି ଯୋଦ୍ଧୁଂ ସମରମବତଗ୍ରାସ୍ୟସ୍ମି ସୁକ୍ଷବିସ୍ମ ଯତ୍ ।
ନୈବଂ କାନ୍ତେ ସ୍ୱକାନ୍ତେ ତରୁଣସ୍ୟ କରୁଣାଂ ପ୍ରାଣେଶଃ କମେବଂ
ଲଙ୍କାଂ ସନ୍ତ୍ୟଜ୍ୟ ଶଙ୍କାଂ ଶିବ ଶବ ସମର୍‌ସ୍ୟୋଦ୍ୟତୋରଷଦେହଃ ॥

ଏହି କାଳେ କାନ୍ଦି କାନ୍ଦି ମନ୍ଦୋଦରୀ ରାଣୀ । ରାବଣ ପାଶେ ପ୍ରବେଶି ବୋଇଲା ଏ ବାଣୀ । ଶୋକ ଦୂର ହୋଉ ନାଥ କର ଆଲିଙ୍ଗନ । ତୁମ୍ଭ ବିଚ୍ଛେଦ ଆନ୍ତୁ ହିନ୍ତେ ହୋଇଲି ଚନ୍ଦନ । ଅଜ୍ଞାଦାନ କର ନାଥ ଯିବମୁଁ ଯୁଦ୍ଧକୁ । ଝଡ଼ି ସ୍ତ୍ରୀ ମୁଁ ଯେଣୁ ଜାଣେ ସେ ବଧ୍ୟାକୁ ॥ ରାବଣ କହଇ ତହୁଁ ଅଗୋ ପ୍ରାଣ ପ୍ରିୟା । ମୋର କଥା ମନ ଧରି ନ କହନ୍ତୁ ଏହା ॥ ନିଜ ପତି ପ୍ରତି କୃପା କରଗୋ ଦୟାଶ ମୁଁ ପ୍ରାଣରଙ୍କ ବୋଲି ମଣିଛୁ ବାଳୀଶ ॥ ମୁହିଁ ପୁରେ ଥିବ ତୁମ୍ଭେ ସମରକୁ ଯିବ । ଏ କଥା କହୁଛୁ ଧିକ୍ ସେ କେଉଁ ଲଭ୍ୟ ଲୋଭ ॥ ଏମନ୍ତ କହିଣ ଭସ୍ମ ଛାଡ଼ି ଲଙ୍କପତି । ଯୁଦ୍ଧ କ୍ଷେତ୍ରକୁ ବାହାର ହୋଇଲା ଝଟତି । ୧୨୧ ।

ବାନରାଃ ।

ଉଦ୍ୟତିକମ୍ପକଲକୋଳାହଳ ବହଳମଦା ବଦ୍ଧ ଦୋର୍ଦ୍ଦଣ୍ଡ ଭରଷ୍ଟୋଂ
ତାରଭର୍ଦ୍ଦୀପ୍ୟମାନଂ ଦଶି ବଦଶି ଦଶଗ୍ରୀବ ମଦ୍ ଗ୍ରୀବସୂନ୍ତଃ ।
ଏତେ ନିଃଶେଷ ସେତୁଗ୍ରଥନସମୁଦ୍ଧିକୈଃଶସ୍ତ୍ରିଣି ଶୈଳପାଦୈ
ଲ୍ଲବ୍ଧା ମାନାଃ କପିନ୍ଦ୍ରା ରଜନୀଚରପୁରୀ ମୂର୍ଦ୍ଧରେଣୁ ପ୍ଲବନ୍ତେ । ୧୨୨ ।

କୋଳାହଳଧ୍ୱନି ସର୍ବ ଦିଗପାଳେ କଲେ । ରାବଣ ମରଣ ଉଦ୍ୟମକୁ ସେ ପାଇଁଲେ । ସେକାଳେ ବହୁ ସୁଗନ୍ଧ ତେଣୁ ଜାତ ହେଲା । କୋପଭରେ ତାଙ୍କୁ ଲଙ୍କପତି ଅନାଇଲା । ଚନ୍ଦ୍ରପ୍ରିତୁଲାତା ଅତି ଉଜ୍ଜଳ ଦିଶଇ । ସବୁ ଦିଗକୁ ଅନାଏ ମୁଖ ଟେକି ତହିଁ । ଯେତୁ ବନ୍ଧନକୁ ଯେଉଁ ଗିରିବୃକ୍ଷମାନ । ବଳିଥିଲ ତାଙ୍କୁ ଧରି ବାନର ସଇନ ।। ମହାଗର୍ବ ସହିତରେ ପରବେଶ ହେଲେ । ଉତ୍ତରଦ୍ୱାରେ ସେ ଲଙ୍କା ଗଡକୁ କ୍ଷେପିଲେ । ମହାଭୟ ପାଇଣ ଅସୁର ବୀରଗଣ । ସମରକୁ ତେଯା କରି ଦେଲେ ତତକ୍ଷଣ । ୧୨୨ ।

ରାବଣଃ ସ୍ୱସୈନ୍ୟଂ ପ୍ରତି ।

ରେ ରେ ବୀରପ୍ରବୀରାଃ କୁରୁତ ରଣମିତଃ କିଂ ପଳାୟଧ୍ୱମେତେ
ସନ୍ନଦ୍ଧୀଭୂୟ ଶସ୍ତ୍ରୈର୍ଭଜତରିପୁଗଣାନ୍ କୋଭୟସ୍ୟାବକାଶଃ ।
ଜିତ୍ୱାଦ୍ୟାହଂ ହନୂମଦ୍ରଣଚ୍ଛଜସ୍ପି ବଳଂ ଜାମ୍ବବନ୍ତଂ ଚ ନୀଳଂ
ଭିତ୍ତ୍ୱା ପ୍ରୌଢ଼ାଙ୍ଗଦାଦୀନ୍ କରକଳିତଧନୁ ରାମମନ୍ୱେଷୟେ ମେ ।୧୨୩।

ନିଜ ସୈନ୍ୟଙ୍କୁ ଅନାଇଁ କହେ ଦଶାନନ । ରେ ରେ ବୀରମାନେ ଏବେ କର ତୁମ୍ଭେ ରଣ । କାହିଁକି ଏଠାରୁ ଯୁଦ୍ଧ ଛାଡ଼ି ପଳାଉଛ । ସବେ ମିଳି ଶତ୍ରୁଙ୍କୁରେ ଅସ୍ତ୍ର ନ ମାରୁଛ । କାହିଁକିରେ ମନେ ଭୟଙ୍କର ତୁମ୍ଭେମାନେ । ଆଜ ପବନ ସୁତକୁ ମୁହିଁ ଜିଣି ରଣେ । ଜାମ୍ବବାଦି ରଣଜୟମାନଙ୍କୁ ଜିଣିବି । ଅଙ୍ଗଦାଦି ନଳ ନୀଳବୀରଙ୍କୁ କହିବି । ସ୍ୱହସ୍ତେ ଧନୁ ଧରି ମୁଁ ସୈନ୍ୟଙ୍କ ମଧ୍ୟରେ । ରାମକୁ ଖୋଜୁଛି ଯେ ରହିଛି କେଉଁ ଠାରେ । ୧୨୩ ।

ଅତ୍ରାନ୍ତରେ ସୁଗ୍ରୀବଃ ।

ଯେ ବୃକ୍ଷାଃ ପ୍ଲବଗାଧିପେନ ନିହିତାଃ ପୌଲସ୍ତ୍ୟବକ୍ଷସ୍ଥଳେ
ସଂଘଟ୍ଟାନଳଦଗ୍ଧଦାବବପଦଃ ସୀଦନ୍ତି ତେ ଭୂରୁହାଃ ।
ଉତ୍ପାଟ୍ୟ ପ୍ରହିତଃ ଖଶୈଳଶିଖରେ ଲଙ୍କେନ୍ଦ୍ର ହସ୍ତାବଳୀ
ପିଷ୍ଟୋଽୟଂ ନିଜକୁଣ୍ଡଳୈ ରଜଲୈର୍କମ୍ୱାଲପିଣ୍ଡାୟତେ ।୧୨୦।

ଏକାଳେ ବୃକ୍ଷେକ ଧରି ସୁଗ୍ରୀବ ନୃପତି । ରାବଣ ବକ୍ଷସ୍ଥଳରେ ପ୍ରହାରେ ଝଟତି । ବୃକ୍ଷ ଘର୍ଷେହୋଇ ତହୁଁ ଅଗ୍ନି ବାହାରିଲେ । ସେହି ଅନଳେ ସେ ବୃକ୍ଷବର ଜଳିଗଲା । ତା ଦେଖି ରାବଣ ଅତି କ୍ରୋଧକରି ହେଲା । ନିକଟେ ଗିରିକି ଶୀଘ୍ର ହେଲେ ଆଣିଲା । ହାତକୁ ହାତ ଡିଆଁଇ ଗିରିହୋଇଲା ଚୂର୍ଣ୍ଣ । ତେତେ ବଡ଼ ଗିରିବର ଝଟକଲେ ପୁଣ । କାଦୁଅ ହୋଇଣ ଗଲା ଦେଖୁ ଦେଖୁ ତହିଁ । ସୁଗ୍ରୀବ ପରେ ତାହାକୁ ଫିଙ୍ଗିଦେଲା ନେଇ । ସେ ଗିରି କାଦୁଅ ପିଣ୍ଡୁଳାର ପରି ହୋଇ । ସୁଗ୍ରୀବର ବକ୍ଷସ୍ଥଳେ ବାଜିଲାକ ଯାଇ । ୧୨୪ ।

ତତୋ ରାବଣ ଇନ୍ଦ୍ରଦତ୍ତରଥଂ ଦୃଷ୍ଟ୍ୱା ଲୋହିତାକ୍ଷଂ ପୃଚ୍ଛତି
କୋଽସ୍ମିନ୍ ରଥଧ୍ୱଜେ ! ଲୋହିତାକ୍ଷଃ । ୦ ।
ହେଲୋଲ୍ଲଙ୍ଘିତବାରିଧିର୍ଜନକଜାବଶ୍ଳେଷଶୁଷ୍ୟନ୍ମନଃ
କୌଶଲ୍ୟାସୁତଦୈନ୍ୟପାଠନପଟୁର୍ଗ୍ରସ୍ତାଂଶୁ ଭୂମଣ୍ଡଳଃ ।
ନିର୍ଦଗ୍ଧାଖିଳରକ୍ଷେନ୍ଦ୍ରନଗରଃ ସୌମିତ୍ରିସଞ୍ଜୀବନା-
ଦ୍ୟୋତ୍‌ଖାତୌଷଧିପର୍ବତସ୍ତେ ମରୁତଃ ପୁତ୍ରୋଧ୍ୱଜେ ବର୍ତ୍ତତେ ।

ଏହିକାଳେ ଶ୍ରୀରାମଚନ୍ଦ୍ରଙ୍କୁ ଶଚୀନାଥ । ଅତି ଭକତି ଭରେ ଯେ ପଠାଇଲେ ରଥ । ତା ଦେଖି ଲୋହିତାକ୍ଷକୁ ପୁଚ୍ଛେ ଲଙ୍କନାଥ । ରଥର ଧ୍ୱଜରେ କିଏ ବସିଅଛି ଦେଖ ॥ ଚିହ୍ନିକରି ମୋ ଅଗରେ କହ ଲୋହିତାକ୍ଷ । ତାହା ଶୁଣି ଲୋହିତାକ୍ଷ ବୋଲଇ ପ୍ରମନ୍ତ । ଚିହ୍ନି ନ ପାର କି ସେହି ପବନର ସୁତ । ତୁମ୍ଭ ମଧୁବନ ଯେ କରିଛି ଧ୍ୱଂସକୃତ । ଯେହୁ ସିନ୍ଧୁ ଲଙ୍ଘି ଲଙ୍କାଗଡ଼ ଜାଳିଦେଲା । ପର୍ବତ ସହ ଔଷଧି ଉପାଡ଼ି ଆଣିଲା ॥ କୌଶଲ୍ୟାସୁତର ମନୁ ହରିଲା ଯେ କଷ୍ଟ । ସୂର୍ଯ୍ୟ ମଣ୍ଡଳକୁ ଗିଳି ଥିଲା ଯେ ମର୍କଟେ । ୧୨୫ ।

ସକ୍ରୋଧମାକର୍ଣ୍ଣମବଲୋକ୍ୟତେରାବଣେ ।
ଶୀତଚିକ୍ରବୌ ସସ୍ମିତଃ ପବନୋ ବନେଷୁ

ମନ୍ଦୀଚକାର ତରଣିଃ ଖରତାଂ କରେଷୁ ।
ରକ୍ଷଃପତେର୍ଗଗନଦୃଷ୍ଟିମବେକ୍ଷ୍ୟ ସାକ୍ଷା
ନ୍ନଦ୍ୟୋ ଯଯୁଃ ସ୍ଥଗିତଭଙ୍ଗତରଙ୍ଗଭଙ୍ଗଂ । ୧୨୭ ।

ଶୁଣି ଲଙ୍କପତି କ୍ରୋଧେ ଶସ୍ତ୍ରନ୍ୟସ୍ତ ଗୃହ୍ନିଲା । ଧୀର ଧୀର ମନ୍ଦ ବନେ ଅନିଳ ବହିଲା । ଉଷ୍ଣ ହୋଇଗଲା ରବି ପ୍ରଖର କିରଣ । ଲହରୀ ତେଜି ନଦୀଏ ସ୍ଥିର ହେଲେ ପୁଣ । ୧୨୮ ।

ରାବଣଃ ।

ବଦ୍ଧ୍ୱା ତୂଣାନ୍ ଦଶୋଚ୍ଚୈର୍ମଘବଦ୍ଦୃଢଜଟାବେଣୀବନ୍ଧେନ ବାମୈ
ର୍ଦୋର୍ଭିର୍ଷ୍ଟାପାନ୍ ବିଂଶନ୍ନୁନ୍ ଦଶଦଶଚ ଶରାନ୍ ଦକ୍ଷିଣୈ ରାଦଦାନଃ ।
କ୍ଷେପ୍ତୁନ୍ ନୀତାନ ପ୍ରକମ୍ପ୍ୟାନ୍ ସ୍ମରଦଭିଭବଦଗର୍ଜିତାତର୍ଜିତୋଦ୍ଧୈଃ
ଶଶ୍ୱତ୍ ଛିଦ୍ୟାନ୍ ମୁଖଶ୍ରୀର୍ବତତତ ରଣପ୍ରାଙ୍ଗଣେ ରାକ୍ଷସେନ୍ଦ୍ରଃ । ୧୨୯ ।

ଇନ୍ଦ୍ର ଅସ୍ତ୍ରବଳେ ବେଣୀ ବାନ୍ଧଣି ରାବଣ । ଅଙ୍ଗରେ ବାନ୍ଧିଲା ନେଇ କରି ଦଶତୂଣ ॥ ବାମ ଦଶ କରେ ଦଶଧନୁକୁ ଧଇଲା । ଦକ୍ଷିଣ ହାତରେ ଦଶବାଣକୁ ବନ୍ଧିଲା । ଏହିପରି ଦଶ ଧନୁ ବାଣ ବନ୍ଧେ ଦୈତ୍ୟ । ହସଇ ନାଚଇ କ୍ରୋଧେ କରଇଟେ ନୃତ୍ୟ । ପୁଣି ଖେଦ ମନେ ତାର ମୁଖକୁ ସୁଖାଏ ॥ ଅତଶଯ୍ୟ ଗର୍ବେ ଯେହ୍ନ ଦଜ ଗର୍ଜିହୁଏ । ରଣ ପ୍ରାଙ୍ଗଣରେ ଯେହ୍ନ ରାକ୍ଷସେନ୍ଦ୍ର ଯାଇ । ଦୁର୍ଦ୍ଦେଶ ହୁଅଇ କୋପ ଅତଶୀଘ୍ର ହେଉ ଛ ॥

ରାମଂ ପ୍ରତି ବିଭୀଷଣଃ ।

ଯଦା ନୀତେଲା ଲଙ୍କାଧିପ ସ୍ଫୁଟଭଟକୋଦଣ୍ଡଶିଖରେ
ସ୍ଥିତସ୍ତୂଣୀରଦ୍ୱନ୍ଦ୍ୱ ସ୍ଫୁଲଜ୍ଜଳଦ ମୃଗତୃଷ୍ଣାନତଗିରଃ ।
ତଦୈବଂ ଦେବାନାଂ ମତିରଜନି ଦଙ୍ଗ୍ରଲଜ୍ଜ୍ୱାଂ
ଧନୁଃ ଶୃଙ୍ଗେ ଭୃଙ୍ଗସ୍ତଦୁପରି ଗିରସ୍ତତ୍ର ଜଲଧିଃ । ୧୨୮ ।

ଶ୍ରୀରାମଙ୍କୁ ଗୁହ୍ନିଣ କହଇ ବିଭୀଷଣ । ଶୁଣିମା ହେଉନ୍ତୁ ଆହେ କୋଦଣ୍ଡଧାରଣ ॥ ଯେତେବ ନୀଳ ଧର ଙ୍କ ପୂର୍ଣ୍ଣ ପରବତ ।

ନଙ୍କ ଧ୍ୱଜ ଧନୁ ଶିଖେ ମିଳାଇ ତୁରନ୍ତ । ସେକାଳେ ଦେବଙ୍କ ମତ ହୋଇଲା ଏମନ୍ତ । ଧନୁର ଶୃଙ୍ଗରେ କିବା ଭ୍ରମର ଶୋଭନ । ତା ଉପରେ ପର୍ବତ ଦିଶୁଛି ମନେ ହର । ତା ଶିଖରେ ରହିଛି ସିନ୍ଧୁ ଅତି ଚମତ୍କାର । ୧୨୮ ।

ସରମା ସକ୍ଷ୍ୟ ସୀତେତି

ଆଶ୍ଚର୍ଯ୍ୟଂ ତବ ନମେ ସପଦି ଭିଦି ମୁଖେ ସର୍ବ୍ୟଥଂ ଦେବଭୌଘେ
ଧାଣଙ୍କ ରାମଯୁଦ୍ଧେ କପିଷୁ ହବନସ୍ୟ ନ ।୧୬ ୧ ଧ ଧୁନୋ
ସାମ୍ୟଂ ଭ୍ରାତୃକୃତେ୍ୟ ସଭସ୍ୱମନାଲକେ ସବିପଂ ଦୃଷ୍ଟକୃତେ୍ୟ
କ୍ଷିପ୍ରଂ ତଦ୍ୱକ୍ତ୍ରଚନ୍ଦ୍ରଂ ଚଳନ୍ନବରପଦେଭେଭିନ୍ନଭାବଂ ବଭୂବ । ୧୨୯ ।

ଏକାଳେ ସରମା ଦୃଷ୍ଟି ଜାନକୀଙ୍କ ମୁଖ । ବୋଲଇ ମଧୁର ସ୍ୱରେ ବୈଦେହୀ ଗୋ ଦେଖ । କପଟ ବାଣେ ମୁଣ୍ଡ ଦାଶେ ଭିନ୍ନ ଭିନ୍ନ । ଆଶ୍ଚର୍ଯ୍ୟ ହୁଅଇ ଦେଖି ରାମଙ୍କ ଲପନ । ବୀରମାନଙ୍କ ଅନାଇ ବୀର ଭାବାନ୍ତର । ପ୍ରକାଶ କରନ୍ତ ଦୈତ୍ୟଶ୍ରେଣୀ ଆବର । ଦେବତା-ମାନଙ୍କ ବାଦ୍ୟ ନାଦ କର୍ଣ୍ଣେ ଶୁଣି । ପରେ ମନେ ମହାବ୍ୟଥା ପାଏ ବାଣପାଣି । ଶ୍ରୀରାମଙ୍କ ସମରକୁ ଅତିଭିଷ୍ମ କରେ । କପିମାନଙ୍କୁ କହଇ ଦାରୁ ବାନଯୁଦ୍ଧେ । ସୌମିତ୍ରିଙ୍କୁ ଅନାଇଣ ପୁଣି କେତେ କାନ୍ଦେ । ଦେଖି ବିଭୀଷଣ କାର୍ଯ୍ୟ ରୋଷ ହୋଇ ହୃଦ ॥ ହନୁମାନ ବୀରକୁ ଦେଖିଣ କରେ ପ୍ରୀତ । ଦୃକୁଟେ ଲକ୍ଷିତ ପୁଣି ହୋଉଥାଏ ଅତି । ମୁଖଚନ୍ଦ୍ର କ୍ଷଣେ କ୍ଷଣେ ଦିଶଇ ବିରସ । ସୀତାଙ୍କ ଅଗ୍ରେ ସରମା କରେ ଯା ପ୍ରକାଶ । ୧୨୯ ।

ରାବଣ ହନୂମତୋ ଯୁକ୍ତିପ୍ରତ୍ୟୁକ୍ତୀ ।
ସାଧୁ ବାନର ଗଚ୍ଛ ତ୍ୱଂ ଶ୍ଲାଘେ ଜୀବସି ଭୂତଳେ
ଧିଗସ୍ତୁ ମମ ଜୀବତ୍ୱ ଯତ୍ତ୍ୱଂ ଜୀବସି ରାବଣ ।୧୩୦।

ରାବଣ କହଇ ହନୂମନ୍ତକୁ ଅନାଇ ସାଧୁ ସାଧୁ ବାନରରେ ଜୀଇଛୁ ଯା ତୁହି । ହନୁ କହେ ଧିକ ମୋର ଜୀଇଥିବା ଠାଣ । ଯେ ପର୍ଯ୍ୟନ୍ତ ପ୍ରାଣ ଧର ରହିଛୁ ରାବଣ ।୧୩୦।

ରାମୋ ରାବଣଂ ପ୍ରତି ।

ଭୋ ଲଙ୍କେଶ୍ୱର ଦୀୟତାଂ ଜନକଜାଂ ରାମଃ ସ୍ୱୟଂ ଯାଚତେ
କୋଽୟଂ ତେ ମତିବିଭ୍ରମଃ ସ୍ମର ନୟଂ ନାଦ୍ୟାପି କିଞ୍ଚିଦ୍ଗତଂ ।
ନୈବଂ ଚେତ୍‌ଖରଦୂଷଣତ୍ରିଶିରସାଂ କଣ୍ଠାସୃଜା ପଙ୍କିଳଃ
ପତ୍ରୀ ନୈଷ ସହିଷ୍ୟତେ ମମଧନୁର୍ଜ୍ୟାବନ୍ଧବନ୍ଧୂକୃତଃ । ୧୩୧ ।

ରାବଣଙ୍କୁ ଗୃହିଁ କହୁଛନ୍ତି ରୂପପାଣି । ଭୋ ଲଙ୍କେଶ ଦିଅ ମୋତେ ଜନକଦୁଲଣୀ । ଆପେ ମୁହିଁ ମାଗୁଅଛୁ କାମ୍ୟା ହୋଇ ରାମ । ଏହିକାରେ ତୋହର ଅଟଇ ମତିଭ୍ରମ । ନ୍ୟାୟପଥରେ ନ ଚଳ ଅନ୍ୟାୟ ପଥକୁ । ଆଶ୍ରୟ କରୁଛୁ ଯେଣୁ ଅସ୍ତ୍ର ସଂଗ୍ରାମକୁ । ମୋର ବାଣ ଆଜି ପର୍ଯ୍ୟନ୍ତେ ଅଛି ସହି । ସୀତା ନ ଦେଲେ ଏଣିକି ସହିବ ନାହିଁ । ଦୂଷଣ ତ୍ରିଶିର ଦୈତ୍ୟଙ୍କର ମାଂସେଜାଣ । କାଦୁଅ ହୋଇଛି ଥରେ ପାପୀଷ୍ଠ ରାବଣ । ନଷ୍ଟେ କରିବରେ ନୀତି ଧନୁ ଗୁଣ ଭୂଲେ । ରାବଣଙ୍କୁ ଗୃହିଁ ରାମ ଏମନ୍ତ ବୋଇଲେ । ୧୩୧ ।

ରାବଣଃ ।

ଚନ୍ଦ୍ରଂ ଚନ୍ଦ୍ରଂ ମୁରାରେର୍ମମ୍ମି କୁପିତବଧୂକୁଣ୍ଡଳାଟୋପଲୀଳା-
ମସ୍ପିନଂସେ ବିଭିନ୍ନସ୍ଖଳିତବିଷଲତାକାଣ୍ଡବତ୍ କାଳଦଣ୍ଡଃ ।
ବକ୍ଷସ୍ୟୈରାବତସ୍ୟ ଦନ୍ତଂ ଗତମିବ ଚ ତୁଲ୍ୟଂ ସ୍ୱୈରେଣୋରପ୍ରହାରେ
ର୍ନିସ୍ତତ୍ୟଂପରିଶିଷ୍ଟେ ମମ ବପୁଷି ଘନେ ମନ୍ମଥା ସ୍ତୀଭବନ୍ତି ॥

ଚନ୍ଦ୍ରହାସ କୋପେ ଚଳ ହୋଇ ବୋଇଲା ରାବଣ । ରେ ମୁରାରି ମୋ ଦେହରେ ଚନ୍ଦ୍ର ବାଜନ୍ତେଣ । ମଣିଲି କୁପିତ ବଧୂ କୁଣ୍ଡଳ ଫିଙ୍ଗିଲ । ଯମ ମୋ କନ୍ଧରେ କାଳଦଣ୍ଡ ପ୍ରହାରିଲା । ଭାଙ୍ଗିଲେ ସ୍ଖଳିତ ଯଥା ବିଷଲତା କାଣ୍ଡ । କାଳଦଣ୍ଡ ବାଜନ୍ତେ ହେଲା ଶୀଘ୍ର ଖଣ୍ଡ । କୋପେ ବର୍ଷି ଇନ୍ଦ୍ର ବଜ୍ର ମାଇଲା ବକ୍ଷରେ । ତାହାକୁ ମଣିଲି ମୁହିଁ ଫୁଲାପର-କାରେ । ତୋର ବାଣ ଫିଙ୍ଗିଲୁ ଯହିଁରେ ସ୍ପର୍ଶ ହାର । ଆଚରଣ କରିବ ମୋ ଅଙ୍ଗେ ପରା ମାର । ୧୩୨ ।

( ରାମରାବଣଯୋର୍ଯୁଦ୍ଧ ବର୍ଣ୍ଣନଂ । )

ରଣାଙ୍ଗଣେ କୁଣ୍ଡଳିନୋ ଯୁବାନଃ
ପରସ୍ପରଂ ସାୟକଭିନ୍ନଦେହାଃ ।
କୁଚଗ୍ରହଗ୍ଲାନିବ କାମିନୀନାଂ
କୁମ୍ଭଗ୍ରହଗ୍ଲାଃ ସ୍ୱପୁର୍ଗଜାନାଂ । ୧୩୩ ।

ରଣାଙ୍ଗଣେ ଯୁବାମାନେ ହୋଇ ମହାମର । ଗଜପରେ ଶୋଇଲେ କୁଣ୍ଡଳୀ ହୋଇକର । ୧୩୩ ।

ଆକାଶେ ଦେବାଃ ପରସ୍ପରଂ ।
ଗଗନଂ ଗଗନାକାରଂ ସାଗରଃ ସାଗରୋପମଃ ।
ରାମରାବଣଯୋର୍ଯୁଦ୍ଧଂ ରାମରାବଣୟୋରିବ । ୧୩୪ ।

ଆକାଶରେ ଥାଇ ପରସ୍ପରେ ଦେବଗଣ । ଏକୁଁ ଆରେକ କହୁଅଛନ୍ତି କଥୋପକଥନ । ଗଗନ ଗଗନାକାର ସିନ୍ଧୁ ସିନ୍ଧୁପରି । ରାମ ରାବଣଙ୍କ ଯୁଦ୍ଧ ଅଟେ ଏକପରି । ୧୩୪ ।

( ରାମସ୍ୟ ଉକ୍ତ୍ୟ ସ୍ୱପ୍ରତ୍ୟୋକ୍ତେ ରାବଣବାକ୍ୟଂ । )

ଆଗ୍ନେୟାସ୍ତ୍ରଂ ହୃଦୟେ ଦଦ୍ଧ୍ୟୁବାରୁଣଂ ଶସ୍ତ୍ରମୁଚ୍ଚୈ-
ର୍ନାରାବାସ୍ତ୍ରଃ ପବନଶରତାଂ ଯାନ୍ତି ନିଶ୍ୱାସବାତଃ ।
ତନ୍ନାନକ୍ୟା କିମିବ ନ କୃତଂ ରକ୍ଷସଂ ସ୍ୱାମିନୋ ମେ
ଦୈବୈରସ୍ତ୍ରୈର୍ହୃଦୟମପରଂ ତାପସଃ କଣ୍ଟକାମଃ । ୧୩୫ ।

ଶ୍ରୀରାମଚନ୍ଦ୍ରଙ୍କୁ ଚାହିଁ ବୋଇଲା ରାବଣ । କିସ ଭାଲୁଅଛୁରେ ତପସ୍ୱୀ ତୋ ମନେଣ । କେଉଁ ଦିବ୍ୟବାଣ ଆଜ ମାରିବୁରେ ମୋତେ । କହ କହ କହ ରାମ କହୁଚରେ ତୁରିତେ । ସୀତା ହୃଦୟ ଅଗ୍ନି ଅସ୍ତ୍ର ପରକାର । ଚକ୍ଷୁର ସଜଳ ବରୁଣ ଅସ୍ତ୍ର ସଙ୍ଗର । ସମପରି ହୋଇବ ଜାଣ ଅଛେ ରେ ଶ୍ରୀରାମ । ବାୟୁଅସ୍ତ୍ର ପ୍ରାୟ ତ ନିଃଶ୍ୱାସ ବାତ ଜାଣ । ଏହିପରି କେତେ କଷ୍ଟ ନ ପାଉଛି ମୁହିଁ । କି କୋହୁଛୁ ରାକ୍ଷସଙ୍କ ପତି ମୁଁ ବୋଲଇ । ୧୩୫ ।

ରାବଣଂ ପ୍ରତି ରାମଃ ।

ରେ ରେ ନିଶାଚରପତେ ତ୍ୱରିତଂ ଗୃହାଣ
ବାଣାସନଂ ତ୍ରିଦଶଦର୍ପହରଂ ଶରଂ ଚ ।
ନିର୍ବାପୟାମି ବିରହାଗ୍ନି ମିମଂ ପ୍ରିୟାୟା-
ମନ୍ଦୋଦରୀତରଳନେତ୍ରଜଳପ୍ରବାହୈଃ । ୧୩୬ ।

ଶ୍ରୀରାମ କହନ୍ତି ଦୁଷ୍ଟ ରାବଣର ପ୍ରତି । ଅରେ ଅରେ ଶୁଣ ଅରେ ନିଶାଚରପତି ॥ କହୁଅଛି ମୁଁ ତୁରିତେ ତୁ ଧର ବାଣାସନ । ତ୍ରିଦଶଙ୍କ ଦର୍ପ ହରିଥିଲୁ ଯେ ଶରେ ରଣେ । ସେହି ଶରକୁ ଧରି ମୋ ତୁଳେ ରଣ କର । ମନ୍ଦୋଦରୀ ତରଳ ନୟନେ ଜଳଧାର । ନିଭାଇବି ଆଜି ମୋ ପ୍ରିୟା ବିରହ ଅନଳ । ନିଭାଇବି ଜାଣି ଅରେ ଲଙ୍କ ମହୀପାଳ । ୧୩୬

ରାବଣଃ ।

ସ୍ତ୍ରୀନାଶଂ ନନୁ ତାଡ଼କା ଭୃଗୁସୁତେ ବୃଦ୍ଧସ୍ତପସ୍ୱୀ ଦ୍ୱିଜୋ
ମାରୀଚସ୍ତୁ ମୃଗ ଏବ ଭୀତଭବନୋ ବାଲୀ ପୁନର୍ବାନରଃ ।
ଭୋ କାକୁତ୍ସ୍ଥ ବିକତ୍ଥସେ କଥମସୌ କିଂ ବୀରଜିତଃ କସ୍ତ୍ୱୟା
ଦୋର୍ଦଣ୍ଡସ୍ତ୍ରିଭୁବନୋଦ୍ଧୃତେ ଽସ୍ୟ ପୁନଃ କୋଦଣ୍ଡମାରୋପୟ । ୧୩୭

ରାବଣ କହଇ ଶୁଣ ଶୁଣରେ ତପସ୍ୱୀ । ତାଡ଼କା ନାମେ ଗୋଟିଏ ସ୍ତ୍ରିରୀ ଅଛୁ ନାଶି । ଭୃଗୁସୁତ ବୃଦ୍ଧ ତପୀ ଦ୍ୱିଜକୁ ବଧିଲୁ । ମାରୀଚ ନାମରେ ମୃଗଟାଏ ବିନାଶିଲୁ । ପୁଣି ବାଳିନାମେ ଏକ ବୁଢ଼ା ମାଙ୍କଡ଼କୁ । ମାରି ବୃଥା ଗର୍ବ କରୁ ଦେଖାଇ ଠାଣିକୁ । ରେ କାକୁତ୍ସ୍ଥ କହ କେଉଁ ବୀରକୁ ବଧିଛୁ । ବାହୁ ପରାକ୍ରମ ଯଦି ଅଛି ତୋର କିଛୁ । ଧନୁର୍ବାଣ ଧରି ମୋର ତୁଲେ ଯୁଦ୍ଧ କର । ଦେଖାଯିବ ବୀରପଣ କାପରି ତୋହର ।

ଅତ୍ରାବସରେ ଅଙ୍ଗଦଃ ।

ବନ୍ଧ୍ୟାସ୍ତେ ନ ବିଚାରଣୀୟଚରିତାସ୍ତିଷ୍ଠନ୍ତୁ ହୁଁ ବର୍ତ୍ତିତାଂ
ସୁନ୍ଦସ୍ତ୍ରୀଦମନେଽପ୍ୟଖଣ୍ଡଯଶସୋ ଲୋକେ ମହାନ୍ତୋଽହି ତେ ।
ଯାନି ତ୍ରୀଣି କୁତୋ ମୁଖାନ୍ୟପି ପଦାନ୍ୟାସନ୍ ଖରାୟୋଧନେ
ଯଦ୍ୱା କୌଶଳମିନ୍ଦ୍ରସୂନୁନିଧନେ ତତ୍ରାପ୍ୟଭିଜ୍ଞୋ ଜନଃ । ୧୩୮ ।

ଏହି ଅବସରେ କହିବ ସେ ଅଙ୍ଗଦ ବୀର । ମନେ ମନେ ହୋଇଣ ଯେ ଅତି କ୍ରୋଧଭର । ଆରେ ଲଙ୍କାପତି ଏହି ତିନି ଜଗତରେ । ସକଳ ପୂଜନ୍ତି ରାମଚନ୍ଦ୍ରଙ୍କ ପଦ୍ମରେ । ସୁବର୍ଣ୍ଣର ଯୋଗ୍ୟ ତାଙ୍କ ଚରିତ ଦେଖିଲେ ନିଶ୍ଚୟ ମହତ୍ତ୍ୱ ସେହୁ ଏ ଲୋକ ମଧ୍ୟରେ । ତାଡ଼କା ବଧି ଲଭିଲେ ଅନନ୍ତ ଯଶକୁ । ସ୍ତ୍ରୀ ବଧ ଦୋଷ ଲାଗି ନାହିଁରେ ତାହାଙ୍କୁ । ଏବେ ବଳ କଥା ଶୁଣ ଆରେ ଦଶାନନ । ଘୋର. ଯୁଦ୍ଧେ ତ୍ରିଶିରକୁ ବଧିଛନ୍ତି ଜାଣ । କୌଶଳ ତାଙ୍କର ବାଳୀ ବଧେ ଥିବୁ ଜାଣି । ବାଳୀ ବଳ ଭଲ ଯେସନ୍ତୁ ଜାଣୁ ବଂଶପଣି । ୧୩୮ ।

ରାବଣଃ ।

ଯାବାନ୍ବିଃ କଳଶୋଦ୍ଭବେନ ତ ବତା କିଂ ଚ ପୀତ
ସ୍ଥଳ୍ୟ କୋଧିନଂ ହନୂମତା ମଟ୍ଟିଃ କିଂ ଖଗାନ୍ଦ୍ରଭିକ୍ଷାନ୍ ।
ତତ୍ରାଗଦ୍ୟଃ ପ୍ରାପ୍ତତପୁଷ୍ଟଃ ସନ୍ତୁ ତଗୃଷ୍ଟଭାବଃ
ସ୍ତ୍ରେଷ୍ଠାଂ ଗ୍ର ସଗ୍ରହଣେରଭ୍ୟଂ ରାମ ତେ ନ ମଧ୍ୟେମ୍ୟଂ ।୧୩୯।

ଶ୍ରୀରାମେ ଅନାଦର ପୁଣି କହେ ଦଶଗ୍ରୀବ । ସାଗର ବନ୍ଧାଇ ଅଛୁ ତୁ ଘେନି ରାଘବ । କୁମ୍ଭମୁନି ସୁତ ତାହା ଶୋଷି ଦଇଥିଲ । ବୀର ବୋଲାଇ ବାନରେ ଉପାଡ଼ିଣ ଶିଳା । ବଜ୍ର ଇନ୍ଦ୍ର ଯେହି ପର୍ବତଙ୍କୁ ଚୂରଇ । ଏଥୁ ଜଣାଯାଏ ଯେତେ ବଡ଼ ବୀର ତୁହି । କେତେଠା ରାକ୍ଷସ ମାନ ମାରିଛୁ ତୁ ପୁଣି । ସାମାନ୍ୟ ସେ ଦୈତ୍ୟେ ତାଙ୍କୁ ନାହାନ୍ତି କେ ଜାଣି । ଅବର ସେ ଉଗ୍ର ସ୍ୱଭାବକୁ ଛନ୍ତି ଧରି । ସେପରି ବୀରଙ୍କୁ ସିନା ପକାଇଛୁ ମାରି । ଏଣୁ କରି ଜଗତେ ତୋ ରାମ ନାମ ଗୋଟା । ବିଖ୍ୟାତ ହୋଇଛନ୍ତି ଜଣାଗଲା ଏ କଥାଟା । ୧୩୯ ।

ରାମଃ ।

ବାଣୋଽପ୍ୟଂସଂ ତାଡ଼କାମ୍ଳରୁଧିରେ ସ୍ନାତଃ ସ୍ୱସୂର୍ଣ୍ଣାସିକା-
ପ୍ରାଣୋତ୍ମାନପଟଃ ଖରତ୍ରିଶିରସାଂ ହୃତ୍ୱା ଦଶାସ୍ୟାହୃତଂ ।
ମାଦ୍ୱିଚଂ ଚ ବଳଂ ବଧାୟ୍ୟ ତଦନୁ ତ୍ୱାମେଂ ବାବଂନାଥଂ
କ୍ଷେତ୍ରଂ ରାବଣ ମାମିଷଂ ମୃଗଯୁତେ ଭୋ ହାୟୁତାଂ ମୈଥିଲୀ ।

ରାବଣ ବଚନ ଶୁଣି ରାଜୀବଲୋଚନ । କହନ୍ତି ମୋ କଥା ଶୁଣ ଅରେ ଦଶାନନ । ସ୍ନାନ କରି ମୋ ଶାୟକ ତାଡକା ରୁଧିରେ । ପ୍ରଣୟ କରୁଛୁ ତୋ ଭଗିନୀ ନାସାରେ । ଖର ତ୍ରିଶିରାଙ୍କୁ ଯେ ପଠେ ହୋମ କଲା । ବଳଦେଇ ମାରୀଚକୁ ସେଠାରୁ ଚଳିଲା । ବାରାନ୍ନିଧିରେ ସାତିଲା ସେ ଅରମନକୁ । ଏବେ ଖୋଜେ ରାବଣର ମାଂସ ଖାଇବାକୁ । ମ ଗୁ ଛାଡି ସୀତାଙ୍କୁ ଦିଅ ଦିଅ ଲଙ୍କପତି । ଏହପ୍ରାୟ କହିଲେ ପ୍ରଭୁ ଶ୍ରୀ ଦାଶରଥି । ୧୪୦ ।

ରାବଣଃ ।

କ୍ଲୀବାନାମେବ ଯୁଦ୍ଧେଷୁ ପ୍ରାଣତ୍ରାଣାୟ ରାମଧୀଃ ।
ଲଙ୍କାପ୍ରଶାନ୍ତେଃ ସମସ୍ତ ମୂର୍ଖା ଶାମିବ ମୂକତା । ୧୪୧ ।

ତହୁଁ କୋଧଭରି ହୋଇ କହେ ଲଙ୍କଈଶ । ସମରେ ପ୍ରାଣ ରକ୍ଷା ପାଇଁକି ଅବଶ୍ୟ ॥ କ୍ଲୀବ ଲୋକଙ୍କର ହୃଦେରେ ହୁଏ ମତି । ସଭାରେ ମୂର୍ଖ ଯେପରି ମୂକ ହୋଇ ଥାନ୍ତି । ୧୪୧ ।

( ପଶ୍ୟ )

ଶମ୍ଭୋଃ ପର୍ବତବନ୍ଧୁକେନମହତା କ୍ରୀଡ଼ା କୃତା ଯେନ ତଂ
ରେ ରେ ମାନବ ରାମ ମା ସ୍ମର ଭବଂ ଦେବେଶ୍ୱରଂ ରାବଣଂ ।
ବାଣଂ ଧାରୟ ତାଡ଼କାନ୍ତମସୁରାଣାମନ୍ତକଂ ସଂଯୁଗେ
ତସ୍ୟାନୀତଯମୁହୃଦଘୋରକୁଣ୍ଠିତୋ ଯୋବାନ ବାଣାଂପତିଃ ।୧୪୨।

ଶମ୍ଭୁଙ୍କ ଗିରିକି ତୋଳି କନ୍ଦୁକ ପରାୟ । କରେଧରି କ୍ରୀଡ଼ୁଥିଲା ଯେଉଁ ଲଙ୍କରାୟ ॥ ସେହି ଦାଶାସ୍ୟ ବୀରକୁ ତୁ ସ୍ମରଣ କର । ଭବ ଦେବେଶ୍ୱରଙ୍କୁ ସୁନ୍ଦର ମନେ ତୋର ॥ ତେବେ ଜାଣରେ ତୋହର ମଙ୍ଗଳ ହୋଇବ । ନୋହିଲେ ସେହି ବାଣକୁ ଧର ର ମାନବ । ଯେଉଁ ବାଣରେ ନେଇଛୁ ତାଡ଼କା ପରାଣ । ଅନୀତରେ ରହିଥାଏ ବାଲୀ କପିରାଣ । ତାକୁ ମାରିଅଛୁ ତୁହି ଯେବଣ ବାଣରେ । ସେହୁ ବାଣକୁ ପ୍ରୟୋଗ କର ଏହିଠାରେ ୧୪୨ ।

ରାମଃ ।

ଛିତ୍ତ୍ୱା ମୂର୍ଦ୍ଧ୍ନଃ କମିହ ସକୃତୋ ଧୂର୍ଜଟେର୍ଯଦ୍ୟମୀଷାଂ
ଦୋଃସ୍ତମ୍ଭାନାଂ ତ୍ରିଭୁବନବିଜୟଶ୍ରୀରୟଂ ବାସ୍ତୁ ବୀ ତେ ।
ମୂର୍ଦ୍ଧା ଛିନ୍ନୋ ବା ନ ଖଲୁ ଭବତୋ ଦୁର୍ଲଭଃ ସମ୍ଭବେଦ୍ଧ୍ରୁ-
ର୍ଦ୍ଧୈବସ୍ୟ ତ୍ୱମସି ଜଗତାଂ ଶିଳ୍ପିନୋଽପି ପ୍ରପୌତ୍ରଃ ।୧୪୩।

ଶ୍ରୀରାମ ବୋଲନ୍ତି ଯଦି ସତ୍ୟ ଏ ବଚନ । କୋଡ଼ିଏ ଭୁଜରେ କିଣି ଅଛୁ ତ୍ରିଭୁବନ ॥ କାହିଁକି ଶିରକୁ କାଟି ଶିବଙ୍କୁ ତୋଷିଲୁ । ପୁଣି ଦଶମୁଣ୍ଡ ବୋଲି ଏଡ଼େ ଗର୍ବ କଲୁ । ମୁଣ୍ଡ ହେବା ତୋ ପକ୍ଷରେ ନୁହଇ ଦୁର୍ଲ୍ଲଭ । ଯେଣୁ ବ୍ରହ୍ମାଙ୍କର ନାତି ଅଟୁରେ ଦାନବ । ୧୪୩ ।

ରାବଣଃ ।

ରେ ରାମ ନନ୍ୱବ ପୁରାଣପିତାମହେନ-
ମତ୍ତୋଽନୁଭୂତ ମହାରାଦନରଣ୍ୟକେନ ।
କିଂ ତତ୍ପଦଂ ତ୍ୱମପି ଲବ୍ଧୁମିହାଗତୋଽସି
ହତ୍ୱା ଖରାଦି ମମ ସୈନ୍ୟମନେକମେକଃ । ୧୪୪ ।

ଶୁଣରେ ଶ୍ରୀରାମ ବୋଲି ରାବଣ କହଇ । ତୋ ପୂର୍ବ ପୁରୁଷେ ଅନରଣ୍ୟ ନୃପ ଥିଲା । ତାକୁ ମୁଁ ପଠାଇ ଥିଲି ସଞ୍ଜୀବନୀ ପୁରୀ । ତହିଁ ଯିବାକୁ ତୋ ଇଚ୍ଛା କରେ ଜଟାଧାରୀ । ସେଥିଲାଗି ଖର ସହିତେ ମୋ ସୈନ୍ୟ ବଧି । ଲଙ୍କାକୁ ଆସିଛୁ ଏକା ଅରେ ରେ ଦୁର୍ବୁଦ୍ଧି । ୧୪୪ ।

ରାମଃ ।

ନ ଦୂତସ୍ତେ ନଃ ପୂର୍ବଂ ନୃପତିମନରଣ୍ୟଂ ଯଦବଧୀ-
ର୍ଜୟୋ ବା ମୃତ୍ୟୁର୍ବା ପ୍ରଧି ଭୁଜଭୃତାଂ କଃ ପରିଭବଃ ।
ଜିତଂ ତୁ ତ୍ୱାଂ କାରାଗୃହବନିହିତଂ ହୈହୟପତେଃ
ପୁଲସ୍ତ୍ୟୋ ଯଦ୍ଭିକ୍ଷାମକୃତ କୃପଣଂ ତଦ୍ବ୍ୟଥୟତି ।୧୪୫ ।

କହନ୍ତି ଶ୍ରୀରାମଚନ୍ଦ୍ର ଶୁଣରେ ରାବଣ । ମୋର ପୂର୍ବ ପୁରୁଷ ନୃପତି ଅନରଣ୍ୟ । ତାଙ୍କୁ ମାରିଛୁ ମନେ ମୁଁ ନ ହୋଇ ଦୁଃଖିତ । କ୍ଷତ୍ରିୟଙ୍କ ଜନ୍ମ ମୃତ୍ୟୁ ରଣେ ହୁଅଇତ ॥ ରଣେ ଜିଣିଥିଲା ତୋତେ କାର୍ତ୍ତବୀର୍ଯ୍ୟ ବାନ୍ଧି । ନେଲା କାରାଗାରରେ ପୁଣି କରିଥିଲା ବନ୍ଦୀ ॥ ପୁଲସ୍ତ୍ୟ ଋଷି ରଖିଲେ ମାଗି ଯା ପ୍ରାଣକୁ । ଅତି ବ୍ୟଥା ଲାଗେ ଦେଖି ସେହି କୃପଣକୁ । ୧୪୫ ।

ରାବଣଃ ।

ଜାତସ୍ତ୍ୱଣ୍ଡ୍ରାଂଶୁବଂଶେ ତ୍ୱମସି ପୁନରହଂ ପଦ୍ମଯୋନେଃ ପ୍ରପୌତ୍ରୋ
ରାମ୍ରକ୍ତ୍ୟଙ୍ଗବୃତ୍ତର୍ମେ ସ୍ଫୁରତି ଦଶମୁଖସ୍ତ୍ୱଂ କଳୈକା ଜନେନ୍ଦୁଃ ।
ବାହୂନାଂ ବିଂଶତିର୍ମେ ବଳକଳିତ କୁଳିଶା ଦୋ ଦ୍ୱୟଂ ନିର୍ଜିତଂ ତେ
ସ୍ମର୍ତ୍ତ୍ୟଂ ବଧ୍ୱାପି ଯୋଧାଂ ବ୍ରଜ ନୃପ ନସ୍ୱମସ୍ମା ପୌରୁଷେ ବା କୁଳେବା ॥

ଶ୍ରୀରାମଙ୍କ ବାଣୀ ଶୁଣି କହେ ଲଙ୍କନାଥ । ଅରେ ରାମ ସୂର୍ଯ୍ୟବଂଶେ ହୋଇଛୁ ତୁ ଜାତ ॥ ବେଦବର ବ୍ରହ୍ମାଙ୍କର ନାତି ମୁହିଁ ଜାଣ । ବିହିକା ସୁତରେ ପ୍ରାପ୍ୟ ଛମା ଦଶବଦନ ॥ ଚନ୍ଦ୍ର ପରି ଗୋଟାଏତ ମୁଖ ଅଟେ ତୋର । ବଜ୍ରଠାରୁ କଠିନ ଯେ ବିଂଶବାହୁ ମୋର । ଦୁଇବାହୁ ମାତ୍ର ତୋର ପୁଣି ସେ ଦୁର୍ବଳ । ବୃଥା ସାହସ କରିଛୁ ତୁ କରୁ ରେ ପାଗଳ ॥ ପୌରୁଷରେ କି ଅବା କୁଳରେ ମୋ ତୁଲେ । ସମାନ ହୋଇ ପାରିବୁ କହିରେ ତୁହି ଭଲେ । ୧୪୬ ।

ରାମଃ ।

ସତ୍ୟଂ ତେ ପଦ୍ମଯୋନେଃ ପ୍ରଟମକୁଳଗୁରୁଃ କିଂ ତୁ ତେ ଜନ୍ମଭୂମିଃ .
ପଦ୍ମଦ୍ୟୈବୋପଜୀବୀ ମମ ତୁ ବଳସୃତେ ବଂଶବୀଜା ବିବସ୍ୱାନ୍
ଧିକ୍ ଧିକ୍ ତେ ତା ନି ତାନି ପ୍ରକଟମୁଖ ପୂରା ଯାନି ଜୀବନ୍ତି ତାନି
ହୃଷ୍ଟଂ ବ୍ୟାଚଷ୍ଟ ବାଳୀ ମମ ଯୁଧି ପୁରତୋ ବାହୁନା ବାହୁବୀର୍ଯ୍ୟଂ ।୧୪୭।

ଶ୍ରୀରାମଚନ୍ଦ୍ର କହନ୍ତି ହସ ହସ ହୋଇ । ଯାହା କହିଲୁ ରାବଣ ତା ସତ୍ୟ ଅଟଇ ॥ ଯେଉଁ ପଦ୍ମଯୋନି ବଂଶେ ହୋଇଛୁ ତୁ

ଜାତ । ପ୍ରଥମ କୁଳଗୁରୁ ଯେ ଅଟନ୍ତି ରେ ଦୈତ୍ୟ । ତାର ଜନ୍ମ ସ୍ଥାନ ଜାଣି ଅଟଇ ନଳିନ । ମୋ ବଂଶ ଜନ୍ମକରତା ସହସ୍ର କିରଣ ॥ ସେ ଉଦେ ହୋଇଲେ ଜଳେ ଫୁଟଇ ପଙ୍କଜ । ପ୍ରକାଶୁଛୁ ତୋତେ କରେ ନ ମାଡ଼ଇ ଲଜ ॥ ସମରେ କାଳରେ ବାଳ ବାହୁକୁ ଦେଖାଇ । ତୋ ବାହୁବଳ କଥା ସେ ମୋତେ ଅଛୁ କହି । ୧୪୭ ।

( ରଥାରୂଢ଼ ରାମରାବଣୟୋ ଯୁଦ୍ଧକୌଶଳଂ । )

ଯଦ୍ରାବଣୋ ବହୁଭିରେବ ଭୁଜୈଃ କରୋତି
ତଦ୍ରାଘବଃ ପ୍ରତିକରୋତି ଭୁଜଦ୍ୱୟେନ ।
କର୍ମଦ୍ୱୟୋର୍ଯଦପି ତୁଲ୍ୟଫଲଂ ତଥାପି
ରକ୍ଷୋଭଟାଦ୍ଦଶଗୁଣଂ ରଘୁଙ୍କାରଣି ଲିଙ୍ଗଂ । ୧୪୮ ।

ତହୁଁ ଦେନରଥେ ଦେନଜଣ କଲେ ରଣ । କୋଡ଼ିଏ ଭୁଜରେ ଶର ବାନ୍ଧଇ ରାବଣ ॥ ଦୁଇ ଭୁଜେ ରାମଚନ୍ଦ୍ର ତାହା ନିବାରନ୍ତି । ଦୁହିଙ୍କ ସମର ସମ ହୋଇଲେହେଁ ତଥି ॥ ଦଶ ଗୁଣରେ କୌଶଳ ପ୍ରଭୁ ରଘୁନାଥ । ରାବଣଠାରୁ ହୋଇବେ ଏହି କଥା ସତ୍ୟ । ୧୪୮ ।

•ରାମରାବଣୟୋର୍ଯୁଦ୍ଧେ ସୈନ୍ୟନାଶଃ ।

ନାଗାନାମଯୁତଂ ତୁରଙ୍ଗନିୟୁତଂ ସାର୍ଦ୍ଧଂ ରଥାନାଂ ଶତଂ
ପତ୍ତୀନାଂ ଦଶକୋଟୟୋନିପତିତା ଜାତଃ କବନ୍ଧୋ ରଣେ ।
ଏକଂ କୋଟିକବନ୍ଧନର୍ତ୍ତନବିଧୌ ଖେଚରଭଖେଚର-
ସ୍ତୁଷ୍ଟିନ୍ ନୃତ୍ୟତି କୋଟିକେ ରଘୁପତେ କୋଦଣ୍ଡଘଣ୍ଟାରବଃ ॥

ରାମ ରାବଣି ଦୁହିଙ୍କ ଘୋର ଯୁଦ୍ଧ କାଳେ । ଅଯୁତେକ ସଂଖ୍ୟାରେ ଯେ ହସ୍ତୀ ନାଶଗଲେ ॥ ନିୟୁତ ମଲେ ସେଠାରେ ପୁଣି ବାଜିରାଜି । ପଞ୍ଚାଶତ ରଥ ମଲେ ତହିଁ ଦର୍ପଭଞ୍ଜି । ରଣସ୍ଥଳେ ଦଶକୋଟି ପଦାତିକ ମଲେ । ଅସଂଖ୍ୟ କବନ୍ଧ ତହିଁ ପଡ଼ି ନୃତ୍ୟ

ଇଲେ । ଗଗନ ମଣ୍ଡଳେ ପୁଣି ଖେଚର ହୋଇଣ । ଶୋଷ କବନ୍ଧ ଆନନ୍ଦେ କଲେକ ନର୍ତ୍ତନ । ଏହାପର ଗଗନରୁ ଭୂମି ପର୍ଯ୍ୟନ୍ତେ । ନୃତ୍ୟଲୀଳା କଲେ କବନ୍ଧେ ଯେ ଅତ୍ରମିତେ ॥ ସେହିକାଳେ ଶ୍ରୀରାମଙ୍କ ଧନୁ ଘଣ୍ଟି ସ୍ୱନ । ଅବନୀ କମ୍ପାଇ ବଜିଲକ ଘନଘନ । ୧୪୯ ।

ତତଃ

କୁଶିକସୁତସପର୍ଯ୍ୟାତୃଷ୍ଟଦିବ୍ୟାସ୍ତ୍ରମନ୍ତ୍ରେ ।
ଭୃଗୁମୁନିସୁତଜେତା ବାଦଭୋଗୀନବାହୁଃ ।
ଦିନକରକୁଳକେତୁଃ କୌତୁକୋତ୍ଥାନଚଞ୍ଚୁ
ବଂହୃମତଚପୁକର୍ମା କୌତୁକୀ ରାମଚନ୍ଦ୍ରଃ । ୧୫୦ ।

କୁଶିକ ସୁତଙ୍କୁ ସେବି ବେଧୁ ପ୍ରତ । ଦିବ୍ୟଅସ୍ତ୍ର ମନ୍ତ୍ର ପାଇଥିଲେ ତୋଷେ ଅତ ॥ ସେହି ଅସ୍ତ୍ରେ ଯେହୁ ଭାର୍ଗବଙ୍କୁ ଥିଲେ ଜିଣି । ବୀର ମାନଙ୍କୁ ଭୋଗଇ ଯାଙ୍କ ଭୁଜ ପୁଣି । ସୂର୍ଯ୍ୟବଂଶରେ ଅଗ୍ରଣୀ ଯେଉଁ ରାମଚନ୍ଦ୍ର । ଯାର ବରପଣ ତିନିପୁରେ ଯେ ପ୍ରସିଦ୍ଧ କଉତୁକ ଛଳେ ସେ ଭଜିବାକୁ ଶତ୍ରୁଙ୍କର । ଘୋରତର ଯୁଦ୍ଧ କଲେ ମନେ ଆଣ୍ଠି ଧିର । ୧୫୦ ।

ରାମହସ୍ତୟୋରୁକ୍ତପ୍ରତ୍ୟୁକ୍ତୀ ।

ରେ ରେ ଦକ୍ଷିଣହସ୍ତ ସପ୍ରତ ସଦା ଭୋକ୍ତୁଂ ଭବାନଗ୍ରଣୀ-
ର୍ଯୁଦ୍ଧେ ମାଂ ପୁରତୋ ନିଧାୟ ଭବତା କିଂ ଦୃଷ୍ଟତୋ ଗମ୍ୟତେ ।
ନୈବଂ ବାମ ଦୟାନିଧେ ରଘୁପତେରାଗତ୍ୟ କର୍ଣ୍ଣାନ୍ତିକଂ
ପୃଚ୍ଛାମ୍ୟେକମସଂଶୟଂ ଦଶମୁଖୋ ବଧ୍ୟଃ ସ କିଂ ବା ନ ବା ।୧୫୧।

ଏହି କାଳେ ଶ୍ରୀରାମଚନ୍ଦ୍ରଙ୍କ ଭୁଜଦୁଇ । ଉକ୍ତ ପ୍ରତଉକ୍ତ ଛଳେ ହୋଇ କୁହା କୁହି ॥ ବାମହସ୍ତ ଦକ୍ଷିଣହସ୍ତକୁ କହେ ଏତେ । ଅରେ ଦକ୍ଷିଣ ହସ୍ତ ତୁ ଭୋଜନ ନିମନ୍ତେ । ସବୁବେଳେ ଯେପରି ରେ ଆଗହର ହେଉ । ଯୁଦ୍ଧ କାଳେ ଏକା ମୋତେ ଅଗରେ ଲଗାଉ । ପଛରେ ରହୁଛୁ କାହିଁ ପାଇଁ ବଡ଼ୋଟାନେ । କହ କହ ଏଥି ସ୍ୱଭି

ତୋର ଅଚ୍ଛି ମନେ ॥ ଦଶଶିରସ୍ତ କହଇ ନୁହେରେ ଏସନ । ଦଶ୍ୟା-ନାଥ୍ର ସୂର୍ଯ୍ୟବଂଶୀ ଶ୍ରୀରଘୁନନ୍ଦନ ତାଙ୍କ କାନ ପାଖକୁ ମୁଁ ଅଣିଲିରେ ବାଳ । ଏହି କଥା ଗୋଟି ମ ବ ପୁଚ୍ଛୁ ବାର ପାଇଁ । ଦୁଷ୍ଟ ରାବଣକୁ ମାରିବେକ ନ ମାରିବେ । ମୋତେ ସେ ବାଣର ପ୍ରଭୁ ବେଗେ କହି ଦେବେ । ୧୫୧ ।

ଯସ୍ୟାଂ ଯସ୍ୟାଂ କଲୁଷ ରଭସଂ ପ୍ରୌଢ଼ଦଂଷ୍ଟ୍ରାକରାଳଂ
ଲଙ୍କାଭର୍ତ୍ତୁ ର୍ନିପତତି ଶିରେ ଭଲ୍ଲନାଲ୍ଲୁନ କଣ୍ଠଂ ।
ତସ୍ୟାଂ ତସ୍ୟାଂ ତରଳିତଦୃଶା ଦେବବୃନ୍ଦେନ ଦୃଷ୍ଟଂ
ପ୍ରାକ୍ ସଂସ୍କାରକ୍ରମଭୟଭୃତା ଯୋଜନାନାଂ ଶତାନି ।୧୫୨।

ଭଲ୍ଲ ଅସ୍ତ୍ର ବନ୍ଧବାକୁ ଦଶରଥ ବଳା । ଯେହି ତୀକ୍ଷ୍ଣଅସ୍ତ୍ରେ ଛିଣ୍ଡି ଗଲା ଦୈତ୍ୟ ଗଳା ॥ ରାବଣର ମୁଣ୍ଡମାନ ଅତି ଭୟଙ୍କର । ଯେଉଁ ଯେଉଁ ଦିଗରେ ପଡ଼ିଲା ସେ ସତ୍ୱର । ସେହି ଦିଗମାନଙ୍କରେ ରହି ଦେବଗଣ । ଦେଖୁଥିଲେ ରାମ ରାବଣଙ୍କ ଘୋର ରଣ । ମନେ ଭୟ ପାଇ କ୍ରମେ ଶତ ଯୋଜନରେ । ରହିଲେ ଦେବତାମାନେ ମଞ୍ଜନ ଭାବରେ । ୧୫୨ ।

ଦଶଗ୍ରୀବରାବଣଃ ।

ଧନୁନସ୍ତ୍ରିଂଶାଦ୍ୟପ୍ରହରଣଗଳଚ୍ଛେଦକୁପିତୋ
ଦଶାସ୍ୟଃ ସ୍ୱାନ୍ମୂର୍ଦ୍ଧ୍ନୋ ରଘୁପତିଶରବ୍ରାତଦଳିତାନ୍
କରେ ରେକୈରେକୈର୍ନଭସି ଭୃଶମାଦାୟ ଯୁଗପତ୍
କ୍ଷିପନ୍ନେତୈର୍ନୀରନୈ ର୍ୟଷ୍ଟପଲଯୁକ୍ତ ଦୋର୍ଭ୍ୟାଂଶତମପି ।୧୫୩।

ଧନୁଖଡ୍ଗ ଆଦି ତୀକ୍ଷ୍ଣଶରେ ରଘୁନାଥ । ରାବଣ ଗଳାକୁ ଛେଦି ପକାନ୍ତେ ତୁରିତ । ନିଜ ଶିରକୁ ଅତ୍ୟନ୍ତ କୋଧେ ଲଙ୍କଈଶ । ଗୋଟିଏ ଗୋଟିଏ କରେ ବେଗେ ସେ ନୃଶଂସ । ଗଗନରୁ ଆଣି ଅନ୍ୟ ହାତେ ଏକାବେଳେ । ଫିଙ୍ଗି ଦିଏ ଏପରି ତା ବାଂଶକର ବଳେ ॥

ଛିନ୍ନା ଛିନ୍ନା ନବୀନାଽଭବଦଥ ବହୁଶୋ ରାକ୍ଷସାଧୀଶଶୀର୍ଷ-
ଶ୍ରେଣୀତ୍ୟାଲୋକ୍ୟ ତୂଷ୍ଣୀଂ ଭବତି କପିକୁଲେ ମାତଲେନାକଂ ଜାତେ
ବୁଦ୍ଧ୍ୱା ନତନା ପ୍ୟବଧ୍ୟଂ ଜ୍ୱଳତଶିଖିନିଭଂ ବ୍ରହ୍ମବାଣଂ ଗୃହୀତ୍ୱା
ଭିତ୍ତ୍ୱା ବକ୍ଷଃସ୍ଥଲେ ତଂ କ୍ଷପୃମନସୃଦଥୋ ରାବଣଂ ରାମଚନ୍ଦ୍ରଃ ।୧୫୪।

ଛିଣ୍ଣପଡ଼ ମୁଣ୍ଡମାନ ପୁନଷ୍ଟ ନୂତନ । ହୋଇ ଯାଉଥାଏ କାଟେ-
ନ୍ତେଣ ରଘୁବାଣ । ଅନେକ ବାର ଛେଦିଲେ ପ୍ରଭୁ ଦାଶରଥି । ନୀରବ
ହୋଇଣ ତା କପିଗଣ ଦେଖୁଛନ୍ତି ॥ ଏକାଳେ ମାତଳୀ ଥାଇ
ଜଣାଇଣ ଦେଲା । ଯେଉଁ ପରି ମରିବ ସେ ବାଣବାର ବଳା । ଏ
ବରେ ଅବଧ ଜାଣି ରଘୁକୁଳପତି । ଜ୍ୱଳନ୍ତାଗ୍ନି ତୁଲ୍ୟ ବ୍ରହ୍ମଶରକୁ
ଝଟେତ । ଧରି ଦଶାସ୍ୟର ବକ୍ଷସ୍ଥଳକୁ ମାଇଲେ । ପ୍ରାଣ ହାରଲା
ରାବଣ ପଡ଼ି ଭୂମିତଳେ । ୧୫୪ ।

ରଣଶିରସି ସୁରସ୍ତ୍ରୀମୁକ୍ତମନ୍ଦାରଦାମା
ସ୍ୱୟମୟମବତୀର୍ଣ୍ଣୋ ଲକ୍ଷ୍ମଣେ ନ୍ୟସ୍ତହସ୍ତଃ ।
ବାରଚିତଜୟଶବ୍ଦୋ ବନ୍ଦିଭିଃ ସ୍ୟନ୍ଦନାଙ୍କା-
ନ୍ନକରକୁଳଲକ୍ଷ୍ମୀସଙ୍ଗତୋ ରାମଚନ୍ଦ୍ରଃ । ୧୫୫ ।

ରଣାଙ୍ଗଣେ ମିଳିଣ ଯେ ଦେବବାଳାଗଣ । ବୃଷ୍ଟିକଲେ ମନ୍ଦାର
ମାଳାକୁ ଅନନ୍ଦେଣ ॥ ଅତ୍ୟନ୍ତ ହରଷେ ହୋଇ ପ୍ରଭୁ ରଘୁନାଥ । ସାନୁଜ
ଲକ୍ଷ୍ମଣଙ୍କର କନ୍ଧେ ଦେଇ ହାତ । ବାଜେନ୍ଦ୍ର ଥିବା ରଥପରୁ
ଓହ୍ଲାଇଲେ । ଅଗ୍ରେ ବନ୍ଦିଗଣେ ଚନ୍ଦ୍ର ଜୟ ଧ୍ୱନି କଲେ । ଏହି
କାଳେ ସୂର୍ଯ୍ୟବଂଶ ଲକ୍ଷ୍ମୀଦେବୀ ଆସି । ଦୂଜାକଲେ ପ୍ରଭୁଙ୍କ ଚରଣେ
ହୋଇ ତୋଷି । ୧୫୫ ।

ସକଳସୁନ୍ଦରୀପରିବୃତା ମନ୍ଦୋଦରୀ ।
ଯସ୍ୟୈଷା ନଗରୀ ସମୁଦ୍ରପରିଖା କାମପ୍ରଦଂ କାନନଂ
ପୁତ୍ରଃ ଶକ୍ରଜୟୀ ସ୍ୱୟଂ ଦଶଶିରା ସ୍ତ୍ରୈଲୋକ୍ୟରାଜ୍ୟା ସ୍ପଦଂ ।
ଛିତ୍ତ୍ୱା ଯେନ ଶିରାଂସି ତୀବ୍ରତପସା ସନ୍ତୋଷିତଃ ଶଙ୍କର-
ସ୍ତସ୍ୟୈଷା ଗତିରୀଦୃଶୀ କିମପରଂ ସର୍ବଂ ବନଷ୍ଟଂ ହରୋ୍ତ । ୧୫୬

ସବୁ ସୁନ୍ଦର ଏ ପରବୃଷ୍ଟି ହୋଇଛନ୍ତି । ମନ୍ଦୋଦରୀ ରାଣୀ ଏହି କାଳରେ ଝୁଠିଛି । ଅଞ୍ଚଳରେ କାନ୍ଦ କାନ୍ଦ ଅନ୍ତଃପୁରୁ ଆସେ ! ପ୍ରବେଶ ହୋଇଣ ଦୁଃଖେ ରାବଣର ପାଶେ । ବାହୁନି ବାହୁନି ଶୋକେ ବୋଇଲା ଏମନ୍ତ । ଯେ ନଗରକୁ ସମୁଦ୍ର ପରିଖାର ବତ । କାମପ୍ରଦ କାନନ ଯେ ରହିଅଛି ଯହିଁ । ରଣେ ବାସବକୁ ଜିଣିଅଛି ଯା ତନୟ ॥ ସ୍ୱୟଂ ଦଶଶିର ତ୍ରିଲୋକର ଅଧିପତି । ଶିର କାଟି ତୋଷିଥିଲ ପୂଜି ପଶୁ-ପତି ॥ ତାର ପ୍ରତୀଗତି ହେଲା ଏମନ୍ତ ପ୍ରକାର । ହଠାତ ବିନଷ୍ଟ ହୋଇଲା ସକଳ ତାହାର । ୧୫୬ ।

ଶିବଶିରସି ଶିରାଂସି ଯାନି ରେଜୁଃ
ଶିବ ଶିବ ତାନି ଲୁଠନ୍ତି ଗୃଧ୍ରପାଦେ ।
ଅପ୍ରିଖଳୁବିଷମଃ ପୁରା କୃତାନାଂ
ଫଳତି ହି ଜନ୍ତୁଷୁ କର୍ମଣାଂ ବିପାକଃ । ୧୫୭ ।

ଶିବଙ୍କ ମସ୍ତକେ ଯେଉଁ ଶିରେ ଶୋଭାଜନ୍ତି । ସେ ପୁଣି ଗୃଧ୍ର ପକ୍ଷୀଙ୍କ ପାଦରେ ଲୋଟନ୍ତି । ପୂର୍ବ ଜନ୍ମାର୍ଜିତ ଫଳ ଅଟଇ ବିଷମ । ନିଶ୍ଚୟ ଫଳଇ ତାହା ପ୍ରାଣିଠାରେ ପୁଣ । ୧୫୭ ।

ଅସୁରାଧିପତନୟା ଦଶମୁଖପତ୍ନୀ ସୁରେନ୍ଦ୍ରଜିଜ୍ଜନନୀ ।
ଅହମନୁ କମ୍ପ୍ୟା କପିଭିର୍ଧୃ ରାଦେବଂ ବିପଦ୍ଦଶାରମ୍ଭଂ ୧୫୮ ।

ଅସୁରାଧିପ ତନୟା ଦଶମୁଖ ପତ୍ନୀ । ଆଉର ଅଟଇ ଇନ୍ଦ୍ର-ଜିତର ଜନନୀ ॥ କପିମାନଙ୍କ ଅଧୀନେ ରହିଲି ସମ୍ପ୍ରତି । ଧିକ୍ଭରେ ଦଇବ ତୋର ଏ ବିଷମ ଗତି ।

କ୍ୱାମ୍ଭୋଧିଃ କ୍ୱ ଚ ସେତୁବନ୍ଧନବିଧିଃ କ୍ୱାବସ୍ଥିତିର୍ଭୂଭୃତାଂ
ଲଙ୍କେଶଃ କ୍ୱ ଚ ରାଘବୋ ଜଲନିଧେଃ ପାରଂ ଗତୋ ଦୁସ୍ତରଂ ।
କସ୍ମିନ୍ ନଗବାସିନୋଽପି କପୟଃ କ୍ୱୈତେ ନିଶାଚରଣଃ
କାର୍ଯ୍ୟାଣାଂ ଗତୟୋ ବିଧେରପି ନ ଯାନ୍ତ୍ୟାଲୋଚନାଗୋଚରଂ ।

କାହିଁ ସିନ୍ଧୁ କାହିଁ ସେତୁ କାହିଁ ପର୍ବତ । କାହିଁ ଲଙ୍କାଛନ୍ତି କାହିଁ ଦଶରଥ ସୁତ । ଦୁସ୍ତର ଜଳନିଧିକି ପାର କେଉଁ ଠାରେ କଷ୍ଟ କିଷ୍କିନ୍ଧ୍ୟାବାସୀମର୍କଟ କେବଣ ଠାବରେ ॥ ନିଶାଚରମାନେ କେଉଁ-ଠାରେ ଛନ୍ତି ପୁଣି । ବିଧି ବିଧାନକୁ କେହି ନ ପାରନ୍ତି ଜାଣି ।୧୫୯।

ଭୁଜାଗ୍ରଜାଗ୍ରତ୍କରବାଳକାଳକେଳୀକଳାଖଣ୍ଡିତକାଳଦଣ୍ଡଂ ।
ତଂ ରାବଣଂ କାଳସମଂ ନିହନ୍ତୁଂ କୋରାମବାଣାଦପରଃ ପ୍ରବୀଣଃ ।

କରବାଳ ଧରି ଯେଉଁ ଲଙ୍କେଶରାବଣ । ଲୀଳା ମାତ୍ରେ କଲା ଯମ ଦଣ୍ଡକୁ ଖଣ୍ଡନ । ସେ ରାବଣ ଦିଶୁଥାଏ କାଳଯମ ପରି । ରାମ ବିନା ମାରିବାକୁ କେ ତାହାକୁ ସରି । ୧୬୦।

ଏକେନୈବସମୃଦ୍ଧୃତୋ ହରଗିରି ର୍ଦ୍ଵାଭ୍ୟାଂ ବିଲୋକୀ ଜିତା
ଯସ୍ୟାଷ୍ଟାଦଶଭି ର୍ଭୁଜୈରବସରଃ ଶସ୍ତ୍ରସ୍ୟ ନାସୀ ଦ୍ରତଃ ।
ସୋଽପ୍ୟେନଂ ଦ୍ଵିଭୁଜଂ ମନୁଷ୍ୟ ମହହ ଜିବ୍ୟାଦବାରୋରସୁଂ
ପ୍ରାପ୍ୟ ବ୍ୟର୍ଥଭୁଜୋ ରଣେ ବିନିହତୋ ଦେବାୟ ତସ୍ମୈ ନମଃ

କୈଳାସ ପର୍ବତ ଏକ ହାତେତୋଳି ଥିଲେ । ଦୁଇହାତେ ଏହି ତିନି ଭୁବନ ଜିଣିଲେ ॥ ଯାହାଙ୍କର ଅଷ୍ଟାଦଶ ଭୁଜଟି ଅବର । ଅସ୍ତ୍ର ଛାଡ଼ିବାକୁ କ୍ଷଣେ ନାହିଁ ଅବସର ॥ ସେହି ଦୈତ୍ୟରାଜ ପୁଣି ମୋନବ ରଣେ । ବିଂଶଭୁଜ ବୃଥାହେଲା ଦୁଇଭୁଜେ କେହ୍ନେ । ଏତ ବଡ଼ ଅଦଭୁତ କଥା ଦେଖାଗଲା । ଯୁଦ୍ଧକ୍ଷେତ୍ରେ ହତ ହେଲେ ବିଶବାର ବଳା ॥ ତେଣୁ ଦଇବକୁ ମୋର କୋଟିନମସ୍କାର । ବଡ଼ଇ ବିଚିତ୍ର ଗତି ସେ ବିଶ୍ୱ କର୍ମାର ।୧୬୧।

ରାବଣ ଧିକ୍କା ହା ପ୍ରାଣନାଥ ।

ଭୂପୃଷ୍ଠିସ୍ଥାନି ମୁଖାନି ଚୁମ୍ବିତ ଭୁଜୈ ର୍ଭୂଧ୍ୟୋଽଭିଲଙ୍ଘ୍ୟତେ
ଗୃର୍ହନବ୍ରତଦେବତାପି ଭବତା କାନ୍ତେନ ମନ୍ଦୋଦରୀ ।
ହା ଲମ୍ବୋଦର କୁମ୍ଭମୌକ୍ତିକମଣି ସ୍ତ୍ରୋମୈର୍ମନୈକାବଳୀ-
ଶିଳ୍ପେ ବାଚଧନଞ୍ଜିକସ୍ୟ ଭବତୋ ଲଙ୍କେନ୍ଦ୍ର କିନ୍ଦ୍ରାବସଃ । ୧୬୨ ।

ସିଂହାର ମୃତପିଣ୍ଡ ଧରି ମନ୍ଦୋଦରୀ । ଅହା ପ୍ରାଣନାଥ ବୋଲି କାନ୍ଦି କାନ୍ଦି କରି ॥ କହଇ ଦଶବଦନେ ଚୁମ୍ବଦାନ କରି । ଆଲି-ଙ୍ଗନ ଦିଅ ବିଂଶ ଭୁଜେ ବାରଂବାର । ମୁଁ ପତିବ୍ରତା ରମଣୀ ତୁମ୍ଭେ ମୋର ପତି । ତୁମ୍ଭ ବିନା ମୋହର ତ ନାହିଁ ଅନ୍ୟଗତି । କହୁଥିଲି ଗଣେଶଙ୍କ ଶିରରୁ ମୁକୁତା । ଆଣି ହାର ଗୁନ୍ଥିଦେବ ତୋ ଗଳେ ବନିତା । ଏବେ ସ୍ୱପ୍ନେ ଋଷୀହୋଇ କେହେ ପଳାଉଲି । ଋଷୀ ଲୋକ-କୁଳ ନିଦ ନ ଆସେ ଚଳିଲ । ୧୬୨ ।

ଅବା ବଚରେ ।

କାଲେନ ସଶ୍ରବିଜୟୀ ଦଶକନ୍ଧରେଽଭୂଦ୍
ଭର୍ଗାଚଲୋଦ୍ଧରଣଚଞ୍ଚଲକୁଣ୍ଡଲାଗ୍ରଃ ।
ସ୍ୱମା ଜ୍ୟୟା ସପଦି ତସ୍ୟବିଭୀଷଣସ୍ତୁ ।
ରକ୍ଷୋଭିରଗ୍ନି ଦହନାଦନି ସ୍ୱାଂ ପ୍ରଚନେ ।୧୬୩।

ବିଭୀଷଣ କୁ ଏକାଳେ ଡାକି ଶ୍ରୀରାଘବ । ବୋଇଲେ ମଧୁର ସ୍ୱରେ ଏବାଣୀକି ସବ ॥ ତିଲୋକ ବିଜୟୀ ଥିଲା ଏହୁ ଦଶାନନ । ବାହୁବଳେ କୈଳାସ ଉପାଡ଼ି ଥିଲା ପୁଣ । ଏତେ ବଡ଼ ନାମ ଖ୍ୟାତ ତ ଦୈତ୍ୟ ମୃତ ପିଣ୍ଡ । ବହନ ଦହନ କର ଜାଳି ଅଗ୍ନି କୁଣ୍ଡ । ପ୍ରଭୁଙ୍କ ଆଜ୍ଞା ମାତ୍ରକେ ବିଭୀଷଣ ଗଲା । ରାକ୍ଷସଙ୍କ ସଙ୍ଗେ ରହି ନିଯ୍ୟା ଶେଷ କଲା ।

ଦେବାଗନ୍ଧର୍ବାଦ୍ୟଃ ପୂଜିତେ ରାମେ ଲଙ୍କାପ୍ରବିଷ୍ଟେ କୁତ୍ର
ରାମ ଇତି ପୌରାଣୀଂ ପ୍ରଶ୍ନେ ନାଗରାଃ ।
ଯସ୍ୟ ବ୍ୟୋମ୍ନି ନିପତତି ମଧୁସ୍ୟନ୍ଦମନ୍ଦାର ବର୍ଷଂ
ଯସ୍ୟୈତ୍ୟଦ୍ୟ ଧ୍ୱନିରୁଦୟତେ ଯସ୍ୟ ଚ ନ୍ଦ୍ରଘୋଷଃ ।
ରାମଃ ଶ୍ୟାମଃ କମଳନୟନସ୍ତସ୍ୟ ଧୃତ୍ୱା ସରୋଷଂ
ଲଙ୍କାଂ ପଶ୍ୟନ୍ ଭ୍ରମଯୁତ ଶରଂ ପାଣିନା ଦକ୍ଷିଣେନ । ୧୬୪ ।

ଏହିକାଳେ ସ୍ୱର୍ଗପୁରୁ ଅମର ସକଳେ । ଗନ୍ଧର୍ବ ସହିତେ ଆସି କରିଣ ଚଞ୍ଚଳେ ॥ ଶ୍ରୀରାମଚନ୍ଦ୍ରଙ୍କ ପାଦପଦ୍ମ ପୂଜା କଲେ । ତହୁଁ ପୁଣି

ଯାଇଁ ଲଙ୍କାପୁରେ ପ୍ରବେଶିଲେ । ପୁଚ୍ଛିଲେ ଯେ ପୁରଜନେ କେଉଁଠି ଶ୍ରୀରାମ । କହନ୍ତି ବାନରମାନେ ତାଙ୍କୁ ବୁଝାଇଣ ॥ ଯେଉଁଠାରେ ଆକାଶରୁ ମନ୍ଦାର କୁସୁମ । ସରସେ ହୁଅଇ ବୃଷ୍ଟି ସେହିଁ ଶ୍ରୀରାମ । ଯହିଁ ବାଜୁଅଛୁ ବାଦ୍ୟମାନ ନାନା ଜାତ । ଯହିଁ ବିପ୍ରମାନେ ବେଦ ଧ୍ୱନି କରୁଛନ୍ତି । ନବଦୁର୍ବାଦଳ ରୂପ କମଳଲୋଚନ । ସେଠାରେ କରନ୍ତି ଲଙ୍କାଗଡ଼ ଦରଶନ ॥ କୋଦଣ୍ଡ ଦକ୍ଷିଣ ହସ୍ତରେ ଧରି ଚନ୍ଦ୍ରଣେ । ଭ୍ରମୁଛନ୍ତି ଏହି ଲଙ୍କାଗଡ଼ର ମଧ୍ୟର । ୧୬୪ ।

ଇତ୍ୟବସରେ ରାବଣମାତା ନିକଷା ।

ରାବଣସ୍ୟ ରଣେ ଭଙ୍ଗଃ ପୁଷ୍ପକସ୍ୟ ପରାଭବଃ ।
କପିଭିର୍ନିର୍ଜିତା ଲଙ୍କା ଜୀବତା କିଂ ନ ଦୃଶ୍ୟତେ । ୧୬୫ ।

ଏହି ଅବସରେ ରାବଣର ଯେ ଜନନୀ । ଅତି ବୃଦ୍ଧା ନିକଷା ବୋଇଲା ଏହି ବାଣୀ । ଜୀବିଥିବାରୁ ମୋ ନେତ୍ର କି କି ନ ଦେଖିଲା । ଅହାରେ ପୁଷ୍ପକ ରଥ ରାବଣ ଯା ମଲା । କପିଏ ଜିଣିଲେ ଏହି ଲଙ୍କାଗଡ଼ ପୁଣି । ନ ମଲି ଏହା ଦେଖିଲି ମୁହିଁ ନିଲକ୍ଷଣୀ ॥

ମନ୍ଦୋଦରୀ ରାମଂ ପ୍ରଣମତି ।
ତଂ ପ୍ରତି ବିଭୀଷଣଃ ।

ଇୟମିୟଂ ମୟଦାନବନନ୍ଦନା ବିଦଶନାଥଜିତଃ ପ୍ରସବସ୍ଥଳୀ ।
କମପରଂ ଦଶକନ୍ଧରଗେହିନୀ ତ୍ୱୟି କରୋତି କରଦ୍ୱୟଯୋଜନଂ ॥

ଏହିକାଳେ ପୁଣି ତହିଁ ମନ୍ଦୋଦରୀ ରାଣୀ । ପ୍ରଣମିଲା ଶ୍ରୀରାମଚନ୍ଦ୍ରଙ୍କ ପଦେ ପୁଣି । ବିଭୀଷଣ ବେନିକର ଯୋଡ଼ି ଜଣାଇଲା । ଅହେ ପ୍ରଭୁ ବୀରବର କୌଶଲ୍ୟାଙ୍କ ବଳା ॥ ଏହି ମନ୍ଦୋଦରୀ ମୟଦୈତ୍ୟର ନନ୍ଦନୀ । ଏହିଟି ଅଟଇ ଇନ୍ଦ୍ରଜିତର ଜନନୀ ॥ ଲଙ୍କପତି ରାବଣର ପତ୍ନୀ ଅଟେ ଏହି । ତବ ପାଦପଦ୍ମ ତଳେ ପ୍ରଣାମ କରଇ । ୧୬୬ ।

ବିଭୀଷଣଂ ପ୍ରତି ଶ୍ରୀରାମଃ ।
ମନ୍ଦୋଦରୀ ତବ ବିଭୀଷଣ ପଟ୍ଟରାଜ୍ଞୀ ।
ଭୂୟାଦିମାଂ ଚ ପରିପାଲୟ ବୀର ଲଙ୍କାଂ ।
ଆଜ୍ଞାପ୍ୟ ତଂ ତଦଭିଦଗ୍ଧସମସ୍ତରାଜ୍ୟଂ
ସୀତାଂ ସଭାଜନଯୁନାଯୁଦଦେଶ ରାମଃ । ୧୬୭ ।

ବିଭୀଷଣଙ୍କୁ ବୋଇଲେ ପ୍ରଭୁ ରୃପଧାରୀ । ତୁମ୍ଭ ପାଟରାଣୀ ଅଟୁଁ ହେଲ ମନ୍ଦୋଦରୀ ॥ ଅତ୍ୟନ୍ତ ଯତନେ ପାଳ ଏ ଲଙ୍କା କଟକ । ପୂର୍ବେ ତୁମ୍ଭ ଶିରେ ତ କରିଛୁଁ ଅଭିଷେକ । ଏମନ୍ତ କହିଣ ପ୍ରଭୁ ସେ ବିଭୀଷଣଙ୍କୁ । ଆଜ୍ଞା ଦେଲେ ଏ ସଭାକୁ ଆଣିବେ ସୀତାଙ୍କୁ ୧୬୭ ।

ସୀତାଂ ଦୃଷ୍ଟ୍ୱା ଜନତାବାକ୍ୟଂ ।
ଭଗ୍ନଂ ଯଦ୍ଧନୁସ୍ତ୍ରୀଶ୍ୱରସ୍ୟ ବିଭୁନା ଯଜ୍ଜାମଦଗ୍ନ୍ୟୋ ଜିତ
ସ୍ତ୍ୟକ୍ତା ଯେନ ଗୁରୋର୍ଗିରା ବସୁମତୀ ବଦ୍ଧୋଽପ୍ୟମ୍ଭୋନିଧିଃ ।
ଏକୈକଂ ଦଶକନ୍ଧରକ୍ଷୟକୃତୋ ରାମସ୍ୟ କିଂ ବର୍ଣ୍ଣ୍ୟତେ,
ଦୈବଂ ବର୍ଣ୍ଣ୍ୟ ଯେନ ସୋଽପି ସହସା ସୀତାବିଯୁକ୍ତଃ କୃତଃ । ୧୬୮ ।

ସୀତା ଦେବୀଙ୍କୁ ଦେଖିଣ ଜନମାନେ ତହିଁ । କହନ୍ତି ଏମନ୍ତ ପରକାରେ ମେଳି ହୋଇ ॥ ପ୍ରଭୁ ରାମଚନ୍ଦ୍ର ଶିବଧନୁ ଭଗ୍ନ କଲେ । ପଥେ ଆସୁଁ ଆସୁଁ ପର୍ଶୁଧରଙ୍କୁ ଜିଣିଲେ ॥ ପିତାଙ୍କର ସତ୍ୟ ବ୍ରତ ପାଳିବାର ପାଇଁ । ରାଜ୍ୟସମ୍ପଦ ସୁଖକୁ ଇଚ୍ଛା କଲେ ନାହିଁ ॥ ଅଗାଧ ସିନ୍ଧୁ ଜଳରେ ସେତୁ ବନ୍ଧାଇଲେ । ପୁଣି ଲଙ୍କା ଗଡ଼େ ରାବଣକୁ ଯେ ବଧିଲେ । ଏହାପର ତାଙ୍କ ଗୁଣ ଗୋଟି ଗୋଟି କରି । କେତେ ଅବା ଅମ୍ଭେମାନେ କହିବୁ ବିସ୍ତାରି । ଦୈବ ଅବା ବର୍ଣ୍ଣିପାରେ ସେହି ଗୁଣମାନ । ଏକ ମୁଖେ ଅମ୍ଭେ କିସ କରିବୁ ବର୍ଣ୍ଣନ । ସଂସାରେ ଅସାଧ୍ୟ ଏକା ଦୈବର ଘଟନ । ଯେଣୁ ସୀତା ରାମଙ୍କୁ କରାଇ ଦେଲା ଭିନ୍ନ । ୧୬୮ ।

ଜାନକୀ ରାମଚରଣେ ପ୍ରଣମତି । ରାମଃ ଭୋ ଜନାଃ ଯଦ୍ୟପ୍ୟୟଂ ପତିବ୍ରତା ପରମନ୍ଦିରସ୍ଥ କଥଂ ମାଂ ସ୍ପ୍ରଷ୍ଟୁମିଚ୍ଛତୀତି ଧାଧଦ୍ୟାପଳରଣୀଂ ନାଟ୍ୟୟତି । ୦ ।

ଶ୍ରୀରାମଙ୍କ ପାଦେ ସୀତା କରନ୍ତେ ପ୍ରଣାମ । ସବୁ ଲୋକଙ୍କୁ ଅନାଇ ଶ୍ରୀ ରଘୁନନ୍ଦନ ॥ କହନ୍ତି ଯଦ୍ୟପି ଏହି ପତିବ୍ରତା ନାରୀ । ପରଗୃହେ ରହିଥିଲା ଛୁଇଁବ କପରି । ୦ ।

ଜାନକୀ ।

ଅୟଂ ରାମଃ ସ୍ୱାମୀ ତଦନୁଜବରୋ ଲକ୍ଷ୍ମଣ ଇହ
ସ୍ୱୟଂ ବାୟୋଃ ସୂନୁ ର୍ଦ୍ଦିତିଜପ୍ରମୁଖା ବାନରଗଣାଃ ।
ମମାକାରୋ ଜାତୋ ଯଦି ଦଶମୁଖେ ଭାବବଶଗ
ସ୍ତଦାହଂ ଭସ୍ମ ସ୍ୟାମିତି ବଶତି ବହ୍ନୌ ରଘୁବଧୂଃ ।୧୬୯।

ଜାନକୀ ବୋଲନ୍ତି ଏହି ଶ୍ରୀରାମ ମୋ ସ୍ୱାମୀ । ବ୍ରହ୍ମାଣ୍ଡ କରତା ପ୍ରଭୁ ସର୍ବ ଅନ୍ତର୍ଯ୍ୟାମୀ ॥ ଏଥିଛନ୍ତି ଦେବର ଲକ୍ଷ୍ମଣବୀର ମୋର । ଆବର ଅଛୁ ଏଠାରେ ମରୁତ କୁମର ॥ ସୁଗ୍ରୀବାଦି ସକଳ କପିଏ ପୂରିଛନ୍ତି । ରାବଣରେ ଯେବେ ବଳିଥିବ ମୋର ମତି ॥ ତେବେ ଏହି ଅନଳେ ମୁଁ ନଷ୍ଟେ ଯିବି ଜଳି । ଏସନେକ ବଚନ କହିଣ ପଇଥିଲେ ॥ ଅଗ୍ନି ମଧ୍ୟରେ ପଶନ୍ତେ ସାଧୁ ସାଧୁ ବାଣୀ । ଶୁଭିଗଲା ଧନ୍ୟ ଧନ୍ୟ ସୀତା ଠାକୁରାଣୀ । ୧୬୯ ।

ଅଗ୍ନିଂପ୍ରତି ସୀତା ।

ମନସି ବଚସି କାୟେ ଜାଗରେ ସ୍ୱପ୍ନସଙ୍ଗେ
ଯଦି ମମ ପତିଭାବୋ ରାଘବାଦନ୍ୟପୁଂସି ।
ତଦିହ ଦହ ମମାଙ୍ଗଂ ପାବନଂ ପାବକେଦଂ
ସୁକୃତଦୁରିତଭାଜାଂ ତ୍ୱଂ ହି କର୍ମୈକସାକ୍ଷୀ । ୧୭୦ ।

ଅନଳ ପ୍ରତି ଜାନକୀ ପୁନଶ୍ଚ କହିଲେ । କାୟ ମନ ବାକ୍ୟ କିବା ସ୍ୱପ୍ନଜାଗ୍ରତରେ । ରାମ ବିନୁ ଆନେ ଯଦି ଥିବ ମନ ମୋର । ତେବେ

ଏ ଅଙ୍ଗକୁ ଜାଳିଦିଅ ବୈଶ୍ୱାନର । ସୁକୃତ ଦୁଷ୍କୃତ ଜୀବମାନଙ୍କ ଯାଇଁକ । ଅହେ ଅଗ୍ନିଦେବ ତୁମ୍ଭେ ହୋଇଅଛ ସାକ୍ଷୀ ॥ ପୁଣି ସବୁର ନୟନ ହୋଇଛ ଅନଳ । ତେଣୁ ଦେଖାଅ ମୋହର ସତୀଧର୍ମ୍ମ ବଳ । ୧୭୦ ।

ଅଗ୍ନିମଧ୍ୟେ ।

ପଦେ ପାଣୌ ଲକ୍ଷା ବସନମିବ କୌସୁମ୍ଭରଜନଂ
କଟୀଦେଶେ କେଶେଷ୍ୱରୁଣରୁଚିକହ୍ଲାରକୁସୁମଂ ।
ହରିଦ୍ରାବନ୍ଧୋସ୍ୟ ଘନକୁଚତଟେ କଣ୍ଠକଠଠେ
କୃଶା ନୂର୍ବ୍ବୈଦେହ୍ୟାଃ ପ୍ରେଥସମୟେ ଭୂଷଣମଭୂତ୍ । ୧୭୧।

ଏହା କହି ଅଗ୍ନି ମଧ୍ୟେ ପଶିବାର ବେଳେ । ପାଦ ପାଣି ଲକ୍ଷା ପରେ କାହେ ଦେଖାଗଲେ ॥ ଅଗ୍ନିର ମଧ୍ୟରେ ସୀତାଦେବୀଙ୍କର କଟୀ । ଦିଶିଲା ପରି କୁସୁମ ରଞ୍ଜିତ ବସ୍ତ୍ର ଟି ॥ ଅତ୍ୟନ୍ତ ଶୋଭିଲା ତହିଁ କଲ୍ଲଇ ବାସ୍ତାର । କେଶ ଅରୁଣିତ ଯେହ୍ନେ କୁସୁମ କହ୍ଲାର ॥ ହରିଦ୍ରାପରାୟେ ଦିଶେ ଘନକୁଚ ତଟେ । ଅବର ମୁଖମଣ୍ଡଳ ସୁମଞ୍ଜୁଳ କଣ୍ଠ । ୧୭୧ ।

ଅତୀବାବସରେ ଜନାଃ ।

ବହ୍ନିର୍ଜ୍ଜ୍ୱାଲାଃ ସୃଜତି କିମୁତ ଜାନକୀ କିଂ ବଧତ୍ରେ
କାଦୃକ୍ ଛାୟା ରଘୁପତିମୁଖେ କର୍ମ କିଂ ଲକ୍ଷ୍ମଣସ୍ୟ ।
ଇତ୍ଥଂ ଯାବଦ୍ବଦତି ଜନେ କୌତୁକୋଚ୍ଛୁନନେନେ
ତାବଚ୍ଛନ୍ନଂ ଗଗନମଖିଳଂ ଦ୍ୟୋତମାନୈର୍ବିମାନୈଃ।୧୭୨।

ଏହିକାଳେ ଜନମାନେ ହେଲେ କୁହାକୁହି । କେତେ ଜ୍ୱାଳାରେ ଅନଳ ଶିଖା ପ୍ରକାଶଇ ॥ କିବା ସୀତା ଦେବୀଙ୍କର ରୂପ ହେ ଏମନ୍ତ । ରଘୁପତିଙ୍କର ମୁଖଚ୍ଛାୟ ହେ କେମନ୍ତ ॥ ସୌମିତ୍ରଙ୍କୁ ଦେଖି ତହିଁ କି କାର୍ଯ୍ୟ କରନ୍ତି । କୌତୁକରେ ସକଳ ରହିଣ ଦେଖନ୍ତି । ଦିବ୍ୟ ବିମାନ ମାନ ଯେ ଦେବେ ଅରୋହଣ । ଆସି ଏ କାଳେ ଗଗନ କଲେ ଅଚ୍ଛାଦନ । ୧୭୨ ।

ଅକାଶେ ।

ସୀତାମୃଦ୍ୱୀକ୍ଷ୍ୟ ସୁମୁଖୀମନଲେ ପ୍ରବିଷ୍ଟାଂ
ମୁକ୍ତାସ୍ତଥା ସୁମନସଃ ସୁରସୁନ୍ଦରୀଭିଃ ।
ସ୍ରଗ୍‌ବିନ୍ୟସ୍ତଃ ସକଳଖେଚରମାଳିକାନାଂ
ଜାତୋ ଯଥା ଶରତରଂ ନିଦାଘେବ ମହାଘଃ । ୧୭୩ ।

ସୁମୁଖୀ ଜାନକୀ ସତୀ ପଶିଲେ ଅନଳେ । ତା ମଧ୍ୟେ ଦେଖି ସକଳେ ଆନନ୍ଦିତ ହୋଇଲେ ॥ ଦେବବାଳାବୃନ୍ଦ କଲେ ପୁଷ୍ପ ବରଷଣ । ସ୍ରକ୍ ବନ୍ଧିଲେ ଖେଚର ମାଳି ମାନେ ଜାଣ । ୧୭୩ ।

ତତଃ ।

ବହ୍ନେଃ ଶୁଦ୍ଧି ବିଧାୟିନୋ ଭଗବତସ୍ତେଜୋଭିରଭ୍ୟୁଦ୍‌ଗତେ
ରମ୍ଲାନାମ୍ଳାନସୂନସ୍ୟା ଶିରଶତାଂ ମୌଳୌ ସ୍ରଜଂ ବିଭ୍ରତୀ ।
ପାଦାଙ୍ଗୁଷ୍ଠନଖାଗ୍ରଦତ୍ତନୟନା ଚୃଦଗ୍ଧବସ୍ତ୍ରା ସତୀ
କାଂଚନାମ୍ରମୁଖୀ କୃଶାନୁବଲୟା ଦ୍ରୁତଂ ନିର୍ଗତା ଜାନକୀ । ୧୭୪ ।

ଅନଳ ମଧ୍ୟରୁ ସତୀ ବାହାର ହୋଇଲେ । ଶ୍ରୀମୁଖ ଅଲପ ନମ୍ର କରିଛନ୍ତି ଭଲେ ॥ ପାଦାଙ୍ଗୁଳି ନଖ ଅଗ୍ରେ ନୟନକୁ ଦେଇ । ଅନ-ନୂସ୍ଥା ଦତ୍ତମାଳା ଶିରେ ଛନ୍ତି ବହି ॥ କୃଶାନୁତେଜେ ସେ ହାର ମ୍ଳାନ ହୋଇନାହିଁ । ପରିଧାନ ବସ୍ତ୍ର ଅତଶୟ ଝଟକଇ । ୧୭୪ ।

ଦେବୈଃ ସହ ଦଶରଥଃ ।

ବିରମ ବିରମ ରାମ ହ୍ୱଲ୍ଲନଂ ପବନଂ
ବପୁମବଗତବନ୍ତଃ ସତ୍ୟମେତତ୍ ଦୃଶାହ୍ନ ।
କିମପରମନଲେଽସ୍ମିନ୍ ହେମବଲ୍ଲୀବ ଶୁଦ୍ଧା
ବିପୁଲକୁଲବଧୂଷା ଜାନକୀ ତେ ତନୋତୁ । ୧୭୫ ।

ଦେବଗଣଙ୍କ ସଙ୍ଗରେ ଦଶରଥ ରହି । ଶ୍ରୀରଘୁନାଥଙ୍କୁ ଦେଲେ ଏମନ୍ତ ବୁଝାଇ ॥ ସମ୍ଭାଳ ରାମ ଅନୀତ ନ କର । ଅତି ସୁପବନା ଜାଣି କଲନ୍ତ ତୁମ୍ଭର ॥ ଉତ୍ତମ ପ୍ରକାରେ ଏହା ଜାଣୁ ଅମ୍ଭେମାନେ ।

ସୀତା ସତୀଙ୍କ ଚରିତ ନିର୍ମଳ ବିଧାନେ ॥ ସତ୍ୟ ସତ୍ୟ ସତ୍ୟ ଏହା ମିଥ୍ୟ ନୁହେ ବଚ୍ଛ । କଟ୍ଟାହିଁ ନ ଭାବ ମନ କରିହଅ ସ୍ୱଚ୍ଛ । ଦେଖ ସୁବର୍ଣ୍ଣ ଲତିକା ପ୍ରାୟ ସୀତାଅଙ୍ଗ । ଅନଳରେ ଫୁଟେକାଇ ନ ହୋଇ ବିଭଙ୍ଗ ॥ ବିପୁଳ କୁଳବିଭୂଷା ଜନକନନ୍ଦିନୀ । ଶୂନ୍ୟମାର୍ଗରୁ ଶୁଭିଲା ଏହିପରି ବାଣୀ । ୧୭୫ ।

ଶ୍ରୀରାମଃ ସାନନ୍ଦଂ ॥

ବହ୍ନିଂ ଗତାପ୍ୟା ଜନକା ମୃଜାପ୍ୟାଃ ପ୍ରୋତ୍ଫୁଲ୍ଲରାଜୀବମୁଖଂ ବିଲୋକ୍ୟ ଉବାଚ ରାମଃ କମହୋ ସୁବର୍ଣାନଙ୍ଗାରମଧ୍ୟେ ଜଲଜଂ ବିଭାତି ।୧୭୬।

ତହୁଁ ରଘୁନାଥ ଅତି ଆନନ୍ଦିତ ହେଲେ । ସୀତାସତୀ ଅନଳରୁ ଉଦୟ ହୋଇଲେ ॥ ପ୍ରଫୁଲ୍ଲ ରାଜୀବ ପ୍ରାୟ ଶ୍ରୀମୁଖ ମଣ୍ଡଳ । ଦେବଗଣଙ୍କୁ ଅନାଇଁ କରି ତତକାଳ ॥ ଏମନ୍ତ କହିଲେ ଶ୍ରୀରାମଙ୍କ ପ୍ରେମଶୀଳା । ଅଦ୍ଭୁତ ପରାୟ ମୋତେ ଏହା ବୋଧ ହେଲା । ଅଙ୍ଗାର ମଧ୍ୟେ ଜଳଜ ପ୍ରକାଶିଲ ଶୋଭା । ଆହା କି ବିଚିତ୍ର ସୀତାଦେବୀଙ୍କର ପ୍ରଭା । ୧୭୬ ।

ଜନାଃ ।

ରାମୋ ମୂର୍ଦ୍ଧ୍ନି ନିଧାୟ କାନନମଗାନ୍ ମାଲମିବାଜ୍ଞାଂ ଗୁରୋ-<br>
ସ୍ତଦ୍ଭକ୍ତ୍ୟା ଭରତେନ ରାଜ୍ୟମଖିଳଂ ମାତ୍ରାସହୈବୋଜ୍‌ଝିତଂ ।<br>
ତୌ ସୁଗ୍ରୀବବିଭୀଷଣୌ ବନୁଗତୌ ନୀତୌ ପରାଂ ସମ୍ପଦଂ<br>
ପ୍ରୋଦ୍ଧୃତ୍ତା ଦଶକନ୍ଧରପ୍ରଭୃତୟୋ ଧ୍ୱସ୍ତା ନିଶାଚରାଃ ।୧୭୭।

ଏହି ସମୟରେ ଜନମାନେ ପରସ୍ପରେ । କୁହାକୁହି ହୋଇଲେ ଯେ ଏମନ୍ତ ପ୍ରକାରେ । ପିତାସତ୍ୟ ପାଳି ରାମ ଅଇଲେ ବନସ୍ତ । ଭ୍ରାତୃସ୍ନେହେ ରାଜ୍ୟ ମାଙ୍କୁ ତେଜିଲେ ଭରତ । ପଥେ ଅନୁଗତ ହେଲେ ସୁଗ୍ରୀ ବିଭୀଷଣ । ପରମ ରାଜ୍ୟ ସମ୍ପଦ ପାଇଲେ ସେ ପୁଣି । ରାବଣ ସହିତେ ଯେତେ ଗର୍ବୀ ନିଶାଚରେ । ପାପ ପ୍ରବଳରୁ ନାଶ ଗଲେ ଅକାଳରେ । ୧୭୭ ।

ଅନନ୍ତରଂ ରାମଃ ।

ହତ୍ୱା ତୁ ରାବଣଂ ବୀରଂ ସୀତା ମୁକ୍ତ୍ୱା ତାପଦଃ ।
ଅଯୋଧ୍ୟା ଗମନାକାଙ୍କ୍ଷୀ ମୁମୁଦେ ସହ ସୀତୟା । ୧୭୮ ।

ଅନନ୍ତର ଶ୍ରୀରାମ ଯେ ବଧି ରାବଣକୁ । ବନ୍ଧନୁ ମୁକୁଳାଇଣ ଜାନକୀ ସତୀଙ୍କୁ । ପ୍ରିୟାସହ ଅଯୋଧ୍ୟାକୁ ଯିବାକୁ ଇଚ୍ଛିଲେ । ମନେ ମନେ ଅତିଶୟ ଆନନ୍ଦିତ ହେଲେ । ୧୭୮ ।

ସୀତାଂ ପ୍ରତି ।

ଯସ୍ୟାଂ ନର୍ମଜରତ୍ନଚନ୍ଦ୍ରକମର୍କପାଦୈ-
ସ୍ତ୍ୱାମାଙ୍ଗିଶାଚରପତେଶ୍ଚକ୍ଷପି ବ୍ୟଲାସି ।
ବଂ ବିକ୍ଷ୍ୟ ବକ୍ତ୍ରକମଲଂ କମଲାକ୍ଷି ପଶ୍ୟ
ଲଙ୍କେତି ତାଂ ନବବିଭୀଷଣରାଜଧାନୀଂ । ୧୭୯ ।

ସୀତାଙ୍କୁ ଶ୍ରୀରାମଚନ୍ଦ୍ର ଏସନ କହନ୍ତି । ରାବଣର ଭୟରେ ଗୋ ପ୍ରାଣ ପ୍ରିୟା ସତୀ । ଶଶି କିରଣଟି ଆଉ ଆଉ ଉଷାକାଳେ । ଦୂସି ଦେବଙ୍କ କିରଣ ପଡ଼ଇ ନୃପ ଅଲେ । ଲପନ ପେଟିଇ ଗୃହ ଗୃହ ବଇଦେହୀ । ଲଙ୍କା କଟକ ବୋଲିଣ ସେ ନଗ୍ର ଅଟଇ । ସେହି ଲଙ୍କାପୁରେ ନୂଆରାଜା ବିଭୀଷଣ । ହୋଇଲା ଗୋ ଜନକନନ୍ଦନୀ ଭଲେ ଜାଣ । ୧୭୯ ।

ରାମଂ ପ୍ରତି ସୀତା ।

ଚ୍ଛିନ୍ନା ନ ଦ୍ରବ୍ୟତରବସ୍ତବ କଚିଦାହୋ
କଚିଦ୍ଧତା ନ ପରିତାଃ କନକାମ୍ବୁଜିନ୍ୟଃ ।
ପ୍ଲୁଷ୍ଟାନ କଚିଦୁନରତ୍ନମହାଗୃହାଣିଃ ।
କଚିନ୍ନ କାଞ୍ଚନମୟୀ ଦଳିତାଷ୍ଟ ଶାଳାଃ । ୧୮୦ ।

ଶ୍ରୀରାମଙ୍କୁ ଅନାଇଣ ଜନକଦୁହିତା । କହନ୍ତି ଆନନ୍ଦ ମନେ ଅହେ ପ୍ରାଣପତି ॥ ମୋ ଅଗରେ କହ କହ କରୁଣ ଟୁଟିତ । ଏହି ଲଙ୍କା କଟକରେ ଦ୍ରବ୍ୟ ତରୁପନ୍ତ ॥ ଛିନ୍ନ ହୋଇ ନାହାନ୍ତିକି ଅହେ

ପ୍ରାଣଇଶ । କନକାମ୍ବୁଜ ପରଖନୋହୁଛୁ କ ନାଶ ॥ ଯେଉଁ ପୁର ଦାଶେ ସୂର୍ଯ୍ୟକାନ୍ତମଣି ଭଳି । ଜଳି ନ ଯାଇଛୁ କହେ ସେ ଉଚ୍ଚ ଅଟ୍ଟାଳି ॥ ସମ୍ପୂର୍ଣ୍ଣ ରୂପରେ ଲଙ୍କା ଦଳି ନୋହୁଛୁ କି । ଧାରଣ କରଛୁ ଦେଖ ଅପୂର୍ବ ଛବିକି । ୧୮୦ ।

ରାମଃ ସମରଭୂମିମବଲୋକ୍ୟ ପ୍ରିୟେ ପଶ୍ୟ ।

ଅତ୍ରା ସୀତଫଣିପାଶବନ୍ଧନବଧ୍ୱଃ ଶକ୍ତ୍ୟା ଭବଦ୍ଦେବରେ
ଗାଢ଼ଂ ବକ୍ଷସି ତାଡ଼ିତେ ହନୁମତା ଦ୍ରୋଣାଦ୍ରିରତ୍ରାହୃତଃ ।
ଦ୍ୱୈୈତ୍ୟନ୍ଦ୍ରୋ ଜିଦନ୍ତ ଲକ୍ଷ୍ମଣଶରୈ ଲୋକାନ୍ତରଂ ପ୍ରାପିତଃ ।
କେନାପ୍ୟତ୍ର ମୃଗାକ୍ଷି ରାକ୍ଷସପତେ କୃତ୍ତା ଚ କଣ୍ଠାଟବୀ । ୧୮୧ ।

ଶ୍ରୀ ରାମଚନ୍ଦ୍ର ସମର ଭୂମିକି ଅନାଇଁ । କହିଲେ ଶୁଣହିଁ ଶୁଣହିଁ ଗୋ ପାରାଣର ସହି ॥ ଏହିଠାରେ ଇନ୍ଦ୍ରଜିତ ମାରୁତଙ୍କୁ ଜାଣ । ନାଗ-ପାଶରେ ଗୋ କରିଥିଲାଃ ବନ୍ଧନ ॥ ଏହିଠାରେ ଶକ୍ତି ଅସ୍ତ୍ର ମାଇଲା ରାବଣ । ଶକ୍ତିଘାତେ ମୂର୍ଚ୍ଛା ଯାଇଥିଲେ ଗୋ ଲକ୍ଷ୍ମଣ । ଏହିଠାକୁ ଗୋ ପ୍ରେୟସୀ ପବନର ବଳା । ଔଷଧି ଛଳରେ ଦ୍ରୋଣ ଗିରି ଆଣିଥିଲା । ଦେଖ ଏହିଠାରେ ବୀର ସାନୁଜ ଲକ୍ଷ୍ମଣ । ତୀକ୍ଷ୍ଣଶରେ ଘେନିଥିଲା ଇନ୍ଦ୍ର ପ୍ରାଣ ॥ ଦେଖ ଗୋ ଏହି ସ୍ଥାନରେ ପୁଣି ଏକ ବୀରଜାତ । କାଟିପକାଇ ଥିଲା ଗୋ ମୁଣ୍ଡ ରାବଣର । ୧୮୧ ।

ଅଥ ଦହନବିଶୁଦ୍ଧାଂ ତାଂ ସମାଦାୟ ସୀତାଂ
ରଜନୀଚରକପୀନ୍ଦ୍ରୈର୍ବନ୍ଦିତଃ ପୁଷ୍ପକେଣ ।
ପୁରମଗମଦଯୋଧ୍ୟାଂ ମନ୍ତ୍ରୀଯୁକ୍ତୈର୍ନିଜିତ୍ୱା
ସପଦି ଭରତଦତ୍ତାଂ ରାଜ୍ୟଲକ୍ଷ୍ମୀଂ ଚ ଭୋକ୍ତୁଂ । ୧୮୨ ।

ଏ ଉତ୍ତାରେ ସୀତାଙ୍କୁ ଘେନିଣ ରଘୁନାଥ । ବେଗେ ଯାଇ ଅରୋହିଲେ ଦେବ ପୁଷ୍ପକ ରଥ ॥ ଦୈତ୍ୟ ଆଉ କପିମାନେ ବନ୍ଦିଲେ ପ୍ରଯୁତରେ । ମନ୍ତ୍ରୀଙ୍କୁ ଶ୍ରୀରାମଚନ୍ଦ୍ର ଘେନିଲେ ସଙ୍ଗରେ । ଭରତଙ୍କ ଦତ୍ତ ରାଜ୍ୟଲକ୍ଷ୍ମୀ ଭୋଗିବାକୁ । ଚଳିଲେ ବହନ ରାମ ଅଯୋଧ୍ୟା ନଗ୍ରକୁ ॥

ପଦ୍ୟ—

ଦୃଷ୍ଟ୍ୱୋଽଗ୍ରୁଂ ସରିତାଂ ପତିଃ ପ୍ରିୟତମଃ କ୍ୱାସ୍ତେ ସ ସେତୁଃ ପରଂ
କ୍ୱେତି କ୍ୱେତି ମୁହୁର୍ମୁହୁଃ ସକୌତୁକଂ ପୃଷ୍ଟେ ପରଂ ବର୍ତ୍ମିତେ ।
ଅବାସୀଦଗ୍ରମଦ ନାଥ କମିତିବ୍ୟଗ୍ରେ ନିଜପ୍ରେୟସି
ବ୍ୟାବୃତ୍ତଶ୍ୟସୁଧାନିଧିଃ ସମଭବନ୍ମନ୍ଦସ୍ମିତା ଜାନକୀ । ୧୮୬ ।

ପଥେ ଯାଉଁ ଯାଉଁ ପ୍ରଭୁ ଶ୍ରୀରଘୁନନ୍ଦନ । ସୀତାଙ୍କୁ ଗୁହିଁ ଆନନ୍ଦେ କହନ୍ତି ଏସନ ॥ ଅନାଅ ଗୋ ପ୍ରିୟସଖି ସାଗର ଜଳକୁ । କପର ଶୋଭା ପାଉଛି ସେ ପୁଣି ଦୂରକୁ ॥ ତହିଁ ପଚାରନ୍ତି ସୀତା ଆନନ୍ଦିତା ହୋଇ । କାହିଁ କାହିଁ ପ୍ରାଣନାଥ ସେତୁବନ୍ଧ କାହିଁ । କହ କହ ବୋଲିଣ ପୁଛନ୍ତି ବାରଂବାର । ପ୍ରେମଅଶ୍ରୁ ନୟନୁ ବୁହାଇ ଧାର ଧାର ॥ ସୀତା ଦେବୀଙ୍କର ଏହି କଉତୁକ ବାଣୀ । ଶୁଣି ଆଚମ୍ବିତ ମନେ ପ୍ରଭୁ ରଘୁମଣି ॥ ବୋଇଲେ ଏହି ଗୋ ସଖି ସିନ୍ଧୁ ସେତୁ ଏହି । ଜନକ ନନ୍ଦନୀ ଅତି ଚଞ୍ଚଳତା ହୋଇ । ଚାହୁଁ ଚାହୁଁ ପୁଷ୍ପକ ବିମାନ ଶୂନ୍ୟମାର୍ଗେ । ସମୁଦ୍ରକୁ ପାର ହୋଇଗଲା ଅତିବେଗେ ॥ ଶ୍ରୀମୁଖ ଛନ୍ଦକୁ ଫେରାଇଣ ବଇଦେହୀ । ମନ୍ଦେ ମନ୍ଦେ ହସିଣ ଯେ ବୋଇଲେକ ତହିଁ ॥ କାହିଁ ଏଠାରେ ତ ନାହିଁ ନାହିଁ ରତ୍ନାକର । କେ ବର୍ଣ୍ଣିବ ପାରବ ସେ କାଳର ସମାଚାର । ୧୮୭ ।

ଜଗାମ ରାମଃ ସହ ସୀତୟା ସ୍ୱଃ
ପୁରୀମଯୋଧ୍ୟାଂ ସହ ବାନରେନ୍ଦ୍ରୈଃ ।
ପ୍ରତ୍ୟାଗତୈସ୍ତୈର୍ଭରତ ଦ୍ୱଭିଷ୍ଟ
ଶ୍ଚକ୍ରେଽଭିଷିକ୍ତୋମୁନିଭିର୍ବଶିଷ୍ଠ । ୧୮୪ ।

ଅଯୋଧ୍ୟା କଟକେ ରାମ ହୋଇଲେ ପ୍ରବେଶ । ସଙ୍ଗରେ ଅଛନ୍ତି ସୀତା ହୋଇ ହସ ହସ ॥ ବାନର ଋଷିମାନେ ମଧ୍ୟ ସଙ୍ଗେ ଛନ୍ତି । ସଭିଙ୍କ ମୁଖ ପଙ୍କଜ ପ୍ରଫୁଲ୍ଲିତ ଅତି ॥ ଏକାଳେ ଭରତ ଶତ୍ରୁଘନ ଅଭିକର । ସକଳେ ପ୍ରବେଶ ହେଲେ ହୃଦେ ମୋଦ

ଭର ॥ ଋଷି ମୁନିମାନେ ସର୍ବେ ଆସିଣ ମିଳିଲେ । ମହା ମହୋତ୍ସବେ ଅଭିଷେକ ବିଧି କଲେ । ୧୮୪ ।

ଦଶବଦନବିମର୍ଦ୍ଦଖ୍ୟାତବାହୁପ୍ରତାପ
ପ୍ରତିହତପରଚକ୍ରଂ କ୍ଲାନ୍ତଶଙ୍କାକଳଙ୍କଂ ।
ସ୍ଥିରମନୁଜବନ୍ଧୁ ଶ୍ରେଣିଧା ମାନ୍ୟଭୋଗଂ
ସୁଖିତସକଳଲୋକଂ ରାମରାଜ୍ୟଂ ବଭୂବ । ୧୮୫ ।

ଶ୍ରୀରାମଚନ୍ଦ୍ର ହୋଇଲେ ଅଯୋଧ୍ୟାରେ ରାଜା । ଅତ୍ୟନ୍ତ ସୁଖେ ପାଳିଲେ ରାଜ୍ୟର ପରଜା ॥ ଭାଇ ବନ୍ଧୁମାନେ ତହୁଁ ନୃପତି ପରାୟ । ଦିବ୍ୟ ସୁଖ ଭୁଞ୍ଜିଲେ ତେଜିଣ ଶୋକ ଭୟ ॥ ଛାଡ଼ିଗଲା କଳଙ୍କାଦି ରୋଗ ସର୍ବ ମନ । ରାବଣ ମୃତ୍ୟୁ ବାରତା ପାଇଲେ ସେ ଯେଣୁ ॥ ପୁଣି ଯେ ବାଳି ପାଇଣି ଅନ୍ୟ ଶତ୍ରୁମାନେ । ଶରଣ ନେଲେ ଶ୍ରୀରାମ ଶ୍ରୀପଦ ନମିଲେ । ୧୮୫ ।

ଶ୍ରୀରାମଚନ୍ଦ୍ରବହୁମାନବିଶେଷକୃତ୍ୟଂ
ରାଜ୍ୟୋପଭୋଗମତୁଳଂ ହୃଦୟେ ନିଧାୟ ।
ସୀତାସମସ୍ତକୁଳକୌତୁକମୂଳ ଭୂତ-
ମାଧତ୍ତ ଗର୍ଭ ମଚିରାତ୍ ରଘୁବଂଶବୃଦ୍ଧ୍ୟଂ । ୧୮୬ ।

ଶ୍ରୀରାମଚନ୍ଦ୍ରଙ୍କ ବହୁମାନ ବିଶେଷରେ । ଅତ୍ୟନ୍ତ ଆନନ୍ଦ ସୀତା ଭରିଣ ହୃଦରେ ॥ ଅତୁଳ ରାଜ୍ୟ ସମ୍ପଦ ଭୁଞ୍ଜିଲେ ବୈଦେହୀ । କାଳବଳେ ପୁଣି ସର୍ବ ଶୁଭେ ସତୀ ତହିଁ ॥ ଗର୍ଭବତୀ ହୋଇଲେ ସେ ରାଜ ଅନ୍ତଃପୁରେ । ଆନନ୍ଦ ଲଭିଲେ ଜାଣି ରାଜପରିବାରେ ॥

ଦହନଶୁଚିରପାପା ନିଷ୍କଳଙ୍କାପି ସୀତା
ଦଶମୁଖଭବନସ୍ଥା-ରେତି ଲୋକାପିବାଦଂ ।
ମୃଗରଜନରମୁଖୋତ୍ଥଂ ରାମ ଆକର୍ଣ୍ଣ୍ୟ ମେନେ
ଜନକଜନୃପସୁତାୟାସ୍ତ୍ୟାଗ ମେବ ବିଶୁଦ୍ଧଂ । ୧୮୭ ।

ଅଗ୍ନିରେ ଅଙ୍ଗକୁ ଦଗ୍ଧ କରି ସୀତାସତୀ । କଳଙ୍କ ରହିତା ଅତି ଶୁଦ୍ଧା ପତିବ୍ରତା ॥ ଲଙ୍କାପତି ରାବଣ ଗୃହରେ ଥିଲେ ବୋଲି । ଏହି ଅପବାଦ ନଗରୀରେ ହେଲା ଦୂର ॥ ଜନମାନଙ୍କ ମୁଖରୁ ଶୁଣି ରାମଚନ୍ଦ୍ର । ମନ ମଧ୍ୟରେ ଲଭିଣ ବଡ଼ଇ ବିଷାଦ ॥ ଭଲ ଭଲ ରଘୁନାଥ ଏତେ ବିଚାରିଲେ । ବିଶୁଦ୍ଧ ହେବ ମୁଁ ଜାନକୀଙ୍କୁ ତେଜ୍ୟା କଲେ । ୧୮୭ ।

ବିମଳକୁଳକଳଙ୍କାଶଙ୍କୟା ଦୁର୍ନିବାରାଂ
ରଘୁକୁଳତିଳକାଜ୍ଞାଂ ଭ୍ରାତୃଭ୍ରାତୋ ଗୃହୀତ୍ୱା ।
ବନଭୁବମଥ ନୀତ୍ୱା ଦୋହଦଚ୍ଛଦ୍ମନା ତାଂ
ଜନକଜନୃପତିପୁତ୍ରୀଂ ଲକ୍ଷ୍ମଣୋବାକ୍ୟମାହ । ୧୮୮ ।

ଏହି ସୂର୍ଯ୍ୟବଂଶରେ କଳଙ୍କ । ହୋଇବ ନାହିଁ ନ ପାଳିଲେ ଭାଇ ବାକ୍ୟ ॥ ଜ୍ୟେଷ୍ଠଙ୍କ ଆଜ୍ଞା କରିବା ପାଳିବା କର୍ତ୍ତବ୍ୟ । ଲକ୍ଷ୍ମଣ ମନେ ଏସନ ବିଚାରିଣ ଯିବ ॥ ଭାଇଙ୍କର ଆଜ୍ଞା ଗ୍ରହଣ ସେ କଲେ । ତପୋବନ ଶୋଭା ରାଣି ଦେଖାଇବ ଛଳେ ॥ ଘେନିଗଲେ ଜନକଜେମାଙ୍କୁ ରଥ ପରେ । ଏ ପ୍ରକାର କହିଲେ ସେ ବନସ୍ତ ମଧ୍ୟରେ । ୧୮୮ ।

ଦଳିତ ଦଳିତ ବକ୍ଷଃ କମ୍ପତେ କମ୍ପତେଽଙ୍ଗଂ
ତମିରକବଳିତଂ ଦିକ୍ ଚକ୍ରମାଲୋକୟାମି ।
ତଦପି ପରବଶୋଽହଂ ହନ୍ତ ମାତର୍ବ୍ରବୀମି
ତ୍ୱମିହ ଖଳଭୟେନ ତ୍ୟାଜ୍ୟସେ ରାଘବେଣ । ୧୮୯ ।

କିସ କହିବି ଗୋ ମାତ ଅରେ ଅପଘନ । ଥରି ମୋ ହୃଦୟ ଗୋ ହେଉଛି ବିଦୀର୍ଣ୍ଣ । ଦିଗମାନ ମୋତେ ଦିଶି ଯାଉଛି ଅନ୍ଧାର । ପରବଶ ହୋଇ କହୁଛି ମୁଁ ଏ ପ୍ରକାର ॥ ଖଳ ଜନ ମୁଖୁଁ ଶୁଣିଲେକ ଅପବାଦ । ସେହି ଭୟେ ତୁମ୍ଭଙ୍କୁ ତେଜିଲେ ରାମଚନ୍ଦ୍ର । ୧୯ ୧ ।

ଇତ ବଚନମଞ୍ଚଦ୍ୱାଜ୍‌ବ୍ରଜପାତାନୁକାରଂ
ଶ୍ରୁତଗତମଥ ସୀତା ମୂର୍ଚ୍ଛିତା ସଂପପାତ ।
ଅଗମଦବନତାଟସ୍ୟ ଲକ୍ଷ୍ମଣୋ ରାମପାର୍ଶ୍ୱଂ
ମୁନିରନୟତ ସୀତାଂ ତବ ବାଲ୍ମୀକନାମା ।୧୯୦ ।

ଲକ୍ଷ୍ମଣଙ୍କ ମୁଖରୁ ଶୁଣନ୍ତେ ଏହି ବାଣୀ । ଅକସ୍ମାତ ବଜ୍ର ପଡ଼ିଲାର ପ୍ରାୟ ମଣି ॥ ମୂର୍ଚ୍ଛାଗତ ହୋଇ ସୀତା ଢଳିଣ ପଡ଼ିଲେ । ଦେଖି ସଉମିତ୍ରୀ ବଦନକୁ ଲଉଁଟିଲେ ॥ ଅତିଶୟ ଦୁଃଖମନେ ସେଠାରୁ ଲକ୍ଷ୍ମଣ । ଲେଉଟି ଅଇଲେ ଯହିଁ ଛନ୍ତି ରଘୁରାଣ ॥ ଜନକକନ୍ୟାଙ୍କ ପାଶେ ବାଲମୀକ ଋଷି । ଏହିକାଳେ ପରବେଶ ହୋଇଲେକ ଆସି । ୧୯୦ ।

( ତ୍ୟକ୍ତସୀତେତା ଲକ୍ଷ୍ମଣଃ ପଥି ବିଲପତି । )
ବନେ ବିମୋକ୍ତୁଂ ଜନକସ୍ୟ କନ୍ୟାଂ
ଶ୍ରୋତୁଂ ଚ ତସ୍ୟାଃ ପରିଦେବିତାନି ।
ସୁଖେନ ଲଙ୍କାସମରେ ହ୍ରୁତଂ ମା-
ମଜୀବୟନ୍ମା ରୁତରାଜ୍ୱୈରିଃ । ୧୯୧ ।

ସୀତାଙ୍କୁ ତ୍ୟକ୍ତ କରଣ ଅରଣ୍ୟେ ଲକ୍ଷ୍ମଣ । କିଛିଦୂର ଯାନ୍ତେ ପୁଣି ତାହାଙ୍କ ରୋଦନ ॥ ଶୁଣିପାର କାନ୍ଦି କାନ୍ଦି ବିମୁଖ ହୋଇଲେ । ଆପଣାକୁ ନିନ୍ଦ ଘାର ଏମନ୍ତ ବୋଇଲେ । କାହିଁପାଇଁ ଅଛୁ ଅଉ ଏ ନିଷ୍ଠୁର ପ୍ରାଣ ॥ ଲଙ୍କା ଯୁଦ୍ଧେ ଛାଡ଼ି ଯାଇଥିଲୁ ପିଣ୍ଡ ପୁଣ । ପବନ ନନ୍ଦନ କାହିଁ ଔଷଧି ଆଣିଲା । ପରମ ଶତ୍ରୁ ହୋଇ ସେ ମୋତେ ବଞ୍ଚାଇଲା । ୧୯୨ ।

ପଞ୍ଜରପେନ ମୃଗୋ ମୃଗୀଂ ମୃଗେନ୍ଦ୍ର
ଧ୍ୱନିତଚକିତଃ ପ୍ରସବକ୍ଷଣେ ଜହାତି ।
ଅପ୍ୟମରଧ୍ୱଜାନକୀସ୍ୱମଦ୍ୟାଂ
ଯଦ୍ୱା ନ ସ ଜୀବତି ନିର୍ଦୟୋଽଦ୍ୟ ବେଧାଃ ।୧୯୨ ।

ଗର୍ଭବତୀ ଯଦ୍ୟପି ମୃଗୁଣୀ ହୋଇଥାଇ । ମୃଗ ତାକୁ ଛାଡ଼ିକରି ଛାଡ଼ି ଯାଏ ନାହିଁ । ପଶୁ ହେଲେହେଁତ ତାର ଅଛି ସୁବିଚାର । କାନ୍ତ ପ୍ରତି କାନ୍ତାଙ୍କ ଶୋଚେ ଏ ବଚ୍ଚର । ସିଂହ ହରିଣ ଶ୍ରବଣ କରଣ ମୃଗବର । ଛାଡ଼ିବ ହେଲେହେଁ ମୃଗୀ ପାଶରୁ ଅନ୍ତର । ହୋଇ କାହିଁ ଯାଏ ନାହିଁ ଲବେ କିନ ମତେ । ସୀତାଦେବୀଙ୍କୁ ତେଜିଲେ ରାମବନାବୋତେ । ଯେଣୁ ତାଙ୍କ ଶରୀରେ ଟିକିଏ ଦୟା ନାହିଁ । ନୁହନ୍ତି କି ରଘୁକୁଳ ବୀର ରଘୁସାଇଁ । ଯେଣୁ ପ୍ରାଣ ଅଛି ସେ ନୁହନ୍ତି କିବା ସୀତା । ମୋହର ମନେ ସଂଶୟ ଜନ୍ମେ ଏହିକଥା । ଅଥବା ଏହି ଦୁହିଙ୍କ ମଧ୍ୟରେ ଦାଇବ । ନିର୍ଦ୍ଧୟ ଚିତ୍ତେ ଜନ୍ମାଇ ଦେଇଛି ଏ ଭାବ । ୧୯୨ ।

ଅଯୋଧ୍ୟାମାଗତୋ ଲକ୍ଷ୍ମଣଃ ରାମଂ ପ୍ରତି ।
ଯୋଽଭବ୍ୟା କୁଳସ୍ୟ ଗଳତି କୁରସ୍ୟାଽଜସ୍ରଂ ଗଳଦ୍‌ବା ଷ୍ପସ୍ୟ
ଗର୍ଭାଲସ୍ୟ ଶରୀରସ୍ୟ ମୃଦୁ ମୃଦୁର୍ବ୍ୟାପାରୟନ୍ତ୍ୟା ପଦଂ ।
ଉତ୍ତୀର୍ଣ୍ଣେ ସରଦୁତ୍ତମା ମସ୍ଥି ପୁନର୍ଯତ୍ପୃଷ୍ଟମାଲୋକିତଂ
ମେଧ୍ୟାନଶରପ୍ରବାହଜ ବହସ୍ତେନୈବ ଖର୍ବୀ କୃତଃ । ୧୯୩ ।

ଏହିପରି କହି କାନ୍ଦି ଅଯୋଧ୍ୟା ନଗରେ । ଲକ୍ଷ୍ମଣ ପ୍ରବେଶ ହେଲେ ଭରସି ମନରେ ॥ ପଚ୍ଛିବାରେ ଶ୍ରୀରଘୁକୁଳ ବୀରବର । ତାହାଙ୍କୁ କହନ୍ତେ ଗଲେ ସବୁସମାଚାର ॥ ଅହେ ପ୍ରଭୁ ବୀରବର କୋଦଣ୍ଡ-ଧାରଣ । ଭେଗିଂବ ବ୍ୟାକୁଳ ସହି ବହୁତ କଷଣ । ଫିଟି ଯାଇଛି ସୀତାଙ୍କ କେଶ ବନ୍ଧା ବେଣୀ । ନୟନ ଯୁଗଳୁଁ ଝରେ ଝର ଉଚ୍ଛନ୍ତପାଣି । କଣ୍ଠଦେଶରୁ ହେ ବାଷ୍ପ ଗଳେ ଅନୁକ୍ଷଣ । ଗର୍ଭଭାର ହେତୁ ଅଙ୍ଗ ନମ୍ର ବିଶେଷେଣ । ଅତିଧୀରେ ଚାଲିଥିଲେ ଜନକନନ୍ଦିନୀ । ନଦୀ ଅନ୍ୟ ପାରେ ଛାଡ଼ି ଅଇଲି ଏକ୍ଷଣି ॥ ପୁଣି ଆପଣଙ୍କ ସଙ୍ଗେ ମୋର ହେଲା ଦେଖା । କିଏ ବା ଆନ କରିବ କପାଳର ଲେଖା । ଆପଣଙ୍କ ପ୍ରଶ୍ନକୁ ମୁଁ ମଣୁଛି ଏସନ । ଇନ୍ଦ୍ରଜିତ ଖବେ ଖର୍ବ ବିନ୍ଧୁଛି କି ବାଣ ।୧୯୩ ।

ଅଥ ବାଲ୍ମୀକ୍ୟଧ୍ୟାନେନ ଜ୍ଞାତବାନ୍ ।

ରାମୋ ଦାଶରଥିର୍ଦ୍ଦିବାକରକୁଳେ ତସ୍ୟାଙ୍ଗନା ଜାନକୀ
ନୀତେୟଂ ଦଶକନ୍ଧରେଣ ବନତୋ ଲଙ୍କାଲୟଂ ଛଦ୍ମନା ।
ରାମେଣାପି କପୀନ୍ଦ୍ର ସଙ୍ଗତ ବଶାଦମ୍ଭୋନିଧିର୍ହେଳୟା
ବଦ୍ଧଃ ପଙ୍କ୍ତିମୁଖଂ ନିହତ୍ୟ ରଘୁପୁଙ୍ଗବାଦାନୀୟ ନିର୍ବାସିତା । ୧୯୪ ।

ସୂର୍ଯ୍ୟବଂଶରେ ଶ୍ରୀରାମ ଦଶରଥ ଘରେ । ପୁତ୍ର ରୂପେ ଜାତ ହୋଇ-ଥିବାର ଧ୍ୟାନରେ । ଜାଣିପାରିଲେ ମହାତ୍ମା ବାଲ୍ମୀକି ମୁନି । ତାଙ୍କ ମନୋହାରୀ ଏହି ଜନକନନ୍ଦିନୀ ॥ କପଟେ ଯତି ବେଶରେ ଲଙ୍କ ଦଣ୍ଡଧାରୀ । ବହନ ଏହାଙ୍କୁ ନେଇଥିଲା ଚୋରି କରି । ବାନରଙ୍କୁ ଘେନି ରାମ ସେତୁବନ୍ଧ କଲେ । ଲଙ୍କାରୁ ଆଣି ଏ ସୀତା ସତୀଙ୍କି ତେଜିଲେ ।

ସୀତାଂ ପ୍ରତି ବାଲ୍ମୀକିଃ ।

ବତ୍ସେ ସମାଶ୍ୱସିହି ଜାନକି ମୁଞ୍ଚ ତାପଂ
ପ୍ରାଚେତସୋଽହମସ୍ମି ପିତୁଃ ସଖା ତେ ।
ସ୍ତ୍ରୀଣାଂ ପିତୁର୍ଭବନମେବ ସମାଶ୍ରୟନ୍ତେ ।
ତତ୍ରୈବାପଯାହି ନନୁ ପୁତ୍ରି ଲଭସ୍ୱ ପୁତ୍ରଂ । ୧୯୫ ।

ସୀତାଙ୍କୁ ଚାହିଁ ବାଲ୍ମୀକି କହନ୍ତି ଏସନ । ଆଗୋ ବତ୍ସେ ଆଉ ତୁହି ନ କର ବେଦନ ॥ ଭିଟିହିଁ ମନରେ ତୁହି ନ କର ଗୋ ଚିନ୍ତା । ମୁହିଁ ପ୍ରାଚେତସ ମୁନି ମୋ ସଖା ତୋ ପିତା ॥ ବାପଘରେ ରହିଲ ପରାୟେ ମୋ କୁଟୀରେ । ରହି କରି ପୁତ୍ର ଜନ୍ମ କର ଆନନ୍ଦରେ ।୧୯୫।

ବାଲ୍ମୀକ୍ୟାଶ୍ରମେ ସୀତା ବୃତ୍ତାନ୍ତଃ ।

ନୀତିଃ ସମ୍ୟକ୍ ପ୍ରଣୀତା ଫଳମିବ ସୁଷୁବେ ଜାନକୀ ପୁତ୍ରଯୁଗ୍ମଂ
ବାଲ୍ମୀକି ସ୍ତସ୍ୟ ଚକ୍ରେ କୁଶ ଇତି ଲବ ଇତ୍ୟେତୟୋଃ ସଂବିଧାନଂ ।
ବିଦ୍ୟା ସ୍ୱାଧ୍ୟାପ୍ୟ ସର୍ବାଃ ସକଳମବିକଳଂ ଗାପୟିତ୍ୱାତ୍ମବାକ୍ୟଂ
ଭାବ୍ୟଂ ରାମାୟଣାଖ୍ୟଂ ସକଳକୁଳମହାନନ୍ଦକନ୍ଦଂ ଚକାର । ୧୯୬ ।

ଯେସନେକ ନୀତିଶାସ୍ତ୍ର ଫଳ ପ୍ରସବଇ । ବାଲ୍ମୀକି ମୁନି ଆଶ୍ରମେ ରହି ବଇଦେହୀ ॥ ଶୁଭଲଗ୍ନେ ଦୁଇଟି କୁମର ପ୍ରସବିଲେ । ଲବ କୁଶ

ବୋଲି ମୁନି ତାଙ୍କ ନାମ ଦେଲେ ॥ ଆବର ସକଲ ବିଦ୍ୟା ସେ ଦୁହିଙ୍କି ମୁନି । ଅଧ୍ୟୟନ କରାଇଲେ ସ୍ନେହ ଭାବ ଘେନି ॥ ନିଜେ ରଚିଥିବା ରାମାୟଣ ଗ୍ରନ୍ଥ ଗୀତ । ପଢ଼ାଇଲେ ଦୁହିଙ୍କି ବାଲ୍ମୀକି ତପୋବନ୍ତ । କୁଳେ ମହାନନ୍ଦକାରୀ ହେବେ ଲଭି ଭାଇ ବେନି । ତେଣୁ ସୁଶିକ୍ଷା ଦେଲେ ସେ ବାଲମୀକି ମୁନି । ୧୯୬ ।

( ଅଥ ବନଗତାୟାଂ ସୀତାୟାଂ ରାମଚରିତଂ । )

ସୀତାଂ ହୃତ୍ୱା ଦଶମୁଖରିପୁନୌପଯେମେ ଯଦନ୍ୟାଂ
ତସ୍ୟା ଏବ ପ୍ରତିକୃତିସଖୋ ଯତ୍ କତୂନାଂ ଜହାର ।
ବୃତ୍ତାନ୍ତେନ ଶ୍ରବଣବିଷୟପ୍ରାପିନା ତେନ ଭର୍ତ୍ତୁଃ
ସାଦୁର୍ବାରତ୍ୟଥମପି ପରିତ୍ୟାଗଦୁଃଖଂ ବିଦେହୀ । ୧୯୭ ।

ଜାନକୀଙ୍କୁ ବନଦେଶେ ପଠାଇ ଦେଇଣି । ରଘୁକୁଳ ବୀରବର କୋଦଣ୍ଡ ଧାରଣି । ପୁନଶ୍ଚ ବିବାହ ନ ହୋଇଲେ କଦାଚନ । ଏକ ପତ୍ନୀବ୍ରତ ଯେଣୁ କରିଛନ୍ତି ପୁଣ ॥ ସୁବର୍ଣ୍ଣସୀତା ଗଢ଼ାଇ ସହ ପ୍ରତିମାକୁ । ବୋଲେ ଘେନି କଲେ ପ୍ରଭୁ ଯଜ୍ଞ ଯେ ହୋମକୁ ॥ ପ୍ରାଣପତିଙ୍କର । ଏହି ବୃତ୍ତାନ୍ତକୁ ଶୁଣି । ଅତ୍ୟନ୍ତ ଦୁଃଖିତା ହେଲେ ସୀତା ଠାକୁରାଣୀ ।

ମୁନିମିବ ଶୂଦ୍ରଂ ଦୃଷ୍ଟ୍ୱା ରାମଃ ।
ରେ ହସ୍ତ ଦକ୍ଷିଣ ମୃତସ୍ୟ ଶିଶୋର୍ଦ୍ୱିଜସ୍ୟ
ଜୀବାତବେ ବିସୃଜ ଶୂଦ୍ରମୁନୌ କୃପାଣଂ ।
ରାମସ୍ୟ ଗାତ୍ରମସିନିର୍ଭର ଗର୍ଭଖିନ୍ନ
ସୀତାବିବାସନପଟୋ କରୁଣା କୁତସ୍ତେ । ୧୯୮ ।

ଏହିକାଳେ ପ୍ରବେଶ ହୋଇଣ ଏକ ବିପ୍ର । ଜଣାଇଲା ପ୍ରଭୁ ରଘୁନାଥଙ୍କ ସମୀପ । ବୋଇଲା ହେ ରାଜା ମୋର ପୁଅ କାହିଁ ପାଇଁ । ଅକାରଣେ ମରିଗଲା ତୁମ୍ଭ ରାଜ୍ୟ ଥାଇ । ତା ପୁଅକୁ ଶ୍ରୀରାମ ବଞ୍ଚାଇବା ବିଚାରରେ । ଦେଖିଲେ ଯେ ଶୂଦ୍ର ମୁନି ବନେ ତପ କରେ । କ୍ରୋଧେ ଦକ୍ଷିଣ ଭୁଜକୁ କହନ୍ତି ରାଘବ । ଏ ମୁନି ମଲେ ବ୍ରାହ୍ମଣ କୁମର

ବଂଧିବ । ଯୋ ଅଙ୍ଗତ ଅଛୁ ତୁହି ରେ ଦକ୍ଷିଣ କର । ଶୂଦ୍ର ମୁନିଙ୍କ ଚଳିଲ ଖଡ଼ଗ ପ୍ରହାର ॥ ଗର୍ଭବତୀ ସୀତାଙ୍କୁ ଛାଡ଼ିଲ ବଚନ ନେଇ । ତୋ ପକ୍ଷେ ଏ କର୍ମ କିଛି ଅସାଧ୍ୟ ନୁହଇ । ୯୮ ।

ସୁବର୍ଣ୍ଣସୀତାଂ ନିର୍ମାୟ ଅଶ୍ୱମେଧଂ କୁର୍ବାଣେ ରାମେ

ଜନାଃ ।

ବଜ୍ରାଦପି କଠୋରାଣି ମୃଦୂନି କୁସୁମାଦପି

ଲୋକୋତ୍ତରାଣାଂ ଚରିତଂ କୋହି ବିଜ୍ଞାତୁ ମର୍ହତି । ୯୯ ।

ସୁବର୍ଣ୍ଣ ସୀତା ଗଢ଼ାଇ ରଘୁନାଥ ଭଲେ । ମୁନିଗଣ ଘେନି ଅଶ୍ୱମେଧ ଯଜ୍ଞ କଲେ । ତାହା ଦେଖିଣ ଯେ ପୁରଜନମାନ ତହିଁ । ପରସ୍ପର ସକଳେ ହାଇଲେ କହାକହି । ବଜ୍ରହୁଁ ବଳି କଠିନ କା ମନ ଅଛଇ । ଫୁଲଠାରୁ କୋମଳ କ ମାନସ ହୁଅଇ । କାହାକୁ ଜଣା ନୋହିବ ଲୋକଙ୍କ ଚରିତ । ପୁରଜନମାନେ ତହିଁ କହନ୍ତି ଏମନ୍ତ । ୯୯ ।

ଅତ୍ରାବସରେ

କଲଚରଘୁପତିର୍ବାର୍ଯ୍ୟାନଶ୍ୱମେଧାଶ୍ୱରୋଧେ

ନୃତ୍ୟଦପି ମୁନିସ୍ତୌ ତଦ୍ଯଶୋ ଗାପୟିତ୍ୱା ।

ପ୍ରମୁଦିତବତିରାମେର୍ଗୃହ୍ୟତ୍ୱାଙ୍କପ୍ରାୟ

ତ୍ରିହିତବିରୁଧ ଶିଷ୍ୟୈ ଜାନକୀଂ ଗ୍ରାନନାୟ । ୧୦୦ ।

ଏ କାଳ ର ବାଲ୍ମୀକି ମିଳିଲେ ଯଜ୍ଞଶାଳେ । ସଙ୍ଗରେ ଅଛନ୍ତି ଲବ କୁଶ ଦେନି ବାଳେ ॥ ଯଜ୍ଞ ଅଶ୍ୱକୁ ବନ୍ଧନ କରି ତପୋବନେ । ଯେ ଲବ କୁଶ ରାମଙ୍କୁ ଜିଣିଥିଲେ ରଣେ । ସେହି ଦୁହେଁ ଗାଇଲେ ଯେ ରାମାୟଣ ଗୀତ । ଯାହା ରଚିଥିଲେ ବାଲମୀକି ତପୋବନ୍ତ । ସେ ଗୀତ ଶୁଣି ଶ୍ରୀରାମ ଆନନ୍ଦିତ ହେଲେ । ଦୁଇ କୁମରଙ୍କୁ ମୁନି ରାମଙ୍କୁ ଏ କାଳେ ॥ ସମର୍ପଣ କଲେ ଅତିଶୟ ସ୍ନେହ ବହି । ରଘୁନାଥ ଆଜ୍ଞା ଦେଲେ ମୁନିଙ୍କି ଅନାଇଁ ॥ ସେ ଆଜ୍ଞା ପାଇଣ ବାଲମୀକି ମୁନି ଭଲେ । ଶିଷ୍ୟ ମାନଙ୍କୁ ପଠାଇ ସୀତାଙ୍କୁ ଆଣିଲେ ।

ତତସ୍ତାଗତାୟାଂ ଜାନକ୍ୟାଂ ଲୋକେ ସାଧ୍ୱୀତି ଜ୍ଞାତେ
ସଂବର୍ତ୍ତିନ୍ତୁ ମଙ୍ଗଲଶତ ରାମେ ।

ତସ୍ମାଦ୍ଭୂୟୋଽପି ବହ୍ନୌ ବିଶ ଭବତୁ ନୃଣାଂ ଦେବ ବିଶ୍ୱାସଦାର୍ଢ୍ୟଂ
ରାମେଣୋକ୍ତେ ରଦତ୍ତୈଷ୍ୟ ବିନମିତ ବଦନଂ ବୈଦେହୀ ଦେବ ସାଧ୍ୱୀ ।
ମାଂ ଦ୍ୱୈଧାଭୂୟ ଭୂମେ ନୟତୁଦାତ କୃତବ୍ୟାହୃତୌ ସତ୍ୟବାକ୍ୟାତ୍
ସଦ୍ୟୋ ନିର୍ଭିନ୍ନଭୂମେଃ ସମଭବଦତୁଲଂ ଛିଦ୍ରମନ୍ତଃ ପ୍ରବେଷ୍ଟୁଂ ।୨୦୧।

ସୀତାଙ୍କୁ ଦେଖିଣ ବିଚାରନ୍ତି ରଘୁନାଥ । ଏହୁ ସତୀ ବୋଲି ଲୋକେ ଜାଣନ୍ତୁ ସମସ୍ତ ॥ ତହୁଁ ଶ୍ରୀ ରଘୁନନ୍ଦନ ସୀତାଙ୍କୁ କହିଲେ ଆହେ ବଇଦେହୀ ଶୁଣ ଯା କହୁଅଛି ଭଲେ । ତୁମ୍ଭେ ଯେବେ ଅଗ୍ନିରେ ପଶିବ ପୁଣି ଏବେ । ଅଯୋଧ୍ୟାର ଲୋକମାନେ ତେବେ ପ୍ରତେଯିବେ । ଏମନ୍ତ ଶୁଣି ଜାନକୀ ପୋତିଲେ ବଦନ । ପୃଥ୍ୱୀଙ୍କୁ ଗୁହାରି ସତୀ କହିଲେ ଏଥନ । ଆହେ ଜନନୀ ବସୁଧେ ସତୀ ଯେବେ ମୁହିଁ । ମୋ ଦୟିନୀ ଦେଇ ଯାଅ ଦୁଇଫାଳ ହୋଇ ॥ ସୀତାଙ୍କ ମୁଖୁଁ ଏ ବାଣୀ ଶୁଣି ତତକାଳ । ବସୁଧା ଦେବୀ ହୋଇଣ ଗଲେ ବେନିଫାଳ । ଏକ ରନ୍ଧ୍ର ହେଲା ତାକୁ ପଟାନ୍ତର ନାହିଁ । ରାମ ଦେଖୁଁ ଦେଖୁଁ ସୀତା ପଶିଲେକ ତହିଁ । ୨୦୧ ।

ସଂଲଗ୍ନ ସ୍ୟାଂ ଧରଣ୍ୟାଂ ।

ପଶ୍ୟତ୍ସ୍ୱଭିଷ୍ଟୁଂ ସ ସୀତାଂ ପୁନରପି ଧରଣୀଂ ଭେତ୍ତୁମଭ୍ୟୁଦ୍ୟତୋଽଭୂ-
ସ୍ତର୍ବେ ରଭ୍ୟର୍ଥ୍ୟ ମାନଃ ଶମମନଦୁଦଧୌ ରାଘବଃ କୋପଶୋକୌ ।
ସାନନ୍ଦାନନ୍ଦୈଃ ସମେତଃ ସକଲବୁଧଗଣୈଃ ପୁତ୍ରୟୋ ସ୍ତତ୍ର ସୀତା-
ସ୍ନେହଂ ସଂବେଦ୍ୟ ରାଜ୍ୟଂ ଚିରମକୃତ ଜନାନନ୍ଦନୋ ରାମଚନ୍ଦ୍ରଃ ।୨୦୨।

ତହିଁ ଉତ୍ତାରୁ ଧରଣୀ ସଂଲଗ୍ନା ହୋଇଲେ । ଏକଲୟ କରି ରଘୁନାଥ ଦେଖୁଥିଲେ । କ୍ରୋଧେ ଧନୁଶର ହାତେ ନେଇଲେ ରାଘବ । ବୋଇଲେ ଧରଣୀକି ମୁଁ ବିଦାରିବି ଏବେ । ସତୀ ସୀତାଙ୍କୁ ନିଷ୍ଟୟ ଅଣିବି ଉଦ୍ଧାରି । ତା ଦେଖି ପ୍ରାର୍ଥନା କଲେ ସର୍ବେ ମିଳିକରି । ତହୁଁ ରାମ

କ୍ରୋଧ ଶୋକ ଆପେ ନିବାରିଲେ । ଦେବତାଙ୍କ ବଚନେ ସେ ଆନନ୍ଦିତ ହୋଇଲେ । ପତ୍ନୀସ୍ନେହ ତେଜି ପୂର୍ବେ ଅତିସ୍ନେହ କଲେ । ତାଙ୍କୁ ଘେନି ରଘୁନାଥ ରାଜ୍ୟକୁ ପାଳିଲେ । ଅଯୋଧ୍ୟାର ପ୍ରଜାମାନେ ଆନନ୍ଦେ ରହିଲେ ॥ ରାମରାଜ୍ୟ ହୋଇଲା ଜାଣି ଧରଣୀ ହସିଲେ । ୨୦୨ ।

ମୁନିବେଶଧାରିଣଃ ସମାଗତସ୍ୟ କାଳସ୍ୟ ବଚନଂ ।

ଏକାନ୍ତଂ ଦେହି ରାଜନ୍ ମୁନିରଖିଳକୁଳେ ବାଞ୍ଛିତାର୍ଥପ୍ରଦୋଽହଂ
ଯସ୍ତତ୍ରୈବୋପୈତି ବଧ୍ୟଃ ସ ତୁ ଖଲୁ ଭବତା ସତ୍ୟମେବଂ କୁରୁଷ୍ୱ ।
ସୌମିତ୍ରିଂ ଦ୍ୱାରଦେଶେ ତଦନୁ ରଘୁପତର୍ଲେକବୋଧାୟ ହତ୍ୱା
ଶ୍ରୁତ୍ୱାବ ବ୍ରହ୍ମବାକ୍ୟଂ ସ୍ୱରପୁରଗମନା ଦ୍ୟର୍ଥନଂ କାଳବକ୍ତ୍ରାତ୍ । ୨୦୩ ।

ମୁନି ବେଶରେ ଯେ କାଳପୁରୁଷ ଆସିଣ । ଶ୍ରୀରାମଙ୍କ ନିକଟରେ କହିଲା ଏସନ । ଅମ୍ଭେ ମହାମୁନି ଅଟୁଁ ଅହେ ରଘୁପତି । ସବୁରି ବାଞ୍ଛା ପୂରଣ କରୁଁ ହେ ନୃପତି । ଏକାନ୍ତେ ଗୁପ୍ତକଥାଏ କହୁଁ ତୁମ୍ଭଙ୍କୁ । ସତ୍ୟ କର ନ ଆସିବେ କେହି କେହି ସେଠାକୁ । ଯେବେ କେହି ସେ ସ୍ଥାନକୁ ଆସେ ହେ ରାଘବ । କଷ୍ଟ ନ ବାରିବ ତାକୁ ନିଷ୍ଟୟେ ବଧିବ । ତନ୍ତ୍ରୁ ସଉମିତ୍ରିଙ୍କି ଡାକିଣ ରଘୁବୀର । ବୋଇଲେ ସାନୁଜ ତୁମ୍ଭେ ଜଗିଥିବ ଦ୍ୱାର । ମୋର ନିକଟରେ କାହାକୁହି ନ ଛାଡ଼ିବ । ଏହିଆଜ୍ଞା ଗୋଟିକ ଯତନେ ପାଳିଥିବ । ସ୍ୱର୍ଗକୁ ଗମନ ପୁଣି ବ୍ରହ୍ମାଙ୍କ ଖବର । କାଳ ମୁଖରୁ ଶୁଣିଲେ ପ୍ରଭୁ ରଘୁବୀର । ୨୦୩ ।

ଲକ୍ଷ୍ମଣଦୁର୍ବାସସୋ ରୁକ୍ତପ୍ରତ୍ୟୁକ୍ତୀ ।

ରାମଂ ଦର୍ଶୟ ଦର୍ଶୟାମ୍ୟବସରେ ବ୍ରହ୍ମନ୍ ମନାକ୍ କ୍ଷମ୍ୟତାଂ
ଧିକ୍ ତ୍ୱାଂ ନ୍ୟୂନବଲେପ ଏଷ ନହି ମାଂ ଜାନାସି ଦୁର୍ବାସସଂ ।
ରୁଷ୍ଟୋଽହଂ ଜ୍ୱଳିତଃ କ୍ରୁଧା ତବ କୁଳଂ ଭସ୍ମୀକରୋମି କ୍ଷଣା-
ଦ୍ବକ୍ତି ହ୍ରିତ ମୂଢ଼ କିଂ ପଠେତଠେ ଜ୍ୱାଳାଜଠାଲୋଽନଳଃ । ୨୦୪ ।

ଏହି ସମୟରେ ଯେ ଦୁର୍ବାସା ଆସି ତହିଁ । ବୋଇଲେ ସରଳବାଣୀ ଲକ୍ଷ୍ମଣଙ୍କୁ ଚାହିଁ ॥ ଦେଖାଅ ଦେଖାଅ ମୋତେ ହେ ବୀର ଲକ୍ଷ୍ମଣ ।

କେଉଁ ଠାରେ ରହିଛନ୍ତି କୋଦଣ୍ଡଧାରଣ ॥ ବୋଇଲେ ଲକ୍ଷ୍ମଣ ରାଜା ଗୁପ୍ତକାର୍ଯ୍ୟେ ଛନ୍ତି । କଣ୍ଟକଣ ରହ ଦେଖାଇବ ବ୍ରହ୍ମଯନ୍ତି ॥ ମୁନି ବୋଇଲେ ଧିକରେ ଧିକ ତୁ ଲକ୍ଷ୍ମଣ । ମୋ ଆଗ ୍ରେ ଏ ଗରବ କରୁ କି କାରଣ ॥ ଚହ୍ନି ନାହୁଁ ମୋତେ ମୁଁ ଦୁର୍ବାସା ମୁନିବର । କ୍ଷ କରି ପାରଇଁ ତୋତେ ନାହିଁରେ ଗୋଚର ॥ ବଦନ ମଧ୍ୟରେ ଅଚ୍ଛି ଜ୍ୱଳନ୍ତ ଅନଳ । କ୍ରୋଧେ ଜାଳିଲେ ସେ ଜାଳିଦେବ ତୋ'ର କୁଳ । ୨୦୪ ।

ଲକ୍ଷ୍ମଣଃ ସ୍ୱଗତଂ ।

ଅସ୍ମିଂ ସ୍ତ୍ରୀନ ଗତେ ପତେଦ୍ଭୂଭୃତୋବାର୍ଯ୍ୟାସ୍ୟ ଧର୍ମୋ ମନା-
ଗ୍ରାହ୍ୟସ୍ୟୈବ ଧୃତେ ଦହେତ୍ କୁଳମିଦଂ ଦୁର୍ମର୍ଷଣୋଽସ୍ୟଂ ମୁନିଃ ।
ଭାଦ୍ୱଗଚ୍ଛାମ୍ୟହମେବ ତତ୍ପୁତ୍ରୁ କୁଳଂ ରାଜ୍ଞଃ ପ୍ରତିଜ୍ଞାଂ ପୁନଃ
ନୀତ୍ୱାଂ ଦେବହମମୂଂ ବମୂଚ୍ୟ କରବୈ ଶ୍ଲାଘ୍ୟଃ ପରାର୍ଥୋ ବଧଃ ।୨୦୫।

ତହୁଁ ମନେ ମନେ ଯାହିଁଲେକ ସଉମିତ୍ରି । ସ୍ୱାମୀଙ୍କ ନିକଟେ ଯେବେ ଏ ମୁନି ଯାଅନ୍ତି । ତେବେ ସ୍ୱାମୀଙ୍କର ନିଶ୍ଚେ ଧର୍ମ ହାନି ହେବ । ବ୍ରହ୍ମହତ୍ୟା ପୁଣି ସତ୍ୟଭଗ୍ନ ହୋଇବ । ଏଥି ରହିଲେ ବ୍ରାହ୍ମଣ ସବଂଶକୁ ପୁଣି । ଜାଳିଦେବ ବୋଲି କହୁଅଛୁ ଏବାଣୀ । ମୁଁ ଗଲେ କୁଳ ଅବର ପ୍ରତିଜ୍ଞା ରହିଇ । ସ୍ୱର୍ଗକୁ ମୁଁ ଯିବ ମୁନି ପାଇଁ ପ୍ରାଣ ଦେଇ । ୨୦୫ ।

ଇତି ବମୃଷ୍ୟ ଏକାନ୍ତଭଙ୍ଗଂ କୃତବତି ଲକ୍ଷ୍ମଣେ ମୁନି-
ରୂପେ କାଳେ ଦୁର୍ବାସସି ଚ ଗତେ ଲକ୍ଷ୍ମଣେନ ସ୍ୱପ୍ରତିଜ୍ଞା-
ପୂରଣାର୍ଥଂ ସ୍ୱବଧୋଯ ଚିତୋ ବାମଭଦ୍ରଂ । ୦ ।

ଏତେ ବଚନ ଲକ୍ଷ୍ମଣ ରାମପାଶେ ଗଲେ । ଦୁର୍ବାସା ମୁନି ଆସିବା କଥା ଜଣାଇଲେ । ଗଲେ କାଳମୁନି ଭଗ୍ନ ହୋଇଲା ଏକାନ୍ତ । ଶ୍ରୀରାମ ଦୁର୍ବାସା ସଙ୍ଗେ ହୋଇଲେ ସାକ୍ଷାତ । ଲକ୍ଷ୍ମଣ କହିଲେ ମୁନି ଦୁର୍ବାସା ଯାନ୍ତେଣ । ପ୍ରତିଜ୍ଞା ପୂରାଅ ଏବେ କୋଦଣ୍ଡଧାରଣ । ୦ ।

ଅଖିଲ ମୁନିବରେଭ୍ୟସ୍ତ୍ୟାଗଏବାସ ବନ୍ଧୋ-
ର୍ବଧ ଇତି ହି ବଶୃଷ୍ଟେ ସ୍ଥୈର୍ଯ୍ୟବାନ୍ ରାମଭଦ୍ରଃ ।
ବ୍ୟସୃଜଦଥ ସୁମିତ୍ରାପୁତ୍ରମାତ୍ମାଧିକଂ ତଂ
ନହି କମପି ଗରୀୟୋ ବାକ୍ୟତଃ ସଜ୍ଜନାନାଂ । ୨୦୬ ।

ଶୁଣି ରଘୁନାଥ ମୁନିଗଣେ ପଚ୍ଛିଲେ । ତହୁଁ ସର୍ବମୁନିମାନେ ରାମଙ୍କୁ ବୋଇଲେ । ବନ୍ଧୁ ତ୍ୟାଗ ବଧତୁଲ୍ୟ ଅଟଇଟି ଜାଣ । ପ୍ରାଣୁଁ ଅଧିକ ଭାଇକି ତେଜିଲେ ଶ୍ରୀରାମ ॥ ସାଧୁଜନମାନଙ୍କର ବାକ୍ୟ ହେ ଖୁଜନ । କି ଗରିଷ୍ଠ କର୍ମ ନ କରନ୍ତି କଲେ ପୁଣ । ୨୦୬ ।

ତେନ ତ୍ୟକ୍ତଃ ସ୍ୱୟଂ ଦେହୋଽପି ଯୋଗାତ୍
ପ୍ରୀତୋ ଯୋଗାଲ୍ଲକ୍ଷ୍ମଣୋଽନ୍ତ୍ୟକଂ ଚମୁଚ୍ୟ ।
ହ୍ୟଦ୍ୟଃ ସ୍ୱର୍ଗଂ ପୂଜ୍ୟମାନଃ ସ ଲେଭେ
ସତ୍କର୍ମୀ ହି ଶ୍ରେୟସା ମେବ ଭୋଗୀ । ୨୦୭ ।

ନିଜଯୋଗୁଁ ତ୍ୟାଗୀ ହୋଇ ବୀରେ ସନ୍ତମିନି । ତୋହେ ଯୋଗ ବଳେ ପ୍ରାଣ ତେଜିଲେ ଝଟନ୍ତି । ତତ୍କ୍ଷଣେ ସ୍ୱର୍ଗେ ଚଳିଲେ ଦିବ୍ୟ ବିମାନରେ । ଦେବତାଏ ପୂଜା କଲେ ତାଙ୍କ ଚରଣରେ । ପୁଣ୍ୟ କର୍ମ କଲା ଲୋକେ ସଦ୍‌ଗତି ଲଭଇ । ସାଧୁବାକ୍ୟ କେବେ ଏହା ଅନ୍ୟଥା ନୁହଇ । ୨୦୭ ।

ଲକ୍ଷ୍ମଣେ ସ୍ୱର୍ଗଂ ଗତେ ଭରତଃ ।
ଭବତୁ ଚରମିଦଂ ନଃ ସ୍ଥୀତମ୍ରାଜ୍ୟଂ ମହାତ୍ମନ୍
ତବ ତନୟୁ ଯୁଟେଽସ୍ମିନ୍ ଯୁଜ୍ୟତେ ରାଜଲକ୍ଷ୍ମୀଃ ।
ଅଯୁମହମନୁ ଯ ସ୍ୟାମେବ ଶନ୍ଦ୍ଧ ଯୁକ୍ତ
ସ୍ତବ ଚରଣସରୋଜଂ ନାଥ ନାଥ ପ୍ରସୀଦ । ୨୦୮ ।

ଲକ୍ଷ୍ମଣ ସ୍ୱର୍ଗକୁ ଯାନ୍ତେ କହନ୍ତି ଭରତ । ଶୁଣିବା ହେଉ ମହାତ୍ମା ମୋହର ଉକତ । ଅନେକ କାଳ ହେ ଅମ୍ଭେ ଏହି ଅଯୋଧ୍ୟାରେ । ରାଜତ୍ୱ କରିତ ଅଛିଲୁଁ ସୁଖଧାରେ । ଏବେ ଲବ କୁଶ ଦୁଇ ପୁତ୍ରକୁ

ବହନ ।- ରାଜ୍ୟରେ ରାଜା କରନ୍ତୁ ହେ ରଘୁନନ୍ଦନ । ପରମ ଆନନ୍ଦେ ରାଜ୍ୟଲକ୍ଷ୍ମୀ ଏ ଭୁଞ୍ଜନ୍ତୁ । ପ୍ରସନ୍ନ ଚିତ୍ତ ଆମ୍ଭଙ୍କ ଯିବାକୁ କହନ୍ତୁ ॥ ଆପଣଙ୍କ ପଦଅରବିନ୍ଦ ସେବିବାରେ । ପଛେ ପଛେ ରହି ଥିବୁ ଜଣାଇଲୁଁ ବାରେ । ୨୦୮ ।

ଇତି ଭରତଶତ୍ରୁଘ୍ନୌ ବିସୃଜ୍ୟୋତ୍ଫୁଲ୍ଲଚେତାଃ
କୁଶଲବକରଯୁଗ୍ମେ ରାଜ୍ୟଲକ୍ଷ୍ମୀଂ ନିଧାୟ ।
ସହଗମନସମୃଦ୍ଧ୍ୟୈ ଶୀଘ୍ରତୋଽଲଙ୍କୃତ୍ୟୈ-
ରଭୟକରଣଚେତାସ୍ତାଂ ସ୍ତୁତ୍ୟୈ ଦାନୁମେନେ । ୨୦୯ ।

ଦୟାନିଧି ବରବର ରଘୁକୁଳ ଚନ୍ଦ୍ର । ଭରତ ବଚନେ ହୋଇ ବହୁତ ଆନନ୍ଦ । ରାଜ୍ୟଲକ୍ଷ୍ମୀ ଦୁଇ କୁମରଙ୍କୁ ସମର୍ପିଲେ । ସଙ୍ଗରେ ନେଲେ ତାହାଙ୍କୁ ଯେମାନେ ଇଚ୍ଛିଲେ । ୨୦୯ ।

( ସମାଗତେଭ ସ୍ତୁନୁଗମନାର୍ଥଂ ବାନର ରକ୍ଷସେଷୁ )
ବିଭୀଷଣହନୂମନ୍ତୌ କୃତ୍ୱା ସ ଚିରଜୀବିନୌ ।
ଆକଳ୍ପଂ ଭୂରିଭୋଗାଢ୍ୟୌ ନ ବର୍ତ୍ତିଂ ବହ୍ମନାୟୁକାତ୍ । ୨୧୦ ।

ବାନରେ ରାକ୍ଷସେ ଆସି ସମସ୍ତେ ମିଳିଲେ । ବିଭୀଷଣ ହନୁମାନେ ଚିରଜୀବୀ କଲେ ॥ ମୋର ସଙ୍ଗେ ନ ଯା ତୁମ୍ଭେ ବୋଇଲେ ଏମନ୍ତ । ସୁଖଭୋଗ କର ବସି କଳ୍ପ ପରଯନ୍ତ । ୨୧୦ ।

ସ୍ନାତ୍ୱ ଯେଽ ସାରବେଽନ୍ତଃ ପୟସି ରଘୁପତିର୍ଦିବ୍ୟଦେହୋ ବିମାନେ
ତାବଦ୍ବ୍ୟୋମ୍ନି ସ୍ଥିତଃ ସାବନୁଗମନକୃତୋତ୍ସାହଭାଜେ ଜନାସ୍ତେ ।
ଯାବତ୍କୀଟାଦୟୋଽପି ପ୍ରତନବସରଯୂସ୍ନାନନିର୍ମୁକ୍ତଦେହାଃ
ସ୍ନେହାଦ୍ବ୍ରହ୍ମୋପନୀତାନ୍ୟନବରତମହାବ୍ୟୋମଯାନାନ୍ୟପେୟୁଃ ॥

ଦିବ୍ୟଦେହେ କଲେ ରାମ ସରଯୂରେ ସ୍ନାନ । ରହିଲେ ଆକାଶ ମାଗେ ଆରୋହି ବିମାନ ॥ ମନୁଷ୍ୟରୁ କୀଟ ଯାଏ ଯେତେ ଆସି ଥିଲେ । ସରଯୂରେ ସ୍ନାନ କରି ମୋକ୍ଷ ହୋଇଗଲେ । ଗୋଟି ଗୋଟି ଦେବଯାନେ ଗଲେ ସ୍ୱର୍ଗପୁରେ । ଦେଖିଣ ଶ୍ରୀରାମ ତହୁଁ ଗଲେ ଆନନ୍ଦରେ ।

ଏବଂ ଦୋର୍ଦ୍ଦଣ୍ଡଦର୍ପଂ ଧ୍ୱଣି ଧ୍ୱଣି ପରମାଶ୍ଚର୍ଯ୍ୟମିଦଂ ଗୀୟମାନଂ ନିଶମ୍ୟ କୃତ୍ୱା ଦୁର୍ବୃତ୍ତଶାନ୍ତିଂ ତ୍ରିଭୁବନମଖିଳଂ ସ୍ୱସ୍ୱଧର୍ମେ ପ୍ରବୃତ୍ତଂ ।
ଭୁକ୍ତ୍ୱା ରାଜ୍ୟଂ ସହସ୍ରାଧିକମୟୁତମଥୋ ବତ୍ସରାନ୍ ପୂର୍ଣ୍ଣକାମଃ
ସାର୍ଦ୍ଧଂ ପୌରୈଃ ସମସ୍ତୈରଗମଦତକୃତୀ ରାଘବଃ ସ୍ୱୀୟଲୋକଂ ।

ମର୍ତ୍ତ୍ୟପୁରେ ରାମରୂପେ ଜନମିଣ୍ଣ ହରି । ପ୍ରତାପରେ ନିଜଭୁଜ-ବଳକୁ ବିସ୍ତାରି ॥ ଦୁଷ୍ଟ ଜନଙ୍କୁ ନିବାରିଲେ ସାଧୁଙ୍କୁ ପାଳିଲେ । ପ୍ରାଣୀ-ଗଣେ ନିଜ ନିଜ ଧର୍ମ ଶିଖାଇଲେ । ଏଗାର ହଜାର ବର୍ଷ ରହିଲେ ମର୍ତ୍ତ୍ୟରେ । ଆନନ୍ଦରେ ଚାଲିଗଲେ ତାଙ୍କ ନିଜପୁରେ ।୨୧୨।

ଫଳଶ୍ରୁତିଃ ।

ରମ୍ୟଂ ଶ୍ରୀରାମଚନ୍ଦ୍ରପ୍ରବଳଭୁଜବୃହଦ୍ଦଣ୍ଡବଂ କାଣ୍ଡଶୌଣ୍ଡ
ବ୍ୟାପ୍ତଂ ବ୍ରହ୍ମାଣ୍ଡଭାଣ୍ଡେ ରଣଶିରସି ମହାନାଟକଂ ପାଠବାଚ୍ୟଂ ।
ପୁଣ୍ୟଂ ଶ୍ରୀକୃଷ୍ଣ(?)ନେୟପ୍ରବଚିତମିଦଂ ଯଃ ଶୃଣୋତି ପ୍ରସଙ୍ଗା
ନ୍ମୁକ୍ତୋଽସୌ ସର୍ବପାପାଦ୍ଭବତି ବିଜୟୀ ରାମବତ୍ସଙ୍ଗରେଷୁ ।୨୧୩।

ଏ ମହାନାଟକ ଗ୍ରନ୍ଥ ଅତି ସୁଲଳିତ । ଏଥି ପୂର୍ଣ୍ଣ ରହି ଅଛି ରାମଙ୍କ ଚରିତ ॥ ରଚିଛି ପରମ ଭକ୍ତ ଅଞ୍ଜନାନନ୍ଦନ । ପବିତ୍ରକାରକ ନାହିଁ ଏ ଗ୍ରନ୍ଥ ସମାନ ॥ ଯେ ଜନ ଆନନ୍ଦେ ଏହା ପଢ଼ିବ ଶୁଣିବ । ସମସ୍ତ ପାପରୁ ନିଶ୍ଚେ ମୁକତ ହୋଇବ ॥ ଶ୍ରୀରାମଙ୍କ ତୁଲ୍ୟ ହେବ ଯୁଦ୍ଧରେ ବିଜୟୀ । ବୈକୁଣ୍ଠଭୁବନେ ଯିବ ଅନ୍ତକାଳେ ସେହି ।୨୧୩।

ଅଥସ୍ତବଃ ।

ବିଦଶକୁମୁଦଚନ୍ଦ୍ରୋ ଦାନବାମ୍ଭୋଜଚନ୍ଦ୍ରଃ
ସକଳଭୁବନଚନ୍ଦ୍ରୋ ଯୋଗିନାଂ ଜ୍ଞାନଚନ୍ଦ୍ରଃ ।
ଦୈବତକୁଳଚନ୍ଦ୍ରୋ ମୈଥିଳୀନେତ୍ରଚନ୍ଦ୍ରୋ
ଦୁରିତତିମିରଚନ୍ଦ୍ରଃ ପାତୁବୋ ରାମଚନ୍ଦ୍ରଃ ।୨୧୪ ।

ଭଙ୍କ୍ତାରଂ ଯୁଦ୍ଧ ତାଡ଼କାଂ ପଶୁପତେଶ୍ଚାପମୁଚ୍ଚୈର୍ଦ୍ଧନ୍ତ-
ର୍ଜେତାରଂ ଭୃଗୁନନ୍ଦନସ୍ୟ ବପିନଂ ଗନ୍ତାରମୁକ୍ତୌ ପିତୁଃ ।

ହନ୍ତାରଂ ଖରଦୂଷଣତ୍ରିଶିରସାଂ ବଦ୍ଧାରମମ୍ଭୋନିଧେ-

ର୍ଲ୍ଲୋତ୍ତାରଂ ଦଶକନ୍ଧରସ୍ୟ ଚରଣଂ ରାମଂ ପ୍ରପଦ୍ୟ ମହେ ॥

ତାଡ଼କା ବଧଲେ ଶିବଧନୁକୁ ଭାଙ୍ଗିଲେ । ପରଶୁରାମଙ୍କୁ ତାହେଁ ଯୁଦ୍ଧରେ ଜିଣିଲେ ॥ ପିତୃସତ୍ୟ ପାଳି ଘୋରବନେ କଲେ ବାସ । କଲେକ ଦୂଷଣ ଖର ତ୍ରିଶିରାଙ୍କୁ ନାଶ ॥ ସମୁଦ୍ର ବାନ୍ଧିଲେ ଦଶମୁଖଙ୍କୁ ଛେଦିଲେ । ଆନନ୍ଦରେ ବଇକୁଣ୍ଠପୁରେ ଚଳିଗଲେ ॥ ସେହି ଦେବ-ଦେବ ରାମ ଚରଣ କମଳେ ॥ ମୋହର ହୃଦୟ ମନ ରହୁ ସୁନି-ଶ୍ଚଳେ । ୨୨୫ ।

ଏତଚ୍ଛ୍ରୀଲହନୁମତା ବିରଚିତେ ଶ୍ରୀମନ୍ମହା ନାଟକେ

ବୀରଶ୍ରୀଯୁତରାମଚନ୍ଦ୍ରଚରିତେ ପ୍ରତ୍ୟୁଦ୍ଧୃତେ ବିକ୍ରମୈଃ ।

ମିଶ୍ରଶ୍ରୀମଧୁସୂଦନେନ କବିନା ସନ୍ଦର୍ଭ୍ୟ ସଜ୍ଜୀକୃତେ

ସ୍ୱର୍ଗାରୋହଣନାମଧେୟଃ ନବମୋଽଙ୍କଃ ସମାପ୍ତୋଽଯଂ ମହାନ୍ ।

ପଥରରେ ନଖ ଅଗ୍ରେ ଲେଖି ହନୁମାନ । ଦେଲେ ନେଇ ବାଲମୀକ ମୁନି ସନ୍ନିଧାନ ॥ ପଢ଼ିଣ ମହର୍ଷି ଅତି ଆନନ୍ଦ ହୋଇଲେ । ମାରୁତିଙ୍କ ଗ୍ରହୁଁ ପୁଣି ଏମନ୍ତ ବୋଇଲେ ॥ ଏ ମହାନାଟକ ଲୋକେ ହୋଇଲେ ପ୍ରଚୁର । ନ କରିବେ ରାମାୟଣ ଚରିତ୍ରକୁ ଆଦର ॥ ମୋର ବୋଲ କର ଏବେ ପବନନନ୍ଦନ । ଏହାକୁ ତୁ ଜଳମଧ୍ୟେ ପକାଅ ବହନ ॥ ଶୁଣିଣ ମାରୁତି ତହୁଁ ବେଗେ ଚଳିଗଲା । ଖଣ୍ଡ ଖଣ୍ଡ କରି ନେଇ ଜଳେ ପକାଇଲା । ତହୁଁ କେତେ ବର୍ଷପରେ ଭୋଜ ଜନୁ ହେଲେ । ସେ ପଥରଖଣ୍ଡମାନ ଜଳ ଉଠାଇଲେ ॥ ଯୋଡ଼ିଲେ ତାହାକୁ ମିଶ୍ର ଶ୍ରୀମଧୁସୂଦନ । ଦେଖିଣ ଆନନ୍ଦ ହେଲେ ସେ ଭୋଜ ରାଜନ ॥ ଏ ଅଙ୍କର ନାମ ଅଟେ ସ୍ୱର୍ଗ ଆରୋହଣ । ଏହିଠାରୁ ନବ ଅଙ୍କ ହୋଇଲା ସମ୍ପୂର୍ଣ୍ଣ ।

ଇତି ଶ୍ରୀ ହନୂମତ୍କୃତେ ମହାନାଟକେ ନବମୋଽଙ୍କଃ ସମାପ୍ତୋଽଯଂ ॥

---

କଟକ ଶ୍ରୀ ଧରନାଥ ପ୍ରେସରେ ଶ୍ରୀ ଅଜୟକୁମାର ଘୋଷଙ୍କ ଦ୍ୱାରା ମୁଦ୍ରିତ

